ପାଶ୍ଚାତ୍ୟ ସାହିତ୍ୟ ଓ ସାହିତ୍ୟ ସମାଲୋଚନା ପ୍ରଭାବରେ ଆମେ ଡେକାମେରନ୍, କେଣ୍ଟେରବେରି ଟେଲସ୍, ଇଶପସ୍ ଫେବଲସ୍, ଆରବ୍ୟରଜନୀ କିମ୍ୱା ଏକ ହଜାର ଏକରାତ୍ରୀର କାହାଣୀ ସହିତ ଯେତିକି ପରିଚିତ ହେଲୁ ଭାରତୀୟ ଗଳ୍ପ ପରଂପରାଠାରୁ ସେତିକି ଦୂରେଇଗଲୁ; କିଂତୁ ବିଶ୍ୱ କଥାସାହିତ୍ୟ ଏବଂ ଭାରତୀୟ ସାହିତ୍ୟର ଯଥାର୍ଥ ଅନୁଶୀଳନ ନିମିତ୍ତ'କଥା ସରିତ ସାଗର'ର ଅନୁଶୀଳନ ଯେ ଏକାନ୍ତ ଉପଯୋଗୀ, ସୌଭାଗ୍ୟବଶତଃ, ଆଜିର ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମାଲୋଚକମାନେ ହୃଦ୍‌ବୋଧ କଲେଣି । ଏହି ପରିପ୍ରେକ୍ଷୀରେ 'କଥା ସରିତ ସାଗର'ର ଏହି ଓଡ଼ିଆ ପୁନଃଲିଖନ ନିଶ୍ଚିତଭାବେ ସହାୟକ ହେବବୋଲି ବିଶ୍ୱାସ । ଏହାରି ଆଧାରରେ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ପୁରାଣ ଓ କାବ୍ୟ ସାହିତ୍ୟର ପୁନର୍ବିଚାର କରାଯାଇପାରେ; ବାଚନ ବିଜ୍ଞାନ ଦୃଷ୍ଟିରୁ ଆଧୁନିକ କଥାସାହିତ୍ୟର ମଧ୍ୟ ପୁନଃ ଆକଳନ କରାଯାଇପାରେ ।

ସୋମଦେବଙ୍କ

# କଥାସରିତ ସାଗର

(ପଞ୍ଚମ ଭାଗ)

ଅନୁବାଦ
ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ



କଥାସରିତ ସାଗର
Kathasarita Sagar
(Vol. - V)

ଅନୁବାଦ : ଡକ୍ଟର ସୁଦର୍ଶନ ଆଚାର୍ଯ୍ୟ
Translated by : Dr. Sudarsana Acharya



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari
Cuttack-753 002, Orissa (India)

ପ୍ରଥମ ପ୍ରକାଶ : ୨୦୦୭
First Edition : 2007

ପ୍ରଚ୍ଛଦ : ଅଭିଷେକ ପାଣିଗ୍ରାହୀ
Artist : Abhisek Panigrahi

ଅକ୍ଷରସଜ୍ଜା : ୟୁନିଟେକ୍, କଟକ
Typeset : Unitech, Cuttack

ମୁଦ୍ରଣ : ଲକ୍ଷ୍ମୀ ଅଫ୍‌ସେଟ୍ ପ୍ରେସ୍, କଟକ
Printer : Laxmi Offset Press, Cuttack

ISBN 81-7401-648-1

Price : **Rs. 150**

# କୃତଜ୍ଞତା

'କଥାସରିତ ସାଗର'ର ପଞ୍ଚମ ତଥା ଶେଷଭାଗର ମୁଦ୍ରଣ ଶେଷହେଲା । ଦୀର୍ଘଦିନ ଧରି ପଡ଼ିରହିଥିବା ପାଣ୍ଡୁଲିପିଟିକୁ ପାଠକମାନଙ୍କ ଦୃଷ୍ଟିକୁ ଆଣିବାର ସମସ୍ତ ଗୌରବ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସର । ଓଡ଼ିଆ ସାହିତ୍ୟର ସମୃଦ୍ଧି ଏବଂ ଓଡ଼ିଆ ପ୍ରକାଶନର ଅଭିବୃଦ୍ଧି ଦିଗରେ ଆଜୀବନ ଉଦ୍ୟମଶୀଳ ବଂଧୁ ସହଦେବ ପ୍ରଧାନଙ୍କ ସହଯୋଗ ବିନା ଏହି ବିଶାଳ ଗ୍ରନ୍ଥଟି ଲୋକଲୋଚନକୁ ଆସିପାରିନଥାନ୍ତା । ଏଥିପାଇଁ ମୁଁ ତାଙ୍କୁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ନନାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ତାଙ୍କରି ସଦିଚ୍ଛାକୁ ପରିପୂର୍ଣ୍ଣ କରିବା ନିମିତ୍ତ ନିରଳସ ପ୍ରୟାସ କରୁଥିବା ସହଦେବ ବାବୁଙ୍କର ଉଭୟ ସୁଯୋଗ୍ୟପୁତ୍ର ହିମାଂଶୁ ଓ ସୁଧାଂଶୁଙ୍କ ପ୍ରତି ମୋର ସଶ୍ରଦ୍ଧ ଆଶୀର୍ବାଦ । ସେମାନେହିଁ ଗ୍ରନ୍ଥଟିକୁ ମାର୍ଜିତ ଓ ସୁଦୃଶ୍ୟରୂପ ଦେଇଛନ୍ତି ।

ଏହାର କିଛି ଅଂଶ ପାଠକରି ଗ୍ରନ୍ଥଟିକୁ ପୂର୍ଣ୍ଣାଙ୍ଗ କରିବାପାଇଁ ଯେଉଁମାନେ ସାଗ୍ରହ ଅନୁରୋଧ ଜଣାଇ ମୋତେ ପ୍ରୋତ୍ସାହିତ କରିଛନ୍ତି, ଯେଉଁ ଶୁଭେଚ୍ଛୁମାନେ ଏହି ଗ୍ରନ୍ଥ ପ୍ରକାଶନରେ ଆନନ୍ଦଲାଭ କରିଛନ୍ତି, ଯେଉଁ ବନ୍ଧୁମାନେ ଏହାର ମାର୍ଜନା କରିବାରେ ସହାୟତା କରିଛନ୍ତି, ସେ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞ ।

ଯିଏ ମୋର ଉଚ୍ଚ ରକ୍ତଚାପକୁ ନିୟନ୍ତ୍ରଣରେ ରଖି ଏହି ବିଶାଳ ଗ୍ରନ୍ଥର ଅନୁବାଦ ଓ ମୁଦ୍ରଣ ନିମିତ୍ତ ମୋତେ ଶାରୀରିକ ଓ ମାନସିକ ଶକ୍ତି ଯୋଗାଇଛନ୍ତି, ସେ ହେଉଛନ୍ତି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ହୃଦ୍‌ରୋଗ ବିଶେଷଜ୍ଞ ତଥା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଭେଷଜ ମହାବିଦ୍ୟାଳୟର ହୃଦରୋଗ ବିଭାଗୀୟ ମୁଖ୍ୟ ପ୍ରଫେସର ଡାକ୍ତର ପ୍ରବୀଣ

କୁମାର ରଥ । ଗୁରୁଭାବରେ ମୁଁ ତ ତାଙ୍କୁ କୃତଜ୍ଞତା ଜ୍ଞାପନ କରିପାରୁନାହିଁ, କିନ୍ତୁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ସେ ଅଧିକରୁ ଅଧିକ ଯଶସ୍ୱୀ ହୁଅନ୍ତୁ ।

ଗ୍ରନ୍ଥଟିର ଅନୁବାଦ ଏବଂ ଆଲୋଚନା ଅବସରରେ ଯେଉଁ ବିଦଗ୍ଧ ଆଲୋଚକମାନଙ୍କ ଗ୍ରନ୍ଥର ସାହାଯ୍ୟ ଗ୍ରହଣ କରିଛି, ସେମାନଙ୍କ ନିକଟରେ ମୁଁ ଚିର ଋଣୀ । ଶେଷରେ

କାୟେନ ବାଚାମନସେନ୍ଦ୍ରିୟୈର୍ବା<br>
ବୁଦ୍ଧ୍ୟାତ୍ମନା ବା ପ୍ରକୃତେର୍ପ୍ରଭାବାତ୍<br>
କରୋମି ଯଦ୍ ଯଦ୍ ସକଳଂ ପରସ୍ମୈ<br>
ନାରାୟଣାୟେତି ସମର୍ପୟାମି ।



# କଥାସୂଚୀ

# ଓଡ଼ିଆ ସାହିତ୍ୟରେ
# କଥାସରିତ ସାଗରର ପଦଧ୍ୱନି

ଲୋକକାହାଣୀ ବାସ୍ତବ ଓ କାଳ୍ପନିକ ଅନୁଭୂତିର ଏକ ସମନ୍ୱିତ ରୂପ । ଏଥିରେ ବାସ୍ତବତା କଳ୍ପନା ଏବଂ କାଳ୍ପନିକତା ବାସ୍ତବ ବୋଲି ମନେହୁଏ । ଏହା କୌଣସି ନିର୍ଦ୍ଦିଷ୍ଟ ଯୁଗ ବା ନିର୍ଦ୍ଦିଷ୍ଟ ସମୟର ଜଣେ ବ୍ୟକ୍ତିର ଅନୁଭବକୁ ନେଇ ଗଠିତ ନୁହେଁ, ଆବହମାନ କାଳରୁ ସଂଖ୍ୟାହୀନ ମଣିଷଙ୍କ ବିଚିତ୍ର ଅନୁଭୂତିରେ ଏଗୁଡ଼ିକ ଋଦ୍ଧିମନ୍ତ । ଯାହା ଜଣେ ଶ୍ରୋତାର କିମ୍ବା ଜଣେ ପାଠକର ଅନୁଭବସିଦ୍ଧ ନୁହେଁ, ଅନ୍ୟର ଅନୁଭୂତି ତା'ପାଇଁ କଳ୍ପନାପ୍ରସୂତ ବୋଲି ମନେହେବା ସ୍ୱାଭାବିକ । ଏକବିଂଶ ଶତାବ୍ଦୀର ଆଧୁନିକ ମଣିଷପାଇଁ ରାମାୟଣ, ମହାଭାରତ ମଧ୍ୟ କବିର ମଧୁର କଳ୍ପନା ବୋଲି ମନେହୋଇଥାଏ । ସମୟ ସ୍ରୋତରେ ବାସ୍ତବତା ଯେପରି କଳ୍ପନାର ରୂପନିଏ, ସେହିପରି ଅତୀତ ମଣିଷର କଳ୍ପନା ଆଜି ବାସ୍ତବତାରେ ପରିଣତ ହୁଏ । ବାସ୍ତବତା ଓ କାଳ୍ପନିକତାର ଏହି ଲୁଚକାଳି ଖେଳହିଁ ଲୋକକାହାଣୀଗୁଡ଼ିକୁ ଏତେ ଲୋକପ୍ରିୟ କରିପାରିଛି; ସମୟର ବାଧାବନ୍ଧନକୁ ଛିନ୍ନକରି କେଉଁ ଅତୀତ କାଳରୁ ଆବାଳବୃଦ୍ଧବନିତାଙ୍କୁ ବିମୁଗ୍ଧ କରିଆସିଛି । ଏଥିପାଇଁ ଦୁଇହଜାର ବର୍ଷ ପରେ ମଧ୍ୟ ଗୁଣାଢ଼୍ୟ ଓ ତାଙ୍କ ବୃହତ୍ କଥା ଏପର୍ଯ୍ୟନ୍ତ ଚିର ଅମର ହୋଇ ରହିଛନ୍ତି ।

ବୃହତ୍ କଥା ବିଶ୍ୱ ଲୋକସାହିତ୍ୟକୁ କେତେଦୂର ପ୍ରଭାବିତ କରିଛି ତାହା ତଥାପି ଗବେଷଣା ସାପେକ୍ଷ । ଡେକାମେରନ୍, ତୁତିନାମା, ଏକ ହଜାରଏକ ରାତ୍ରିର କାହାଣୀ ପ୍ରଭୃତି କଥାଗ୍ରନ୍ଥରେ ଏହାର ଅନୁରୂପ ଗଳ୍ପମାନ ଦେଖିବାକୁ ମିଳିଥାଏ । ଭାରତୀୟ ଲୋକକଥା ଯେ ଗୁଣାଢ଼୍ୟଙ୍କ ନିକଟରେ ସର୍ବତୋଭାବେ ଋଣୀ କହିବା ବାହୁଲ୍ୟ ମାତ୍ର । ସମଗ୍ର ଭାରତ ବର୍ଷରେ ପ୍ରଚଳିତ ଲୋକକାହାଣୀଗୁଡ଼ିକୁ ନେଇ ଏହା ଯେପରି ପରିପୁଷ୍ଟ, ସେହିପରି ପରବର୍ତ୍ତୀ ଯୁଗରେ ସୃଷ୍ଟିଲାଭ କରିଥିବା ସମସ୍ତ ଲୋକକାହାଣୀ ଏହାଦ୍ୱାରା ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପ୍ରଭାବିତ । କେବଳ ଲୋକକାହାଣୀ ନୁହେଁ ପ୍ରସିଦ୍ଧ କବି ଓ ନାଟ୍ୟକାରମାନେ ମଧ୍ୟ ଏହାର ପ୍ରଭାବରୁ ମୁକ୍ତ ହୋଇପାରି ନାହାନ୍ତି । ଓଡ଼ିଆ ଲୋକଗଳ୍ପ ଓ ବିଦଗ୍ଧ ସାହିତ୍ୟ ମଧ୍ୟ ଏହାର ବ୍ୟତିକ୍ରମ ନୁହଁନ୍ତି । କୁଞ୍ଜବିହାରୀ ଦାଶ ଓଡ଼ିଶାର ବିଭିନ୍ନ

ଅଞ୍ଚଳରୁ ବହୁ କଷ୍ଟ ସ୍ୱୀକାର ପୂର୍ବକ ଯେଉଁ ଲୋକଗଳ୍ପଗୁଡ଼ିକୁ ସଂଗ୍ରହ କରି ''ଲୋକଗଳ୍ପ ସଞ୍ଚୟନ'' ଗ୍ରନ୍ଥରେ ସଙ୍କଳନ କରିଛନ୍ତି, ତା' ବ୍ୟତୀତ ଓଡ଼ିଶାର କୋଣ ଅନୁକୋଣରେ ଆହୁରି ଅସଂଖ୍ୟ ଗଳ୍ପ ବିକ୍ଷିପ୍ତ ଭାବେ ପ୍ରଚଳିତ । ଏଗୁଡ଼ିକ ମଧ୍ୟରୁ କେତେଗୁଡ଼ିଏ ଗଳ୍ପ ଆହୃତ, ଅନ୍ୟ କେତେକ ପ୍ରଭାବିତ । ଯେଉଁ ଗଳ୍ପଗୁଡିକ ସମ୍ପୂର୍ଣ୍ଣ ଅଭିନବ ଏବଂ ଓଡ଼ିଆ ଲୋକଗଳ୍ପ ସ୍ରଷ୍ଟାମାନଙ୍କ ନିଜସ୍ୱ ସୃଷ୍ଟି ବୋଲି ମନେହୁଅନ୍ତି ସେଗୁଡ଼ିକ ମଧ୍ୟ ଯେ ପରମ୍ପରାଗତ କଥା ସୃଷ୍ଟିଦ୍ୱାରା ଅନୁପ୍ରାଣିତ, ଏହା ନିଃସନ୍ଦେହରେ କୁହାଯାଇପାରେ । ଲୋକସଂସ୍କୃତି ଲୋକଗଳ୍ପର ମୂଳାଧାର । ଏହା ଆଦ୍ୟନ୍ତ ହୀନ । ଏହାର ବିଭିନ୍ନ ବିଭାଗ କେଉଁ ସମୟରୁ ଆରମ୍ଭ ହୋଇଥିଲା କହିବା ସମ୍ଭବପର ନୁହେଁ । ସମୟର ଉତ୍‌କ୍ରମଣରେ, ବିଭିନ୍ନ ଯୁଗର ବ୍ୟଷ୍ଟି ଓ ସମଷ୍ଟି ଚେତନାର ଉତ୍ତରଣରେ, ସାମାଜିକ, ଧାର୍ମିକ, ଅର୍ଥନୈତିକ ପରିବର୍ତ୍ତନ ସମ୍ପର୍କରେ ସଚେତନ ଯୁଗପୁରୁଷମାନଙ୍କ ସଂସ୍କାର ଭାବନାରେ ଲୋକସଭ୍ୟତାରେ ଆସେ ପରିବର୍ତ୍ତନ; କିନ୍ତୁ ଲୋକସଂସ୍କୃତିର ମୂଳଧାରାଟି କେତେବେଳେ କ୍ଷୀଣ ତ କେତେବେଳେ ସ୍ଫୀତ ଭାବରେ ଚିର ପ୍ରବାହିତ । ଅବଚେତନରେ ଅର୍ଦ୍ଧସୁପ୍ତ ଭାବରେ ଥିବା ଏହି ଧାରାଟି ହିଁ ନୂତନ ଗଳ୍ପ ସୃଷ୍ଟିପାଇଁ ଉପାଦାନ ଯୋଗାଇ ଦେଇଥାଏ । ଏହି ଉପାଦାନଗୁଡ଼ିକହିଁ ତ ମୋଟିଫ୍ ।

ମୋଟିଫ୍ ଲୋକକାହାଣୀର କ୍ଷୁଦ୍ରତମ ମୌଳିକ ଉପାଦାନ ରୂପେ କଳ୍ପିତ । ଏକ ବା ଏକାଧିକ ମୋଟିଫ୍‌ର ବିନିଯୋଗରେ ଲୋକକଥାକାର ନୂତନ ଗଳ୍ପଟିଏ ସୃଷ୍ଟି କରିଥାଏ । ମୋଟିଫ୍‌ର ସଂଖ୍ୟା ଅନନ୍ତ । ସମଗ୍ର ବିଶ୍ୱର ଲୋକକାହାଣୀଗୁଡ଼ିକୁ ଅନୁଶୀଳନ କରି ଷ୍ଟିଥ୍ ଥମ୍ପସନ୍ ମୋଟିଫ୍‌ଗୁଡ଼ିକର ଯେଉଁ ସୂଚିପତ୍ର ତିଆରି କରିଛନ୍ତି ତାହା ତାଙ୍କ ପ୍ରଜ୍ଞା ଓ ଅଧ୍ୟବସାୟର ପରିଚାୟକ । କିନ୍ତୁ ମୋଟିଫ୍‌ଗୁଡ଼ିକ ଏତେ ବିଚିତ୍ର ଓ ବିଭିନ୍ନ ଏବଂ ସେଗୁଡ଼ିକର ପ୍ରୟୋଗରେ କାହାଣୀ-ବାଚକମାନଙ୍କ କୌଶଳ ଭିତରେ ଏତେ ସ୍ୱାତନ୍ତ୍ର୍ୟ ପରିଲକ୍ଷିତ ହୁଏ ଯେ ସେ ମୋଟିଫ୍‌ଗୁଡ଼ିକୁ ୨୨ଟି ଭାଗରେ ବିଭକ୍ତ କରିବା ପରେ ଶେଷରେ Miscellaneous groups ବୋଲି ଅନ୍ୟ ଏକ ବିଭାଗ ସଂଯୁକ୍ତ କରିଛନ୍ତି । ତାଙ୍କ ମୋଟିଫ୍ ବିଭାଗଗୁଡ଼ିକୁ ଅନୁଧ୍ୟାନ କଲେ ଏ ସମସ୍ତ ଗୁଣାଢ଼୍ୟଙ୍କ ବୃହତ୍ କଥା ଏବଂ ତାହାରି ଅନୁସରଣରେ ରଚିତ ସୋମଦେବଙ୍କ 'କଥାସରିତ ସାଗର'ର ଅନ୍ତର୍ଭୁକ୍ତ ଥିବା ଲକ୍ଷ୍ୟ କରାଯାଇପାରିବ ।

ଓଡ଼ିଆ ଲୋକକାହାଣୀଗୁଡ଼ିକରେ ବାଚକମାନେ ଏହିସବୁ ମୋଟିଫ୍‌କୁ ହିଁ ଗ୍ରହଣ କରି ସ୍ୱତନ୍ତ୍ର କାହାଣୀମାନ ସୃଷ୍ଟି କରିଛନ୍ତି । କେତେକ ଲୋକକାହାଣୀରେ ବହୁପ୍ରଚଳିତ

ମୋଟିଫ୍‌ଗୁଡ଼ିକ ଅବିକୃତଭାବେ ଅନୁପ୍ରବେଶ କରିଥିବା ବେଳେ ଆଉ କେତେକରେ ଏଗୁଡ଼ିକକୁ ଆଧାର କରି ନୂତନତା ପ୍ରଦର୍ଶନ କରିବାପାଇଁ ପ୍ରୟାସ କରାଯାଇଛି । ଓଡ଼ିଆ ଲୋକକାହାଣୀର ମୋଟିଫ୍ ତତ୍ତ୍ୱ ସମ୍ପର୍କରେ ଲୋକସାହିତ୍ୟର ପ୍ରବୀଣ ଗବେଷକ ଡଃ. କୁଞ୍ଜବିହାରୀ ଦାଶ, ଡଃ କଇଳାଶ ପଟ୍ଟନାୟକ, ଡଃ. ଶ୍ୟାମ ସୁନ୍ଦର ମହାପାତ୍ର ବିଶେଷ ଆଲୋଚନା କରିଛନ୍ତି । ତଥାପି ଏହା ସୂଚନାତ୍ମକ ମାତ୍ର । ସେମାନଙ୍କ ସୂଚନାକୁ ଆଧାର କରି ଗବେଷକମାନେ ଯଦି କଥାସରିତ ସାଗର ଓ ଓଡ଼ିଆ ଲୋକକାହାଣୀର ମୋଟିଫ୍ ସମ୍ପର୍କରେ ତୁଳନାତ୍ମକ ଆଲୋଚନା କରନ୍ତି ଏବଂ ଓଡ଼ିଆ ଲୋକକାହାଣୀଗୁଡ଼ିକରେ ଥିବା ମୋଟିଫ୍‌ଗୁଡ଼ିକର ଏକ ସୂଚିପତ୍ର ପ୍ରସ୍ତୁତ କରି ତାହା ପରମ୍ପରା କ୍ରମେ ଆଗତ ମୋଟିଫ୍ ଦ୍ୱାରା କେତେଦୂର ଓ କିପରି ପ୍ରଭାବିତ ସେ ସମ୍ପର୍କରେ ଗବେଷଣା କରନ୍ତି, ତାହାହେଲେ ଆମେ ଏ ସମ୍ପର୍କରେ ସମ୍ପୂର୍ଣ୍ଣ ତଥ୍ୟ ଲାଭ କରିପାରନ୍ତୁ । ଅବଶ୍ୟ ଓଡ଼ିଆ କାହାଣୀର ସମସ୍ତ ମୋଟିଫ୍ କଥାସରିତ ସାଗର ଦ୍ୱାରା ପ୍ରଭାବିତ ବୋଲି କହିବା ଯୁକ୍ତିଯୁକ୍ତ ନୁହେଁ । କାରଣ ଯେଉଁ ଉପାଦାନଗୁଡ଼ିକ ଗୁଣାଢ଼୍ୟଙ୍କ ପୂର୍ବରୁ ମୋଟିଫ୍‌ରେ ପରିଣତ ହୋଇସାରିଥିଲା ଏବଂ ଯେଉଁଗୁଡ଼ିକ ପରବର୍ତ୍ତୀ ସମୟରେ ମୋଟିଫ୍ ରୂପେ ବ୍ୟବହୃତ ହେଉଥିଲା ସେଗୁଡ଼ିକ ଯେ କେତେ ମାଧ୍ୟମରେ ଆସି ଓଡ଼ିଆ ଲୋକକଥାଶିଳ୍ପୀମାନଙ୍କୁ ପ୍ରଭାବିତ କରିଛି, ତାହା ନିର୍ଦ୍ଧାରଣ କରିବା ଅତ୍ୟନ୍ତ କଷ୍ଟକର ବ୍ୟାପାର । କଥାସରିତ ସାଗରର ବିଶ୍ୱସ୍ତ ଅନୁବାଦ ପ୍ରକାଶ ପାଇବାପରେ ଆମ ଗବେଷକମାନେ ଏ ଦିଗରେ ତତ୍ପରତା ପ୍ରକାଶ କରିବେ ବୋଲି ଆଶା ।

ଏ ସମ୍ପର୍କରେ ପ୍ରାଚୀନ ଓ ମଧ୍ୟଯୁଗୀୟ ବିଦଗ୍ଧ ସାହିତ୍ୟକୁ ମଧ୍ୟ ଅନୁଧ୍ୟାନ କରାଯାଇପାରିବ । ସମଗ୍ର ଭାରତୀୟ ସାହିତ୍ୟରେ ବୋଧହୁଏ ଓଡ଼ିଆ କବିମାନଙ୍କର କାଳ୍ପନିକ କାବ୍ୟସଂଖ୍ୟା ସର୍ବାଧିକ । ଅର୍ଜ୍ଜୁନ ଦାସଙ୍କ 'କଳ୍ପଲତାକୁ' ଯଦି ପ୍ରଥମ ଓଡ଼ିଆ କାଳ୍ପନିକ କାବ୍ୟ ବୋଲି ଗ୍ରହଣ କରାଯାଏ ତେବେ ଦୀର୍ଘ ଚାରିଶହ ବର୍ଷ ମଧ୍ୟରେ କବିସୂର୍ଯ୍ୟ ବଳଦେବ ରଥଙ୍କ 'ଚନ୍ଦ୍ରକଳା' ପର୍ଯ୍ୟନ୍ତ ଜ୍ଞାତ ଓ ନାମତଃ ଜ୍ଞାତ ଶତାଧିକ କାଳ୍ପନିକ କାବ୍ୟ ଓଡ଼ିଆ କବିମାନଙ୍କ ଲେଖନୀରୁ ସୃଷ୍ଟିଲାଭ କରିଛି । ପ୍ରତ୍ୟେକେ ନିଜ ନିଜର କାବ୍ୟର ବିଷୟବସ୍ତୁକୁ ନବୀନତାର ସ୍ପର୍ଶ ଦେବାପାଇଁ ମୋଟିଫ୍‌ଗୁଡ଼ିକର ସାହାଯ୍ୟ ଗ୍ରହଣ କରିଛନ୍ତି । ନାୟକ ନାୟିକାଙ୍କ ପୂର୍ବଜନ୍ମ ଓ ଜନ୍ମବୃତ୍ତାନ୍ତଠାରୁ ଆରମ୍ଭ କରି ମିଳନ, ବିରହ ଏବଂ ପୁନଃମିଳନ ପର୍ଯ୍ୟନ୍ତ କଥାବସ୍ତୁକୁ ବୈଚିତ୍ର୍ୟମଣ୍ଡିତ କରିବାରେ ଏଗୁଡ଼ିକର ଭୂମିକା ଅବଶ୍ୟ ସ୍ୱୀକାର୍ଯ୍ୟ । ଏହି କାଳ୍ପନିକ କାବ୍ୟଗୁଡ଼ିକର ମୂଳ ଉତ୍ସ ସନ୍ଧାନ କରିବା ଦୁଷ୍କର ଓ ଅନାବଶ୍ୟକ ହେଲେ ସୁଦ୍ଧା ଏଗୁଡ଼ିକ ଯେ ସଂସ୍କୃତ ପ୍ରକରଣ, ପ୍ରାକୃତ ସଟ୍ଟକ ଏବଂ କଥାସରିତ ସାଗର

ଦ୍ୱାରା ପ୍ରଭାବିତ, ଏହା ଦ୍ୱିଧାହୀନ ଭାବେ କୁହାଯାଇପାରେ । ତେଣୁ ସେସବୁରେ ପ୍ରଯୁକ୍ତ ମୋଟିଫ୍‌ଗୁଡ଼ିକ କିପରି ଓଡ଼ିଆ କାଳ୍ପନିକ କାବ୍ୟଗୁଡ଼ିକୁ ପରିପୁଷ୍ଟ କରିଛନ୍ତି ତାହାର ପୁଙ୍ଖାନୁପୁଙ୍ଖ ଆଲୋଚନାର ଆବଶ୍ୟକତା ରହିଛି ।

ମାନସକନ୍ୟା (ଲାବଣ୍ୟବତୀ, ଲାବଣ୍ୟଲତା, ଭାବବତୀ, ଲାବଣ୍ୟ ତରଙ୍ଗିଣୀ), ଦେବତା ବା ଋଷିପ୍ରଦତ୍ତ ମନ୍ତ୍ର କିମ୍ବା ପକ୍ୱଫଳ ଭକ୍ଷଣରୁ ପୁତ୍ର କିମ୍ବା କନ୍ୟାର ଜନ୍ମ (ଲାବଣ୍ୟବତୀ, ମୋହନଲତା), ଦେବତାଙ୍କ ଅମୋଘ ରେତରୁ ସନ୍ତାନ ଜନ୍ମ (ତ୍ରିଲୋଚନଙ୍କ ଚନ୍ଦ୍ରକଳା), ଇନ୍ଦ୍ରସଭାରେ ନୃତ୍ୟରତା ଅପ୍ସରାମାନଙ୍କ ଚିତ୍ତଚାଞ୍ଚଲ୍ୟ ଯୋଗୁଁ ପ୍ରଣୟୀ ସହ ମର୍ତ୍ତ୍ୟାବତରଣ (କଳ୍ପଲତା, ରତ୍ନମାଳା), ଦେବଦେବୀ ବା ମୁନି କୃପାରୁ କନ୍ୟା ଜନ୍ମ (ମୋହନଲତା, ପ୍ରେମଲତା, ଚନ୍ଦ୍ରହାରା କେଳି ବିଳାସ), ଅଲୌକିକ ଘଟଣା (ପରିମଳା, ଇଚ୍ଛାବତୀ, କଳ୍ପଲତା), ଅତିମାନବୀୟ ଚରିତ୍ରମାନଙ୍କ ହସ୍ତକ୍ଷେପ ଫଳରେ ବିଷୟବସ୍ତୁର ଗତି ପରିବର୍ତ୍ତନ (ଅନୁରାଗବତୀ), ଅପ୍ସରା ମାନବ ସଂସର୍ଗ କିମ୍ବା ଦେବ ମାନବ କିମ୍ବା ଦେବତା ଅପ୍ସରାଙ୍କ ମିଳନରୁ ସନ୍ତାନ ଉତ୍ପତ୍ତି (ଚନ୍ଦ୍ରକଳା, କନକଲତା), ବିବାହପଣ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ), ଛଦ୍ମବେଶ (ନରେନ୍ଦ୍ର ଯୁବତୀଙ୍କ ଶଶିସେଣା, ଲାବଣ୍ୟ ତରଙ୍ଗିଣୀ, ପରିମଳା), କଥାକୁହା ପକ୍ଷୀ (କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଚିତ୍ରଲେଖା, ରତ୍ନମାଳା), ମୃତର ପୁନର୍ଜୀବନ ଲାଭ (କଳ୍ପଲତା, ଅନୁରାଗବତୀ), ଐନ୍ଦ୍ରଜାଲିକ (ଲୀଳାବତୀ, ମଦନ ମଞ୍ଜରୀ, ଲାବଣ୍ୟବତୀ, ରସ କଳ୍ପଲତା) ଇତ୍ୟାଦି ମୋଟିଫ୍‌ଗୁଡ଼ିକ ଦ୍ୱାରା କବିମାନେ ସମାନ କଥାବସ୍ତୁରେ କିପରି ଚମତ୍କାରିତା ସୃଷ୍ଟି କରିଛନ୍ତି ତାହା ଅନୁଧାନ କରିବା କଥା ।

ବର୍ତ୍ତମାନ ଅବସରରେ କଥାସରିତ ସାଗର ସହିତ ଓଡ଼ିଆ କାଳ୍ପନିକ କାବ୍ୟର ତୁଳନାତ୍ମକ ଆଲୋଚନା ପ୍ରସ୍ତୁତ କରିବା ସମ୍ଭବ ନୁହେଁ । ଏଥିପାଇଁ ସ୍ୱତନ୍ତ୍ର ଗବେଷଣାର ଆବଶ୍ୟକତା ରହିଛି । ଏଦିଗରେ ଯୁବଗବେଷକମାନେ ତତ୍ପରତା ପ୍ରକାଶ କଲେ କଥାସରିତ ସାଗରର ଓଡ଼ିଆ ଅନୁବାଦ ପ୍ରସ୍ତୁତିରେ ଆମର ଶ୍ରମ ସାର୍ଥକ ହେବ ।

ସୁଦର୍ଶନ ଆଚାର୍ଯ୍ୟ

ଯତିରାଜ ନିକେତନ
୧-ଅଶୋକ ନଗର
ବ୍ରହ୍ମପୁର-୭୬୦ ୦୦୪



''ଇଦଂ ଗୁରୁଗିରୀନ୍ଦ୍ରଜାପ୍ରଣୟମନ୍ଦରାନ୍ଦୋଳନାତ୍

ପୁରା କିଳ କଥାମୃତଂ ହରମୁଖାମ୍ବୁଧେରୁଦ୍‌ଗତମ୍ ।।

ପ୍ରସହ୍ୟ ରସୟନ୍ତି ଯେ ବିଗତବିଘ୍ନଲବ୍‌ଧର୍ଦ୍ଧୟୋ

ଧୁରଂ ଦଧତି ବୈବୁଧୀଂ ଭୁବି ଭବପ୍ରସାଦେନ ତେ ।।''



ଜାତି ଇତିହାସ ଜାତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି କର୍ମବୀର ।



ସ ବୋ ବିଘ୍ନେଶ୍ୱରାଃନ ପାୟାନ୍ନମିତୋନ୍ନମିତେବ ଯମ୍,
ଅନୁନୃତ୍ୟତି ନୃତ୍ୟନ୍ତଂ ସନ୍ଧ୍ୟାସୁ ଭୁବନାବଳୀ ॥
ଗୌରୀପ୍ରସାଧନାଲଗ୍ନଚରଣାଲକ୍ତକଶ୍ରିୟଃ ।
ସଖୀ ସୁଖାୟ ଭୂୟାଦ୍‌ବଃ ଶମ୍ଭୋର୍ଭାଲେକ୍ଷଣପ୍ରଭା ॥
କବୀନ୍ଦ୍ରମାନସାମ୍ଭୋଜନିବାସଭ୍ରମରୀଂ ନୁମଃ ।
ଦେବୀଂ ସହୃଦୟାନନ୍ଦଶବ୍ଦମୂର୍ତ୍ତିସରସ୍ୱତୀମ୍ ॥



## ପ୍ରଥମ ତରଙ୍ଗ

ମଦନମଞ୍ଚୁକାଙ୍କ ବିରହରେ ସନ୍ତପ୍ତ ବସ୍ତରାଜ ଉଦୟନଙ୍କ ପ୍ରିୟପୁତ୍ର ନରବାହନଦତ୍ତ ମଳୟପର୍ବତର ବିଭିନ୍ନ ଶିଖର ଏବଂ ପାଦଦେଶସ୍ଥିତ ଫଳପୁଷ୍ପଭରା ରମଣୀୟ ଅରଣ୍ୟ ମଧ୍ୟରେ ବିଚରଣ କରୁଥାନ୍ତି । କୌଣସିଥିରେ ତାଙ୍କର ମନ ଲାଗୁନଥାଏ । କୋମଳ ଚୂତମଞ୍ଜରୀ ସବୁର ଚତୁଃପାର୍ଶ୍ୱରେ ଗୁଞ୍ଜରଣ କରି ବୁଲୁଥିବା ଭ୍ରମରଗୁଡ଼ିକ କନ୍ଦର୍ପର ପୁଷ୍ପଧନୁରୁ ନିଃସୃତ ବାଟୁଳି ସଦୃଶ ତାଙ୍କ ହୃଦୟକୁ ବିଦ୍ଧ କରୁଥାନ୍ତି । କୋକିଳର କଳକୂଜନ କନ୍ଦର୍ପର କଟୁଭର୍ତ୍ସନା ପରି ଦୁଃସହ ବୋଧ ହେଉଥାଏ । ପୁଷ୍ପରେଣୁ ରଞ୍ଜିତ ଶୀତଳ ମଳୟାନିଳ ତାଙ୍କ କନ୍ଦର୍ପ ପୀଡ଼ାକୁ ଅସହ୍ୟ କରୁଥାଏ । ଦୁଷ୍ଟ ଭ୍ରମରସମୂହ ସତେ ଯେପରି ବାଣ ବିସ୍ଫୋରଣ କରି ତାଙ୍କୁ ମଳୟପର୍ବତରୁ ଘଉଡ଼ାଇ ଦେବାପାଇଁ ଚେଷ୍ଟା କରୁଥାନ୍ତି ।

ନରବାହନଦତ୍ତ ଧୀର ପଦକ୍ଷେପରେ ମଳୟପର୍ବତରୁ ନିଷ୍କ୍ରାନ୍ତ ହେଲେ । ଭାଗ୍ୟକୁ ନିଜର ସହଚାରୀ କରି ସେ ଗଙ୍ଗାତଟ ପ୍ରତି ଚାଲିଥାନ୍ତି । ପଥ ମଧ୍ୟରେ ଏକ ନିର୍ମଳ ସରୋବର ତାଙ୍କର ଦୃଷ୍ଟିଗୋଚର ହେଲା । ନିକଟକୁ ଯାଇ ସେ ଦେଖିଲେ, ତା'ର ତୀରରେ ବସି ଦୁଇଜଣ ବ୍ରାହ୍ମଣ ସନ୍ତାନ ବାର୍ତ୍ତାଳାପ କରୁଛନ୍ତି । ସେମାନେ ନରବାହନଦତ୍ତଙ୍କୁ ଦେଖିବା ମାତ୍ରେ ରତିକାନ୍ତ କାମଦେବଙ୍କ ଭ୍ରମରେ ଉଠି ଠିଆହେଲେ । ନମ୍ରତା ପୂର୍ବକ ପ୍ରଣତି ଜ୍ଞାପନ କରି କହିଲେ, 'ଭଗବନ୍ ପୁଷ୍ପବାଣ ! ଆମମାନଙ୍କର ପ୍ରଣାମ ଗ୍ରହଣ କରନ୍ତୁ । କୁସୁମ କାର୍ମୁକ ପରିତ୍ୟାଗ କରି ଆପଣ ଏଠାରେ ଏକାକୀ କିପରି ଭ୍ରମଣ କରୁଛନ୍ତି ? ଆପଣଙ୍କ ଅର୍ଦ୍ଧାଙ୍ଗିନୀ ରତିଦେବୀ କାହାନ୍ତି ?' ନରବାହନଦତ୍ତ ଉତ୍ତରରେ କହିଲେ, 'ମୁଁ କନ୍ଦର୍ପ ନୁହେଁ, ମନୁଷ୍ୟ । କିନ୍ତୁ ପ୍ରକୃତରେ ମୋର ଅର୍ଦ୍ଧାଙ୍ଗିନୀ ମୋଠାରୁ ବିଚ୍ଛିନ୍ନ ହୋଇଯାଇଛନ୍ତି ।' ଏହାକହି ସେ ମଦନମଞ୍ଚୁକା ନିଖୋଜ ହୋଇଯିବା ବୃତ୍ତାନ୍ତ ତାଙ୍କୁ କହି ଶୁଣାଇଲେ ।

ବିପ୍ର ପୁତ୍ରମାନଙ୍କ ପରିଚୟ ଏବଂ ସେମାନେ କେଉଁ ବିଷୟରେ ବାର୍ତ୍ତାଳାପ କରୁଥିଲେ ଇତ୍ୟାଦି ଜାଣିବାପାଇଁ କୌତୂହଳ ପ୍ରକାଶ କରିବା ଯୋଗୁଁ ସେମାନଙ୍କ ମଧ୍ୟରୁ ଜଣେ ବିନମ୍ର ଭାବେ କହିବା ଆରମ୍ଭ କଲେ—

## ମଦିରାବତୀ କଥା

ଆପଣମାନଙ୍କ ପରି ରାଜାମାନଙ୍କ ସମକ୍ଷରେ ଏପରି ଗୋପନ ରହସ୍ୟ କିପରି ବା କୁହାଯାଇପାରେ ? ତଥାପି ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି କହିବା ପାଇଁ ବାଧ ହେଉଛି, ଶୁଣନ୍ତୁ–

କଳିଙ୍ଗ ବିଷୟରେ ଶୋଭାବତୀ ବୋଲି ଏକ ନଗରୀ ଅଛି । ଏ ପର୍ଯ୍ୟନ୍ତ କଳିଯୁଗ ସେଠାରେ ପ୍ରବେଶ କରିପାରି ନଥିବା ଯୋଗୁଁ ତାହା ପାପ ରହିତ ଓ ପବିତ୍ର । ବିଧାତା ଏହି ରାଜ୍ୟକୁ ଏପରି ଭାବେ ନିର୍ମାଣ କରିଛନ୍ତି ଯେପରି ଏହାର ନାଗରିକମାନେ ଅନ୍ୟ ରାଜ୍ୟ ପ୍ରତି ଲୋଲୁପ ଦୃଷ୍ଟିପାତ କରିବେ ନାହିଁ । ଏହି ନଗରୀରେ ଜଣେ ବିତ୍ତଶାଳୀ, ଶାସ୍ତ୍ରଜ୍ଞ, କୁଳୀନ, ବହୁଯାଜ୍ଞିକ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କ ନାମ ଥିଲା ଯଶସ୍କର । ବ୍ରାହ୍ମଣଙ୍କ ପତ୍ନୀ ମେଖଳା ଅସାଧାରଣ ସତୀସାଧ୍ୱୀ । ସେମାନେ ଯୌବନାବସ୍ଥାରେ ଏକମାତ୍ର ସନ୍ତାନର ଜନକ ଜନନୀ ହୋଇପାରିଥିଲେ; ଅତ୍ୟନ୍ତ ବାତ୍ସଲ୍ୟ ସ୍ନେହରେ ସନ୍ତାନଟିର ଲାଳନପାଳନ କରି ତାର ଯଜ୍ଞୋପବୀତ ସଂସ୍କାର କରାଇଥିଲେ । ମୋତେ ହିଁ ସେହି ବ୍ରାହ୍ମଣ ପୁତ୍ର ବୋଲି ଜାଣନ୍ତୁ ।

ମୁଁ ଯେତେବେଳେ ଅଧ୍ୟୟନ କରୁଥିଲି ସେତେବେଳେ ବର୍ଷାଭାବରୁ ରାଜ୍ୟରେ ଦୁର୍ଭିକ୍ଷ ଦେଖାଦେଲା । ପିତା ନିଜର ଧନସମ୍ପତ୍ତି ଓ ପରିବାରକୁ ଧରି ରାଜ୍ୟତ୍ୟାଗ ପୂର୍ବକ ବିଶାଳା ନାମକ ନଗରୀକୁ ଚାଲିଗଲେ । ମୁଁ ମଧ୍ୟ ସେମାନଙ୍କ ସହିତ ଯାଇ ସେଠାରେ ପହଞ୍ଚିଲି । ଏହି ନଗରୀରେ ଲକ୍ଷ୍ମୀ ଓ ସରସ୍ୱତୀ ପରସ୍ପରର ଈର୍ଷ୍ୟା ପରିତ୍ୟାଗ କରି ଏକତ୍ର ଅବସ୍ଥାନ କରୁଥାନ୍ତି । ସେଠାରେ ଜଣେ ବଣିକଙ୍କ ସହିତ ପିତାଙ୍କ ମିତ୍ରତା ସ୍ଥାପିତ ହେଲା । ସେ ଆମେ ରହିବାପାଇଁ ଏକ ବାସଭବନର ବ୍ୟବସ୍ଥା କରିଦେଲେ । ମୁଁ ପିତାମାତାଙ୍କ ସହିତ ସେଠାରେ ରହୁଥାଏ । ଗୁରୁଗୃହରେ ମୋର ବିଦ୍ୟାଶିକ୍ଷା ପୁଣି ଆରମ୍ଭ ହେଲା । ସମବୟସ୍କ ଏବଂ ସମାନ ବେଦ ଶାଖା ଅଧ୍ୟୟନ କରୁଥିବା ବହୁ ସହାଧ୍ୟାୟୀ ମୋର ବନ୍ଧୁ ହେଲେ । ସେମାନଙ୍କ ମଧ୍ୟରେ ବିଜୟ ସେନ ନାମକ ଜଣେ ଉତ୍ତମ ଗୁଣବାନ କ୍ଷତ୍ରିୟ କୁମାରଙ୍କ ସହିତ ମୋର ଆନ୍ତରିକ ସଖ୍ୟ ସ୍ଥାପିତ ହେଲା ।

ଦିନେ ବନ୍ଧୁ ବିଜୟସେନ ତାଙ୍କ ଭଗିନୀ ମଦିରାବତୀଙ୍କ ସହିତ ଉପାଧ୍ୟାୟଙ୍କ ଗୃହକୁ ଆସିଥାନ୍ତି । ସେ ଏତେ ସୁନ୍ଦରୀ ଥିଲେ ଯେ ମନେହେଉଥିଲା ତାଙ୍କ ବଦନମଣ୍ଡଳ ନିର୍ମାଣ କରିସାରିବା ପରେ ବିଧାତା ଅବଶିଷ୍ଟ ଅଂଶଦ୍ୱାରା ଚନ୍ଦ୍ରବିମ୍ବର

ନିର୍ମାଣ କରିଛନ୍ତି । ତାଙ୍କ ଶାରୀରିକ ସୌନ୍ଦର୍ଯ୍ୟ ବିଶ୍ୱବିମୋହନପାଇଁ କନ୍ଦର୍ପର ଷଷ୍ଠବାଣରେ ଯେପରି ପରିଣତ ହୋଇଯାଇଛି । ତାଙ୍କ ଜନ୍ମପରେ କନ୍ଦର୍ପ ତାଙ୍କ ଅନ୍ୟ ପାଞ୍ଚଟି ବାଣ ପ୍ରତି ଅର୍ଥାତ୍ ଅରବିନ୍ଦ, ଅଶୋକ, ଚୂତ, ନବମଲ୍ଲିକା ଏବଂ ନୀଳୋତ୍ପଳ ପ୍ରତି ନିସ୍ପୃହ ହୋଇପଡ଼ିଲେ । ତାଙ୍କୁ ଦେଖିବା ମାତ୍ରେ ମିତ୍ର ବିଜୟସେନଙ୍କଠାରୁ ତାଙ୍କ ନାମ ଓ ପରିଚୟ ଜ୍ଞାତ ହୋଇ କନ୍ଦର୍ପଙ୍କ ବାଣର ଶରବ୍ୟ ହେଲି । ମଦିରାବତୀ ତଥାପି ଅବିବାହିତା ଥାନ୍ତି । ସେ ପ୍ରଣୟ ସ୍ନିଗ୍ଧ କଟାକ୍ଷପାତ ପୂର୍ବକ ମୋତେ ବିମୋହିତ କଲେ । ତାଙ୍କ ଗଣ୍ଡସ୍ଥିତ କେଶରାଶିର ରୋମାଞ୍ଚନ ପ୍ରଣୟାଙ୍କୁରର ସୂଚନା ଦେଉଥିଲା । ସେ କ୍ରୀଡ଼ା ଛଳରେ ବହୁସମୟ ଧରି ସେଠାରେ ଅଟକି ରହିଲେ । ନିଜ ଚିତ୍ତବୃତ୍ତିକୁ ପ୍ରଣୟଦୂତୀ ପରି ମୋ ନିକଟରେ ଛାଡ଼ିଦେଇ ଶେଷରେ ସେ ଭ୍ରାତାଙ୍କ ସହିତ ନିଜ ବାସଭବନକୁ ଫେରିଗଲେ ।

ସେ ଚାଲିଯିବା ପରେ ବିରହ-ସଂତପ୍ତ ହୋଇ ମୁଁ ନିଜ ଗୃହକୁ ଫେରିଆସିଲି । ଶଯ୍ୟା ମୋ ପାଇଁ କଣ୍ଟକିତ ମନେହେଲା । ମୁଁ ଭୂମି ଉପରେ ଗଡ଼ି ଜଳବିହୀନ ମୀନ ପରି ଛଟପଟ ହେବାକୁ ଲାଗିଲି । ସୌନ୍ଦର୍ଯ୍ୟର ଭଣ୍ଡାର ମଦିରାବତୀଙ୍କୁ ଦେଖିବାପାଇଁ ମୁଁ ବିଭିନ୍ନ ଉପାୟ ଚିନ୍ତା କରୁଥାଏ । ଯେଉଁ ସହଚରୀ ଓ ପରିଚାରିକାମାନେ ସର୍ବଦା ତାଙ୍କ ମୁଖମଣ୍ଡଳ ଦର୍ଶନ ଏବଂ ମଧୁର ବଚନସୁଧା ପାନ କରିବାର ସୌଭାଗ୍ୟ ଲାଭ କରିଛନ୍ତି ମୁଁ ସେମାନଙ୍କ ପ୍ରଶଂସା କରୁଥାଏ । ଅତିକଷ୍ଟରେ ଉକ୍ତ ଦିବସ ଓ ରାତ୍ରିଟି କୌଣସିମତେ କଟାଇ ପରଦିନ ମୁଁ ପୁଣି ଗୁରୁଗୃହରେ ଯାଇ ଉପସ୍ଥିତ ହେଲି । ସେଠାରେ ମିତ୍ରଙ୍କ ସହିତ ଦେଖାହେଲା । ଅନ୍ତରଙ୍ଗ ବାକ୍ୟାଳାପ ମଧ୍ୟରେ ସେ ଆଦର ଓ ଆନନ୍ଦପୂର୍ବକ କହିଲେ, 'ମଦିରାବତୀଠାରୁ ତୁମ ପରି ଜଣେ ମୋର ବନ୍ଧୁ ଅଛନ୍ତି ଶୁଣି ମା ତୁମକୁ ଦେଖିବା ପାଇଁ ଆଗ୍ରହ ପ୍ରକାଶ କରୁଛନ୍ତି । ଯଦି ମୋ ପ୍ରତି ତୁମର ସ୍ନେହଥାଏ, ତୁମେ ମୋ ସହିତ ଆମ ଘରକୁ ଚାଲ; ତୁମ ପାଦରଜ ପଡ଼ି ଆମ ଗୃହ ପବିତ୍ର ହେଉ ।' ଭୟଙ୍କର ମରୁଭୂମି ମଧ୍ୟରେ ଆକସ୍ମିକ ଭାବରେ ମହାବୃଷ୍ଟି ହେଲେ ପଥିକ ଯେପରି ଶାନ୍ତି ଓ ଶୀତଳତା ଲାଭ କରେ, ମୁଁ ସେହିପରି ଅନୁଭବ କଲି । ମୁଁ ତାଙ୍କ ଅନୁରୋଧ ସ୍ୱୀକାର କରି ତାଙ୍କ ବସଭବନରେ ଯାଇ ପହଞ୍ଚିଲି । ବିଜୟସେନଙ୍କ ମାତା ମୋତେ ଦେଖି ବହୁତ ଆନନ୍ଦିତ ହେଲେ; ମୋର ଭବ୍ୟ ସତ୍କାର କଲେ । ପ୍ରିୟତମା ମଦିରାବତୀଙ୍କୁ ଦର୍ଶନ କରି ଆନନ୍ଦିତ ମନରେ ମୁଁ ସେଠାରେ ରହିବାକୁ ଲାଗିଲି ।

ପିତା ଡକାଇବାରୁ ବିଜୟସେନ ମୋ ନିକଟରୁ ଉଠି ଚାଲିଗଲେ । ସେତେବେଳେ ମଦିରାବତୀଙ୍କ ଧାତ୍ରୀ ପୁତ୍ରୀ ଆସି ମୋତେ ପ୍ରଣାମ କଲା । କହିଲା, 'ଦେବ ! କୁମାରୀ ମଦିରାବତୀ ଉପବନରେ ଜଳସେଚନ କରି ଯେଉଁ ମାଳତୀ ଲତାଟିକୁ ବଢ଼ାଇଥିଲେ ସେଥିରେ ଆଜି ପ୍ରଥମ ପୁଷ୍ପାବଳୀ ଦେଖାଦେଇଛନ୍ତି । ଋତୁରାଜ ବସନ୍ତର ସଙ୍ଗଲାଭ କରି ଲତାଟି ଯେପରି ଆନନ୍ଦରେ ହସିଉଠୁଛି । ତାର ଚତୁର୍ପାର୍ଶ୍ୱରେ ମଧୁମକ୍ଷିକାମାନେ ଗୁଞ୍ଜରଣ କରି ବୁଲୁଛନ୍ତି । ସେମାନଙ୍କ ପ୍ରତି ଭ୍ରୂକ୍ଷେପ ନକରି ମଦିରାବତୀ ନିଜେ ସେଥିରୁ କିଛି କଳିକା ଚୟନ କରି ଏକାବଳୀ ମାଳାଟିଏ ପ୍ରସ୍ତୁତ କରିଛନ୍ତି । ଯେକୌଣସି ନୂତନ ବସ୍ତୁ ପ୍ରଥମେ ନିଜର ଅତିଶୟ ପ୍ରିୟଜନଙ୍କୁ ଦେବା ବିଧି । ତେଣୁ ସେ ହାରଟିକୁ ଆପଣଙ୍କ ପାଇଁ ପଠାଇ ଦେଇଛନ୍ତି ।' ଏହା କହି ଚତୁରାଦୂତୀ ପାଞ୍ଚଟି ଫଳ, କର୍ପୂର, ତାମ୍ବୂଳ ସହିତ ସେହି ପୁଷ୍ପହାରଟିକୁ ମୋ ହାତକୁ ବଢ଼ାଇଦେଲା । ମୁଁ ପ୍ରିୟତମାଙ୍କ ହସ୍ତପ୍ରସ୍ତୁତ ହାରଟି ଗଳାରେ ଧାରଣ କରି ସେତେବେଳେ ଯେଉଁ ଅପୂର୍ବ ଆଲିଙ୍ଗନ ସୁଖ ଅନୁଭବ କଲି, ତାହା ବର୍ତ୍ତମାନ ବାକ୍ୟରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ତାମ୍ବୂଳ ବୀଟିକାଟିକୁ ମୁଁ ମୁଖରେ ରଖି ସେହି ଧାତ୍ରୀପୁତ୍ରୀକୁ କହିଲି 'ଭଦ୍ରେ ! ମୋ ହୃଦୟ କନ୍ଦର୍ପ ପୀଡ଼ାରେ ଏପରି ସନ୍ତପ୍ତ ଯେ ମଦିରାବତୀଙ୍କପାଇଁ ମୋର ପ୍ରାଣ ଯଦି ଚାଲିଯାନ୍ତା ତେବେ ମୋ ଜୀବନ ସଫଳ ହୁଅନ୍ତା । କାରଣ ବର୍ତ୍ତମାନ ସିଏ ହିଁ ମୋର ପ୍ରାଣସତ୍ତାର ସ୍ୱାମିନୀ ।' ଏହାକହି ଦୂତୀକୁ ବିଦାୟ ଦେଲି । ସେତେବେଳେ ମିତ୍ର ବିଜୟସେନ ଫେରିଆସିବାରୁ ଆମେ ଗୁରୁ ଗୃହକୁ ପ୍ରତ୍ୟାବର୍ତ୍ତନ କଲୁ ।

ପରଦିନ ବିଜୟସେନ ମଦିରାବତୀଙ୍କୁ ନେଇ ଆମ ଘରକୁ ଆସିଲେ । ମୋର ପିତାମାତା ସେମାନଙ୍କ ଆଗମନରେ ଅତ୍ୟନ୍ତ ଆନନ୍ଦିତ ହୋଇଉଠିଲେ । ଏହିପରି ଦିନେଦିନେ ମଦିରାବତୀ ଆମ ଘରକୁ ଆସନ୍ତି । ଅନ୍ୟଦିନମାନଙ୍କରେ ମୁଁ ତାଙ୍କ ଘରକୁ ଯାଉଥାଏ । ଆମର ଏ ପ୍ରକାର ମିଳନରେ ଉଭୟଙ୍କ ଅନୁରାଗ ପ୍ରଣୟରେ ପରିଣତ ହେଲା ।

ଦିନେ ମଦିରାବତୀଙ୍କ ଦାସୀ ଆସି ମତେ ଏକାନ୍ତରେ କହିଲା, 'ମହାଭାଗ ! ମୋ କଥା ଟିକିଏ ମନଦେଇ ଶୁଣନ୍ତୁ । କରିବା ନକରିବା ଆପଣଙ୍କ ଉପରେ ନିର୍ଭର ।'

'ଗୁରୁ ଗୃହରେ ପ୍ରଥମେ ଆପଣଙ୍କୁ ଦେଖିବାଠାରୁ ସେ ଖାଇବା ପିଇବା ପ୍ରାୟ ଭୁଲିଗଲେଣି । ପ୍ରସାଧନ ପ୍ରତି ତାଙ୍କର ଆଉ ଆଗ୍ରହ ନାହିଁ । ସଙ୍ଗୀତ ପ୍ରତି ମଧ୍ୟ ସେ ବୀତସ୍ପୃହ । ଶୁଆଶାରୀଙ୍କ ସହିତ ଖେଳିବାରେ ମଧ୍ୟ ତାଙ୍କର ଆଉ ଆଗ୍ରହ ନାହିଁ । କଦଳୀ

ପତ୍ରର ବ୍ୟଜନ, ଚନ୍ଦନର ପ୍ରଲେପ କିମ୍ବା ଚନ୍ଦ୍ରଙ୍କ ଶୀତଳ କିରଣ ତାଙ୍କୁ ଶାନ୍ତି ଦେଇପାରୁନାହିଁ । ତାଙ୍କ ଶରୀର ସର୍ବଦା ଉତ୍ତପ୍ତ ହୋଇଉଠୁଛି । କୃଷ୍ଣପକ୍ଷର ଚନ୍ଦ୍ରକଳା ପରି ସେ ଦିନକୁଦିନ କ୍ଷୀଣ ହୋଇପଡୁଛନ୍ତି । କେବଳ ଆପଣଙ୍କ ସମ୍ପର୍କରେ କିଛି କହିଲେ ହିଁ ତାଙ୍କ ମନରେ ଆନନ୍ଦ ଜାତ ହେଉଛି । ମୋର କନ୍ୟା ତାଙ୍କର ଅତି ପ୍ରିୟ ପାତ୍ରୀ । ସେ ସର୍ବଦା କାୟା ସହିତ ଛାୟାପରି ରହିଥାଏ । ତାଙ୍କର ପ୍ରତ୍ୟେକଟି କ୍ରିୟାକଳାପ ଓ ମାନସିକ ଅନୁଚିନ୍ତା ସହିତ ସେ ପରିଚିତ । ତାଠାରୁ ମଦିରାବତୀଙ୍କ ଅବସ୍ଥା ସମ୍ପର୍କରେ ସୂଚନା ପାଇ ମୁଁ ନିଜେ ତାଙ୍କୁ ଏ ସମ୍ପର୍କରେ ପଚାରିଥିଲି । ସେ ସ୍ପଷ୍ଟ ଭାବେ ଉତ୍ତର ଦେଲେ ଯେ ଆପଣଙ୍କ ନିକଟରେ ସେ ନିଜକୁ ସମ୍ପୂର୍ଣ୍ଣରୂପେ ସମର୍ପଣ କରିଦେଇଛନ୍ତି । ତେଣୁ ମହାଭାଗ ! ଯଦି ଆପଣ ମଦିରାବତୀଙ୍କ ଜୀବନ ରକ୍ଷା କରିବାପାଇଁ ଚାହାଁନ୍ତି ତେବେ ତାଙ୍କ ମନୋରଥକୁ ସଫଳ କରିବାପାଇଁ କିଛି ଉପାୟ କରନ୍ତୁ ।'

ଦାସୀର ଏଇ କେତେପଦ କଥା ମୋ ଶରୀରରେ ଅମୃତ ସିଞ୍ଚନ କଲା । ମୁଁ ଅତ୍ୟନ୍ତ ଆନନ୍ଦ ବିହ୍ୱଳ ହୋଇ ତାକୁ କହିଲି, 'ମୁଁ ବର୍ତ୍ତମାନ ତୋର ସମ୍ପୂର୍ଣ୍ଣ ଅଧୀନ । ମଦିରାବତୀଙ୍କ ଅଭିଳାଷ ପୂରଣ କରିବା ତୋ ହାତରେ କଥା । ତୁ ଯାହା କହିବୁ ମୁଁ କରିବାପାଇଁ ପ୍ରସ୍ତୁତ ଅଛି ।' ମୋଠାରୁ ଏ ପ୍ରକାର ପ୍ରତିଶ୍ରୁତି ପାଇ ସେ ଆନନ୍ଦିତ ମନରେ ଯେପରି ଆସିଥିଲା ସେହିପରି ଚାଲିଗଲା । ମୁଁ ମଧ୍ୟ ବିରହ ସାଗରରେ ଭାସୁଥିବା ବେଳେ ଆଶ୍ରୟଟିଏ ପାଇବା ପରି ଅନୁଭବ କଲି । ମୋର ମନ ଶାନ୍ତ ହେଲା । ମୁଁ ଆମ ବାସଭବନକୁ ଫେରିଗଲି ।

କିଛିଦିନ ପରେ ଜଣେ କୁଳୀନ କ୍ଷତ୍ରିୟ ସନ୍ତାନ ଆସି ଉଜ୍ଜୟିନୀରେ ପଦାର୍ପଣ କଲେ । ସେ ମଦିରାବତୀଙ୍କ ଗୃହରେ ଉପସ୍ଥିତ ହୋଇ ତାଙ୍କ ପିତାଙ୍କ ନିକଟରେ କନ୍ୟାର ପାଣି ପ୍ରାର୍ଥନା କଲେ । ପିତା ଏଥିରେ ସ୍ୱୀକୃତ ହେବାମାତ୍ରେ ପରିଚାରିକାମାନେ ଆସି ମୋତେ ସମ୍ବାଦ ଦେଲେ । ଏହି ଦୁଃଖଦ ସମ୍ବାଦ ଶୁଣି ମୁଁ ଆକାଶରୁ ପଡ଼ିଗଲା ପରି ମନେକଲି । ବଜ୍ରାହତ କିମ୍ବା ଭୂତାବିଷ୍ଟ ହେଲାପରି ମୁଁ ଦୀର୍ଘ ସମୟ ଧରି ଅଚେତନ ହୋଇପଡ଼ିଲି । ଚେତନାଲାଭ କଲାପରେ ମୋ ନିଜର କାପୁରୁଷତା ପ୍ରତି ଧିକ୍‌କାର ଆସିଲା । ଏପରି ବିପଦରେ ଧୈର୍ଯ୍ୟହରା ହେବା ଉଚିତ ନୁହେଁ ବୋଲି ମନେମନେ ଚିନ୍ତାକରି ଅନୁକୂଳ ସମୟର ପ୍ରତୀକ୍ଷା କରିବାପାଇଁ ନିଶ୍ଚୟ କଲି । କାରଣ ଧୈର୍ଯ୍ୟଶୀଳ ବ୍ୟକ୍ତିମାନେ ହିଁ ନିଜ ଇଷ୍ଟ ସିଦ୍ଧି କରିବାରେ ସଫଳତା ଲାଭ କରିଥାନ୍ତି ।

**'ପ୍ରାପ୍ନୋତୀଷ୍ଟମବିକ୍ଳବଃ'**

ଏହିପରି ଆଶାବାନ୍ଧି ମଦିରାବତୀଙ୍କ ସଖୀ ଓ ପରିଚାରିକାମାନଙ୍କଠାରୁ ପ୍ରତିଦିନର ଖବର ସଂଗ୍ରହ କରୁଥାଏ । ଏହିପରି କିଛିଦିନ ବିତିଗଲା । ବିବାହ ଦିବସ ନିର୍ଦ୍ଦିଷ୍ଟ ହେଲା । ମଦିରାବତୀଙ୍କୁ ଚନ୍ଦନ, ହଳଦୀ ଇତ୍ୟାଦି ଦ୍ୱାରା ସ୍ନାନ କରାଗଲା । ବିବାହ ଦିବସ ନିକଟ ହେବାରୁ ମଦିରାବତୀଙ୍କ ଯିବାଆସିବା ମଧ୍ୟ ବନ୍ଦ ହୋଇଗଲା । ସେ ପିତୃଗୃହରେ ହିଁ ଆବଦ୍ଧ ହୋଇ ରହିଲେ । ବାଦ୍ୟ ବାଜଣା ସହିତ ବରଯାତ୍ରୀମାନଙ୍କ ଆଗମନ ପାଇଁ ପ୍ରସ୍ତୁତି ଚାଲିଲା । ଏସବୁ ଦେଖି ମୁଁ ମଦିରାବତୀଙ୍କୁ ପାଇବାର ଆଶା ହରାଇ ବସିଲି । ଜୀବନ ଦୁର୍ବିସହ ହୋଇପଡ଼ିଲା । ଭାବିଲି ଏହିପରି ବିରହ ଦୁଃଖ ସହ୍ୟ କରିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର । ମୁଁ ନିରାଶ ଭାବେ ନଗର ବାହାରେ ଆସି ପହଞ୍ଚିଲି । ସେଠାରେ ଏକ ବଟବୃକ୍ଷ ଉପରେ ଆରୋହଣ କରି ଫାଶଟିଏ ପ୍ରସ୍ତୁତ କଲି ଏବଂ ମଦିରାବତୀଙ୍କୁ ମନେମନେ ଚିନ୍ତା କରି ଫାଶଟିକୁ ଗଳାରେ ଭିଡ଼ି ତଳକୁ ଡେଇଁପଡ଼ିଲି । କିଛିକ୍ଷଣ ପରେ ମୋର ଚେତନା ଫେରିଲା; ଦେଖିଲି କୌଣସି ଯୁବକ ଫାଶଟିକୁ କାଟିଦେଇଛନ୍ତି । ମୁଁ ତାଙ୍କ କୋଳରେ ଶୋଇଛି । ତାଙ୍କୁ ମୋର ତ୍ରାଣକର୍ତ୍ତା ମନେକରି ଧୀର ସ୍ୱରରେ କହିଲି 'ମହାତ୍ମନ୍ ! ଯଦିଓ ଆପଣ ମୋ ପ୍ରତି ଏପରି ଅନୁଗ୍ରହ ପ୍ରଦର୍ଶନ କରିଛନ୍ତି ତଥାପି ମୋପାଇଁ ଜୀବନ ଅପେକ୍ଷା ମୃତ୍ୟୁ ହିଁ ପ୍ରିୟତର । ଯେଉଁ ବିରହୀମାନଙ୍କୁ ଚନ୍ଦ୍ର ଅଗ୍ନି ତୁଲ୍ୟ, ଆହାର ବିଷତୁଲ୍ୟ, ସଙ୍ଗୀତ କର୍ଣ୍ଣ ପାଇଁ ସୂଚୀ ତୁଲ୍ୟ, ଉଦ୍ୟାନ ପାଶ ତୁଲ୍ୟ, ପୁଷ୍ପମାଲ୍ୟ ବିଷାକ୍ତ ବାଣତୁଲ୍ୟ ଏବଂ ଚନ୍ଦନ ପ୍ରଲେପ ଜ୍ୱଳନ୍ତ ଅଙ୍ଗାର ସଦୃଶ ସନ୍ତପ୍ତ କରେ ସେମାନଙ୍କପାଇଁ ଜୀବନପ୍ରତି ମୋହ କିପରି ବା ରହିପାରେ ?'

ବିପଦ ସମୟରେ ଦେଖାଦେଇଥିବା ସେହି ମିତ୍ରଙ୍କ ଜିଜ୍ଞାସା କ୍ରମେ ମୁଁ ଯୁବକଙ୍କୁ ମଦିରାବତୀଙ୍କ ସମସ୍ତ ବୃତ୍ତାନ୍ତ କହି ଶୁଣାଇଲି । ସେହି ପରୋପକାରୀ ଯୁବକ ମୋତେ ସାନ୍ତ୍ୱନା ଦେଇ କହିଲେ, 'ଆପଣ ଜଣେ ବୁଦ୍ଧିମାନ ଯୁବକ ହୋଇ ମଧ୍ୟ ଏପରି ଅନୁଚିତ କାର୍ଯ୍ୟ କାହିଁକି କରିବାକୁ ଯାଉଛନ୍ତି ? ଯେଉଁ ଶରୀର ପାଇଁ ସମସ୍ତ କିଛି କରାଯାଏ, ତାକୁ ବିନାଶ କରିବାରେ ଲାଭ କଣ ? ଏ ସମ୍ପର୍କରେ ମୁଁ ଆପଣଙ୍କୁ ମୋ ନିଜ କଥା ଶୁଣାଉଛି, ଶୁଣନ୍ତୁ–

## ହିତ ମିତ୍ର କଥା

ହିମାଳୟ ନିକଟରେ ନିଷଧ ନାମରେ ଏକ ରାଜ୍ୟ ଅଛି । କଳିଠାରୁ ଭୟରେ ପଳାୟନ କରିଆସିଥିବା ଧର୍ମ ଦେବତାଙ୍କର ତାହା ଆଶ୍ରୟସ୍ଥଳୀ । ଦେଶଟି ସତ୍ୟର ଜନ୍ମଭୂମି ଏବଂ ସେଠାରେ ସତ୍ୟଯୁଗର ଅବସାନ ଘଟିନାହିଁ । ନିଷଧ ଦେଶରେ ନାଗରିକମାନଙ୍କଠାରେ ଧନସଞ୍ଚୟ ପାଇଁ ନୁହେ, କିନ୍ତୁ ଶାସ୍ତ୍ରଜ୍ଞାନଲାଭ ନିମିତ୍ତ କେବଳ ଅତୃପ୍ତି ଦେଖାଯାଏ । ସେମାନେ ନିଜ ପତ୍ନୀମାନଙ୍କ ଉପରେ ସନ୍ତୁଷ୍ଟ, କିନ୍ତୁ ଯେତେ ପରୋପକାର କଲେ ମଧ୍ୟ ସେମାନଙ୍କ ସନ୍ତୁଷ୍ଟି ନାହିଁ । ସେଠାରେ ନିବାସ କରୁଥିବା ଜଣେ ଶୀଳବାନ୍ ତଥା ଶାସ୍ତ୍ରଜ୍ଞ ବ୍ରାହ୍ମଣଙ୍କର ଔରସରୁ ମୋର ଜନ୍ମ । ବିଭିନ୍ନ ଦେଶ ଭ୍ରମଣ କରିବା ଆଗ୍ରହ ନେଇ ମୁଁ ଗୃହତ୍ୟାଗ କରିଥିଲି । ଏହି ଅବସରରେ ମୁଁ ବହୁ ରାଜ୍ୟ ଭ୍ରମଣ କରିଛି ଏବଂ ବହୁ ଉପାଧ୍ୟାୟଙ୍କଠାରୁ ଜ୍ଞାନ ଆହରଣ କରି ଏକ ସମୟରେ ଶଙ୍ଖପୁରରେ ଆସି ପହଞ୍ଚିଲି । ତାହା ଏଠାରୁ ବିଶେଷ ଦୂର ନୁହେଁ । ସେଠାରେ ନାଗରାଜ ଶଙ୍ଖପାଳଙ୍କ ସ୍ନାନ ସଂଧ୍ୟା ପାଇଁ ଏକ ସ୍ୱଚ୍ଛଜଳପୂର୍ଣ୍ଣ ପୁଷ୍କରିଣୀ ଅଛି । ତା'ର ନାମ ଶଙ୍ଖହ୍ରଦ ।

ଶଙ୍ଖପୁରର ଜଣେ ଉପାଧ୍ୟାୟଙ୍କ ଗୃହରେ ରହୁଥିବା ବେଳେ ଦିନେ ମୁଁ ଶଙ୍ଖହ୍ରଦରେ ହେଉଥିବା ସ୍ନାନଯାତ୍ରା ଦେଖିବାପାଇଁ ଗଲି । ସେଠାରେ ପ୍ରବଳ ଗହଳି ହୋଇଥାଏ । ବିଭିନ୍ନ ଦେଶରୁ ଆସିଥିବା ତୀର୍ଥଯାତ୍ରୀମାନେ ଅସୁର ଓ ଦେବତାମାନଙ୍କଦ୍ୱାରା ସମୁଦ୍ର ମନ୍ଥନ ପରି ଶଙ୍ଖହ୍ରଦକୁ ଆଲୋଡ଼ନ କରୁଥାନ୍ତି । ତା'ର ଚତୁର୍ଦ୍ଦିଗରେ ନରନାରୀମାନଙ୍କ ପ୍ରବଳ ଭିଡ଼ ଜମିଥାଏ । ସୁନ୍ଦରୀମାନଙ୍କ ଶିଥିଳ କେଶପାଶରୁ ପୁଷ୍ପମାଲ୍ୟ ସବୁ ବିଚ୍ୟୁତ ହୋଇ ସରୋବରକୁ ବିଭୂଷଣ କରୁଥାଆନ୍ତି । ସରୋବର ନିଜର କୋମଳ ତରଙ୍ଗାବଳୀ ରୂପକ କରତଳଦ୍ୱାରା ସୁନ୍ଦରୀମାନଙ୍କ ସ୍ତନ ଓ ଜଘନକୁ ସ୍ପର୍ଶ କରି ଏବଂ ସେମାନଙ୍କ ଅଙ୍ଗରାଗକୁ ଧୌତକରି ନିଜେ ଅନୁରଞ୍ଜିତ ହେଉଥାଏ । ସେ ମଧ୍ୟ ଅନୁରାଗିଣୀ ନାରୀମାନଙ୍କ ପରି ନିଜର ଅନୁରାଗ ପ୍ରଦର୍ଶନ କରାଇବାରେ ଉନ୍ମୁଖ ହୋଇଉଠିଥାଏ ।

ସରୋବରଟିର ଦକ୍ଷିଣ ଦିଗରେ ଏକ ମନୋରମ ଉଦ୍ୟାନ । ସ୍ଥଳ କମଳମାନଙ୍କରୁ ଉତ୍‌ଥିତ ରେଣୁରାଶି ଉପବନଟିକୁ ଧୂମ୍ରାଭ କରିଥାଏ । କିଂଶୁକ ପୁଷ୍ପରାଜି ଉଦ୍ୟାନଟିକୁ ଅଗ୍ନ୍ୟୁତ୍ସବର ଶୋଭା ପ୍ରଦାନ କରୁଥାନ୍ତି । ଅଶୋକ ବୃକ୍ଷର ରକ୍ତବର୍ଣ୍ଣ ପୁଷ୍ପଗୁଚ୍ଛଗୁଡ଼ିକ ଶିବଙ୍କ କୋପାନଳଦଗ୍ଧ ମଦନର ଜ୍ୱଳନ୍ତ ଶରୀର ବୋଲି ମନେହେଉଥାଏ ।

ସେଠାରେ ଏକ ମଣ୍ଡଳାକାର ମାଧବୀ କୁଞ୍ଜର ଦ୍ୱାରଦେଶରେ ଜଣେ କୁମାରୀ ପୁଷ୍ପଚୟନ କରୁଥାନ୍ତି । ତାଙ୍କୁ ଦେଖିବା ମାତ୍ରେ ମୁଁ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲି । ତାଙ୍କ ଚଞ୍ଚଳ କଟାକ୍ଷର ଶୋଭାରେ କର୍ଣ୍ଣଭୂଷଣ ପୁଷ୍ପାବଳୀ ବିଷଣ୍ଣ ଦେଖାଯାଉଥାନ୍ତି । ପୁଷ୍ପ ଚୟନପାଇଁ ବାହୁ ଯୁଗଳ ଉର୍ଦ୍ଧ୍ୱକୁ ପ୍ରସାରିତ ହେଲେ ତାଙ୍କ ସୁପୁଷ୍ଟ ସ୍ତନମଣ୍ଡଳର କିଛି ଅଂଶ ବାରି ହୋଇପଡୁଥାଏ । ପୃଷ୍ଠଦେଶରେ ଆଲୁଳାୟିତ ହୋଇପଡ଼ିଥିବା କେଶପାଶ ତାଙ୍କ ମୁଖଚନ୍ଦ୍ର ଭୟରେ ପଳାୟନ କରି ଆସିଥିବା ଅନ୍ଧକାରର ଭ୍ରମ ସୃଷ୍ଟି କରୁଥାଏ । ରମ୍ଭା, ମେନକା ପ୍ରଭୃତିଙ୍କୁ ସୃଷ୍ଟି କରି ବିଧାତା ନାରୀ ସୃଷ୍ଟିରେ ସିଦ୍ଧହସ୍ତତା ଲାଭ କଲାପରେ ତାଙ୍କୁ ସୃଷ୍ଟି କରିଥିଲା । ଚକ୍ଷୁ ଯୁଗଳ ନିର୍ନିମେଷ ହୋଇଥିଲେ ସେ କୌଣସି ସ୍ୱର୍ଗବାସିନୀ ଦେବୀ ବୋଲି ମନେହୋଇଥାନ୍ତେ । ତ୍ରିଭୁବନ ବିଜୟୀ କନ୍ଦର୍ପର କୁନ୍ତପରି ସେ ମୋ ହୃଦୟରେ ବିଦ୍ଧ ହୋଇଗଲେ । ମୋତେ ଦେଖି ସେ ମଧ୍ୟ ହଠାତ୍ ବିମନା ହୋଇଉଠିବା ପରି ଜଣାଗଲେ । ତାଙ୍କ ହସ୍ତଯୁଗଳ ପୁଷ୍ପ ଚୟନରୁ ନିରସ୍ତ ହୋଇପଡ଼ିଲା । ତାଙ୍କ ବକ୍ଷରେ ଝୁଲୁଥିବା ମୁକ୍ତାହାରସ୍ଥିତ ପଦ୍ମରାଗ ମଣିଟି ମୋ ପ୍ରତି ଥିବା ସୁନ୍ଦରୀଙ୍କ ଅନୁରାଗକୁ ହିଁ ପ୍ରକାଶ କରୁଥିଲା । ସେ ନିଜ ଶରୀରକୁ ପରିଧେୟ ବସ୍ତ୍ରଦ୍ୱାରା ଆବୃତ କରି ଦୀର୍ଘ ସମୟ ପର୍ଯ୍ୟନ୍ତ ମୋ ପ୍ରତି ତୀକ୍ଷ୍ଣ କଟାକ୍ଷପାତ କରୁଥାନ୍ତି ।

ଆମେ ଦୁହେଁ ଏହିପରି ପରସ୍ପରକୁ ଚାହିଁ ରହିଥିବା ବେଳେ ଉପସ୍ଥିତ ଜନତା ମଧ୍ୟରେ ଭୟଙ୍କର କୋଳାହଳ ସୃଷ୍ଟି ହେଲା । ସେମାନେ ସମସ୍ତେ ଆମ ଆଡ଼କୁ ଦୌଡ଼ି ଆସୁଥାଆନ୍ତି । କୌଣସି ବନ୍ୟ ହସ୍ତିନୀର ଗନ୍ଧ ବାରି ହାତୀଟିଏ କାମୋନ୍ମତ୍ତ ହୋଇ ଦୌଡ଼ି ଆସୁଥିଲା । ସେ ଶୃଙ୍ଖଳାଛିନ୍ନ କରି ମାହୁନ୍ତର ଅଂକୁଶାଘାତକୁ ଭ୍ରୂକ୍ଷେପ କରୁନଥାଏ । ସେହି କୋଳାହଳ ମଧ୍ୟରେ କନ୍ୟାଟିର ଦାସୀ ମଧ୍ୟ କେଉଁଆଡ଼େ ଚାଲିଗଲା । ଏକାକିନୀ ଠିଆ ହୋଇଥିବା ଦେଖି ମୁଁ ଦ୍ରୁତ ବେଗରେ ଯାଇ ତାଙ୍କୁ ଉଠାଇ ଆଣିଲି । ଏ ସମୟରେ ତାଙ୍କ ଦାସୀ ମଧ୍ୟ ସେଠାରେ ଆସି ପହଞ୍ଚିଗଲା । କନ୍ୟାଟି ନିଜକୁ ସମ୍ଭାଳି ନେବା ପୂର୍ବରୁ ଜନତାର କୋଳାହଳ, ପାଟିତୁଣ୍ଡ ଓ ଚିତ୍କାର ମଧ୍ୟରେ ହାତୀଟି ଆମ ଆଡ଼କୁ ମାଡ଼ି ଆସିଲା । ହାତୀର ଭୟରେ ଆମେ ଅନ୍ୟମାନଙ୍କ ପରି ସେହି ଜନଗହଳି ମଧ୍ୟରେ ଦୌଡ଼ିବାକୁ ଲାଗିଲୁ । ଏହା ମଧ୍ୟରେ କନ୍ୟାଟି ମୋଠାରୁ ବିଚ୍ଛିନ୍ନ ହୋଇପଡ଼ିଲେ । ଜନତା ତାଙ୍କୁ ଦୂରକୁ ନେଇ ଚାଲିଲା । ମୁଁ ମଧ୍ୟ ତା' ଭିତରେ ଅନ୍ୟଆଡ଼େ ଚାଲିଗଲି ।

କିଛି ସମୟ ପରେ ହାତୀର ଉପଦ୍ରବ ଶାନ୍ତ ହେଲା । ମୁଁ ସେହି ସୁନ୍ଦରୀଙ୍କୁ ଏଣେତେଣେ ଖୋଜିବାକୁ ଲାଗିଲି । କିନ୍ତୁ ତାଙ୍କୁ ପାଇବା ସମ୍ଭବ ହେଲାନାହିଁ । ମୁଁ ତାଙ୍କର ନାମ, ଗୋତ୍ର ବା ବାସସ୍ଥାନ ସମ୍ପର୍କରେ କିଛି ଜାଣିନଥିବା ଯୋଗୁଁ କାହାକୁ ପଚାରିବା

ମଧ୍ୟ ସମ୍ଭବ ନଥିଲା । ନିରାଶ ମନରେ ବିଦ୍ୟାଭ୍ରଷ୍ଟ ବିଦ୍ୟାଧର ତୁଲ୍ୟ ଏଣେତେଣେ ବୁଲିବୁଲି ଶେଷରେ ମୁଁ ଗୁରୁଙ୍କ ଆଶ୍ରମରେ ଆସି ପହଞ୍ଚିଲି । ପ୍ରଣୟରେ ନୈରାଶ୍ୟ ଏବଂ ଭ୍ରମଣରେ କ୍ଳାନ୍ତି ସହିତ ସେହି ସୁନ୍ଦରୀଙ୍କ ଆଲିଙ୍ଗନ ସ୍ମୃତି ମୋତେ ହତଚେତନ କରିଦେଲା । ମୁଁ ସେଠାରେ ମୂର୍ଚ୍ଛିତ ହୋଇ ପଡ଼ିଗଲି । ସ୍ୱପ୍ନରେ ସେହି ଅପରୂପା ସୁନ୍ଦରୀ ମୋତେ ସାନ୍ତ୍ୱନା ଦେଲେ । ସେ ଅତ୍ୟନ୍ତ ଦୟାଶୀଳା ବୋଲି ମନେହେଉଥାନ୍ତି । ତାଙ୍କ ସ୍ୱପ୍ନ ସ୍ପର୍ଶରେ ମୁଁ ଗାଢ଼ ନିଦ୍ରାରେ ଅଭିଭୂତ ହୋଇପଡ଼ିଲି । ନିଦ୍ରାଭଙ୍ଗ ବେଳକୁ ମୋର ଭୟଙ୍କର ମସ୍ତକ ପୀଡ଼ା ଆରମ୍ଭ ହୋଇଥାଏ । ମୁଣ୍ଡ ଉପରକୁ ଉଠାଇବା ମୋ ପକ୍ଷରେ ସମ୍ଭବ ନଥିଲା । ମୁଁ ଧୈର୍ଯ୍ୟହରା ହୋଇପଡ଼ିଲି ।

ମୋର ଧୈର୍ଯ୍ୟ ସହିତ ଦିନ ମଧ୍ୟ ଶେଷ ହେଲା । ମୋର ମୁଖପରି କମଳବନ ମ୍ଳାନ ଦେଖାଗଲା । ସୂର୍ଯ୍ୟ ଅସ୍ତ ହେବାରୁ ମୋର ଅଭିଳାଷ ପରି ଚକ୍ରବାକ ମିଥୁନ ବିଚ୍ଛିନ୍ନ ହୋଇପଡ଼ିଲେ । ସଂଯୋଗାବସ୍ଥାରେ ନାୟକ ନାୟିକାଙ୍କ ନୟନାନନ୍ଦଦାୟକ କନ୍ଦର୍ପର ଅନ୍ତରଙ୍ଗ ସଖା ଚନ୍ଦ୍ରମା ପୂର୍ବ ଦିଗ୍‌ବଳୟରେ ଦେଖାଦେଲେ । ରାତ୍ରିର ଅନ୍ଧକାରରେ ଆଲୋକ ପ୍ରଦାନ କରି ସେ ଅନ୍ୟମାନଙ୍କ ପାଇଁ ଆଶା ଓ ଆଶ୍ୱାସନାର କାରଣ ଥିଲେ ମଧ୍ୟ ମୋର ଜୀବନାଶା ଶୀତଳ କିରଣ ସ୍ପର୍ଶରେ ଶେଷ ହେଲା । ମୁଁ ମୃତ୍ୟୁକାମନା କରି ଉଠି ଠିଆହେଲି ।

ମୋର ଏପରି ବିକଳ ଅବସ୍ଥା ଦେଖି ମୋର ଜଣେ ବିଜ୍ଞ ସହପାଠୀ ନିକଟକୁ ଆସି ମୋ କାନ୍ଧରେ ହାତ ରଖି କହିଲେ, ''ବନ୍ଧୁ ! ତୁମର ଆଜି କଣ ହୋଇଛି ? ତମ ପାଖରେ ତ କୌଣସି ରୋଗର ଲକ୍ଷଣ ଦେଖାଯାଉନାହିଁ । ଯଦି ଅର୍ଥପୀଡ଼ା ବା କାମବାସନା ତୁମକୁ ବ୍ୟଥିତ କରୁଥାଏ, ତେବେ ତାହାର ଉପାୟ କହୁଛି ଶୁଣ—

'ଅତି ଲୋଭରୁ ଅନ୍ୟଠାରୁ ଛଳନା କରି ବା ଚୋରି କରି ଯେଉଁ ସମ୍ପତ୍ତି ସଞ୍ଚୟ କରାଯାଏ ତାହା କଦାପି ସ୍ଥିର ରହେ ନାହିଁ । ଏହି ସମ୍ପତ୍ତି ବିଷବୃକ୍ଷ ତୁଲ୍ୟ । କାରଣ ଏହାର ମୂଳ ପାପ ଦ୍ୱାରା ଦୂଷିତ । ତେଣୁ ଏହାର ଫଳ ମଧ୍ୟ ଅପବିତ୍ର । ଦିନେ ଏହି ପାପଫଳଭାରରେ ବୃକ୍ଷଟି ନଷ୍ଟ ହୋଇଯାଏ ।

ଅତି ଗର୍ଧେନ ଯେ ହ୍ୟର୍ଥା ବଞ୍ଚୟିତ୍ୱା ପରଂ ଚ ଯେ
ଅପହୃତ୍ୟ ପରେଷାଂ ବା ବାଞ୍ଛ୍ୟନ୍ତେ ନୈବ ତେ ସ୍ଥିରାଃ ।
ପାପମୂଳା ଯତଃ ପାପଫଳଭାରଂ ପ୍ରସୂୟ ତେ
ତଦ୍‌ଭରେଣୈବ ଭଜ୍ୟନ୍ତେ ଶୀଘ୍ରଂ ଧନବିଷଦ୍ରୁମାଃ ।

ଏ ପ୍ରକାର ଧନସମ୍ପତ୍ତି ଅର୍ଜନ କରିବାରେ ଯେଉଁ କ୍ଲେଶ ହୁଏ ତାହା କେବଳ ଇହ ସଂସାରରେ ରହିଯାଏ । ତେଣୁ ଅପହରଣକାରୀକୁ ଯାବତ୍‌ଚନ୍ଦ୍ରାର୍କ ନରକ ଦୁଃଖ ସହ୍ୟ କରିବାକୁ ପଡ଼ିଥାଏ ।

ସେହିପରି କାମବାସନା ମଧ୍ୟ ବଡ଼ ବିଚିତ୍ର ଭାବରେ ଦୁଃଖଦାୟକ । ପ୍ରାପ୍ତି ପୂର୍ବରୁ ହିଁ ତାହା ନଷ୍ଟ ହୋଇଯାଇଥାଏ । ଏଥିରୁ ଯେଉଁ ଅଧର୍ମ ଜାତ ହୁଏ ତାହା ନରକାଗ୍ନିର ପଥପ୍ରଦର୍ଶକ ମାତ୍ର ।

ଯେଉଁ ଅର୍ଥ ବା କାମ ନ୍ୟାୟସଙ୍ଗତ, ତାକୁ ପୂର୍ବାର୍ଜିତ ପୁଣ୍ୟ ବଳରେ ଧୈର୍ଯ୍ୟ ଓ ଉତ୍ସାହଶୀଳ ବୁଦ୍ଧିମାନ ବ୍ୟକ୍ତିମାନେ କେବଳ ଲାଭ କରିଥାନ୍ତି । ତୁମ ପରି କ୍ଲୀବ ଏବଂ ଧୈର୍ଯ୍ୟହରା ହୋଇ ଚିନ୍ତାମଗ୍ନ ବ୍ୟକ୍ତିମାନେ ତାହା ଲାଭକରିବା ସମ୍ଭବ ନୁହେଁ । ତେଣୁ ବନ୍ଧୁ ! ଧୈର୍ଯ୍ୟ ଧାରଣ ପୂର୍ବକ ଅଭିଳଷିତ ପଦାର୍ଥ ହସ୍ତଗତ କରିବାପାଇଁ ଉଦ୍ୟମ କର ।

ସହାଧ୍ୟାୟୀ ବନ୍ଧୁଙ୍କ ଏ ପ୍ରକାର ଉପଦେଶରେ ମୁଁ ତ ତାଙ୍କୁ କିଛି କହିଲି ନାହିଁ, କିନ୍ତୁ ମୋ ମନରେ ଧୈର୍ଯ୍ୟ ଓ ବିଶ୍ୱାସ ସଞ୍ଚାରିତ ହେଲା । ମୁଁ ମୋର ଅଭିଳାଷ ପ୍ରକାଶ ନ କରି ସେଠାରେ ରାତ୍ରିଟି ବିତାଇଦେଲି । ପରଦିନ ପ୍ରତ୍ୟେକ ଗ୍ରାମରେ ଅନୁସନ୍ଧାନ କରି ଶେଷରେ ଏଠାରେ ଆସି ପହଞ୍ଚିଛି । ଏଠାରେ ପହଞ୍ଚି ତୁମକୁ ବୃକ୍ଷଶାଖାରେ ଆତ୍ମହତ୍ୟା ପାଇଁ ଉଦ୍ୟମ କରୁଥିବା ଦେଖିଲି । ତୁମକୁ ସେଥିରୁ ରକ୍ଷା କରିବା ପରେ ଆମେ ବର୍ତ୍ତମାନ ପରସ୍ପରର ଦୁଃଖକୁ ବଣ୍ଟନ କରୁଛେ ।

ମିତ୍ର ! ଯେଉଁ ସୁନ୍ଦରୀଙ୍କ କୁଳ ଗୋତ୍ର, ଗ୍ରାମ, ରାଜ୍ୟ ଏପରିକି ନାମ ପର୍ଯ୍ୟନ୍ତ ଜାଣିପାରିନାହିଁ, ପୌରୁଷ ବାହାରେ ହେଲେ ସୁଦ୍ଧା, ତାଙ୍କୁ ଖୋଜି ବାହାର କରିବାପାଇଁ ମୁଁ ଉଦ୍ୟମ କରିଚାଲିଛି । ତୁମର ପ୍ରାଣପ୍ରିୟା ମଦିରାବତୀ ନିଖୋଜ ହୋଇଯିବା ପରେ ତୁମେ ନିଜ ଶକ୍ତିର ବିନିଯୋଗ ନକରି ନପୁଂସକ ତୁଲ୍ୟ କାହିଁକି ନିରୁତ୍ସାହିତ ହୋଇପଡୁଛ ? ଶିଶୁପାଳ ରୁକ୍ମିଣୀଙ୍କ ପାଣିଗ୍ରହଣ କରିବାପାଇଁ ଆସି ଉପସ୍ଥିତ ହୋଇଥିଲେ ମଧ୍ୟ ଶ୍ରୀକୃଷ୍ଣ ତାଙ୍କୁ କିପରି ହରଣ କରି ନେଇଯାଇଥିଲେ, ତାହା କଣ ଶୁଣି ନାହଁ ?'

ମିତ୍ର ଏପରି କହୁଥିବା ବେଳେ ମାଙ୍ଗଳିକ ଗାନ, ମଙ୍ଗଳ ବାଦ୍ୟ ସହ ଦାସୀମାନଙ୍କ ଗହଣରେ ମଦିରାବତୀ ଆମମାନଙ୍କ ସମ୍ମୁଖରେ ଆସି ପହଞ୍ଚିଲେ । ମୁଁ ତାଙ୍କୁ ଦେଖାଇ ମିତ୍ରଙ୍କୁ କହିଲି, 'ମିତ୍ର, ବିବାହ ପୂର୍ବରୁ କୁମାରୀ କନ୍ୟାମାନେ କାମଦେବଙ୍କ ଆରାଧନା

ନିମିତ୍ତ ଏହି ଦେବୀ ମନ୍ଦିରକୁ ଆସିଥାନ୍ତି । ଏହିଠାରେ ଠିଆ ହୋଇ କାମଦେବଙ୍କ ପୂଜା କରାଯାଏ । ଏଥିପାଇଁ ମୁଁ ଏହି ମନ୍ଦିର ସମ୍ମୁଖରେ ଆତ୍ମହତ୍ୟା କରିବା ପ୍ରୟାସ କରୁଥିଲି । ଏହାଦ୍ୱାରା ମଦିରାବତୀ ଅନ୍ତତଃ ଜାଣିପାରିଥାନ୍ତେ ଯେ ମୁଁ ତାଙ୍କପାଇଁ ଶରୀର ତ୍ୟାଗ କରିଛି ।' ଏହାଶୁଣି ମୋର ସେହି ପରାକ୍ରମଶାଳୀ ବ୍ରାହ୍ମଣ ମିତ୍ର କହିଲେ, 'ଚାଲ, ଆଉ ବିଳମ୍ବ କରନାହିଁ । ଆମେ ଶୀଘ୍ର ଯାଇ ଦେବୀ ପ୍ରତିମାଙ୍କ ପୃଷ୍ଠଭାଗରେ ଆତ୍ମଗୋପନ କରି ରହିବା ଏବଂ ମଦିରାବତୀଙ୍କୁ ପାଇବାପାଇଁ କିଛି ଉପାୟ ଚିନ୍ତା କରିବା ।' ମିତ୍ରଙ୍କ ପରାମର୍ଶ ଅନୁଯାୟୀ ଆମେ ଦେବୀ ପ୍ରତିମା ପଛରେ ଆତ୍ମଗୋପନ କଲୁ ।

ମାଙ୍ଗଳିକ ଗୀତବାଦ୍ୟ ମଧ୍ୟରେ ମଦିରାବତୀ ଆସି ଧୀରେ ଧୀରେ ଦେବୀ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ସେ ଏକାକିନୀ ଦେବୀଙ୍କ ନିକଟରେ ନିଜର ମନୋରଥ ଜ୍ଞାପନ କରିବେ ବୋଲି ଅନ୍ୟମାନଙ୍କୁ ସେଠାରୁ ଦୂରେଇଦେଲେ । ମନ୍ଦିରର ଦ୍ୱାର ରୁଦ୍ଧ କରି ସେ କନ୍ଦର୍ପଙ୍କ ପୂଜାଶେଷ କଲେ । ପୂଜା ଶେଷରେ ଜଣାଇଲେ, 'ଭଗବନ୍ ! ଆପଣ ମନୋଭବ । କିନ୍ତୁ ମୋର ମନକଥା ଆପଣ ବୁଝିପାରିଲେ ନାହିଁ । ତାଙ୍କ ସହିତ ବିବାହ ନକରି ଅନ୍ୟଜଣେ ପୁରୁଷ ସହିତ ବିବାହ କରୁଥିବା ଯୋଗୁଁ ମୋ ମନରେ ଯେଉଁ ବେଦନା ସୃଷ୍ଟି ହୋଇଛି ତାହା ଆପଣ ଜାଣିପାରିଲେ ନାହିଁ । ଏହି ଜନ୍ମରେ ଯଦି ମୋର ଅଭିଳାଷ ପୂରଣ କରିବାପାଇଁ ଆପଣ ସମର୍ଥ ନୁହନ୍ତି ତେବେ ପରଜନ୍ମରେ ତାହା ପୂର୍ଣ୍ଣ ହେବାପାଇଁ କୃପା କରିବେ । ଆପଣ ମୋତେ କେବଳ ଏହି ବର ପ୍ରଦାନ କରନ୍ତୁ ଯେ ଅନ୍ୟଶରୀର ପାଇବା ପରେ ମଧ୍ୟ ମୁଁ ମୋର ଅଭିଳଷିତ ସେହି ବିପ୍ରକୁମାରଙ୍କୁ ପତି ରୂପରେ ଲାଭ କରିବି ।' ଏହିପରି ପ୍ରାର୍ଥନା କରି ସେ ନିକଟସ୍ଥ ସ୍ତମ୍ଭରେ ପାଶଟିଏ ପ୍ରସ୍ତୁତ କରି ଗଳାରେ ଲମ୍ବାଇଲେ ।

ଆମେ ପ୍ରତିମା ପଛରେ ଥାଇ ତାଙ୍କ ଆଚରଣ ଲକ୍ଷ୍ୟ କରୁଥାଉ । ମିତ୍ର ମୋତେ ହଲାଇ ଦେଇ କହିଲେ, 'ଯାଅ, ନିଜକୁ ପ୍ରକଟ କରି ତାଙ୍କ ଗଳାରୁ ପାଶଟିକୁ ଖୋଲିଦିଅ ।' ମୁଁ ସଙ୍ଗେ ସଙ୍ଗେ ଯାଇ ମଦିରାବତୀଙ୍କ ନିକଟରେ ପହଞ୍ଚିଲି । 'ପ୍ରିୟେ ! ଏପରି ଦୁଃସାହସ କରନାହିଁ । ମୁଁ ଦୁଃଖାର୍ତ୍ତ ଥିଲାବେଳେ ତୁମେ ମୋତେ ଅଯାଚିତ ସ୍ନେହ ପ୍ରଦାନ କରିଅଛ । ବର୍ତ୍ତମାନ ନିଜ ଜୀବନକୁ ବିପନ୍ନ କରି ଲାଭ କରିଥିବା ତୁମର ଏହି ଦାସ ସମ୍ମୁଖରେ ଉପସ୍ଥିତ ।' ହର୍ଷଭରା କଣ୍ଠରେ ଏହା କହି ମୁଁ ମଦିରାବତୀଙ୍କୁ ପାଶମୁକ୍ତ କଲି । ସେ ମୋତେ ଆକସ୍ମିକ ଭାବରେ ସେଠାରେ ଦେଖି ଚିତ୍ରାର୍ପିତ ପରି ଠିଆହେଲେ । ଆମେ ପରସ୍ପରକୁ ଚାହିଁ ରହିଥିବା ବେଳେ ମିତ୍ର ଆମ୍ଭମାନଙ୍କର ମଙ୍ଗଳ କାମନା କରି କହିଲେ—

'ବନ୍ଧୁ ! ସଂଧ୍ୟା ହେଲାଣି । ମୁଁ ସଂଧ୍ୟାର ଛାୟାଲୋକ ମଧ୍ୟରେ ମଦିରାବତୀଙ୍କ ବେଶ ଧାରଣ କରି ପରିଜନମାନଙ୍କ ସହିତ ଚାଲିଯାଉଛି । ତୁମେ ନିଜର ଓ ମୋର ଉତ୍ତରୀୟରେ ମଦିରାବତୀଙ୍କୁ ଆବୃତ କରି ମନ୍ଦିରର ପଶ୍ଚିମପଟ ଦ୍ୱାର ଦେଇ ଏଠାରୁ ବାହାରିଯାଅ । ରାତି ଶେଷହେବା ପୂର୍ବରୁ ତୁମେ ଦୁହେଁ ଇଚ୍ଛାନୁଯାୟୀ ଯେତେଦୂର ପାର ଚାଲିଯିବା ପାଇଁ ଚେଷ୍ଟାକର । ମୋ ସମ୍ପର୍କରେ ଚିନ୍ତା କରିବାର ଆବଶ୍ୟକତା ନାହିଁ । ଭାଗ୍ୟ ମୋ ପ୍ରତି ମଧ୍ୟ ଅନୁକୂଳତା ପ୍ରକାଶ କରିବ ।'

ଏହିପରି କହି ମଦିରାବତୀର ଛଦ୍ମ ବେଶ ଧାରଣ ପୂର୍ବକ ମିତ୍ର ମନ୍ଦିର ମଧ୍ୟରୁ ନିଷ୍କ୍ରାନ୍ତ ହେଲେ । ପରିଚାରିକାମାନେ ରାତ୍ରିର ଅନ୍ଧକାରରେ ତାଙ୍କୁ ଠିକ୍ ଭାବେ ଚିହ୍ନି ନପାରି ମଦିରାବତୀ ଭ୍ରମରେ ନେଇ ଚାଲିଲେ । ମୁଁ ମଧ୍ୟ ବହୁମୂଲ୍ୟ ହାର ଓ ଅଳଙ୍କାର ଧାରଣ କରିଥିବା ପ୍ରୟଣିନୀଙ୍କ ସହିତ ରାତାରାତି ବହୁ ଦୂର ଚାଲିଗଲି । ରାତ୍ରି ପ୍ରଭାତ ହେବାରୁ ଆମେ କିଛି ଆହାର ଯୋଗାଡ଼ କରି ଆଶ୍ୱସ୍ତ ହେଲୁ । ପଥ ମଧ୍ୟରେ କିଛିଦିନ କଟିଗଲା । ଶେଷରେ ଆମେ ଆସି ଅଚଳପୁର ନାମକ ନଗରରେ ଉପସ୍ଥିତ ହେଲୁ । ସେଠାରେ ଜଣେ ବ୍ରାହ୍ମଣଙ୍କ ସହିତ ମୋର ମିତ୍ରତା ହେଲା । ଆମେ ତାଙ୍କ ଗୃହରେ ରହିବାକୁ ଲାଗିଲୁ ।

ବିଳମ୍ବ ହେଲେ ପୁଣି କିଛି ପ୍ରତିବନ୍ଧକ ସୃଷ୍ଟି ହେବା ଭୟରେ ମୁଁ ଯଥାଶୀଘ୍ର ମଦିରାବତୀଙ୍କ ସହିତ ବିବାହ କରିନେଲି । ସେଠାରେ ଆମର କୌଣସି ଅସୁବିଧା ହେଉନଥାଏ । ଆବଶ୍ୟକୀୟ ସମସ୍ତ ବସ୍ତୁ ହାତପା'ନ୍ତାରେ ମିଳିଯାଉଥିଲା । କିନ୍ତୁ ସବୁବେଳେ ଗୋଟିଏ ମାତ୍ର ଚିନ୍ତା ମୋତେ ବିବ୍ରତ କରୁଥାଏ । ମଦିରାବତୀଙ୍କ ଛଦ୍ମବେଶରେ ଥିବା ମିତ୍ରଙ୍କ ଅବସ୍ଥା କଣ ହୋଇଥିବ ? ତାହା ଜାଣିବା ମୋପାଇଁ ସମ୍ଭବ ନଥିଲା । ଆଜି ଉତ୍ତରାୟଣରେ ଗଙ୍ଗାସ୍ନାନପାଇଁ ଆସିଥିବା ବେଳେ ସେହି ଅକାରଣ ବନ୍ଧୁଙ୍କ ସହିତ ସାକ୍ଷାତ ଘଟିଛି । ମୁଁ ପଛରୁ ତାଙ୍କୁ କୋଳାଗ୍ରତ କରିବାରୁ ସେ ହଠାତ୍ ଚମକି ପଡ଼ିଲେ । ଆମେ ଏଠାରେ ବସି ପରସ୍ପର ସମ୍ପର୍କରେ କଥାବାର୍ତ୍ତା କରୁଥିବା ବେଳେ ଆପଣ ଆସି ପହଞ୍ଚିଛନ୍ତି । ଦେବ ! ମୋର ସମ୍ମୁଖରେ ବସିଥିବା ଏହି ମିତ୍ରଙ୍କ ଯୋଗୁଁ ହିଁ ପ୍ରାଣ ଓ ପ୍ରାଣପ୍ରିୟା ଉଭୟ ଲାଭ କରିପାରିଛି । ବିପଦ ସମୟରେ ସେ ହିଁ ମୋର ଏକମାତ୍ର ଅକାରଣ ବନ୍ଧୁ ଥିଲେ ।

ଏହିପରି ଜଣେ ବ୍ରାହ୍ମଣ କୁମାର ନିଜର କଥା କହି ଶୁଣାଇବା ପରେ ନରବାହନଦତ୍ତ ଦ୍ୱିତୀୟ ବ୍ରାହ୍ମଣ କୁମାରଙ୍କୁ ଲକ୍ଷ୍ୟ କରି ଜିଜ୍ଞାସା କଲେ, 'ବିପ୍ରବର ! ମୁଁ

ତୁମ ବନ୍ଧୁଙ୍କ ବୃତ୍ତାନ୍ତ ଶୁଣି ଅତ୍ୟନ୍ତ ପ୍ରୀତ ହୋଇଛି । ବର୍ତ୍ତମାନ ତୁମେ ନିଜର ବୃତ୍ତାନ୍ତ ଶୁଣାଇ ମୋର କୌତୂହଳ ଦମନ କର । ମଦିରାବତୀ ବେଶ ଧାରଣ କରି ତୁମେ ପରିଜନମାନଙ୍କ ସହିତ ମନ୍ଦିରରୁ ବାହାରିବା ପରେ କଣ ସବୁ ଘଟିଲା, ଜାଣିବା ପାଇଁ ମୁଁ ବ୍ୟଗ୍ର ହୋଇଉଠୁଛି । ମିତ୍ର ପାଇଁ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିବା ନିମିତ୍ତ ପ୍ରସ୍ତୁତ ଥିବା ମିତ୍ର ପ୍ରକୃତରେ ଦୁର୍ଲ୍ଲଭ ।' ବତ୍ସରାଜ ଉଦୟନଙ୍କ ପୁତ୍ର ନରବାହନଦତ୍ତଙ୍କ କୌତୂହଳ ଦେଖି ଅନ୍ୟ ବ୍ରାହ୍ମଣ କୁମାର ମଧ ନିଜର ବୃତ୍ତାନ୍ତ ଶୁଣାଇବା ଆରମ୍ଭ କଲେ—

'ଦେବ ! ମୁଁ ମଦିରାବତୀର ଛଦ୍ମବେଶରେ ଦେବୀ ମନ୍ଦିର ମଧ୍ୟରୁ ନିର୍ଗତ ହେବା ମାତ୍ରେ ପରିଚାରିକାମାନେ ମୋତେ ଘେରିଗଲେ । ରାତ୍ରିର ଅନ୍ଧକାର ମଧ୍ୟରେ ମୋତେ ଚିହ୍ନିବା ସେମାନଙ୍କ ପକ୍ଷରେ ସମ୍ଭବ ନଥିଲା । ମୋତେ ମଦିରାବତୀ ଭାବି ସେମାନେ ନେଇ ସବାରି ମଧ୍ୟରେ ବସାଇଲେ । ବାଦ୍ୟ, ଗୀତ, ନୃତ୍ୟ ମଧ୍ୟରେ ମୁଁ ଯାଇ ଅନୁଚର-ମାନଙ୍କ ସହିତ ସୋମଦତ୍ତଙ୍କ ଐଶ୍ୱର୍ଯ୍ୟପୂର୍ଣ୍ଣ ବାସଭବନରେ ପ୍ରବେଶ କଲି । ତା' ମଧ୍ୟରେ କେଉଁଠି ବିଭିନ୍ନ ରଙ୍ଗବେରଙ୍ଗର ବସ୍ତ୍ର, କେଉଁଠି ବହୁମୂଲ୍ୟ ଅଳଙ୍କାର ଏବଂ କେଉଁଠି କୁଶଳୀ ପାଚକମାନଙ୍କ ଦ୍ୱାରା ପ୍ରସ୍ତୁତ ସୁମିଷ୍ଟ ଖାଦ୍ୟ ସାମଗ୍ରୀ ସବୁ ରହିଥାଏ । ବାସଭବନର ପ୍ରାଙ୍ଗଣରେ ବିବାହ ବେଦିକା ପ୍ରସ୍ତୁତ ଥାଏ । ଗଣିକାମାନେ ନୃତ୍ୟ କରୁଥାନ୍ତି । ଭାଟମାନଙ୍କ ସ୍ତୁତି ଗାନ ଏବଂ ଚାରଣମାନଙ୍କ କୀର୍ତ୍ତି ଗାନରେ ବାସଭବନ ମୁଖରିତ ହେଉଥାଏ । ବ୍ରାହ୍ମଣମାନେ ବିବାହ ମୁହୂର୍ତ୍ତର ପ୍ରତୀକ୍ଷା କରି ବସିଥାନ୍ତି । ମଦ୍ୟପାନରେ ଉନ୍ମତ୍ତ ଦାସୀମାନେ ମୋର ଓଢ଼ଣା ଟାଣିଦେଲେ । କିନ୍ତୁ ସେମାନେ ମୋତେ ମଦିରାବତୀ ବୋଲି ହିଁ ଧରିନେଇ ଏକ ଭବ୍ୟ ପ୍ରକୋଷ୍ଠ ମଧ୍ୟରେ ବସାଇଲେ । ବିବାହ ପାଇଁ ବ୍ୟଗ୍ର ଏବଂ ଆନନ୍ଦରେ ଉନ୍ମତ୍ତ ମୋ ବୟସର ବହୁ କନ୍ୟା ମୋତେ ଘେରି ରହିଥାନ୍ତି । କିଛି ସମୟ ମଧ୍ୟରେ ଦ୍ୱାରରେ କାହାର କରାଘାତ ଶବ୍ଦ ଶୁଣାଗଲା । ନୂପୁର ଧ୍ୱନି ଶୁଣି ପରିଚାରିକା-ମାନେ ଦ୍ୱାର ଉନ୍ମୁକ୍ତ କଲେ । ସଖୀଗଣ ପରିବେଷ୍ଟିତ ଜଣେ କନ୍ୟା ସେ ଦ୍ୱାର ଦେଇ ଆସି ମୋ ନିକଟରେ ପହଞ୍ଚିଲେ । ତାଙ୍କ ମସ୍ତକରେ ଥିବା ସମୁଜ୍ଜ୍ୱଳ ମଣି ଏବଂ ତାଙ୍କ ଶ୍ୱେତ ବର୍ଣ୍ଣ ବିଶିଷ୍ଟ କାଞ୍ଚୁଲା ଓ ପରିଧେୟ ଦେଖିଲେ ସେ ନାଗକନ୍ୟା ବୋଲି ମନେହେଉଥାନ୍ତି । ତାଙ୍କର ରତ୍ନଭୂଷଣ ଏବଂ ପରିଧେୟରେ ଥିବା ମୁକ୍ତା ପୁଞ୍ଜ ସମୁଦ୍ର ତରଙ୍ଗର ଭ୍ରମ ସୃଷ୍ଟି କରୁଥିଲା । ସେ ଅତ୍ୟନ୍ତ ଲାବଣ୍ୟବତୀ ଥିଲେ । କେଶପାଶ, କର୍ଣ୍ଣ ଏବଂ କଣ୍ଠସ୍ଥିତ ପୁଷ୍ପଭୂଷଣରେ ସେ ଉଦ୍ୟାନ ଦେବତା ପରି ଦେଖାଯାଉଥିଲେ । ତାଙ୍କ କରପଦ୍ମ ଯୁଗଳ ନବପଲ୍ଲବିତ କୋମଳ ପତ୍ରରାଜି ପରି ଶୋଭାପାଉଥାଏ । ସେ ଏକ ଚଳମାନ ପୁଷ୍ପିତ ଲତା ପରି ଦେଖାଯାଉଥାନ୍ତି ।

ସେହି ଅପୂର୍ବ ଲାବଣ୍ୟମୟୀ କନ୍ୟାଜଣକ ମଦିରାବତୀ ଭାବି ମୋ ନିକଟରେ ଆସି ବସିଲେ । ମୁଁ ତାଙ୍କୁ ଦେଖି ବିଚଳିତ ହୋଇପଡ଼ିଲି । ସେ ମୋର ହୃଦୟ ହରଣ କରିଥିବା ସେହି କନ୍ୟା ଥିଲେ । ଶଙ୍ଖହ୍ରଦ ସରୋବରରେ ସ୍ନାନ କରିବାପାଇଁ ଆସିଥିବା ବେଳେ ମୁଁ ଏହାଙ୍କୁ ହିଁ ହସ୍ତୀ ମୁଖରୁ ରକ୍ଷା କରିଥିଲି । ସେ ଜନଗହଳି ମଧ୍ୟରେ କେଉଁଆଡ଼େ ଚାଲିଯାଇଥିଲେ । ବର୍ତ୍ତମାନ କାକତାଳୀୟ ନ୍ୟାୟରେ ତାଙ୍କୁ ଏଠାରେ ଦେଖି ମୁଁ ସ୍ୱପ୍ନ ନା ବାସ୍ତବ ବାରିପାରିଲି ନାହିଁ । ବିଭିନ୍ନ ପ୍ରକାର ଆଶଙ୍କା ଓ ଉତ୍ତେଜନା ମଧ୍ୟରେ ମୁଁ ବୁଡ଼ିଗଲି ।

କନ୍ୟାଜଣକ ନିର୍ନିମେଷ ନୟନରେ ମୋତେ ଚାହିଁଥିବା ଦେଖି ପରିଚାରିକାମାନେ ତାଙ୍କର ଏପରି ଆଚରଣର କାରଣ ଜିଜ୍ଞାସା କରନ୍ତେ ସୁନ୍ଦରୀ ନିଜର ମନୋଭାବ ଗୋପନ ପୂର୍ବକ କହିଲେ, 'ମଦିରାବତୀ ମୋର କିପରି ପ୍ରିୟସଖୀ, ତାହା କଣ ତମେ ଜାଣିନାହଁ । ବିବାହ ପରେ ସେ ଶ୍ୱଶୁରାଳୟକୁ ଚାଲିଯିବେ । ତାଙ୍କ ବିୟୋଗରେ ମୋର ରହିବା ସମ୍ଭବ ନୁହେଁ । ଏଣୁ ମୋ ମନରେ ଅସହ୍ୟ ଦୁଃଖ ଜାତ ହେଉଛି । ତୁମେ ସବୁ ବର୍ତ୍ତମାନ ଏଠାରୁ ଚାଲିଯାଅ । ମୁଁ ଏକାନ୍ତରେ ପ୍ରିୟ ସହଚରୀଙ୍କ ସହିତ ବାର୍ତ୍ତାଳାପ କରି କିଛି ସମୟ ଆନନ୍ଦରେ କଟାଇବି ।'

ସହଚରୀମାନଙ୍କୁ ସେଠାରୁ ପଠାଇଦେଇ ସେ ନିଜେ ଉଠି ଦ୍ୱାରଗୁଡ଼ିକୁ ଶୃଙ୍ଖଳାବଦ୍ଧ କଲେ । ମୋତେ ମଦିରାବତୀ ବୋଲି ମନେକରି ସେ କହିବାକୁ ଲାଗିଲେ—

''ପ୍ରିୟ ମଦିରାବତି ! ତୁମେ କାହାକୁ ଭଲପାଇଥିଲ ଏବଂ କାହାକୁ ବିବାହ କରିବାକୁ ଯାଉଛ ! ଏହାଠାରୁ ବଳି ଦୁଃଖ ଆଉ କଣ ଥାଇପାରେ ? ତଥାପି ପୂର୍ବରୁ ପରିଚିତ ଥିବା ଯୋଗୁଁ ତୁମେ ତୁମର ସେହି ପ୍ରାଣପ୍ରିୟ ପୁରୁଷଙ୍କୁ କେଉଁଠି ନା କେଉଁଠି କେତେବେଳେ ହେଲେ ଦେଖିବାକୁ ପାଇବ । ସଖି, ମୁଁ ଯେପରି ତୁମର ବିଶ୍ୱାସର ପାତ୍ରୀ ସେହିପରି ତୁମେ ମଧ୍ୟ ମୋର ବିଶ୍ୱାସଭାଜନ । ତେଣୁ ମୁଁ ତୁମକୁ ନିଜର ଦୁଃଖ ଜଣାଉଛି । ମୁଁ ଯେଉଁ ଦୁଃଖଲାଭ କରିଛି, ତାହା ଶୁଣିଲେ ତୁମେ ବିଶ୍ୱାସ କରିପାରିବ ନାହିଁ । ତୁମର ବିବାହ ପରେ ଭବିଷ୍ୟତ ବିରହ ଦୁଃଖ କିପରି ସହ୍ୟ କରାଯାଇପାରିବ ତାହା ଚିନ୍ତା କରି ମୁଁ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଛି । ମନ ଭୁଲାଇବା ପାଇଁ ମୁଁ ସଖୀ ଓ ପରିଚାରିକା-ମାନଙ୍କ ସହିତ ଦିନେ ଶଙ୍ଖହ୍ରଦ ସରୋବରରେ ସ୍ନାନ କରିବାପାଇଁ ଯାଇଥାଏ । ସେଠାରେ ଜଣେ ସ୍ୱଳ୍ପବୟସ୍କ ସୁନ୍ଦର ବିପ୍ରଯୁବକ ମୋର ଦୃଷ୍ଟି ଆକର୍ଷଣ କଲେ । ତାଙ୍କ ମୁଖକମଳ ନୂତନ ଭାବେ ଗଜୁରି ଆସୁଥିବା ଶ୍ମଶ୍ରୁରୂପକ ଶିଶୁ ଭ୍ରମର ପୁଞ୍ଜ ଦ୍ୱାରା ଶୋଭା ପାଉଥାଏ । ସେ ଦିବାଭାଗରେ ସ୍ୱର୍ଗରୁ ଓହ୍ଲାଇ ଆସିଥିବା ଚନ୍ଦ୍ର କିମ୍ବା ସୌନ୍ଦର୍ଯ୍ୟ ରୂପିଣୀ ହସ୍ତିନୀର

ବନ୍ଧନ ସ୍ତମ୍ଭ ପରି ଶୋଭା ପାଉଥାନ୍ତି । ବନ ମଧ୍ୟରେ କଠୋର ତପସ୍ୟା କରି ମୁନିକନ୍ୟା-ମାନେ ଯଦି ଏପରି ଜଣେ ସୁନ୍ଦର ପୁରୁଷଙ୍କ ସାକ୍ଷାତ ଲାଭ ନକରନ୍ତି, ତେବେ ସେମାନଙ୍କ ଶ୍ରମ ବ୍ୟର୍ଥ ବୋଲି କହିବାକୁ ହେବ । ତାଙ୍କୁ ଦେଖିବା ମାତ୍ରେ ମୋର କନ୍ଦର୍ପ ବେଦନା ଆରମ୍ଭ ହେଲା । ମୋ ହୃଦୟରୁ ଲଜ୍ଜା ଓ ଭୟ ପଳାୟନ କଲେ । ମୁଁ ସେହି ସୁନ୍ଦର ଯୁବକଙ୍କ ପ୍ରତି କଟାକ୍ଷପାତ କରି ନିର୍ଲଜ୍ଜ ଓ ନିର୍ଭୀକ ଭାବରେ ଚାହିଁରହିଥିବା ବେଳେ ଅକସ୍ମାତ୍ ଏକ ଉନ୍ମତ୍ତ ହସ୍ତୀ ସେଠାରେ ଆସି ପହଞ୍ଚିଲା । ମୋର ପରିଚାରିକାମାନେ ମୋତେ ଛାଡ଼ି ପଳାୟନ କଲେ । ମୁଁ ଭୟଭୀତ ହୋଇପଡ଼ିଲି । ଯୁବକ ମୋର ସ୍ଥିତି ଅନୁମାନ କରି ମୋତେ କୋଳେଇ ନେଲେ । ଆମେ ଜନଗହଳି ମଧ୍ୟକୁ ଚାଲିଗଲୁ ।

'ସଖି, ସେହି ଯୁବକଙ୍କ ଅମୃତମୟ ଆଲିଙ୍ଗନ ଲାଭ କରି ମୁଁ ହାତୀକୁ ଭୁଲିଗଲି । ଭୟ କଣ, ମୁଁ କିଏ ଏବଂ ମୁଁ କେଉଁଠି ଅଛି—ଏସବୁର ଜ୍ଞାନ ମୋର ରହିଲା ନାହିଁ ।'

କିଛି ସମୟ ପରେ ମୋର ପରିଚାରିକାମାନେ ସେଠାରେ ଆସି ପହଞ୍ଚିଲେ । ଦୁର୍ଭାଗ୍ୟବଶତଃ ସେତେବେଳେ ସେହି ହସ୍ତୀଟି ଆସି ଆମ ନିକଟରେ ପହୁଁଞ୍ଚିଲା । ସତେ ଯେପରି ସେ ଥିଲା ମୋ ପାଇଁ ମୂର୍ତ୍ତିମାନ୍ ବିରହ । ପରିଚାରିକାମାନେ ମୋତେ ଯୁବକଙ୍କ କୋଳରୁ ଆମ ବାସଭବନକୁ ନେଇଆସିଲେ । ଯୁବକ ମଧ୍ୟ ସେହି ଜନଗହଳି ମଧ୍ୟରେ କେଉଁଆଡ଼େ ହଜିଗଲେ ଜାଣିପାରିଲି ନାହିଁ । ମୁଁ ହାତରେ ପାଇଥିବା ବହୁମୂଲ୍ୟ ନିଧି ହରାଇ ବସିଲି ।

ସେହିଦିନଠାରୁ ମୁଁ ସେହି ପ୍ରାଣପ୍ରିୟ ଯୁବକଙ୍କ ଚିନ୍ତାରେ ସନ୍ତପ୍ତ ହେଉଛି । ଗଭୀର ନିଦ୍ରାରେ ଶୋଇ ତାଙ୍କୁ ସ୍ୱପ୍ନରେ ଦେଖିବାପାଇଁ ଚେଷ୍ଟା କଲେ ସୁଦ୍ଧା ଦୁଃଖହାରିଣୀ ନିଦ୍ରାଦେବୀ ମୋ ପ୍ରତି ଅନୁଗ୍ରହ କରୁନାହାଁନ୍ତି । ମୁଁ ରାତିସାରା ଚକ୍ରବାକୀ ପରି କେବଳ ବିଳାପ କରୁଛି । ମୁଁ ସେହି ଯୁବକଙ୍କ ନାମ ଧାମ ଇତ୍ୟାଦି ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ଏପରି ଉପାୟଶୂନ୍ୟ ଦୁଃଖ ଅନୁଭବ କରୁଥିବାବେଳେ ତୁମେ ମୋର ଏକମାତ୍ର ସହଚରୀ ଥିଲ । ତୁମ ସହିତ କଥାବାର୍ତ୍ତା କରି ମୁଁ କିଛି ସମୟ ପାଇଁ ଦୁଃଖ ଭୁଲିଯାଉଥିଲି । ସଖି, ଏବେ ତାହା ମଧ୍ୟ ଆଉ ସମ୍ଭବ ନୁହେଁ । ପ୍ରିୟ ମଦିରାବତୀ, ବର୍ତ୍ତମାନ ମୋ ଜୀବନର ଅନ୍ତିମ ସମୟ ଉପସ୍ଥିତ । ତେଣୁ ଶେଷଥରପାଇଁ ତୁମ ସହିତ ଆଳାପ କରି କିଛି ସୁଖ ଅନୁଭବ କରୁଛି ।''

ଅମୃତବୃଷ୍ଟି ସଦୃଶ ମୋର ଶ୍ରବଣେନ୍ଦ୍ରିୟ ଯୁଗଳକୁ ଉଲ୍ଲସିତ କରି ସେ ନିଜ ମୁଖମଣ୍ଡଳକୁ ଅଞ୍ଜନ ମିଶ୍ରିତ ଅଶ୍ରୁଦ୍ୱାରା କଳଙ୍କିତ କରୁଥାନ୍ତି । ଶେଷଥର ପାଇଁ

ମଦିରାବତୀଙ୍କ ମୁଖ ଦର୍ଶନ କରିବେ ବୋଲି ସେ ଯେତେବେଳେ ମୋର ଓଢ଼ଣାଟିକୁ ଦୂରେଇନେଲେ ସେତେବେଳେ ମୋତେ ଚିହ୍ନିପାରି ହର୍ଷ, ଭୟ ଓ ଆଶ୍ଚର୍ଯ୍ୟରେ ଅସ୍ଫୁଟ ଚିତ୍କାର କରିଉଠିଲେ ।

ମୁଁ କହିଲି, 'ସୁନ୍ଦରି ! ଆଉ ସମ୍ଭ୍ରମ କାହିଁକି ? ଯେଉଁ ଯୁବକଙ୍କ ବିଷୟରେ ତୁମେ ମୋତେ ଏତେ କଥା କହିଲ, ମୁଁ ତ ସେହି ଯୁବକ । ଭାଗ୍ୟ ଅନୁକୂଳ ହେଲେ ଏପରି ଅଚିନ୍ତନୀୟ ଘଟଣା ସବୁ ଘଟାଇଥାଏ ।'

**'ବିଧିର୍ହି ଘଟୟତ୍ୟର୍ଥାନଚିନ୍ତ୍ୟାନପି ସମ୍ମୁଖଃ'**

'ପ୍ରିୟେ ! ତୁମ ପାଇଁ ମୁଁ ମଧ ବହୁ ଦୁଃସହ ଦୁଃଖ ସହ୍ୟ କରିଛି । ବିଧାତାର ସୃଷ୍ଟି ବଡ଼ ବିଚିତ୍ର । ମୁଁ ମୋର ଦୁଃଖଦ ଅନୁଭୂତି ତୁମକୁ ପରେ କହି ଶୁଣାଇବି । ବର୍ତ୍ତମାନ ଆଳାପ ବିଳାପର ସମୟ ନୁହେଁ । ଆମେ ଏଠାରୁ କିପରି ଚାଲିଯିବା ତାହାହିଁ ଏକମାତ୍ର ଚିନ୍ତାର ବିଷୟ ।'

ମୋ କଥା ଶୁଣି ସେହି କନ୍ୟା କିଛି ସମୟ ଚିନ୍ତାକରି କହିଲେ, 'ଏହି ଘରର ପଛପଟେ ଗୋଟିଏ ଦ୍ୱାର ଅଛି । ଆମେ ସେହି ବାଟରେ ବାହାରି ଯାଇପାରିବା । ମୋର ପିତା ଜଣେ କ୍ଷତ୍ରିୟ । ତେଣୁ ସେ ନିଜ ଘର ପଛରେ ଥିବା ଉଦ୍ୟାନ ମଧ୍ୟରେ ଗୋଟିଏ ଗୁପ୍ତ ପଥ ରଖିଛନ୍ତି । ଆମେ ସେହି ପଥରେ ଯେକୌଣସି ଦିଗକୁ ଇଚ୍ଛାନୁଯାୟୀ ଚାଲିଯାଇ ପାରିବା ।' ନିଜର ଅଳଙ୍କାରଗୁଡ଼ିକୁ ଏକତ୍ର କରି ସେ ଯିବା ପାଇଁ ପ୍ରସ୍ତୁତ ହେଲେ । ତାଙ୍କ ପ୍ରଦର୍ଶିତ ମାର୍ଗରେ ମୁଁ ବାହାରିଲି । ଧରାପଡ଼ିଯିବା ଭୟରେ ଶୀଘ୍ର ଶୀଘ୍ର ଆମେ ରାତି ମଧ୍ୟରେ ବହୁ ଦୂରପଥ ଅତିକ୍ରମ କରିଗଲୁ । ରାତି ଶେଷ ହେଲାବେଳକୁ ଆମେ ଆସି ଗୋଟିଏ ବିଶାଳ ଅରଣ୍ୟ ମଧ୍ୟରେ ପହଞ୍ଚିଥାଉ । କେବଳ ଆମ ସମ୍ପର୍କରେ ସୁଖଦୁଃଖ ହୋଇ ସେହି ଅରଣ୍ୟ ରାସ୍ତାରେ ଚାଲୁଥିବା ବେଳେ ସମୟ ଜଣାଯାଉ ନଥାଏ । ସୂର୍ଯ୍ୟ ମୁଣ୍ଡ ଉପରକୁ ଆସିଯାଇଥାନ୍ତି । ପ୍ରଜାପୀଡ଼କ ରାଜା ଯେପରି କରଭାର ଦ୍ୱାରା ରାଜ୍ୟ ଓ ରାଜ୍ୟବାସୀଙ୍କୁ ସନ୍ତପ୍ତ କରୁଥାଏ, ସେହିପରି ସେହି ଜନମାନବ ଶୂନ୍ୟ, ଆଶ୍ରୟସ୍ଥଳ ରହିତ ବନଭୂମିକୁ ସୂର୍ଯ୍ୟଙ୍କ କିରଣଜାଳ ସନ୍ତପ୍ତ କରୁଥାଏ । କ୍ଷୁଧା ଓ ତୃଷାରେ ଆମେ କାତର ହୋଇପଡ଼ିଲୁ । ମୁଁ କୌଣସିମତେ ପ୍ରଣୟିନୀଙ୍କୁ ଧରି ଗୋଟିଏ ଛାୟା ପ୍ରଦାନକାରୀ ବୃକ୍ଷତଳେ ପହଞ୍ଚିଲି । ନିଜର ଉତ୍ତରୀୟ ଦ୍ୱାରା ତାଙ୍କୁ ବିଞ୍ଚୁଥିବା ବେଳେ ହଠାତ୍ କୌଣସି ଶିକାରୀ ଦ୍ୱାରା ଆହତ ହୋଇ ଏକ ବଣୁଆ ମଇଁଷି ଆମଆଡ଼କୁ ଦୌଡ଼ି ଆସିଲା ।

ତାକୁ ଦେଖି ମୁଁ ଭୟଭୀତ ହୋଇପଡ଼ିଲି । ଏ ସମୟରେ ଜଣେ ଧନୁର୍ଦ୍ଧର ବୀର ପୁରୁଷ ଅଶ୍ୱପୃଷ୍ଠରେ ଆସି ସେଠାରେ ଉପସ୍ଥିତ ହେଲେ । ସେ ପଶୁଟିକୁ ଆହତ କରିଥାନ୍ତି । ତାଙ୍କଦ୍ୱାରା ନିକ୍ଷିପ୍ତ ଭଲ୍ଲ ଅସ୍ତ୍ରର ଦ୍ୱିତୀୟ ପ୍ରହାରରେ ମଇଁଷିଟି ପଞ୍ଚତ୍ୱ ପ୍ରାପ୍ତ ହେଲା । ଧନୁର୍ଦ୍ଧରଙ୍କ ଆକୃତି ଦେଖିଲେ ସେ ଜଣେ ମହାନ୍ ପରାକ୍ରମଶାଳୀ ବୋଲି ମନେହେଉଥାନ୍ତି । ସେ ଆମ୍ଭମାନଙ୍କୁ ଦେଖି ନିକଟକୁ ଆସିଲେ । ଆମେ କିଏ, ମହିଳାଜଣକ ମୋର କଣ ହୁଅନ୍ତି; ଆମେ ଦୁଇଜଣ କିପରି ଏଠାକୁ ଆସିଛୁ ଇତ୍ୟାଦି ପ୍ରଶ୍ନର ଉତ୍ତର ଦେଇ ମୁଁ ନିଜର ଯଜ୍ଞୋପବୀତ ପ୍ରଦର୍ଶନ ପୂର୍ବକ ସତମିଛ କରି ତାଙ୍କୁ କହିଲି, 'ମୁଁ ଜଣେ ବ୍ରାହ୍ମଣ ସନ୍ତାନ । ଏ ମୋର ପତ୍ନୀ । କୌଣସି କାର୍ଯ୍ୟବଶତଃ ଆମେ ଦୂରରୁ ଆସି ଏଠାରେ ପହଞ୍ଚିଛୁ । ଆମ ସହିତ ଥିବା ଅନୁଚରମାନେ ମାର୍ଗ ମଧ୍ୟରେ ଦସ୍ୟୁମାନଙ୍କଦ୍ୱାରା ଆକ୍ରାନ୍ତ ହୋଇ ପ୍ରାଣ ହରାଇଛନ୍ତି । ଆମେ ଭୟରେ ଏହି ଅରଣ୍ୟ ମଧ୍ୟରେ ପ୍ରବେଶ କରିଯାଇଛୁ । ଅରଣ୍ୟର ରାସ୍ତାଘାଟ ଆମର ଅଜ୍ଞାତ । ଇତସ୍ତତଃ ବୁଲି ଆମେ କ୍ଳାନ୍ତ ହୋଇପଡ଼ିଛୁ । ବର୍ତ୍ତମାନ ଆପଣଙ୍କ ସହିତ ସାକ୍ଷାତ ହେଲା । ଆପଣଙ୍କ ଦର୍ଶନଲାଭ କରି ଆମର ଭୟ ଓ କ୍ଳାନ୍ତି ଦୂର ହୋଇଛି ।'

ମୋ କଥାଶୁଣି ଏବଂ ମୋତେ ବ୍ରାହ୍ମଣ ବୋଲି ଜାଣି ସେ ମୋ ପ୍ରତି ଅନୁକମ୍ପା ପ୍ରକାଶ କରି କହିଲେ, 'ମୁଁ ହେଉଛି ବନେଚରମାନଙ୍କ ଅଧିପତି । ମୃଗୟା ନିମିତ୍ତ ବାହାରି ଏଠାରେ ଆସି ପହଞ୍ଚିଛି । ତୁମେ ଦୁହେଁ ବହୁତ ଥକି ଯାଇଥିବା ପରି ମନେହେଉଛ । ଚାଲ, ଆଜି ମୋର ଅତିଥି ହୁଅ । ଏହି ନିକଟରେ ହିଁ ମୁଁ ରହେ । ତୁମେ ଦୁହେଁ ମୋ ସହିତ ସେଠାକୁ ଚାଲ ।' ଏତିକି କହି ସେ ମୋର ପଥକ୍ଳାନ୍ତ ପ୍ରଣୟିନୀଙ୍କୁ ନିଜ ଅଶ୍ୱ ପୃଷ୍ଠରେ ବସାଇଲେ । ଆମେ ଦୁହେଁ ଚାଲି ଚାଲି ତାଙ୍କ ଗୃହରେ ପହଞ୍ଚିଲୁ । ସେ ଘନିଷ୍ଠ ବନ୍ଧୁପରି ଆମକୁ ସ୍ନାନ ପାନ କରାଇଲେ । ତାଙ୍କ ସତ୍କାରରେ ଆମେ ପ୍ରୀତ ହେଲୁ । ଅସ୍ଥାନରେ ମଧ୍ୟ ଏହିପରି ଜଣେ ଜଣେ ମହାତ୍ମା ଜନ୍ମ ନେଇଥାନ୍ତି ।

ଏହାପରେ ସେ ଆମକୁ ସେହି ଅରଣ୍ୟ ସୀମାରେ ଛାଡ଼ିଦେବାପାଇଁ କିଛି ଅନୁଚରଙ୍କୁ ନିର୍ଦ୍ଦେଶ ଦେଲେ । ଆମେ ନିର୍ବିଘ୍ନରେ ଅରଣ୍ୟ ପାର ହେଲୁ । ଆଗରେ ଏକ ଅଗ୍ରହାର ଥିଲା । ସେଠାରେ ରାଜଦତ୍ତ ବୃତ୍ତି ଭୋଗ କରି ନୈଷ୍ଠିକ ବ୍ରାହ୍ମଣମାନେ ବାସ କରନ୍ତି । ଆମେ ସେଠାରେ କିଛିଦିନ ରହି ବୈଦିକ ରୀତିରେ ବିବାହ ବନ୍ଧନରେ ଆବଦ୍ଧ ହେଲୁ ।

ପ୍ରିୟତମା ପତ୍ନୀଙ୍କ ସହିତ ଆଜି ମୁଁ ଗଙ୍ଗାସ୍ନାନପାଇଁ ଏଠାରେ ଆସି ପହଞ୍ଚିଥିଲି । ଏଠାରେ ମିତ୍ରବରଙ୍କ ସହିତ ମୋର ମିଳନ ଘଟିଲା । ଆଉ ଆପଣଙ୍କ ଦର୍ଶନ ଲାଭକରି ମୁଁ କୃତାର୍ଥ ହୋଇଛି । ସଂକ୍ଷେପରେ ଏହାହିଁ ମୋର ବିଚିତ୍ର ଅନୁଭୂତିର କାହାଣୀ ।'

ବ୍ରାହ୍ମଣଙ୍କ କଥାଶୁଣି ନରବାହନଦତ୍ତ ପ୍ରଭୂତ ଆନନ୍ଦ ଲାଭ କଲେ । ନିଜର ସାତ୍ତ୍ୱିକ ଗୁଣରାଶି ଯୋଗୁଁ ଅଭୀଷ୍ଟ ଫଳ ଲାଭ କରିଥିବାରୁ ସେ ତାଙ୍କର ଯଥେଷ୍ଟ ପ୍ରଶଂସା କଲେ । ସଂଯୋଗବଶତଃ ବହୁଦିନ ଧରି ନରବାହନଦତ୍ତଙ୍କୁ ଅନ୍ୱେଷଣ କରୁଥିବା ଗୋମୁଖ ପ୍ରଭୃତି ମିତ୍ରମାନେ ଆକସ୍ମିକ ଭାବେ ଆସି ସେଠାରେ ଉପସ୍ଥିତ ହେଲେ । ସେମାନେ ରାଜପୁତ୍ରଙ୍କୁ ଆନନ୍ଦାଶ୍ରୁରେ ଅଭିଷେକ କରି ପ୍ରଣାମ କରନ୍ତେ ସେ ପ୍ରତ୍ୟେକଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କଲେ । ଲଳିତ ଲୋଚନା, ନିଜର ପ୍ରିୟ ସଚିବ ଏବଂ ଦୁଇ ନୀତିଜ୍ଞ ବ୍ରାହ୍ମଣ ଯୁବକଙ୍କ ସହିତ ବତ୍ସରାଜ ଉଦୟନଙ୍କ ପ୍ରିୟପୁତ୍ର ନରବାହନଦତ୍ତ ସ୍ୱ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ ।





ତୁଷ୍ଟେନ ଯେନ ଦେହାର୍ଧମପ୍ୟୁମାୟୈ ସମର୍ପିତମ୍ ।
ସ ବୋ ଦଦାତ୍ୱଭିମତଂ ବରଦଃ ପାର୍ବତୀପତିଃ ।।
ନିଶି ବିଘ୍ନଜିତୋ ବୋଽବ୍ୟାତ୍ତାଣ୍ଡବୋଦ୍ଦଣ୍ଡିତଃ କରଃ ।
ଶୋଣଶ୍ଚନ୍ଦ୍ରାତପତ୍ରସ୍ୟ ତନ୍ୱନ୍ବିଦ୍ରୁମଦଣ୍ଡତାମ୍ ।।



# ପ୍ରଥମ ତରଙ୍ଗ

## ନରବାହନଦତ୍ତ କଥା

ବତ୍ସେଶ୍ୱର ଉଦୟନଙ୍କ ପୁତ୍ର ନରବାହନଦତ୍ତ କୌଶାମ୍ବୀ ନଗରୀରେ ପିତାମାତାଙ୍କ ସହିତ ଜୀବନଯାପନ କରୁଥାନ୍ତି । ପଟ୍ଟମହିଷୀ ମଦନମଞ୍ଜୁକା ତଥା ଅନ୍ୟ ତ୍ରିଭୁବନ ସୁନ୍ଦରୀ ପତ୍ନୀ ଏବଂ ଗୋମୁଖ ପ୍ରଭୃତି ସଚିବଙ୍କ ସହିତ ନୃତ୍ୟ, ସଙ୍ଗୀତ ଓ ମଧୁର କଥାଳାପରେ ସମୟ ଆନନ୍ଦରେ ବିତିଯାଉଥିଲା । ସମସ୍ତ ଅଭିଳାଷ ପୂର୍ଣ୍ଣ ହେଉଥିବାରୁ ତାଙ୍କ ମନରେ ଲେଶମାତ୍ର ଦୁଃଖ ନଥାଏ ।

ଦିନେ ବିନାମେଘରେ ବଜ୍ରପାତ ତୁଲ୍ୟ ଅଗ୍ରମହିଷୀ ମଦନମଞ୍ଜୁକା ହଠାତ୍ ରାଜଭବନରୁ ଅନ୍ତର୍ହିତ ହୋଇଗଲେ । ନିଜେ ନରବାହନଦତ୍ତ ଏବଂ ପରିଚାରିକାମାନେ ତାଙ୍କର କୌଣସି ସନ୍ଧାନ ପାଇପାରିଲେ ନାହିଁ । ରାତ୍ରିର ବିରହରେ ଚନ୍ଦ୍ରପରି ରାଜକୁମାରଙ୍କ ଶରୀର କାନ୍ତି ମ୍ଳାନ ହୋଇଗଲା । ତାଙ୍କ ମନରେ ବିଭିନ୍ନ ଆଶଙ୍କା ଓ କଳ୍ପନା ଜାଗ୍ରତ ହୋଇ ତାଙ୍କୁ ବିହ୍ୱଳ କରିପକାଇଲେ । ପ୍ରିୟତମା ରାଣୀ କେଉଁଠି ଲୁଚିଥାଇପାରନ୍ତି କିମ୍ବା ନିଜର ଅଜ୍ଞାତ ଅପରାଧରୁ ସେ ରୋଷାନ୍ୱିତା ହୋଇଥାଇପାରନ୍ତି କିମ୍ବା ମାୟାବଳରେ ତାଙ୍କୁ କିଏ ଅପହରଣ କରି ନେଇଯାଇଥାଇପାରେ, ଏହିପରି ନାନା କଳ୍ପନା ଜଳ୍ପନା ତାଙ୍କ ମନରେ ଉଦୟ ହେଉଥାଏ । ସେ ବିଭିନ୍ନ ସ୍ଥାନ ବୁଲି ରାଜପ୍ରାସାଦର କୋଣ ଅନୁକୋଣ ସନ୍ଧାନ କରୁଥାନ୍ତି । କିନ୍ତୁ ତାଙ୍କ ସମସ୍ତ ଚେଷ୍ଟା ବିଫଳ ହେବାରୁ ସେ ବିରହ ରୂପକ ଦାବାନଳରେ ଅଧିକ ସନ୍ତପ୍ତ ହୋଇଉଠିଲେ । ତାଙ୍କର ଏ ପ୍ରକାର ଅବସ୍ଥା ଦେଖି ଏବଂ ସମସ୍ତ ଘଟଣା ଶୁଣି ପିତା ଉଦୟନ, ମାତା ବାସବଦତ୍ତା ଓ ପଦ୍ମାବତୀ, ଗୋମୁଖ ପ୍ରଭୃତି ସଚିବ ଏବଂ ଭୃତ୍ୟ ପରିଜନମାନଙ୍କ ଦୁଃଖର ସୀମା ରହିଲା ନାହିଁ । ବିରହ ବେଦନା ଶାନ୍ତି ପାଇଁ ପଦ୍ମପୁଷ୍ପର ମାଳା, ମୃଣାଳ, ଚନ୍ଦନ, ପଦ୍ମପତ୍ର ପ୍ରଭୃତି ଉପଚାର ସଂଗୃହୀତ ହୋଇଆସିଲା କିନ୍ତୁ ଏସବୁ ଦ୍ୱାରା ନରବାହନଦତ୍ତଙ୍କ ବିରହତାପ ଶାନ୍ତ ହେବା ପରିବର୍ତ୍ତେ ଅଧିକ ବୃଦ୍ଧି ହେବାକୁ ହିଁ ଲାଗିଲା । ବିଦ୍ୟାଭ୍ରଷ୍ଟା ବିଦ୍ୟାଧରୀ ତୁଲ୍ୟ କନ୍ୟା ମଦନମଞ୍ଜୁକାର ଅଦର୍ଶନରେ ମାତା କଳିଙ୍ଗସେନା ମୂର୍ଚ୍ଛିତା ହୋଇପଡ଼ିଲେ ।

ଏ ସମୟରେ ଅନ୍ତଃପୁରର ଜଣେ ପ୍ରତିହାରିଣୀ ସେମାନଙ୍କ ସମ୍ମୁଖକୁ ଆସି କହିଲା, 'ପ୍ରାସାଦର ଶିଖରରେ ଦିନେ ମଦନମଞ୍ଜୁକାଙ୍କୁ ଦେଖି ମାନସବେଗ ନାମକ ଜଣେ ବିଦ୍ୟାଧର ଯୁବକ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ । ସେ ଆକାଶରୁ ଅବତରଣ କରି ମାତା କଳିଙ୍ଗସେନାଙ୍କ ନିକଟରେ କନ୍ୟାର ପାଣିପ୍ରାର୍ଥନା କରିଥିଲେ କିନ୍ତୁ ଏଥିପାଇଁ କଳିଙ୍ଗସେନା ସମ୍ମତି ପ୍ରକାଶ ନକରିବାରୁ ସେ ଭଗ୍ନ ମନୋରଥ ହୋଇ ସ୍ୱ ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିଯାଇଥିଲେ । ସେହି ବିଦ୍ୟାଧର ଗୋପନରେ ଆସି ମହାରାଣୀଙ୍କୁ ଅପହରଣ କରିନେଇ ଥାଇପାରେ । ଯଦିଓ ଦିବ୍ୟପୁରୁଷମାନେ ପରସ୍ତ୍ରୀକୁ ତାର ବିନା ଅନୁମତିରେ ନିଜର ସ୍ତ୍ରୀ ରୂପେ ସ୍ୱୀକାର କରନ୍ତି ନାହିଁ ତଥାପି ପ୍ରେମାନ୍ଧ ବ୍ୟକ୍ତିମାନେ ସୁମାର୍ଗ ଓ କୁମାର୍ଗ ପ୍ରତି ଧ୍ୟାନ ଦେବାର ଅବକାଶ ନଥାଏ ।

'ତଥାପ୍ୟମାର୍ଗଂ ମାର୍ଗଂ ବା ରାଗାନ୍ଧଃ କୋ ହି ପଶ୍ୟତି'

ପ୍ରତିହାରିଣୀଠାରୁ ଏହାଶୁଣି ନରବାହନଦତ୍ତ ଚିନ୍ତା, କ୍ରୋଧ ଏବଂ ବିରହବେଦନାରେ କମଳପତ୍ରପରି ଚଞ୍ଚଳ ହୋଇଉଠିଲେ । ତାଙ୍କ ମନୋଭାବ ଜ୍ଞାତ ହୋଇ ମନ୍ତ୍ରୀ ରୁମଣ୍ୱାନ୍ କହିଲେ, 'ଆମ ନଗରୀ ତ ଚତୁର୍ଦ୍ଦିଗରୁ ସୁରକ୍ଷିତ । ବିନା ଅନୁମତିରେ ଏହା ମଧ୍ୟରେ ପ୍ରବେଶ କରିବା କିମ୍ବା ଏଠାରୁ ବହିର୍ଗତ ହେବା ଅସମ୍ଭବ । ଭଗବାନ ମହାଦେବଙ୍କ କୃପାରୁ ମଦନମଞ୍ଜୁକାଙ୍କ କୌଣସି ଅନିଷ୍ଟ ଘଟିବା ମଧ୍ୟ ସମ୍ଭବ ନୁହେଁ । ତେଣୁ ସେ ପ୍ରଣୟକୋପରୁ ଏଠି କେଉଁଠି ହିଁ ଥିବେ । ଏ ସମ୍ପର୍କରେ ମୁଁ ଗୋଟିଏ ଶୁଣିଥିବା କଥା କହୁଛି, ଆପଣମାନେ ଶୁଣନ୍ତୁ–

## ଅଙ୍ଗିରା ଓ ଅଶ୍ରୁତା କଥା

ପୂର୍ବ କାଳରେ ଅଙ୍ଗିରା ନାମରେ ଜଣେ ମହାମୁନି ଥିଲେ । ସେ ଅଷ୍ଟାବକ୍ରଙ୍କ କନ୍ୟା ସାବିତ୍ରୀଙ୍କ ପ୍ରତି ଆକୃଷ୍ଟ ହୋଇ ଋଷିଙ୍କ ନିକଟରେ ତାଙ୍କ ସହିତ କନ୍ୟାର ବିବାହ ଦେବାପାଇଁ ପ୍ରାର୍ଥନା କଲେ । ତପସ୍ୱୀ ଅଙ୍ଗିରା ଯଦିଓ ସର୍ବଗୁଣରେ ସମ୍ପନ୍ନ ଥିଲେ ତଥାପି ଅଷ୍ଟାବକ୍ର କନ୍ୟା ପ୍ରଦାନପାଇଁ ପୂର୍ବରୁ ଅନ୍ୟକୁ ପ୍ରତିଶ୍ରୁତି ଦେଇସାରିଥିବା ଯୋଗୁଁ ତାଙ୍କ ଅଭିଳାଷ ପୂରଣ କରିପାରିଲେ ନାହିଁ । କିନ୍ତୁ ସେ ନିଜ ଭ୍ରାତାଙ୍କ କନ୍ୟା ଅଶ୍ରୁତା ସହିତ ଅଙ୍ଗିରାଙ୍କ ବିବାହ କରାଇଲେ । ନବବିବାହିତ ପତିପତ୍ନୀ ଆନନ୍ଦରେ ଜୀବନଯାପନ କରୁଥାନ୍ତି । କିନ୍ତୁ ଅଶ୍ରୁତା ଜାଣିଥାନ୍ତି ଯେ ତାଙ୍କୁ ବିବାହ କରିବା ପୂର୍ବରୁ ଅଙ୍ଗିରା ସାବିତ୍ରୀଙ୍କ ପ୍ରତି ଆକୃଷ୍ଟ ଥିଲେ ।

ଥରେ ଅଙ୍ଗିରା ଦୀର୍ଘଦିନ ପର୍ଯ୍ୟନ୍ତ ମୌନବ୍ରତ ଧାରଣ କରି ଜପରେ ଲୀନ ଥାଆନ୍ତି । ଅଶ୍ରୁତା ପତିଙ୍କ ଜପକୁ ଚିନ୍ତା ବୋଲି ମନେକରି ତାଙ୍କୁ ବାରମ୍ବାର ଚିନ୍ତାର କାରଣ ସମ୍ପର୍କରେ ଜିଜ୍ଞାସା କରୁଥାନ୍ତି । ଅଙ୍ଗିରା ପତ୍ନୀଙ୍କ ଏ ପ୍ରକାର ପ୍ରଶ୍ନରେ ବିରକ୍ତ ନହୋଇ କୌତୁକରେ କହିଲେ ଯେ ସେ ସାବିତ୍ରୀଙ୍କୁ ଧ୍ୟାନ କରୁଅଛନ୍ତି । ଅଶ୍ରୁତା ପ୍ରକୃତ ସତ୍ୟ ପ୍ରତି ଧ୍ୟାନ ନଦେଇ ଅଷ୍ଟାବକ୍ରଙ୍କ କନ୍ୟା ସାବିତ୍ରୀଙ୍କ ପ୍ରତି ତାଙ୍କର ଅସୂୟାଭାବ ଥିବା ଯୋଗୁଁ ନିଜକୁ ଧିକ୍‌କାର କରିବାକୁ ଲାଗିଲେ । ନିଜକୁ ଅଭାଗିନୀ ମନେକରି ସେ ଶରୀର ତ୍ୟାଗ ଉଦ୍ଦେଶ୍ୟରେ ଦିନେ ଗୃହ ତ୍ୟାଗ କଲେ । ଅରଣ୍ୟ ମଧ୍ୟରେ ପ୍ରବେଶ କରି ପତିଙ୍କ ଶୁଭକାମନା ପୂର୍ବକ ସେ କୌଣସି ବୃକ୍ଷଶାଖାରେ ଆତ୍ମହତ୍ୟା ପାଇଁ ପାଶ ପ୍ରସ୍ତୁତ କରୁଥାନ୍ତି । ଏ ସମୟରେ ମନ୍ତ୍ରସ୍ୱରୂପା ସାବିତ୍ରୀ ତାଙ୍କ ସମ୍ମୁଖରେ ଆବିର୍ଭୂତା ହୋଇ କହିଲେ, 'ପୁତ୍ରି, ଏପରି ଦୁଃସାହସ କରନାହିଁ । ତୁମ ପତିଦେବ ମୋତେ ହିଁ ଧ୍ୟାନ କରୁଅଛନ୍ତି ।' ଏହା କହି ସେ ପାଶମୋଚନ କଲେ । ସାବିତ୍ରୀଙ୍କ ହସ୍ତରେ କମଣ୍ଡଳୁ ଓ କରମାଳା ରହିଥାଏ । ସେ ଭକ୍ତାନୁକମ୍ପିନୀ । ଅଶ୍ରୁତାଙ୍କୁ ଆଶ୍ୱାସନା ଦେଇ ଭଗବତୀ ସାବିତ୍ରୀ ସେଠାରୁ ଅନ୍ତର୍ହିତା ହେଲେ । ଅଶ୍ରୁତାଙ୍କ ଅଦର୍ଶନରେ ମୁନି ଅଙ୍ଗିରା ତାଙ୍କ ଅନ୍ୱେଷଣରେ ଆସି ସେଠାରେ ପହଞ୍ଚିଲେ । ଉଭୟେ ନିଜନିଜର ମନୋଭାବ ପ୍ରକାଶ କରି ପୁଣି ଆନନ୍ଦରେ ଆଶ୍ରମକୁ ଫେରିଗଲେ ।

ଏଣୁ କୌଣସି କ୍ଷୀଣ ଅପରାଧରେ ମଦନମଞ୍ଚୁକା ପ୍ରାସାଦ ମଧ୍ୟରେ ହିଁ କେଉଁଠି ଆତ୍ମଗୋପନ କରି ରହିଥାଇପାରନ୍ତି । ଶିବଙ୍କଦ୍ୱାରା ସେ ସୁରକ୍ଷିତା । ତେଣୁ ବତ୍ସରାଜଙ୍କ ପୁତ୍ରବଧୂର ଅନ୍ୱେଷଣ କରାଯାଉ ।

ରୁମଣ୍ୱାନ୍‌ଙ୍କଠାରୁ ସମୟୋପଯୋଗୀ ଗଳ୍ପଟି ଶୁଣି ରାଜା ଉଦୟନ କହିଲେ, 'ହଁ ଏପରି ହିଁ ହୋଇଥାଇପାରେ । ମଦନମଞ୍ଚୁକାର କୌଣସି ପ୍ରକାର ଅନିଷ୍ଟ ସମ୍ଭବ ନୁହେଁ । କାମଦେବଙ୍କ ପ୍ରିୟତମା ପତ୍ନୀ ରତୀ ଦେବୀଙ୍କୁ ହିଁ ଦେବତାମାନେ ନରବାହନଦତ୍ତର ପତ୍ନୀ ରୂପେ ଜାତ କରାଇଅଛନ୍ତି । ପୁଣି ଦିବ୍ୟବାଣୀ ଶୁଣାଯାଇଛି ଯେ ନରବାହନଦତ୍ତ ଏକ ଦେବକଳ୍ପ ପର୍ଯ୍ୟନ୍ତ ମଦନମଞ୍ଚୁକା ସହିତ ବିଦ୍ୟାଧର ସାମ୍ରାଜ୍ୟ ଭୋଗ କରିବ । ତେଣୁ ଏ ଦିବ୍ୟବାଣୀ ମିଥ୍ୟା ହେବାର ନୁହେଁ । ମଦନମଞ୍ଚୁକାର ଅନ୍ୱେଷଣ, ସେଥିପାଇଁ ଉତ୍ତମ ଭାବରେ କରାଯାଉ ।'

ରାଜାଙ୍କ ନିର୍ଦ୍ଦେଶରେ ପରିଚାରିକାମାନେ ଚତୁର୍ଦିଗ ଅନ୍ୱେଷଣ କରିବାକୁ ଲାଗିଲେ, କିନ୍ତୁ ନରବାହନଦତ୍ତ ସେଥିରେ ସନ୍ତୁଷ୍ଟ ନହୋଇ ନିଜେ ବିରହ ବେଦନାରେ

ଅସୁସ୍ଥ ଥିଲେ ସୁଦ୍ଧା ପ୍ରିୟ ପତ୍ନୀଙ୍କ ଅନ୍ୱେଷଣରେ ବାହାରିପଡ଼ିଲେ । ସେ ଯେଉଁ ଯେଉଁ ସ୍ଥାନରେ ଅନ୍ୱେଷଣ କରନ୍ତି ସେଠାରେ ନପାଇଲେ ଉନ୍ମତ୍ତ ପରି ଅନ୍ୟ ସ୍ଥାନକୁ ଦୌଡ଼ିଯାନ୍ତି । ସେ କ୍ରମେ କ୍ରମେ ରାଜପ୍ରାସାଦରୁ ବାହାରି ଧୀରେଧୀରେ ନଗର ମଧ୍ୟରେ ପ୍ରବେଶ କଲେ । ପ୍ରତ୍ୟେକଟି ଘରକୁ ସେ ତନ୍ନତନ୍ନ କରି ଖୋଜୁଥାନ୍ତି । ଯେଉଁ ଗୃହ ମଧ୍ୟରୁ ସେ ବାହାରି ଆସନ୍ତି ତାହାର ଦ୍ୱାର ବନ୍ଦ ହୋଇଯାଏ; ସତେ ଯେପରି ନଗରୀ ନରବାହନଦତ୍ତଙ୍କ ବିରହ ଦୁଃଖ ଓ ଉଦ୍‌ବେଗ ଦେଖି ନିଜର ଚକ୍ଷୁ ମୁଦ୍ରିତ କରିଦେଉଥିଲା । ସେ ନଗର ମଧ୍ୟରୁ ନିଷ୍କ୍ରାନ୍ତ ହୋଇ ଉପବନ ମଧ୍ୟକୁ ଆସିଲେ । ପ୍ରତିଟି ବୃକ୍ଷ ଓ ଲତାକୁ ସେ ମଦନମଞ୍ଜୁକାଙ୍କ ସମ୍ପର୍କରେ ପଚାରୁଥାନ୍ତି । ସେଗୁଡ଼ିକର ନବପଲ୍ଲବିତ ପତ୍ରରାଜି ବାୟୁର ହିଲ୍ଲୋଳରେ ସଞ୍ଚାଳିତ ହୋଇ କହୁଥାନ୍ତି ଯେ ସେମାନେ ତାଙ୍କୁ ଦେଖିନାହାଁନ୍ତି । ଉଦ୍ୟାନରେ କ୍ରୀଡ଼ା କରୁଥିବା ସାରସମାନଙ୍କ କଳରବ ଜଣାଉଥାଏ ଯେ ମଦନମଞ୍ଜୁକା ସେହି ପଥ ଦେଇ କେଉଁଆଡ଼େ ଯାଇନାହାନ୍ତି । ମରୁଭୂତି, ହରିଶିଖ, ଗୋମୁଖ, ବସନ୍ତକ ପ୍ରଭୃତି ବରିଷ୍ଠ ସଚିବମାନେ ମଧ୍ୟ ଇତସ୍ତତଃ ଅନ୍ୱେଷଣ କରିଚାଲିଥାନ୍ତି ।

## ବେଗବତୀ କଥା

ଏ ସମୟରେ ବେଗବତୀ ନାମକ ଏକ ବିଦ୍ୟାଧର କନ୍ୟା ମଦନମଞ୍ଜୁକାର ସ୍ୱରୂପ ଧାରଣ କରି ଉପବନ ମଧ୍ୟସ୍ଥ ଏକ ବୃକ୍ଷର ଛାୟାରେ ଆସି ଠିଆ ହୋଇଥାଏ । ସେ ପୂର୍ବରୁ ମଦନମଞ୍ଜୁକାଙ୍କୁ ଦେଖିଥିବା ଯୋଗୁଁ ଛଦ୍ମ ରୂପ ଧାରଣ କରିବାରେ ତାର କୌଣସି ଅସୁବିଧା ନଥିଲା । ଅନ୍ୱେଷଣରେ ବାହାରିଥିବା ମରୁଭୂତି ସେହି ଛଳନାମୟୀ ବିଦ୍ୟାଧରୀକୁ ଦେଖି ଆଶ୍ୱସ୍ତ ହେଲେ । ସେ ନରବାହନଦତ୍ତଙ୍କ ନିକଟକୁ ଫେରିଯାଇ ଏହି ସୁସମ୍ବାଦ ଜ୍ଞାପନ କଲେ । ସମ୍ବାଦ ପ୍ରାପ୍ତି ମାତ୍ରେ କ୍ଷଣମାତ୍ର ବିଳମ୍ବ ନକରି ରାଜକୁମାର ମରୁଭୂତିଙ୍କ ସହିତ ଯାଇ ଛଦ୍ମବେଶିନୀ ବେଗବତୀଙ୍କ ନିକଟରେ ପହଞ୍ଚିଲେ ଏବଂ ସେ ତୃଷାର୍ତ୍ତ ପଥିକ ଜଳଧାରାକୁ ଚାହିଁବା ପରି ଚାହିଁ ରହିଲେ । କିନ୍ତୁ ଯେତେବେଳେ ସେ ତାଙ୍କୁ ଆଲିଙ୍ଗନ କରିବାପାଇଁ ନିକଟକୁ ଯାଆନ୍ତି ସେତେବେଳେ ସେହି ଛଦ୍ମରୂପଧାରିଣୀ ବିଦ୍ୟାଧର କନ୍ୟା ନରବାହନଦତ୍ତଙ୍କୁ କହିଲା, 'ଆର୍ଯ୍ୟପୁତ୍ର ! ବର୍ତ୍ତମାନ ମୋତେ ଆପଣ ସ୍ପର୍ଶ କରନ୍ତୁ ନାହିଁ । ପ୍ରଥମେ ମୋ କଥା ଶୁଣନ୍ତୁ । ବିବାହ ପୂର୍ବରୁ ମୁଁ ଆପଣଙ୍କୁ ପାଇବା ପାଇଁ ଯକ୍ଷମାନଙ୍କୁ ଉପାସନା କରିଥିଲି । ସେତେବେଳେ ମୁଁ ମାନସିକ କରିଥିଲି ଯେ ମୋର ମନୋରଥ ସିଦ୍ଧହେଲେ ମୁଁ ଯକ୍ଷମାନଙ୍କୁ ନିଜ ହାତରେ ବଳିଭୋଗ ପ୍ରଦାନ କରିବି । କିନ୍ତୁ ଆପଣଙ୍କୁ ଲାଭ କରିବା ପରେ ମୁଁ ତାହା ଭୁଲିଯାଇଥିଲି । ସେହି କ୍ରୋଧରୁ ସେମାନେ

ମୋତେ ଅପହରଣ କରି ନେଇଆସିଛନ୍ତି । ସେମାନେ କହିଛନ୍ତି ଯେ ମୁଁ ପୁଣି ଆପଣଙ୍କୁ ବିବାହ କରିବି ଏବଂ ପୂର୍ବ ପ୍ରତିଶ୍ରୁତି ବଳି ପ୍ରଦାନ କରିବି । ଏହା ନକଲେ ସେମାନେ ପୁଣି ଆମର ଅନିଷ୍ଟ କରିବାପାଇଁ ଧମକ ଦେଇଛନ୍ତି । ତେଣୁ ଆପଣ ମୋ ସହିତ ଯଥାଶୀଘ୍ର ପୁଣି ବିବାହ କରନ୍ତୁ । ମୁଁ ଯକ୍ଷମାନଙ୍କୁ ଯଥୋଚିତ ବଳି ପ୍ରଦାନ କରି ମାନସିକ ପୂରଣ କରିବି ।'

ନରବାହନଦତ୍ତଙ୍କ ସହିତ ଯଥାବିଧି ପରିଣୟ ସୂତ୍ରରେ ଆବଦ୍ଧ ହେବାପାଇଁ ଧୂର୍ତ୍ତା ବିଦ୍ୟାଧରୀର ଏହା ଥିଲା ଏକ ଚକ୍ରାନ୍ତ । ନରବାହନଦତ୍ତ ତାର ଏହି ଛଳନା ବୁଝିନପାରି ସଙ୍ଗେସଙ୍ଗେ ବିବାହ ସାମଗ୍ରୀ ଯୋଗାଡ଼ କଲେ । ପୁରୋହିତ ଶାନ୍ତିସୋମଙ୍କ ଦ୍ୱାରା ସେମାନଙ୍କ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ପୁନର୍ବାର ବିରହ ଭୟରେ ନରବାହନଦତ୍ତଙ୍କୁ ଏ ସମ୍ପର୍କରେ ଚିନ୍ତା କରିବାପାଇଁ ସମୟ ମଧ୍ୟ ମିଳିଲା ନାହିଁ ।

ରାଜ୍ୟରେ ପୁଣି ବିବାହ ଉତ୍ସବ ପାଳନ କରାଗଲା । ଉଦୟନ ରାଣୀ ଓ କଳିଙ୍ଗ ସେନାଙ୍କ ସହିତ ପ୍ରମୁଦିତ ହୋଇଉଠିଲେ । ମଙ୍ଗଳବାଦ୍ୟ ନାଦରେ ଚତୁର୍ଦ୍ଦିଗ ପ୍ରତିଧ୍ୱନିତ ହୋଇଉଠିଲା । ବିଦ୍ୟାଧରୀ ବେଗବତୀ ନିଜ ହସ୍ତରେ ଯକ୍ଷମାନଙ୍କୁ ମଦ୍ୟ, ମାଂସ ଇତ୍ୟାଦି ବଳିସ୍ୱରୂପ ପ୍ରଦାନ କଲା । ସେମାନେ ନିଜ ଶୟନ କକ୍ଷରେ ଯାଇ ପ୍ରବେଶ କଲେ । ମାୟାବିନୀର ଅନୁରୋଧ କ୍ରମେ ନରବାହନଦତ୍ତ ମଦ୍ୟପାନପାଇଁ ଆଗ୍ରହୀ ନଥିଲେ ସୁଦ୍ଧା ସେହି ରାତ୍ରିରେ ପ୍ରଚୁର ମଦ୍ୟପାନ କଲେ ।

ନରବାହନଦତ୍ତ ମାୟାବିନୀ ବିଦ୍ୟାଧର କନ୍ୟା ସହିତ ଆନନ୍ଦ ଉପଭୋଗ କରୁଥାନ୍ତି । ଦିନେ ବିଦ୍ୟାଧରୀ ଏକାନ୍ତରେ ନରବାହନଦତ୍ତଙ୍କୁ କହିଲା, 'ଆର୍ଯ୍ୟପୁତ୍ର ! ମୁଁ ଶୋଇଥିବା ବେଳେ ଆପଣ ଆବରଣ ଦୂରକରି ମୋର ମୁହଁ ଦେଖିବାପାଇଁ କଦାପି ଚେଷ୍ଟା କରିବେ ନାହିଁ ।' ନରବାହନଦତ୍ତ ଏଥିରେ କୌତୂହଳୀ ହୋଇଉଠିଲେ । ଦିନେ ସେ ସୁପ୍ତ ଅବସ୍ଥାରେ ପତ୍ନୀର ମୁଖମଣ୍ଡଳ ଦେଖିବାପାଇଁ ଚେଷ୍ଟା କଲେ । ଦେଖିବା ମାତ୍ରେ ସେ ହତଚକିତ ହୋଇପଡ଼ିଲେ । ନିଦ୍ରିତାବସ୍ଥାରେ ବିଦ୍ୟାଧରୀର ପ୍ରକୃତ ସ୍ୱରୂପ ହିଁ ଦେଖାଯାଉଥାଏ । କାରଣ ବିଦ୍ୟାଧର ବିଦ୍ୟାଧରୀମାନେ ସୁପ୍ତାବସ୍ଥାରେ ନିଜର ଛଦ୍ମରୂପ ଗୋପନ କରିପାରନ୍ତି ନାହିଁ । ନରବାହନଦତ୍ତ ଚିନ୍ତାରେ ପଡ଼ିଗଲେ । ଏ ସମୟରେ କନ୍ୟାଟିର ନିଦ୍ରାଭଙ୍ଗ ହେଲା । ସେ ଉଠିବା ମାତ୍ରେ ରୋଷପୂର୍ଣ୍ଣ କଣ୍ଠରେ ରାଜକୁମାର ତାର ପ୍ରକୃତ ପରିଚୟ ଜିଜ୍ଞାସା କଲେ । ସୁନ୍ଦରୀ ପତିଙ୍କୁ ଜାଗ୍ରତ ଦେଖି ଜାଣିପାରିଲା ଯେ ତା'ର ସମସ୍ତ ଚକ୍ରାନ୍ତ ଉଦ୍‌ଘାଟିତ ହୋଇସାରିଛି । ବର୍ତ୍ତମାନ ପ୍ରକୃତ ସତ୍ୟ ଗୋପନ

କରିବା ଆଉ ସମ୍ଭବ ନୁହେଁ । ତେଣୁ ସେ ନିଜର ପ୍ରକୃତ ସ୍ୱରୂପ ଧାରଣ କରି ବିନମ୍ର ଭାବରେ କହିବା ଆରମ୍ଭ କଲା—

## ବେଗବତୀର ଆତ୍ମବୃତ୍ତାନ୍ତ

''ଆର୍ଯ୍ୟପୁତ୍ର ! ପ୍ରକୃତ ସତ୍ୟକଥା ଶୁଣନ୍ତୁ । ଆଷାଢ଼ପୁର ନାମରେ ଏକ ପର୍ବତ ଅଛି । ତାହା ବିଦ୍ୟାଧରମାନଙ୍କ ନିବାସ ସ୍ଥାନ । ସେଠାରେ ବେଗବାନ୍ ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ବର୍ତ୍ତମାନ ତାଙ୍କ ପୁତ୍ର ମାନସବେଗ ସେଠାରେ ଥିବା ବିଦ୍ୟାଧର କୁଳର ଅଧିପତି । ସେ ନିଜର ବାହୁ ବଳଯୋଗୁଁ ଅତ୍ୟନ୍ତ ଉଦ୍ଧତ । ମୁଁ ତାଙ୍କର ଛୋଟ ଭଉଣୀ । ମୋର ନାମ ବେଗବତୀ । ମୋ ପ୍ରତି ବିଦ୍ୱେଷ ଭାବ ପୋଷଣ କରି ସେ ମୋତେ ବିଦ୍ୟାଧର ବିଦ୍ୟା ପ୍ରଦାନ କଲାନାହିଁ । ମୁଁ ଏକଦା ଦୁଃଖରେ ତପୋବନ ମଧ୍ୟରେ ବିଚରଣ କରୁଥିବା ବେଳେ ପିତାଙ୍କ ଆଶୀର୍ବାଦରୁ ଆକସ୍ମିକ ଭାବରେ ବିଦ୍ୟାଧରମାନଙ୍କ ସର୍ବଶ୍ରେଷ୍ଠ ବିଦ୍ୟା ମୋତେ ପ୍ରାପ୍ତ ହେଲା ।

ଦିନେ ଆଷାଢ଼ପୁର ପର୍ବତରେ ବିଚରଣ କରୁଥିବା ବେଳେ ପ୍ରହରୀବେଷ୍ଟିତା ମଦନମଞ୍ଚୁକାଙ୍କୁ ଦେଖିବାକୁ ପାଇଲି । ରାବଣ ରାମପତ୍ନୀ ସୀତାଙ୍କୁ ଅପହରଣ କଲାପରି ମୋର ଭ୍ରାତା ମାୟାବଳରେ ମଦନମଞ୍ଚୁକାଙ୍କୁ ଅପହରଣ କରିନେଇଥାଏ । ସେ ଅତ୍ୟନ୍ତ ଶୋକାକୁଳା ଓ ଦୁଃଖାର୍ତ୍ତା ଦେଖାଯାଉଥାନ୍ତି । ଦୁଷ୍ଟ ପତିବ୍ରତା ମଦନମଞ୍ଚୁକାଙ୍କ ଇଚ୍ଛାବିରୁଦ୍ଧରେ ତାଙ୍କୁ ଉପଭୋଗ କରିପାରୁନାହିଁ । କାରଣ ସ୍ତ୍ରୀମାନଙ୍କ ସହିତ ବଳାତ୍କାର କଲେ ତା'ର ମୃତ୍ୟୁ ହେବ ବୋଲି ଅଭିଶାପ ରହିଛି ।

ଦିନେ ମଦନମଞ୍ଚୁକାଙ୍କୁ ପ୍ରବୋଧନା ପ୍ରଦାନ ପୂର୍ବକ ତା' ପ୍ରତି ଆକୃଷ୍ଟ କରାଇବା ପାଇଁ ଭାଇ ମୋତେ ତା' ନିକଟକୁ ପଠାଇଲା । ମୁଁ ସେଠାକୁ ଗଲି । ସେ ଆପଣଙ୍କ ବିରହରେ ପାଗଳିନୀ ପରି କେବଳ ପ୍ରଳାପ କରୁଥାନ୍ତି । ବାରମ୍ବାର କହୁଥାନ୍ତି, 'ରାଜପୁତ୍ର ନରବାହନଦତ୍ତ କାହାନ୍ତି ? ମୁଁ କି ଅପରାଧ କଲି ଯେ ମୋତେ ସେ ଏପରି ଦୂରେଇ ଦେଲେ ?' ତାଙ୍କ ମୁଖରୁ ଆପଣଙ୍କ ନାମ ଶୁଣିବା ମାତ୍ରେ କନ୍ଦର୍ପ ମୋ ଉପରେ ଶର ପ୍ରହାର ଆରମ୍ଭ କଲା । ମୁଁ ଏକାଗ୍ର ଚିତ୍ତରେ କେବଳ ଆପଣଙ୍କ କଥା ଚିନ୍ତା କରିବାକୁ ଲାଗିଲି । ପୂର୍ବରୁ ମୋ ପ୍ରତି ଦେବୀଙ୍କର ସ୍ୱପ୍ନାଦେଶ ଥିଲା ଯେ ଯାହାର ନାମ ଶ୍ରବଣ ମାତ୍ରେ ମୁଁ କନ୍ଦର୍ପପୀଡ଼ାରେ ବିହ୍ୱଳ ହୋଇପଡ଼ିବି ସେ ମୋର ପତି ହେବେ । ଦେବୀଙ୍କ ଆଦେଶ ସ୍ମରଣ ହେବା ମାତ୍ରେ ମୁଁ ମଦନମଞ୍ଚୁକାଙ୍କୁ ଆଶା ଓ ଆଶ୍ୱାସନା ଦେଇ ତାଙ୍କ

ଛଦ୍ମବେଶରେ ଏଠାରେ ଆସି ପହଞ୍ଚିଲି ଏବଂ କପଟାଚରଣ ପୂର୍ବକ ଆପଣଙ୍କ ସହିତ ବିବାହ କଲି ।

ତେଣୁ ଆର୍ଯ୍ୟପୁତ୍ର ! ଆପଣ ମୋତେ କ୍ଷମା କରନ୍ତୁ । ବର୍ତ୍ତମାନ ଆପଣ ମୋ ସହିତ ମଦନମଞ୍ଜୁକା ଥିବା ସ୍ଥାନକୁ ଚାଲନ୍ତୁ । ମୁଁ ଆପଣଙ୍କୁ ସେଠାକୁ ନେଇଯିବି । ମଦନମଞ୍ଜୁକା ଆପଣଙ୍କ ପ୍ରିୟତମା ପତ୍ନୀ । ମୁଁ ଆପଣଙ୍କ ଦାସୀ ମାତ୍ର । ଏଣୁ ସପତ୍ନୀ ହେଲେ ସୁଦ୍ଧା ମୁଁ ମଦନମଞ୍ଜୁକାଙ୍କ ଦାସୀ । ଜାଣେନି, କାହିଁକି ମୁଁ ଆପଣଙ୍କ ସ୍ୱାର୍ଥରହିତ ପ୍ରଣୟର ଅଧୀନା ?''

ଏହା କହି ରାତ୍ରିର ଘନ ଅନ୍ଧକାର ମଧ୍ୟରେ ବେଗବତୀ ନରବାହନଦତ୍ତଙ୍କ ସହିତ ଆକାଶ ମାର୍ଗରେ ଉଡ଼ିଗଲା । ପ୍ରଭାତରୁ ନରବାହନଦତ୍ତ ଓ ଛଦ୍ମ ମଦନମଞ୍ଜୁକାଙ୍କୁ ସେମାନଙ୍କ ଶୟନ କକ୍ଷରେ ନଦେଖି ସମସ୍ତେ ଉଦ୍‌ବିଗ୍ନ ହୋଇପଡ଼ିଲେ । କେବଳ ଉଦୟନ, ବାସବଦତ୍ତା, ପଦ୍ମାବତୀ ନୁହଁନ୍ତି ଯୌଗନ୍ଧରାୟଣ ପ୍ରଭୃତି ରାଜପୁତ୍ରଙ୍କ ସଚିବମାନଙ୍କ ସହିତ ସମସ୍ତେ ବଜ୍ରାହତ ପରି ବିହ୍ୱଳ ହୋଇଉଠିଲେ ।

ସେମାନେ କିଂକର୍ତ୍ତବ୍ୟବିମୂଢ଼ ଭାବରେ ରହିଥିବା ବେଳେ ଆକସ୍ମିକ ଭାବେ ମହର୍ଷି ନାରଦ ଆସି ସେଠାରେ ପହଞ୍ଚିଲେ । ସେ ରାଜାଙ୍କୁ କହିଲେ, 'ବତ୍ସରାଜ ! ବିଦ୍ୟାଧରୀ ତୁମ ପୁତ୍ର ନରବାହନଦତ୍ତଙ୍କୁ ଧରି ବିଦ୍ୟାଧର ନଗରକୁ ଚାଲିଯାଇଛି । ସେମାନେ ଶୀଘ୍ର ଫେରିଆସିବେ । ତୁମକୁ ଧୈର୍ଯ୍ୟ ଓ ଆଶ୍ୱାସନା ଦେବାପାଇଁ ଭଗବାନ ଶଙ୍କର ମୋତେ ପଠାଇଛନ୍ତି ।' ଏଥିରେ ଶୋକ ସମ୍ବରଣ କରି ରାଜା ଉଦୟନ ତାଙ୍କର ଯଥୋଚିତ ପୂଜା କଲେ । ବିଦ୍ୟାଧରୀ ବେଗବତୀର ସମସ୍ତ ବୃତ୍ତାନ୍ତ ମହର୍ଷିଙ୍କଠାରୁ ଜଣାଗଲା । ନାରଦ ପର ମୁହୂର୍ତ୍ତରେ ସେଠାରୁ ଅନ୍ତର୍ହିତ ହେଲେ ।

ଏଣେ ବେଗବତୀ ନରବାହନଦତ୍ତଙ୍କୁ ଆକାଶମାର୍ଗରେ ନେଇ ଆଷାଢ଼ପୁରରେ ପହଞ୍ଚାଇ ଦେଲା । ଏମାନେ ସେଠାରେ ଉପସ୍ଥିତ ହେବାମାତ୍ରେ ମାନସବେଗ ଉଭୟଙ୍କୁ ହତ୍ୟା କରିବାପାଇଁ ଦୌଡ଼ି ଆସନ୍ତେ ଭାଇଭଉଣୀଙ୍କ ମଧ୍ୟରେ ନିଜନିଜ ପ୍ରାପ୍ତ ପ୍ରବଳ ବିଦ୍ୟାଧରୀ ବିଦ୍ୟା ଯୁଦ୍ଧ ସଂଘଟିତ ହେଲା । ସ୍ତ୍ରୀ ମାନଙ୍କପାଇଁ ପତି ହିଁ ପ୍ରାଣ, ବନ୍ଧୁପରିଜନ ନୁହଁନ୍ତି ।

**'ସ୍ତ୍ରୀଣାଂ ପତିଃ ପ୍ରାଣା ନ ବାନ୍ଧବାଃ'**

ବିଦ୍ୟାବଳରେ ଭୟଙ୍କର ରୂପଧାରଣ ପୂର୍ବକ ବେଗବତୀ ଭ୍ରାତା ମାନସବେଗକୁ ସମ୍ମୋହିତ କରି ଅଗ୍ନି ପର୍ବତରେ ନେଇ ନିକ୍ଷେପ କଲା । ନରବାହନଦତ୍ତ ତାର

ବିଦ୍ୟାବଳରେ ଆବଦ୍ଧ ହୋଇ ରହିଥାନ୍ତି । ସେ ତାଙ୍କ ସୁରକ୍ଷା ପାଇଁ ତାଙ୍କୁ ଗନ୍ଧର୍ବପୁର ନେଇ ଚାଲିଲା ଏବଂ ସେଠାରେ ଏକ ଜଳଶୂନ୍ୟ କୂପ ମଧ୍ୟରେ ତାଙ୍କୁ ଗୁପ୍ତକରି ରଖିଲା । ସେ ଶାନ୍ତ କଣ୍ଠରେ ନରବାହନଦତ୍ତଙ୍କୁ କହିଲା, 'ଆର୍ଯ୍ୟପୁତ୍ର ! ଆପଣ କିଛି ସମୟ ଏଠାରେ ରହନ୍ତୁ । ଏଥିରେ ହିଁ ଆପଣଙ୍କର କଲ୍ୟାଣ ହେବ । ଆଦୌ ଅଧୀର ହେବେ ନାହିଁ । ଆପଣ ସମସ୍ତ ବିଦ୍ୟାଧର କୁଳର ଭାବୀ ଚକ୍ରବର୍ତ୍ତୀ । ଜ୍ୟେଷ୍ଠଭ୍ରାତା ମାନସବେଗ ଉପରେ ଆକ୍ରମଣ କରିବା ଯୋଗୁଁ ମୋର ବିଦ୍ୟାସବୁ କ୍ଷୀଣ ହୋଇପଡ଼ିଛନ୍ତି । ମୁଁ ସେଗୁଡ଼ିକର ପୁନଃସିଦ୍ଧିପାଇଁ ଯାଉଛି । ଯଥାଶୀଘ୍ର ଫେରିଆସିବି ।'

ନରବାହନଦତ୍ତଙ୍କୁ ଏହି ଆଶ୍ୱସନା ଦେଇ ବିଦ୍ୟାଧରୀ ବେଗବତୀ ସେଠାରୁ କୌଣସି ଏକ ଅଜ୍ଞାତ ସ୍ଥାନକୁ ଚାଲିଗଲା ।

## ଦ୍ୱିତୀୟ ତରଙ୍ଗ

ନରବାହନଦତ୍ତ ଗନ୍ଧର୍ବପୁରର ସେହି କୂପ ଭିତରେ ଗୋପନବାସ କରୁଥାଆନ୍ତି । ଏକଦା ବୀଣାଦତ୍ତ ନାମକ କୌଣସି ଗନ୍ଧର୍ବର ଦିବ୍ୟ ଦୃଷ୍ଟି ତାଙ୍କୁ ଆବିଷ୍କାର କଲା । ପ୍ରକୃତରେ ମାର୍ଗ ପାର୍ଶ୍ୱସ୍ଥ ଛାୟାପ୍ରଦ ବୃକ୍ଷତୁଲ୍ୟ ପରୋପକାରୀ ତଥା ପରଦୁଃଖକାତର ମହାତ୍ମାମାନେ ନଥିଲେ ପୃଥିବୀ ଏକ ଭୀଷଣ ଅରଣ୍ୟରେ ପରିଣତ ହୋଇଥାନ୍ତା ।

'ପରାର୍ଥଫଳଜନ୍ମାନୋ ନ ସ୍ୟୁର୍ମାର୍ଗଦ୍ରୁମା ଇବ
ତାପଚ୍ଛିଦୋ ମହାନ୍ତଶ୍ଚେତ୍ ଜୀର୍ଣ୍ଣାରଣ୍ୟଂ ଜଗଦ୍‌ଭବେତ୍'

ପରୋପକାରୀ ବୀଣାଦତ୍ତ ତାଙ୍କୁ ସେଠାରୁ ଉଦ୍ଧାର କରି ତାଙ୍କ ନାମ ଗୋତ୍ର ଇତ୍ୟାଦି ସମ୍ପର୍କରେ ଜାଣିବାପାଇଁ ଚାହିଁଲେ । ସେ ଯଦି ଦେବତା ନହୋଇ ମନୁଷ୍ୟ ହୋଇଥାନ୍ତି ତେବେ ଏଠାକୁ ଆସିବା ସମ୍ଭବ ନୁହେ । ସେ ବା ଏଠାକୁ ଆସିଲେ କିପରି ? ତାର ଜିଜ୍ଞାସା କ୍ରମେ ନରବାହନଦତ୍ତ ବିଦ୍ୟାଧରୀଦ୍ୱାରା ତାଙ୍କୁ ଏଠାକୁ ଅଣାଯାଇ ଏହି କୂପ ମଧ୍ୟରେ ଗୁପ୍ତ କରି ରଖାଯାଇଥିବା, ପ୍ରକାଶ କଲେ । ଗନ୍ଧର୍ବ ତାଙ୍କ ଶରୀରରେ ଚକ୍ରବର୍ତ୍ତୀ ଲକ୍ଷଣ ସବୁ ଦେଖି ଆଦରର ସହିତ ତାଙ୍କୁ ନିଜ ଗୃହକୁ ନେଇଯାଇ ଉଚିତ ସତ୍କାର କଲା । କିଛିଦିନ ସେଠାରେ ରହିବା ପରେ ନରବାହନଦତ୍ତ ଲକ୍ଷ୍ୟ କଲେ ଯେ ସେଠାରେ ରହୁଥିବା ପ୍ରତ୍ୟେକ ବ୍ୟକ୍ତି ହସ୍ତରେ ବୀଣାଟିଏ ଧାରଣ କରିଅଛନ୍ତି । ଶିଶୁଠାରୁ ଯୁବକ ପର୍ଯ୍ୟନ୍ତ ସମସ୍ତଙ୍କ ହସ୍ତରେ ବୀଣା ଥିବାର କାରଣ ଜିଜ୍ଞାସା କରନ୍ତେ ଗନ୍ଧର୍ବ ବୀଣାଦତ୍ତ କହିଲେ, 'ଗନ୍ଧର୍ବରାଜ ସାଗରଦତ୍ତଙ୍କ ଗନ୍ଧର୍ବଦତ୍ତା ନାମରେ ଏକ କନ୍ୟା ଅଛି । ତାର ଅପରୂପ ରୂପରାଶି ନିକଟରେ ସ୍ୱର୍ଗର ଅପ୍‌ସରାମାନେ ମଧ୍ୟ ଅସୁନ୍ଦର ଦେଖାଯାନ୍ତି । ଅମୃତ, ଚନ୍ଦ୍ରମା, ଚନ୍ଦନ ଇତ୍ୟାଦି ଉଚିତ ସାମଗ୍ରୀଦ୍ୱାରା ବିଧାତା ତାଙ୍କ ଶରୀର ନିର୍ମାଣ କରିଛନ୍ତି । ତାଙ୍କ ଜନ୍ମପରେ ନାରୀମାନଙ୍କ ଅଙ୍ଗପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାର ଅବସର କବିମାନଙ୍କୁ ମିଳିଯାଇଛି ବୋଲି ମନେହୁଏ । ଗନ୍ଧର୍ବଦତ୍ତା ସର୍ବଦା ବୀଣାଟିଏ ଧରି ଗୀତ ଗାଉଥିବା ଦେଖି ଭଗବାନ ବିଷ୍ଣୁ ତାଙ୍କୁ ନିଜର ସମସ୍ତ ସଙ୍ଗୀତ ବିଦ୍ୟା ପ୍ରଦାନ କରିଛନ୍ତି । ବର୍ତ୍ତମାନ ସେ ଗାନ୍ଧର୍ବ ବିଦ୍ୟା ସଙ୍ଗୀତର ସମୁଚ୍ଚ ଶିଖରୀରେ ଉପନୀତା । ସେ

ନିଶ୍ଚୟ କରିଛନ୍ତି ଯେ ଯେଉଁ ବ୍ୟକ୍ତି ବୀଣାବାଦନ କରୁଥିବ, ଗନ୍ଧର୍ବ ବିଦ୍ୟାରେ ନିପୁଣ ଥିବ ଏବଂ ତିନୋଟି ଗ୍ରାମ (ଷଡ଼୍‌ଜ, ମଧ୍ୟମ ଓ ଗାନ୍ଧାର)ରେ ବିଷ୍ଣୁଙ୍କ ସ୍ତୁତିଗାନ କରିପାରୁଥିବ, ତାକୁ ହିଁ ପତି ରୂପରେ ବରଣ କରିବେ । ତେଣୁ ଏଠାରେ ସମସ୍ତେ ସଙ୍ଗୀତ ବିଦ୍ୟା ଶିକ୍ଷା କରୁଛନ୍ତି; କିନ୍ତୁ ଏ ପର୍ଯ୍ୟନ୍ତ କୌଣସି ଗନ୍ଧର୍ବ ବୀଣାବାଦନରେ ତାଙ୍କ ପରି ନିପୁଣତା ଲାଭ କରିପାରି ନାହାନ୍ତି ।

## ଗନ୍ଧର୍ବଦତ୍ତା କଥା

ବୀଣାଦତ୍ତଙ୍କ ମୁଖରୁ ରାଜକୁମାରୀଙ୍କ ସମ୍ପର୍କରେ ଶୁଣିବାମାତ୍ରେ ରାଜପୁତ୍ର ନରବାହନଦତ୍ତ ନିଜର ପରିଚୟ ଦେଇ କହିଲେ, 'ସ୍ୱୟମ୍ବର ସଭାରେ କନ୍ୟାମାନେ ନିଜର ମନୋମତ ପତିଙ୍କୁ ସ୍ୱୟମ୍ବରଣ କଲାପରି ସମସ୍ତ କଳାବିଦ୍ୟା ମୋତେ ବରଣ କରିଛନ୍ତି । ବିଶ୍ୱରେ ଏପରି କୌଣସି ସଙ୍ଗୀତବିଦ୍ୟା ନାହିଁ, ଯାହା ମୁଁ ଜାଣେନା । ଏଥିରେ ପ୍ରୀତ ହୋଇ ମିତ୍ର ବୀଣାଦତ୍ତ ତାଙ୍କୁ ଧରି ରାଜା ସାଗରଦତ୍ତଙ୍କ ନିକଟରେ ପହଞ୍ଚିଲେ । ତାଙ୍କ ସମ୍ପର୍କରେ ସୂଚନା ଦେବାକୁ ଯାଇ ସେ ରାଜାଙ୍କୁ କହିଲେ ଯେ ଏ ହେଉଛନ୍ତି ବତ୍ସରାଜ ଉଦୟନଙ୍କ ପୁତ୍ର ନରବାହନଦତ୍ତ । ଆମ ନଗରରେ ପ୍ରବେଶ କରି ତାଙ୍କୁ ଏଠାରେ ପହଞ୍ଚାଇଥିବା ବିଦ୍ୟାଧରୀଠାରୁ ସେ ବିଚ୍ଛିନ୍ନ ହୋଇପଡ଼ିଛନ୍ତି । ସଙ୍ଗୀତ ବିଦ୍ୟାରେ ତାଙ୍କୁ ଜଣେ ବିଶିଷ୍ଟ ଆଚାର୍ଯ୍ୟ କୁହାଯାଇପାରେ । ଭଗବାନ କେଶବଙ୍କ ସମସ୍ତ ସ୍ତୁତି ସ୍ତୋତ୍ର ଗାନ କରିବାରେ ସେ ଧୁରୀଣ । ଆପଣଙ୍କ କନ୍ୟା ଗନ୍ଧର୍ବଦତ୍ତା ଯେଉଁ ସଙ୍ଗୀତ ପ୍ରତି ବିଶେଷ ଭାବେ ଆସକ୍ତା, ତାହା ତାଙ୍କର ଅଜ୍ଞାତ ନୁହେଁ ।

ବୀଣାଦତ୍ତଙ୍କଠାରୁ ନରବାହନଦତ୍ତଙ୍କ ସମ୍ପର୍କରେ ସମସ୍ତ କଥା ଶୁଣିବା ପରେ ରାଜା ସାଗରଦତ୍ତ କହିଲେ, 'ମୁଁ ଗନ୍ଧର୍ବମାନଙ୍କଠାରୁ ତାଙ୍କ ସମ୍ପର୍କରେ ପୂର୍ବରୁ ଶୁଣିଥିଲି । ଏଣୁ ତାଙ୍କର ଯଥୋଚିତ ସମ୍ମାନ କରିବା ଆବଶ୍ୟକ । ରାଜପୁତ୍ର ଦେବ ଅଂଶରେ ଜାତ, ଏଥିରେ କୌଣସି ସନ୍ଦେହ ନାହିଁ । ସେ ଶୁଦ୍ଧ ଓ ପବିତ୍ର ନ ହୋଇଥିଲେ ବିଦ୍ୟାଧରୀ ସହିତ ଆମ ଗନ୍ଧର୍ବ ଲୋକକୁ ଆସିପାରି ନଥାନ୍ତେ । ତେଣୁ ଗନ୍ଧର୍ବଦତ୍ତାଙ୍କ ସମ୍ମୁଖରେ ହିଁ ରାଜକୁମାରଙ୍କ ଅଦ୍ଭୁତ ସାଙ୍ଗୀତିକ କୌଶଳ ଉପଭୋଗ କରାଯାଉ ।'

ରାଜାଙ୍କ ନିର୍ଦ୍ଦେଶରେ ଗନ୍ଧର୍ବଦତ୍ତାଙ୍କୁ ଆଣିବାପାଇଁ କେତେଜଣ ବୃଦ୍ଧ କଞ୍ଚୁକୀ ରାଜଭବନ ମଧ୍ୟରେ ପ୍ରବେଶ କଲେ । ଋତୁ କ୍ରମରେ ପୁଷ୍ପିତ ଲତାବଳୀ ଯେପରି ବାୟୁ ହିଲ୍ଲୋଳରେ ଆନ୍ଦୋଳିତ ହେଉଥାନ୍ତି, ସେହିପରି ପୁଷ୍ପ ଆଭରଣରେ ବିଭୂଷିତା

ଲାବଣ୍ୟମୟୀ ଗନ୍ଧର୍ବଦତ୍ତା ଯୌବନୋନ୍ମତ୍ତ କରିଣୀପରି ସଭା ମଧ୍ୟରେ ଆସି ଉପସ୍ଥିତ ହେଲେ । ପିତାଙ୍କ ସମୀପରେ ବସି ସେ ନରବାହନଦତ୍ତଙ୍କ ପରିଚୟ ଲାଭକଲେ । ଗୁଣଗର୍ବିତା ରାଜକୁମାରୀଙ୍କ ହସ୍ତସ୍ଥିତ ବୀଣା ନିକ୍ୱଣିତ ହୋଇଉଠିଲା । ସେ ସଙ୍ଗୀତ ଆରମ୍ଭ କଲେ । ଶ୍ରୁତି ସହିତ ସ୍ୱରର ଅପୂର୍ବ ମିଳନ ଦେଖି ନରବାହନଦତ୍ତଙ୍କ ବିସ୍ମୟର ସୀମା ରହିଲା ନାହିଁ । ରୂପ ସହିତ କଳାର ଏ ଅପୂର୍ବ ସମନ୍ୱୟ ସରସ୍ୱତୀ ଓ ଲକ୍ଷ୍ମୀଙ୍କ ଦ୍ୱେଷହୀନ ମିଳନ ପରି ମନେହେଲା । ନରବାହନଦତ୍ତ ନମ୍ରଭାବରେ କହିଲେ, 'ଭଦ୍ରେ ! ଆପଣଙ୍କ ବୀଣାର ସ୍ୱର ମଧୁର ହୋଇପାରୁନାହିଁ । ବୋଧହୁଏ ବୀଣାର ତନ୍ତ୍ରୀ ମଧ୍ୟରେ କେଉଁଠି ଗୋଟିଏ ସୂକ୍ଷ୍ମ କେଶ ରହିଯାଇଛି ।' ତାଙ୍କ କହିବା ଅନୁଯାୟୀ ଗନ୍ଧର୍ବଦତ୍ତାଙ୍କ ବୀଣାର ତାର ସମୂହ ମଧ୍ୟରୁ କେଶଟିଏ ଆବିଷ୍କାର କରାଗଲା । ସ୍ୱର ସମ୍ପର୍କରେ ରାଜକୁମାରଙ୍କ ଏ ପ୍ରକାର ସୂକ୍ଷ୍ମଧାରଣା ଦେଖି ଗନ୍ଧର୍ବମାନେ ବିସ୍ମିତ ହୋଇପଡ଼ିଲେ ।

ରାଜା ସାଗରଦତ୍ତ ସପ୍ରଶଂସ ଚିତ୍ତରେ ଗନ୍ଧର୍ବଦତ୍ତାଙ୍କ କୋଳରୁ ବୀଣାଟି ଆଣି ନରବାହନଦତ୍ତଙ୍କୁ ଅର୍ପଣ କଲେ ଏବଂ ସେଥିରେ ସ୍ୱର ସଂଯୋଜନା କରି ଶ୍ରୋତାମାନଙ୍କ ଶ୍ରୁତିରେ ଅମୃତ ବୃଷ୍ଟି କରିବାପାଇଁ ସେ ରାଜକୁମାରଙ୍କୁ ଅନୁରୋଧ ଜଣାଇଲେ । ନରବାହନଦତ୍ତ ଏପରି ନିପୁଣ ଓ ମଧୁର ଭାବରେ ବିଷ୍ଣୁସ୍ତବ ଗାନକଲେ ଯେ ଉପସ୍ଥିତ ସମସ୍ତ ଗନ୍ଧର୍ବ କିଛି ସମୟପାଇଁ ଚିତ୍ରାର୍ପିତ ବୋଲି ମନେହେଲେ । ତାଙ୍କ ସଙ୍ଗୀତ ବିଦ୍ୟାରେ ପ୍ରୀତ ହୋଇ ଗନ୍ଧର୍ବଦତ୍ତା ମନେମନେ ତାଙ୍କୁ ପତି ରୂପରେ ବରଣ କରିନେଲେ । ରାଜକୁମାରୀଙ୍କ ନୀଳକମଳ ତୁଲ୍ୟ ନୟନ ଯୁଗଳ ଚଞ୍ଚଳ ହୋଇଉଠିବାରୁ ମନେହେଲା ସେ ନୀଳକମଳର ମାଳା ରାଜକୁମାରଙ୍କ କଣ୍ଠରେ ଅର୍ପଣ କରିବାପାଇଁ ପ୍ରୟାସ କରୁଛନ୍ତି ।

କନ୍ୟାର ମନୋଭାବ ରାଜାଙ୍କ ନିକଟରେ ଗୋପନ ରହିପାରିଲା ନାହିଁ । ପୂର୍ବ ପ୍ରତିଜ୍ଞା ସ୍ମରଣ କରି ରାଜା ନରବାହନଦତ୍ତଙ୍କୁ ନିଜର ଜାମାତା କରିବାପାଇଁ ନିଶ୍ଚୟ କଲେ । ରାଜାଙ୍କ ସଂକଳ୍ପ ଅନୁସାରେ ନରବାହନଦତ୍ତ ଓ ଗନ୍ଧର୍ବଦତ୍ତାଙ୍କ ବିବାହ ଅନୁଷ୍ଠିତ ହେଲା । ଗନ୍ଧର୍ବ ରାଜ୍ୟର ଏହି ଉତ୍ସବ ଥିଲା ଅନୁପମ; ପୂର୍ବରୁ ଦେଖାନଥିଲା ଏବଂ ପରେ ମଧ୍ୟ ପୁନରାବୃତ୍ତିର ସମ୍ଭାବନା ନଥିଲା । ନରବାହନଦତ୍ତ ନବବିବାହିତା ପତ୍ନୀ ସହିତ ସେଠାରେ ଦିବ୍ୟସୁଖ ଉପଭୋଗ କରିବାକୁ ଲାଗିଲେ ।

ଦିନେ ରାଜକୁମାର ନଗର ମଧ୍ୟରେ ଭ୍ରମଣ କରୁଥିବା ବେଳେ ଏକ ଉପବନ ନିକଟରେ ଆସି ଉପସ୍ଥିତ ହେଲେ । ସେଠାରେ ବିଚରଣ କରୁଥିବା ବେଳେ ବିନାମେଘରେ ବର୍ଷାଧାରା ସହିତ ବିଜୁଳି ତୁଲ୍ୟ ଜଣେ ଦିବ୍ୟରମଣୀ ନିଜର ଅପରୂପା ସୁନ୍ଦରୀ କନ୍ୟା ସହିତ ଆକାଶ ମାର୍ଗରେ ଆସି ସେଠାରେ ଅବତରଣ କଲେ । ରମଣୀ ଜଣକ ନିଜ

ବିଦ୍ୟାବଳରେ ରାଜକୁମାରଙ୍କୁ ଚିହ୍ନିପାରି କନ୍ୟାକୁ କହିଲେ, 'ପୁତ୍ରି ! ଏ ହେଉଛନ୍ତି ବତ୍ସରାଜ ଉଦୟନଙ୍କ ପୁତ୍ର ନରବାହନଦତ୍ତ; ତୋର ଭାବୀ ପତି ।'

ସେମାନେ ନିକଟତର ହେବାରୁ ନରବାହନଦତ୍ତ ସେମାନଙ୍କ ପରିଚୟ ଓ ଆଗମନର କାରଣ ଜିଜ୍ଞାସା କଲେ । ନିଜର ମନୋଭିଳାଷ ପ୍ରକାଶ କରି ରମଣୀ ଜଣକ କହିବା ଆରମ୍ଭ କଲେ, 'ଦେବସିଂହ ବୋଲି ଜଣେ ବିଦ୍ୟାଧର ଅଧିପତି ଅଛନ୍ତି । ମୁଁ ତାଙ୍କର ପତ୍ନୀ ଧନବତୀ । ଏ ମୋର କନ୍ୟା, ପୁତ୍ର ଚଣ୍ଡସିଂହର ଏ ହେଉଛି କନିଷ୍ଠା ଭଗିନୀ । ଅଜିନାବତୀ ବୋଲି ଆମେ ଏହାର ନାମକରଣ କରିଛୁ । ଦିବ୍ୟବାଣୀ ଅନୁଯାୟୀ ଆପଣହିଁ ତା'ର ପତି ହେବେ । ବିଦ୍ୟାଧର ଚକ୍ରବର୍ତ୍ତୀ ହେବେ ବୋଲି ଜାଣି ବିଦ୍ୟାଧରୀ ବେଗବତୀ ଆପଣଙ୍କୁ ଏଠାକୁ ନେଇଆସିଛି । ମୁଁ ନିଜର ବିଦ୍ୟାପ୍ରଭାବରେ ଏହା ଜାଣିପାରି ସ୍ୱୀୟ ଅଭିଳାଷ ଜଣାଇବା ନିମିତ୍ତ ଆପଣଙ୍କ ନିକଟକୁ ଆସିଛି । ଏଠାରେ କେବଳ ବିଦ୍ୟାଧରମାନେ ହିଁ ରହିପାରନ୍ତି । ଏଣୁ ଏଠାରେ ରହିବା ଆପଣଙ୍କର ଉଚିତ ହେବ ନାହିଁ । ବିଦ୍ୟାଧର ଅଧିପତି ପଦ ପ୍ରାପ୍ତ ହେବା ପୂର୍ବରୁ ଏଠାରେ ରହିବା ଆପଣଙ୍କପାଇଁ ନିରାପଦ ମଧ୍ୟ ନୁହେଁ । ବିଦ୍ୱେଷବଶରୁ ସେମାନେ ଆପଣଙ୍କ ଜୀବନ ମଧ୍ୟ ନେଇଯାଇପାରନ୍ତି । ତେଣୁ ଆପଣ ଆମ ସହିତ ଆସନ୍ତୁ । ମୁଁ ଆପଣଙ୍କୁ ଏକ ଅଗମ୍ୟ ସ୍ଥାନରେ ପହଞ୍ଚାଇ ଦେବି । ସୂର୍ଯ୍ୟ ଅସ୍ତ ହେବାପରେ ଚନ୍ଦ୍ର କଣ କିଛିକାଳ ଅପେକ୍ଷା କରନ୍ତି ନାହିଁ ।

'ନେନ୍ଦୁଃ କ୍ଷିପତି କିଂ କାଳଂ ପରିକ୍ଷୀଣୋଽର୍କମଣ୍ଡଳେ'

ସମୟ ଦେଖି ଆପଣ ମୋର କନ୍ୟା ଅଜିନାବତୀ ସହିତ ବିବାହ କରିବେ ।' ଏପରି କହି ସେହି ଦିବ୍ୟ ରମଣୀ ନିଜର କନ୍ୟା ଓ ନରବାହନଦତ୍ତଙ୍କ ସହିତ ଆକାଶ ମାର୍ଗରେ ଉଡ଼ିଗଲେ ।

ନରବାହନଦତ୍ତ ନବପରିଚିତ ମାତା ଓ କନ୍ୟା ସହିତ ଶ୍ରୀବସ୍ତୀପୁରର ଏକ ଉପବନ ମଧ୍ୟରେ ଯାଇ ପହଞ୍ଚିଲେ । ସେଠାରେ ଅଜିନାବତୀଙ୍କ ସହିତ ନରବାହନଦତ୍ତଙ୍କୁ ଏକତ୍ର ରଖି ଧନବତୀ ଅନ୍ତର୍ହିତା ହୋଇଗଲେ ।

ନରବାହନଦତ୍ତ ସେଠାରେ ରହୁଥିବା ବେଳେ ଏକଦା ରାଜା ପ୍ରସେନଜିତ୍ ମୃଗୟା ନିମିତ୍ତ ଆସି ସେହି ଉପବନ ମଧ୍ୟରେ ପ୍ରବେଶ କରନ୍ତି । ସେଠାରେ ସୁନ୍ଦର ରୂପ ଓ ଉତ୍ତମ ଲକ୍ଷଣ ଯୁକ୍ତ ନରବାହନଦତ୍ତଙ୍କୁ ଦେଖି ସେ କୌଣସି ରାଜପୁତ୍ର ବୋଲି ତାଙ୍କର ମନେହେଲା; ନିକଟକୁ ଯାଇ ସେ ତାଙ୍କର କୁଳ, ଗୋତ୍ର ଇତ୍ୟାଦି ଜିଜ୍ଞାସା କଲେ ।

ରାଜକୁମାରଙ୍କ ପରିଚୟ ଲାଭକରି ସେ ପ୍ରୀତି ପୂର୍ବକ ତାଙ୍କୁ ନିଜ ରାଜଭବନକୁ ନେଇଗଲେ । ରାଜଭବନ ହସ୍ତୀ ଓ ଅଶ୍ୱ ସମୂହରେ ପରିପୂର୍ଣ୍ଣ ଥିଲା । ମନେହେଉଥିଲା, ସତେ ଯେପରି ତ୍ରିଭୁବନ ଭ୍ରମଣ କରି ପରିଶ୍ରାନ୍ତ ରାଜଲକ୍ଷ୍ମୀ ସେଠାରେ ବିଶ୍ରାମ କରିବେ ବୋଲି ରାଜା ଏ ପ୍ରକାର ଏକ ଦିବ୍ୟ ପ୍ରାସାଦ ନିର୍ମାଣ କରିଛନ୍ତି । ପ୍ରଣୟୀ ନିକଟକୁ ପ୍ରଣୟିନୀ ସ୍ୱତଃ ଆକୃଷ୍ଟ ହୋଇ ଆସିଲା ପରି ସମ୍ପଦ ସବୁ ଉତ୍କଣ୍ଠିତ ଭାବେ କଲ୍ୟାଣ ଭାଜନ ପୁରୁଷ ନିକଟକୁ ଆସିଯାଇଥାନ୍ତି ।

‘ଯତ୍ରତତ୍ର ସ୍ଥିତଂ ସୋତ୍କା ନରଂ କଲ୍ୟାଣ ଭାଜନଂ
ସଂପଦୋଽଭିସରନ୍ତ୍ୟେବ ପ୍ରିୟଂ ଜନମିବାଙ୍ଗନାଃ’

ଏଇଥିପାଇଁ ତ କେବଳ ଗୁଣଲୁବ୍ଧ ପ୍ରସେନ୍‌ଜିତ ନିଜର ଭଗୀରଥଯଶା ନାମ୍ନୀ କନ୍ୟାକୁ ନରବାହନଦତ୍ତଙ୍କ ହସ୍ତରେ ସମର୍ପଣ କଲେ । ବିଧାତା ନିର୍ମିତ ସାକ୍ଷାତ ଲକ୍ଷ୍ମୀ ସ୍ୱରୂପିଣୀ ଭଗୀରଥଯଶାଙ୍କୁ ଲାଭକରି ନରବାହନଦତ୍ତ ସେଠାରେ ଆନନ୍ଦ ଉପଭୋଗ କରିବାକୁ ଲାଗିଲେ ।

ଦିନେ ଭଗୀରଥଯଶାଙ୍କ ଜଗଦାନନ୍ଦଦାୟିନୀ ମୁଖକମଳ ତୁଲ୍ୟ ପ୍ରାଚୀ ନାୟିକାର ମୁଖମଣ୍ଡଳ ସ୍ୱରୂପ ସୁନ୍ଦର ଓ ସୁଧାମୟ ଚନ୍ଦ୍ର ମେଘଶୂନ୍ୟ ନିର୍ମଳ ଆକାଶ ରୂପ ଦର୍ପଣରେ ପ୍ରତିମ୍ବିବିତ ହେଉଥାନ୍ତି । ସୁଧାଧବଳ ରାଜପ୍ରାସାଦ ଚନ୍ଦ୍ର କିରଣରେ ଅଧିକ ରମଣୀୟ ଦେଖାଯାଉଥାଏ । ପ୍ରାଣପ୍ରିୟା ଭଗୀରଥଯଶାଙ୍କ ଅନୁରୋଧ କ୍ରମେ ସେହି ମନୋରମ ପରିବେଶରେ ନରବାହନଦତ୍ତ ପ୍ରାସାଦ ଶିଖରରେ ବସି ମଧୁପାନ ଆରମ୍ଭ କଲେ । ମଧୁପାତ୍ରରେ ପ୍ରଣୟିନୀର ମୁଖ ପ୍ରତିମ୍ବିବିତ ହେଉଥିବା ଯୋଗୁଁ ରାଜକୁମାରଙ୍କ ରସନା ଓ ଦର୍ଶନେନ୍ଦ୍ରିୟ ଉଭୟ ଉଲ୍ଲସିତ ହେଉଥାନ୍ତି । ସେତେବେଳେ ଚନ୍ଦ୍ରମା ମଧ ରାଜକୁମାରଙ୍କୁ ପ୍ରଣୟିନୀର ମୁଖମଣ୍ଡଳ ଅପେକ୍ଷା ଅଧିକ ସୁନ୍ଦର ମନେହେଉନଥାଏ । ଆସବ କଷାୟିତ ନେତ୍ର ଏବଂ ମଦଘୂର୍ଣ୍ଣିତ କଟାକ୍ଷ ଚନ୍ଦ୍ରଙ୍କଠାରେ କାହିଁ !

ମଧୁପାନ ଶେଷକରି ନରବାହନଦତ୍ତ ପ୍ରିୟତମା ଭଗୀରଥଯଶା ସହିତ ଶୟନ କକ୍ଷରେ ପ୍ରବେଶ କଲେ । କିଛି ସମୟ ନିଦ୍ରା ଯିବା ପରେ ତାଙ୍କ ନିଦ ଭାଙ୍ଗିଗଲା । ଧୀରେଧୀରେ ଅନ୍ୟ ପ୍ରଣୟିନୀମାନଙ୍କ କଥା ତାଙ୍କ ସ୍ମୃତିପଟରେ ଜାଗ୍ରତ ହେବାକୁ ଲାଗିଲା । ଭଗୀରଥଯଶାଙ୍କୁ ପାଇବା ପରେ ଅନ୍ୟ ସ୍ତ୍ରୀମାନଙ୍କୁ କିପରି ଭୁଲିଗଲେ ତାହା ହିଁ ସେ ଚିନ୍ତା କରୁଥାନ୍ତି । ଭାଗ୍ୟ ହିଁ ସର୍ବମୟକର୍ତ୍ତା । ତାଙ୍କ ସଚିବ ପରାକ୍ରମଶାଳୀ ମରୁଭୂତି, ନୀତିଜ୍ଞ ହରିଶିଖ ଏବଂ ଚତୁର ଗୋମୁଖ, ଯେଉଁମାନେ ସବୁ ବିପଦ ଆପଦରେ ସହାୟକ

ଥିଲେ ସେମାନେ ବା କେଉଁଠି ? ଏସବୁ ଭାବି ତାଙ୍କର ଦୁଃଖ ଜାତ ହେଲା । ନାରୀକଣ୍ଠର ଯେଉଁ 'ହାୟ ହାୟ' ଶବ୍ଦ ଶୁଣି ତାଙ୍କର ନିଦ୍ରାଭଙ୍ଗ ହୋଇଥିଲା ବର୍ତ୍ତମାନ ସେ ପୁଣି ସେହି ଶବ୍ଦ ଶୁଣିବାକୁ ପାଇଲେ । ଦୀପାଲୋକରେ ସେ ଶୟନ କକ୍ଷର ଚତୁର୍ଦ୍ଦିଗରେ ଆଖି ବୁଲାଇଲେ । କେହି କେଉଁଆଡ଼େ ଦେଖାଗଲେ ନାହିଁ । ଶେଷରେ ବାତାୟନ ବାହାରେ ଏକ ଦିବ୍ୟରମଣୀର ମୁଖମଣ୍ଡଳ ଉପରେ ତାଙ୍କର ଦୃଷ୍ଟିପାତ ହେଲା । ଏ ପର୍ଯ୍ୟନ୍ତ ସେ ଆକାଶରେ ସକଳଙ୍କ ଚନ୍ଦ୍ରମାଙ୍କୁ ହିଁ ଦେଖିଥିଲେ । ବର୍ତ୍ତମାନ ବିନା ଆକାଶରେ କଳଙ୍କ ରହିତ ଚନ୍ଦ୍ରମା ଦେଖୁଥିବା ପରି ତାଙ୍କର ମନେହେଲା । ନାରୀଟିର ମୁଖ ଅତିରିକ୍ତ ଅନ୍ୟ କୌଣସି ଅଙ୍ଗ ଦେଖାଯାଉନଥାଏ । ସେ ତାଙ୍କର ଅନ୍ୟାନ୍ୟ ଅଙ୍ଗ ସୌନ୍ଦର୍ଯ୍ୟ ଦେଖିବାପାଇଁ ଉତ୍କଣ୍ଠିତ ହୋଇଉଠିଲେ । କିନ୍ତୁ ପୁଣି ତାଙ୍କ ମନରେ ବିଚାର ଆସିଲା ପୂର୍ବକାଳରେ ତ ବ୍ରହ୍ମା ଯେତେବେଳେ ସୃଷ୍ଟି ସର୍ଜନା କାର୍ଯ୍ୟରେ ନିମଗ୍ନ ଥିଲେ ସେତେବେଳେ ଦୈତ୍ୟ ଆତାପି ସେଥିରେ ବାରମ୍ୱାର ବିଘ୍ନ ଘଟାଉଥାଏ । ତେଣୁ ବ୍ରହ୍ମା ସେ ସୃଷ୍ଟି କରିଥିବା ଏକ ଅପୂର୍ବ ବସ୍ତୁ ଦେଖିବାପାଇଁ ଆତାପିକୁ ନନ୍ଦନବନକୁ ପଠାଇଦେଲେ । ସେଠାରେ ପହଞ୍ଚି ଦୈତ୍ୟ ଏକ ଅଦ୍ଭୁତ ସୁନ୍ଦରୀ ନାରୀର ପାଦଯୁଗଳ ହିଁ ଦେଖିବାକୁ ପାଇଲା । ଅନ୍ୟାନ୍ୟ ଅଙ୍ଗ ଦେଖିବା ପାଇଁ ପ୍ରୟାସ କରୁଥିଲା ବେଳେ ତା'ର ପ୍ରାଣବାୟୁ ଉଡ଼ିଗଲା ।

ସେହିପରି ବୋଧହୁଏ ବିଧାତା ମୋର ବିପତ୍ତିପାଇଁ ଏହି ନାରୀଟିକୁ ସୃଷ୍ଟି କରିଛନ୍ତି । ନରବାହନଦତ୍ତ ଏହିଭଳି ଚିନ୍ତା କରୁଥିବା ବେଳେ ରମଣୀଟି ବାତାୟନ ନିକଟକୁ ଯିବାପାଇଁ ଅଙ୍ଗୁଳିଦ୍ୱାରା ତାଙ୍କୁ ସଙ୍କେତ ଦେଲା । ସେ ତା'ର ଇଙ୍ଗିତ କ୍ରମେ ଗାଢ଼ନିଦ୍ରାରେ ଅଭିଭୂତା ପତ୍ନୀଙ୍କୁ ଶଯ୍ୟା ଉପରେ ଛାଡ଼ି ପ୍ରକୋଷ୍ଠ ବାହାରକୁ ଆସିଲେ । ସମ୍ମୁଖରେ ତାଙ୍କୁ ଦେଖିବା ମାତ୍ରେ ସେହି ଦିବ୍ୟ ରମଣୀ ଜଣକ ମଦନମଞ୍ଜୁକାଙ୍କ ନାମ ଉଚ୍ଚାରଣ କରି କହିଲେ, 'ମଦନମଞ୍ଜୁକା ! ତୁମେ ଯେଉଁ ପତିଙ୍କର ଏତେ ପ୍ରଶଂସା ଗାନ କରୁଥିଲ ସେ ତ ଅନ୍ୟ ସ୍ତ୍ରୀ ପ୍ରତି ଆସକ୍ତ । ହେ ଅଭାଗିନି ! ତୁମେ ଏହି ପୁରୁଷଙ୍କଦ୍ୱାରା ପ୍ରତାରିତ ହିଁ ହୋଇଯାଇଛ ।'

ମଦନମଞ୍ଜୁକାଙ୍କ ନାମ ଶୁଣିବା ମାତ୍ରେ ନରବାହନଦତ୍ତଙ୍କ ସ୍ମୃତିପଟରେ ତାଙ୍କ ରୂପ ନାଚିଉଠିଲା । ସେ ତତ୍କ୍ଷଣାତ୍ ବିରହ ବେଦନାରେ ସନ୍ତପ୍ତ ହୋଇପଡ଼ିଲେ । 'ତୁମେ କିଏ ? ପ୍ରିୟତମା ମଦନମଞ୍ଜୁକାଙ୍କୁ ତୁମେ କେଉଁଠି ଦେଖିଛ ? ମୋ ନିକଟକୁ ଆସିବାରେ ତୁମର ଉଦ୍ଦେଶ୍ୟ କଣ ? ଏସବୁ କହିଲେ ମୁଁ ଅନୁଗୃହୀତ ହେବି' ବୋଲି ରାଜକୁମାର ତାଙ୍କୁ ଉଦ୍‌ବେଗର ସହିତ ପ୍ରଶ୍ନ କରନ୍ତେ ସେହି ପ୍ରୌଢ଼ା ଦିବ୍ୟରମଣୀ ତାଙ୍କୁ କିଛି ଦୂରକୁ ନେଇଯାଇ ଅତ୍ୟନ୍ତ ସାବଧାନତାର ସହିତ କହିବା ଆରମ୍ଭ କଲେ—

## ପ୍ରଭାବତୀ କଥା

'ପୁଷ୍କରାବତୀ ବୋଲି ଏକ ନଗରୀ ଅଛି । ପିଙ୍ଗଳଗାନ୍ଧାର ନାମରେ ସେଠାରେ ଜଣେ ବିଦ୍ୟାଧର ଅଧିପତି ବାସ କରନ୍ତି । ସେ ପିଙ୍ଗଳ ଆରାଧନାରେ ଦକ୍ଷ । ସୂର୍ଯ୍ୟଙ୍କୁ ଉପାସନାରେ ସନ୍ତୁଷ୍ଟ କରି ସେ ଗୋଟିଏ କନ୍ୟା ଲାଭ କରିଥିଲେ । ମୁଁ ତାଙ୍କର ସେହି କନ୍ୟା ପ୍ରଭାବତୀ । ବେଗବତୀ ମୋର ଅନ୍ତରଙ୍ଗା ସଖୀ । ତାଙ୍କୁ ଦେଖିବାପାଇଁ ମୁଁ ଦିନେ ଆଷାଢ଼ପୁର ଯାଇଥିଲି । କିନ୍ତୁ ସେ ସେତେବେଳେ ତପସ୍ୟା କରିବାପାଇଁ ଅନ୍ୟତ୍ର ଚାଲିଯାଇ ଥାଆନ୍ତି । ମୋର ତାଙ୍କ ସହିତ ସାକ୍ଷାତ ହୋଇପାରିଲା ନାହିଁ । କିନ୍ତୁ ବେଗବତୀଙ୍କ ମାତା ପୃଥିବୀଦେବୀଙ୍କଠାରୁ ଶୁଣିଲି ଯେ ମଦନମଞ୍ଚୁକା ସେଠାରେ ରହୁଛନ୍ତି । ମୁଁ ତାଙ୍କୁ ଦେଖା କରିବାପାଇଁ ଗଲି । ଦେଖିଲି, ଆହାର ଗ୍ରହଣ ନ କରି ତାଙ୍କ ଶରୀର ଅତ୍ୟନ୍ତ କ୍ଷୀଣ ହୋଇଯାଇଛି । ରକ୍ତହୀନତା ଯୋଗୁଁ ତାଙ୍କ କଳେବର ପାଣ୍ଡୁରବର୍ଣ୍ଣ ଧାରଣ କରିଛି । ବିରହର ପ୍ରତୀକ ସ୍ୱରୂପ ଏକମାତ୍ର ବେଣୀ ବନ୍ଧନ କରି ସେ ସର୍ବଦା ଆପଣଙ୍କ ଗୁଣ ସ୍ମରଣ ପୂର୍ବକ ବିଳାପ କରୁଛନ୍ତି । ବିଦ୍ୟାଧରାଧିପତିଙ୍କ କନ୍ୟାମାନେ ତାଙ୍କୁ ସର୍ବଦା ଘେରି ରହିଛନ୍ତି । ସେମାନଙ୍କ ମୁଖ ଓ ଚକ୍ଷୁରେ ହର୍ଷ ଓ ବିଷାଦର ଚିହ୍ନ । ମଦନମଞ୍ଚୁକାଙ୍କ ଦୁଃଖରେ ସେମାନେ ସମଦୁଃଖିନୀ ଏବଂ ଆପଣଙ୍କ ପ୍ରଶଂସା ଶ୍ରବଣରେ ସେମାନେ ହର୍ଷିତା । ମୁଁ ଜାଣିବାପାଇଁ ଚାହିଁବାରୁ ମଦନମଞ୍ଚୁକା ମୋତେ ଆପଣଙ୍କ ସ୍ୱରୂପର ପରିଚୟ ଦେଲେ । ମୁଁ ଆପଣଙ୍କୁ ଧରି ତାଙ୍କ ନିକଟରେ ପହଞ୍ଚିବି ବୋଲି ନିଶ୍ଚିତ ପ୍ରତିଶ୍ରୁତି ଦେଇ ଆଶ୍ୱାସିତ କଲି ।

ମଦନମଞ୍ଚୁକାଙ୍କ ପ୍ରତି ଅନୁକମ୍ପା ଏବଂ ଆପଣଙ୍କ ଗୁଣରାଶିର ଆକର୍ଷଣ ମୋତେ ଏଠାକୁ ନେଇଆସିଛି । ମୁଁ ମୋର ବିଦ୍ୟା ପ୍ରଭାବରେ ଜାଣିପାରିଥିଲି ଯେ ଆପଣ ବର୍ତ୍ତମାନ ଶ୍ରୀବସ୍ତୀପୁରୀ ନଗରୀରେ ରହୁଅଛନ୍ତି । ଆପଣଙ୍କୁ ଅନ୍ୟଜଣେ ନାରୀ ସହିତ ଶଯ୍ୟା ଉପରେ ଦେଖି ଏବଂ ଅନ୍ୟ ପତ୍ନୀମାନଙ୍କୁ ସ୍ମରଣ କରୁଥିଲେ ସୁଦ୍ଧା ମଦନମଞ୍ଚୁକାଙ୍କୁ ସମ୍ପୂର୍ଣ୍ଣ ରୂପେ ଭୁଲିଯାଇଥିବା ଲକ୍ଷ୍ୟକରି ମୋ ମୁହଁରୁ 'ହାୟ ହାୟ' ଶବ୍ଦ ଆପେ ଆପେ ବାହାରି ଯାଇଥିଲା ।'

ଦିବ୍ୟ ରମଣୀଙ୍କଠାରୁ ଏହାଶୁଣି ନରବାହନଦତ୍ତ ତାଙ୍କୁ ଅନୁରୋଧ କଲେ ଯେ ସେ ତାଙ୍କୁ ଯାହା କହିବା କଥା କହିଯାଆନ୍ତୁ, କିନ୍ତୁ ସଙ୍ଗେସଙ୍ଗେ ମଦନମଞ୍ଚୁକା ଥିବା ସ୍ଥାନରେ ନେଇ ପହଞ୍ଚାଇ ଦିଅନ୍ତୁ । ବିଦ୍ୟାଧରୀ ପ୍ରଭାବତୀ ରାତାରାତି ତାଙ୍କୁ ଧରି ଆକାଶ ମାର୍ଗରେ ଉଡ଼ିଗଲେ ।

ପଥ ମଧ୍ୟରେ ସେମାନେ ଆସି ଚନ୍ଦ୍ରବତୀ ନଗରୀ ନିକଟରେ ପହଞ୍ଚିଲେ । ମାର୍ଗ ମଧ୍ୟରେ ପ୍ରଜ୍ୱଳିତ ଅଗ୍ନିଶିଖାକୁ ଦେଖି ସେ ନରବାହନଦତ୍ତଙ୍କ ହସ୍ତଧାରଣ ପୂର୍ବକ ଅଗ୍ନି ପ୍ରଦକ୍ଷିଣ କଲେ । ମନରେ ସେ ରାଜକୁମାରଙ୍କୁ ପତି ରୂପରେ ଲାଭ କରିବାର ଆକାଂକ୍ଷା ଅଗ୍ନିଙ୍କୁ ଜଣାଉଥାନ୍ତି । ସାଧାରଣତଃ ଦିବ୍ୟ ନାରୀ ଓ ପୁରୁଷମାନଙ୍କ କ୍ରିୟାକଳାପ ସେମାନଙ୍କ ସଂକଳ୍ପ ଉପରେ ନିର୍ଭର କରିଥାଏ ।

ଆକାଶ ମାର୍ଗରେ ଗଲାବେଳେ ଉପରୁ ସମଗ୍ର ପୃଥିବୀ କିପରି ଏକ ମଣ୍ଡପ, ନଦୀଗୁଡ଼ିକ ସର୍ପରାଶି ଏବଂ ସମୁଚ ପାହାଡ଼ଗୁଡ଼ିକ କିପରି ଉଇହୁଙ୍କା ପରି ଦେଖାଯାଉଛନ୍ତି, ପ୍ରଭାବତୀ ତାହା ଦେଖାଉଥାନ୍ତି । ଏହିପରି ଆକାଶ ପଥରେ ବିଭିନ୍ନ ବିଚିତ୍ର ବସ୍ତୁ ଦର୍ଶନ କରି କରି ସେମାନେ ବହୁଦୂର ପଥ ଅତିକ୍ରମ କରିଗଲେ । ପଥଶ୍ରାନ୍ତିରେ ନରବାହନଦତ୍ତ ତୃଷାର୍ତ୍ତ ହୋଇଉଠିବାରୁ ପ୍ରଭାବତୀ ତାଙ୍କୁ ଧରି ଆକାଶ ମାର୍ଗରୁ ଅବତରଣ କରିଆସିଲେ । ସେମାନେ ଚନ୍ଦ୍ରଜ୍ୟୋତ୍ସ୍ନା ପରି ଶୀତଳ ଓ ସ୍ୱଚ୍ଛ ଜଳପୂର୍ଣ୍ଣ ଏକ ସରୋବର ନିକଟରେ ଆସି ଉପସ୍ଥିତ ହୁଅନ୍ତେ, ଜଳପାନରେ ନରବାହନଦତ୍ତଙ୍କ ତୃଷା ଶାନ୍ତ ହେଲା । କିନ୍ତୁ ସେହି ରମଣୀୟ ଅରଣ୍ୟ ଏବଂ ସରୋବରର ଜଳ ତାଙ୍କୁ ହଠାତ୍ କାମୋନ୍ମତ୍ତ କରିଦେଲା । ସେ ପ୍ରଭାବତୀଙ୍କୁ ସମ୍ଭୋଗ କରିବାପାଇଁ ଉତ୍କଣ୍ଠିତ ହୋଇଉଠିଲେ ।

ସମ୍ଭୋଗର ପ୍ରସ୍ତାବ ପ୍ରକାଶ କରନ୍ତେ ମଦନମଞ୍ଜୁକାଙ୍କୁ ଦେଇଥିବା ପ୍ରତିଶ୍ରୁତି ସ୍ମରଣ କରି ପ୍ରଭାବତୀ ତାଙ୍କୁ ସେଥିରୁ କ୍ଷାନ୍ତ କରିବାପାଇଁ ଚେଷ୍ଟାକଲେ । ମଦନମଞ୍ଜୁକାଙ୍କ ପ୍ରତି ତାଙ୍କର ଦୟା ହେଲା । ଯଦିଓ ରାଜକୁମାରଙ୍କ ପ୍ରସ୍ତାବରେ ତାଙ୍କର ଯଥେଷ୍ଟ ସ୍ୱାର୍ଥ ଥିଲା ତଥାପି ତାଙ୍କ ସହିତ ସମ୍ଭୋଗ କରିସାରିବା ପରେ ରାଜପୁତ୍ର ମଦନମଞ୍ଜୁକାଙ୍କ ପ୍ରତି ଅନାସକ୍ତ ହୋଇପାରିବାର ସମ୍ଭାବନା ତାଙ୍କୁ ସେଥିରୁ କ୍ଷାନ୍ତ କଲା । ପରର ଉପକାରପାଇଁ ଉତ୍ତମ ବ୍ୟକ୍ତିମାନେ ନିଜ ସ୍ୱାର୍ଥ ସିଦ୍ଧି ପ୍ରତି ଧ୍ୟାନ ଦେଇ ନଥାନ୍ତି ।

'ପରାର୍ଥପ୍ରତିପନ୍ନାହି ନେକ୍ଷନ୍ତେ ସ୍ୱାର୍ଥମୁତ୍ତମାଃ'

ପ୍ରଭାବତୀ ବିନୀତ ସ୍ୱରରେ କହିଲେ, 'ଆର୍ଯ୍ୟପୁତ୍ର ! ଆପଣ କିଛି ଅନ୍ୟଥା ମନେକରିବେ ନାହିଁ । ମୋ ମନରେ ଅନ୍ୟ ଅଭିପ୍ରାୟ ଅଛି । ମୁଁ ପ୍ରଥମେ ଆପଣଙ୍କୁ ଗଳ୍ପଟିଏ ଶୁଣାଉଛି, ପରେ ଅଭିପ୍ରାୟ ପ୍ରକାଶ କରିବି ।

## ପୁତ୍ରହରା କୁଳଟା କଥା

ଅତୀତର କଥା । ପାଟଳିପୁତ୍ରରେ ଜଣେ ଦରିଦ୍ର ଯୁବତୀ ବାସ କରୁଥିଲା । ସେ ଦେଖିବାପାଇଁ ଅତ୍ୟନ୍ତ ସୁନ୍ଦରୀ । ତାର ପତି ଇହଲୀଳା ସମ୍ବରଣ କରିଥିଲେ । ସେ ଗୋଟିଏ ସନ୍ତାନର ଜନନୀ । ପୁତ୍ରଟି ଅଳ୍ପ ବୟସ୍କ । ଯୌବନର ତୃଷା ମେଣ୍ଟାଇବାପାଇଁ ଏବଂ ଅନ୍ନସଂସ୍ଥାନପାଇଁ ସେ ପ୍ରତ୍ୟେକ ରାତ୍ରିରେ ପରପୁରୁଷ ସଙ୍ଗମ ନିମିତ୍ତ ବିଭିନ୍ନ ସ୍ଥାନକୁ ଯାଉଥାଏ । ଘରେ ବାଳକଟିକୁ ଏକାକୀ ଛାଡ଼ିଦେଇ ଯାଉଥିବା ବେଳେ ପ୍ରତିଦିନ ତାକୁ ପ୍ରତିଶ୍ରୁତି ଦେଉଥାଏ ଯେ ସକାଳେ ଫେରିଲା ବେଳେ ସେ ତା' ପାଇଁ କିଛି ମିଠା ନେଇଆସିବ । ଅବଶ୍ୟ ପ୍ରତିଦିନ ସକାଳୁ ସେ ପୁଅପାଇଁ କିଛି ମିଠା ନେଇଆସୁଥିଲା । ମିଠାଲୋଭରେ ବାଳକଟି ରାତିରେ ଏକାଏକା ଶୋଇଯାଉଥାଏ ।

ଦିନେ ସ୍ତ୍ରୀଟି ମିଠା ଆଣିବା ଭୁଲିଗଲା । ସକାଳୁ ଫେରିଆସିବା ମାତ୍ରେ ବାଳକ ତାକୁ ମିଠା ମାଗିବା ଯୋଗୁଁ ତା' ପାଟିରୁ ହଠାତ୍ ବାହାରି ପଡ଼ିଲା 'ମୁଁ କାମୁକପୁରୁଷ-ମାନଙ୍କ ସହିତ ସଙ୍ଗମଜନିତ ମିଠା ହିଁ ଜାଣେ । ଆଉ ଅନ୍ୟ ମିଠା କଣ ?' ଏହାଶୁଣି ବାଳକଟି ଜାଣିପାରିଲା ଯେ ତାର ମା ମିଠା ତ ଆଣିନାହିଁ କିନ୍ତୁ ସେ ପରପୁରୁଷାସକ୍ତ । ଏଥିରେ ତା'ର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସେ ମୃତ୍ୟୁବରଣ କଲା ।

ତେଣୁ ହେ ପ୍ରିୟ ରାଜପୁତ୍ର ! ବର୍ତ୍ତମାନ ଯଦି ମୁଁ ଆପଣଙ୍କ ଅନୁରୋଧ ସ୍ୱୀକାର କରିନିଏ ତେବେ ଆପଣଙ୍କ ସହିତ ମଦନମଞ୍ଚୁକାଙ୍କୁ ମିଳାଇବାପାଇଁ ମୁଁ ତାଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଥିଲି ତାହା ବ୍ୟର୍ଥ ହେବ । ମୋଦ୍ୱାରା ପ୍ରତାରିତ ହୋଇଛନ୍ତି ଜାଣି ନିରାଶାରେ ତାଙ୍କ ପୁଷ୍ପତୁଲ୍ୟ କୋମଳ ହୃଦୟ ବିଦୀର୍ଣ୍ଣ ହୋଇପଡ଼ିବ । ତେଣୁ ତାଙ୍କୁ ଦେଇଥିବା ଆଶ୍ୱାସନା ଏବଂ ମୋର ପ୍ରତିଜ୍ଞା ଭଙ୍ଗ କରି ଅମଣିଷ ତୁଲ୍ୟ ଆପଣଙ୍କ ସହିତ କୌଣସି ପ୍ରଣୟ ସମ୍ପର୍କ ସ୍ଥାପନ କରିବାପାଇଁ ମୁଁ ଚାହୁଁନାହିଁ । ଆପଣ ମୋର ଅତ୍ୟନ୍ତ ପ୍ରିୟ, ତଥାପି ଆପଣଙ୍କ ଅନୁରୋଧ ରକ୍ଷା କରିବାପାଇଁ ମୁଁ ଅସମର୍ଥ, ମୋତେ କ୍ଷମା କରନ୍ତୁ ।'

ପ୍ରଭାବତୀଙ୍କ କଥାରେ ନରବାହନଦତ୍ତ ଯୁଗପତ୍ ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇପଡ଼ିଲେ । ପ୍ରଭାବତୀଙ୍କ ପରି ଉଦାର ଚରିତ୍ରବତୀ ନାରୀର ସୃଷ୍ଟିରେ ବିଧାତାଙ୍କ ବିଚିତ୍ର ମନୋବୃତ୍ତି ତାଙ୍କୁ ବିସ୍ମିତ କଲା; ମାନବ ସୃଷ୍ଟି ତାଙ୍କୁ ଅଧିକ ବିଚିତ୍ର ମନେହେଲା । ସେ ପ୍ରଭାବତୀଙ୍କୁ ସସ୍ନେହ ପ୍ରଶଂସା କରି ଧନ୍ୟବାଦ ପ୍ରଦାନ ପୂର୍ବକ ତାଙ୍କୁ ଯଥାଶୀଘ୍ର ମଦନମଞ୍ଚୁକାଙ୍କ ନିକଟକୁ ନେଇଯିବାପାଇଁ ଅନୁରୋଧ ଜଣାଇଲେ । ପ୍ରଭାବତୀ ମଧ୍ୟ

ଆଉ ଅଧିକ କାଳବିଳମ୍ୱ ନକରି ନିଜ ବିଦ୍ୟାବଳରେ ରାଜକୁମାରଙ୍କ ସହିତ ଯାଇ ଆଷାଢ଼ପୁର ପର୍ବତରେ ଅବତରଣ କଲେ । ବର୍ଷାଋତୁର ବାରିଧାରା ଯେପରି ଶୁଷ୍କ ନଦୀକୁ ଜଳପ୍ରବାହ ସହିତ ମିଳନ କରାଇଥାଏ ସେହିପରି ପ୍ରଭାବତୀ ବିରହକାତରା ମଦନମଞ୍ଜୁକାଙ୍କ ସହିତ ନିଜର ପ୍ରିୟତମ ରାଜକୁମାରଙ୍କୁ ନେଇ ମିଳନ କରାଇଲେ ।

ବିରହ ପୀଡ଼ିତା ମଦନମଞ୍ଜୁକା କ୍ଷୀଣ ଓ ପାଣ୍ଡୁର ଦେଖାଯାଉଥିଲେ ସୁଦ୍ଧା ସେ ନରବାହନଦତ୍ତଙ୍କୁ ପୂର୍ଣ୍ଣମୀର ଚନ୍ଦ୍ରକଳାପରି ମନେହେଲେ । ଉଭୟଙ୍କ ମିଳନ, ରାତ୍ରି ଓ ଚନ୍ଦ୍ରମାର ମିଳନ ବିଶ୍ୱବାସୀଙ୍କ ଆନନ୍ଦପ୍ରଦ ହେଲାପରି, କେବଳ ଆନନ୍ଦଦାୟକ ନଥିଲା, ତାହା ଉଭୟଙ୍କ ଶରୀରରେ ଜୀବନୀ ଶକ୍ତି ମଧ୍ୟ ସଞ୍ଚାର କଲା । ବିରହାଗ୍ନି ସନ୍ତପ୍ତ ଦମ୍ପତ୍ତି ପରସ୍ପରୁ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ଉଭୟଙ୍କ ଶରୀର ସ୍ୱେଦସିକ୍ତ ହୋଇଉଠିଲା । ମନେହେଲା ଦ୍ରବୀଭୂତ ହୋଇ ସେମାନେ ଯେପରି ଏକୀଭୂତ ହୋଇଗଲେ । ପ୍ରଭାବତୀଙ୍କ ବିଦ୍ୟାବଳରେ ରାତ୍ରି ଶେଷ ହେବା ପୂର୍ବରୁ ସେମାନଙ୍କ ମିଳନ ଉପଭୋଗ୍ୟ ହେଲା । ନିଜର ଅଦ୍ଭୁତ ବିଦ୍ୟାଧର ସିଦ୍ଧି ବଳରେ ପ୍ରଭାବତୀ ନରବାହନଦତ୍ତଙ୍କୁ ଅଦୃଶ୍ୟ କରି ରଖିଥିଲେ । ମଦନମଞ୍ଜୁକାଙ୍କ ବ୍ୟତୀତ ତାଙ୍କୁ ଅନ୍ୟ କେହି ଦେଖିପାରୁ ନଥାନ୍ତି ।

ପରଦିନ ପ୍ରଭାତରୁ ବିରହାବସ୍ଥାରେ ଧାରଣ କରିଥିବା ଏକମାତ୍ର ବେଣୀ ଖୋଲିଯାଇଥିବା ଦେଖି ମଦନମଞ୍ଜୁକା ଟିକିଏ ବିମନା ହୋଇପଡ଼ିଲେ । ନରବାହନଦତ୍ତଙ୍କୁ ଦୁଃଖର ସହିତ ଜଣାଇଲେ, 'ଆର୍ଯ୍ୟପୁତ୍ର ! ମୁଁ ପ୍ରତିଜ୍ଞା କରିଥିଲି ଯେ ମାନସବେଗର ମୃତ୍ୟୁ ପରେ ହିଁ ଆପଣଙ୍କଦ୍ୱାରା ମୋର ଏହି ବେଣୀ ମୁକୁଳା କରାଇବି । କିମ୍ୱା ମୋର ଅଗ୍ନିପ୍ରବେଶ ବେଳେ ଏହାକୁ ଅଗ୍ନିରେ ଦଗ୍ଧ କରିବି । କିମ୍ୱା ମୋର ମୃତ୍ୟୁ ପରେ ପକ୍ଷୀମାନଙ୍କ ଚଞ୍ଚୁରେ ଏହା ଖୋଲାଯିବ; କିନ୍ତୁ ଏ ତିନୋଟିରୁ କୌଣସିଟି ହେଲାନାହିଁ । ମାନସବେଗର ମୃତ୍ୟୁ ପୂର୍ବରୁ ହିଁ ଆପଣ ମୋର ବେଣୀ ବନ୍ଧନ ମୁକୁଳାଇ ଦେଲେ । ଏଣୁ ମୋ ମନରେ ଗଭୀର ଦୁଃଖ ହେଉଅଛି ।

ବେଗବତୀ ଅଗ୍ନି ପର୍ବତରେ ନିକ୍ଷିପ୍ତ କରିବା ପରେ ମଧ୍ୟ ମାନସବେଗର ମୃତ୍ୟୁ ହେଲାନାହିଁ । ସେ ଏଠାରେ ତାର ବିଶ୍ୱସ୍ତ ଅନୁଚରମାନଙ୍କୁ ନିଯୁକ୍ତ କରିଛି । ସେମାନେ ସର୍ବଦା ଜାଗ୍ରତ ଅଛନ୍ତି । ପ୍ରଭାବତୀଙ୍କ ବିଦ୍ୟା ବଳରେ ଆପଣ ଅଦୃଶ୍ୟ ରୂପେ ରହିନଥିଲେ ସେମାନେ ସହଜରେ ଆପଣଙ୍କୁ ଛାଡ଼ିନଥାନ୍ତେ ।'

ପତିବ୍ରତା ମଦନମଞ୍ଜୁକାଙ୍କଠାରୁ ତାଙ୍କ ପ୍ରତିଜ୍ଞା କଥା ଶୁଣି ନରବାହନଦତ୍ତ ସମୟୋଚିତ ଆଶ୍ୱାସନା ଦେଇ କହିଲେ, 'ପ୍ରିୟେ ! ଆଉ ଅଳ୍ପ ସମୟ ଅପେକ୍ଷା କର । ଉପଯୁକ୍ତ ବିଦ୍ୟା ଆହରଣ କରି ମୁଁ ତାକୁ ଶେଷ କରିବି । ତୁମର ମନୋରଥ ପୂର୍ଣ୍ଣ ହେବ ।'

ଏପରି ଆଶ୍ୱାସନା ଦେଇ ନରବାହନଦତ୍ତ ସେହି ବିଦ୍ୟାଧର ନଗରରେ ହିଁ ରହିବାକୁ ଲାଗିଲେ ।

ପ୍ରଭାବତୀ ସମୟ ଦେଖି ନରବାହନଦତ୍ତଙ୍କ ରୂପ ପରିବର୍ତ୍ତନ କରିଦେଲା । ସେ ତାଙ୍କୁ ନିଜ ରୂପ ପ୍ରଦାନକରି ସେଠାରୁ ଅନ୍ତର୍ହିତା ହେଲା । ରାଜପୁତ୍ର ନିଃଶଙ୍କ ଚିତ୍ତରେ ପ୍ରଭାବତୀର ରୂପ ଧାରଣ ପୂର୍ବକ ସେଠାରେ ଆନନ୍ଦ ଉପଭୋଗ କରୁଥାନ୍ତି । ପ୍ରହରୀମାନେ ତାଙ୍କୁ ବେଗବତୀଙ୍କ ସଖୀ ପ୍ରଭାବତୀ ବୋଲି ହିଁ ଧରିନେଇଥାନ୍ତି । ସେମାନେ ମାନସବେଗଙ୍କୁ ଜଣାଉଥାନ୍ତି ଯେ ଘନିଷ୍ଠ ବନ୍ଧୁତା ଯୋଗୁଁ ମଦନମଞ୍ଜୁକାଙ୍କ ଦେଖାଶୁଣା କରିବାପାଇଁ ଭଗିନୀ ବେଗବତୀ ନିଜର ଅନ୍ତରଙ୍ଗା ସଖୀ ପ୍ରଭାବତୀକୁ ନିଯୁକ୍ତ କରିଅଛନ୍ତି ।

କଥାବାର୍ତ୍ତା ଛଳରେ ମଦନମଞ୍ଜୁକା ନିଜର ଦୁଃଖଦ ଅନୁଭୂତି ଶୁଣାଇ କହିଲେ, ''ମାନସବେଗ ନିଜର ମାୟାବଳରେ ମୋତେ ଏଠାକୁ ନେଇଆସିଲା । ଭୟ ଓ କ୍ରୁରତା ଦ୍ୱାରା ସେ ମୋତେ ନିଜର କରିବାପାଇଁ ଚେଷ୍ଟା କରୁଥାଏ । ଏ ସମୟରେ ଭୟଙ୍କର ଭୈରବ ଆକାର ଧାରଣ କରି କାଳର ଲହଲହ ଜିହ୍ୱା ପରି ତୀକ୍ଷ୍ଣ କୃପାଣ ହସ୍ତରେ ବିକଟ ହୁଙ୍କାର ପୂର୍ବକ ସ୍ୱୟଂ ଭଗବାନ ଦେଖାଦେଇ ମାନସବେଗଙ୍କୁ କହିଲେ, 'ଏହି ମଦନମଞ୍ଜୁକା ବିଦ୍ୟାଧରମାନଙ୍କ ଭାବୀ ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କ ପତ୍ନୀ । ମୋର ଉପସ୍ଥିତିରେ ତାଙ୍କୁ କୌଣସି କଷ୍ଟ ଦିଆଯାଇ ପାରିବ ନାହିଁ ।' ଭଗବାନଙ୍କ ହୁଙ୍କାର ଶୁଣିବା ମାତ୍ରେ ମାନସବେଗ ରୁଧିର ବମନ କରି ଭୂମି ଉପରେ ପଡ଼ିଗଲା । ଭଗବାନ୍ ଅନ୍ତର୍ହିତ ହେଲେ । କିଛି ସମୟ ପରେ ମାନସବେଗ ମଧ୍ୟ ଚେତନା ଲାଭ କରି ସ୍ୱସ୍ଥାନକୁ ଚାଲିଗଲା । ସେହି ସମୟଠାରୁ ସେ ମୋ ପ୍ରତି କ୍ରୁରତା ଆଚରଣ କରିବାପାଇଁ ଆଉ ସାହସ କରିନାହିଁ ।

ମୋର ଏହି ଦୁଃଖ ଦେଖି ଏବଂ ମୁଁ ପ୍ରାଣତ୍ୟାଗ କରିବାପାଇଁ ଚିନ୍ତା କରୁଥିବା ଜାଣିପାରି ମାନସବେଗର ଅନ୍ତଃପୁରରେ ଥିବା ଦାସୀମାନେ ବ୍ୟଥିତ ହୋଇପଡ଼ିଲେ । ଦିନେ ସେମାନେ ସ୍ୱତଃପ୍ରବୃତ୍ତ ଭାବେ ଆସି ମୋତେ ଆଶ୍ୱାସନା ଦେଇ କହିଲେ, 'ଦେବି ! କିଛିକାଳ ପୂର୍ବେ ଜଣେ ସୁନ୍ଦରୀ ଋଷିକନ୍ୟାଙ୍କୁ ଦେଖି ମାନସବେଗ ତା' ପ୍ରତି ଆକୃଷ୍ଟ ହୋଇପଡ଼ିଥିଲା । ସେ ତାଙ୍କୁ ବଳାତ୍କାରରେ ଅପହରଣ କରି ଆଣିବା ସମୟରେ ମୁନିମାନେ ତାଙ୍କୁ ଅଭିଶାପ ଦେଇଥିଲେ ଯେ ସେ ଯଦି କୌଣସି ପରସ୍ତ୍ରୀକୁ ତା'ର ଇଚ୍ଛା

ବିରୁଦ୍ଧରେ ଉପଭୋଗ କରେ ତେବେ ତା'ର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।' ତେଣୁ ସେ ପରନାରୀକୁ ବଳାତ୍କାର କରିପାରିବ ନାହିଁ । ସେଥିପାଇଁ ତୁମେ ଭୟଭୀତ ହେବା ଆଦୌ ଉଚିତ ନୁହେଁ । ଦେବତାମାନଙ୍କ ଆଶୀର୍ବାଦରୁ ନିକଟରେ ହିଁ ତୁମର ପତି ସମାଗମ ଘଟିବ ।

ଦାସୀମାନେ ଏହିପରି କହୁଥିବା ବେଳେ ମାନସବେଗର ଭଗିନୀ ବେଗବତୀ ମଧ୍ୟ ମୋତେ ଧୈର୍ଯ୍ୟ ଦେବା ନିମିତ୍ତ ଆସି ପହଞ୍ଚିଲେ । ମୋତେ ଦେଖି ତାଙ୍କର ଦୟା ହେଲା । ଆପଣଙ୍କ ସହିତ ମୋର ପୁନଃସମାଗମ ଘଟାଇବା ନିମିତ୍ତ ସେ ପ୍ରତିଶ୍ରୁତି ଦେଲେ । ଏଥିପାଇଁ ସେ ଆପଣଙ୍କ ନିକଟରେ ଯାଇ ପହଞ୍ଚିବାଠାରୁ ଅନ୍ୟାନ୍ୟ ଘଟଣା ଆପଣ ଜାଣନ୍ତି ।

ବେଗବତୀ ବିଦାୟ ନେବାର କିଛି ସମୟ ପରେ ଦୁରାତ୍ମା ମାନସବେଗର ମାତା ପୃଥିବୀଦେବୀ ମୋ ନିକଟରେ ଆସି ଉପସ୍ଥିତ ହେଲେ । ଚନ୍ଦ୍ରିକା ଧବଳ ଶ୍ୱେତ ପରିଚ୍ଛେଦ ଭିତରେ ସେ ଅମୃତର ଧାରାପରି ମନେହେଉଥାନ୍ତି । ସ୍ନେହସିକ୍ତ କଣ୍ଠରେ ସେ ମୋତେ ଉଦ୍ଦେଶ୍ୟ କରି କହିଲେ, 'ପୁତ୍ରି ! ଭବିଷ୍ୟତରେ ତୋର କଲ୍ୟାଣ ହେବାର ଅଛି । ତେଣୁ ପାନଭୋଜନ ଗ୍ରହଣ ନକରି ଶରୀର ଓ ଆତ୍ମାକୁ କଷ୍ଟ ଦେବା ତୋ ପକ୍ଷରେ ଉଚିତ ହେଉନାହିଁ । ଶତ୍ରୁର ଅନ୍ନ ଗ୍ରହଣ ନ କରିବାପାଇଁ ଯଦି ତୁ ପ୍ରତିଜ୍ଞା କରିଥାଉ ତା'ହେଲେ ମନ ମଧ୍ୟରୁ ତାହା ମଧ୍ୟ ବାହାର କରିଦେ । କାରଣ ଆମ ରାଜ୍ୟର କିଛି ଅଂଶ ବେଗବତୀର ପିତା ତା' ନାଁରେ କରିଦେଇ ଯାଇଛନ୍ତି । ତୋର ପତି ବେଗବତୀକୁ ବିବାହ କରିସାରିଲେଣି । ବର୍ତ୍ତମାନ ସେ ତୋର ସଖୀ ଓ ସପତ୍ନୀ । ରାଜ୍ୟରେ ଥିବା ତା'ର ଅଂଶ ବର୍ତ୍ତମାନ ରାଜପୁତ୍ର ନରବାହନଦତ୍ତଙ୍କର । ତେଣୁ ସେଥିରେ ତୋର ମଧ୍ୟ ଅଧିକାର ଅଛି । ନେ, ଏହି ଖାଦ୍ୟ ଗ୍ରହଣ କର । ମୋ ନିଜ ବିଦ୍ୟାବଳରେ ଆଗତଭବିଷ୍ୟ ଜାଣିପାରି ଯାହା କହୁଛି ତାହା ଏକାନ୍ତ ସତ୍ୟ ।'

ଏପରି କହି ସେ ପୁତ୍ରୀ ବେଗବତୀ ମାଧ୍ୟମରେ ମୋତେ ପାରିବାରିକ ବନ୍ଧନରେ ବାନ୍ଧିଦେଲେ । ତାଙ୍କଠାରୁ ଆହାର ଗ୍ରହଣ କରି ମୁଁ କିଛି ପରିମାଣରେ ଆଶ୍ୱସ୍ତ ହେଲି । ଏହାପରେ ଆପଣଙ୍କ ସହିତ ଆସି ବେଗବତୀ ପଥ ମଧ୍ୟରେ ନିଜ ଭ୍ରାତାକୁ ପରାଜିତ କଲେ । ତାଙ୍କଦ୍ୱାରା ଆପଣ ମଧ୍ୟ ରକ୍ଷା ପାଇଲେ । ଏହାପରେ ଆଉ କଣ ସବୁ ଘଟିଛି ମୁଁ କହିପାରିବି ନାହିଁ । ବେଗବତୀଙ୍କ ସିଦ୍ଧି ଏବଂ ଦେବତାମାନଙ୍କ ଆଶ୍ୱାସନା ମୋ ମନରେ ଆପଣଙ୍କ ସହିତ ମିଳିତ ହେବାର ଆଶା ଜାଗ୍ରତ କଲା । ମୁଁ ଆପଣଙ୍କୁ ପାଇବା ଆଶାରେ

ଶରୀର ତ୍ୟାଗ ପ୍ରତିଜ୍ଞାରୁ ନିବୃତ୍ତ ହେଲି । ଏହାପରେ ମହା ପ୍ରଭାବଶାଳିନୀ ପ୍ରଭାବତୀଙ୍କ ପ୍ରଭାବରୁ ମୁଁ ଏହି ଶତ୍ରୁ ସଙ୍କଟ ମଧ୍ୟରେ ଆପଣଙ୍କୁ ଲାଭ କଲି । କିନ୍ତୁ ବର୍ତ୍ତମାନ ଚିନ୍ତା ହେଲା ପ୍ରଭାବତୀଙ୍କର ବିଦ୍ୟା ଯଦି ବିଲୁପ୍ତ ହୋଇଯାଏ ଏବଂ ଆପଣଙ୍କ ଏହି ସ୍ୱରୂପ ଯଦି ପରିବର୍ତ୍ତିତ ହୋଇଯାଏ ତେବେ ଆମ୍ଭମାନଙ୍କର ଦଶା କଣ ହେବ ?''

ଆଶଙ୍କିତା ମଦନମଞ୍ଚୁକାଙ୍କୁ ଆଶ୍ୱାସନା ପ୍ରଦାନ କରି ନରବାହନଦତ୍ତ ତାଙ୍କ ସହିତ ଆନନ୍ଦରେ ଭବିଷ୍ୟତର ପ୍ରତୀକ୍ଷା କରିବାକୁ ଲାଗିଲେ ।

ଦିନେ ପ୍ରଭାବତୀ ତାଙ୍କ ପତିଙ୍କୁ ଦର୍ଶନ କରିବାପାଇଁ ଚାଲିଗଲେ । ସେ ନିକଟରେ ନରହିବା ଯୋଗୁଁ ତାଙ୍କ ବିଦ୍ୟାର ପ୍ରଭାବ ମଧ୍ୟ ଦୂରେଇ ଗଲା । ନରବାହନଦତ୍ତ ପ୍ରଭାବତୀରୁ ପୁଣି ନିଜ ସ୍ୱରୂପକୁ ଫେରିଆସିଲେ । ମଦନମଞ୍ଚୁକାଙ୍କ ନିକଟରେ ଜଣେ ପରପୁରୁଷକୁ ଦେଖି ପ୍ରହରୀମାନଙ୍କ ମଧ୍ୟରେ କୋଳାହଳ ସୃଷ୍ଟି ହେଲା । ଭୟ ସନ୍ତ୍ରସ୍ତା ମଦନମଞ୍ଚୁକାଙ୍କ ଶତ ବାରଣ ସତ୍ତ୍ୱେ ସେମାନେ ମାନସବେଗଙ୍କ ନିକଟରେ ପରପୁରୁଷର ଉପସ୍ଥିତି କଥା ଜଣାଇଲେ । ଅନୁଚରମାନଙ୍କଠାରୁ ଏହି ଦୁଃସମ୍ବାଦ ପାଇବା ମାତ୍ରେ ମାନସବେଗ କ୍ରୋଧରେ ଫାଟିପଡ଼ିଲା । ମୁହୂର୍ତ୍ତେ ମାତ୍ର ବିଳମ୍ବ ନକରି ସେ ନିଜର ସେନାବାହିନୀ ସହିତ ଯାଇ ନରବାହନଦତ୍ତଙ୍କୁ ଘେରିଗଲା । ପୁତ୍ରର କ୍ରୋଧ ଦେଖି ମାତା ପୃଥିବୀଦେବୀ ତା' ନିକଟରେ ଯାଇ ପହଞ୍ଚିଲେ । ପୁତ୍ରର କ୍ରୋଧ ଶାନ୍ତି ପାଇଁ କହିଲେ, 'ପୁତ୍ର ! ତୁ କିମ୍ବା ମୁଁ ଏହାଙ୍କୁ ହତ୍ୟା କରିବା ଉଚିତ ନୁହେଁ । ସେ ମଦନମଞ୍ଚୁକାପାଇଁ ପରପୁରୁଷ ନୁହଁନ୍ତି । ଏ ହେଉଛନ୍ତି ବତ୍ସରାଜ ଉଦୟନଙ୍କ ପୁତ୍ର ନରବାହନଦତ୍ତ । ମଦନମଞ୍ଚୁକା ତାଙ୍କ ବିବାହିତା ପତ୍ନୀ । ମୁଁ ନିଜ ବିଦ୍ୟା ବଳରେ ଏସବୁ ଜାଣିପାରିଛି । କ୍ରୋଧପରବଶ ହୋଇ ତୁ ଏହା ଜାଣିପାରୁନାହୁଁ । ଚନ୍ଦ୍ରବଂଶର ଏହି କୁଳୀନ ରାଜପୁତ୍ର ଆମର ପୂଜ୍ୟ ଜାମାତା । ସେ ବେଗବତୀକୁ ବିବାହ କରିସାରିଛନ୍ତି ।'

ମାତାଙ୍କଠାରୁ ଏହା ଶୁଣି ମାନସବେଗର କ୍ରୋଧ ଆହୁରି ବଢ଼ିଗଲା । ସେ ଉତ୍ତରରେ କହିଲା ଯେ ଯଦି ଏହା ହୋଇଥାଏ, ତେବେ ସେ ତ ମୋର ପରମ ଶତ୍ରୁ । ପୃଥିବୀ ଦେବୀ ପୁତ୍ରକୁ ବୁଝାଇବାକୁ ଲାଗିଲେ, 'ଦେଖି ପୁତ୍ର ! ଏହି ବିଦ୍ୟାଧର ଲୋକରେ ଏପରି ଅଧର୍ମ ଆଚରଣ କରାଯାଏ ନାହିଁ । ଧର୍ମାଧର୍ମ ନିର୍ଣ୍ଣୟପାଇଁ ଆମର ଏକ ସଭା ଅଛି । ତୁ ସେଠାରେ ନରବାହନଦତ୍ତଙ୍କ ପ୍ରତି ଅଭିଯୋଗ ଉପସ୍ଥାପନ କର । ସଭାର ଅଧ୍ୟକ୍ଷ ଯାହା ନିଷ୍ପତ୍ତି କରିବେ ତାହା ପାଳନ କରିବା ତୋ ପକ୍ଷରେ ଉଚିତ ହେବ । ଏହାର

ବିପରୀତ ଆଚରଣ ବିଦ୍ୟାଧରମାନଙ୍କପାଇଁ ଶୋଭନୀୟ ନୁହେଁ । ନରବାହନଦତ୍ତଙ୍କ ଉପରେ ଅନୁଚିତ ଆକ୍ରମଣଦ୍ୱାରା କେବଳ ଦେବତାମାନେ ନୁହଁନ୍ତି, ବିଦ୍ୟାଧରମାନେ ମଧ୍ୟ ତୋ ପ୍ରତି ଅସନ୍ତୁଷ୍ଟ ହୋଇଉଠିବେ ।'

ମାତାଙ୍କ ପ୍ରତି ସମ୍ମାନ ଦୃଷ୍ଟିରୁ ମାନସବେଗ ନରବାହନଦତ୍ତଙ୍କୁ ଶୃଙ୍ଖଳାବଦ୍ଧ କରି ଧର୍ମସଭାକୁ ନେବାପାଇଁ ଉଦ୍ୟତ ହେଲା । ରାଜକୁମାର ଏହା ସହ୍ୟ କରିପାରିଲେ ନାହିଁ । ସେ ନିକଟସ୍ଥ ଗୋଟିଏ ସ୍ତମ୍ଭକୁ ଉପାଡ଼ି ବହୁ ଅନୁଚରଙ୍କୁ ହତ୍ୟା କଲେ । ତାଙ୍କର ଏହି ଆକ୍ରମଣ ଫଳରେ ନିକଟରେ ଥିବା ଅନ୍ୟମାନେ ମଧ୍ୟ ଆହତ ହେଲେ । ମାନସବେଗ ଏଥିରେ କ୍ରୋଧାନ୍ୱିତ ହୋଇ କୌଣସି ମୃତ ଭୃତ୍ୟ ହାତରୁ ଖଡ୍‌ଗଟିଏ ଉଠାଇ ଆଣିଲା ଏବଂ ନିଜ ଅଲୌକିକ ବିଦ୍ୟାବଳରେ ଉଭୟ ମଦନମଞ୍ଜୁକା ଓ ନରବାହନଦତ୍ତଙ୍କୁ ଏକତ୍ର ଶୃଙ୍ଖଳାବଦ୍ଧ କରି ନିଜେ ଖଡ୍ଗ ହସ୍ତରେ ଧର୍ମସଭାକୁ ନେଇଚାଲିଲା ।

ଦେବସଭାରେ ଦେବତାମାନଙ୍କ ଉପସ୍ଥିତିପାଇଁ ଯେପରି ସଙ୍କେତ ଦିଆଯାଏ ବିଦ୍ୟାଧରମାନଙ୍କ ଏହି ଧର୍ମ ସଭାପାଇଁ ମଧ୍ୟ ଭେରୀ ବାଦନଦ୍ୱାରା ସଙ୍କେତ ଦିଆଗଲା । ବିଭିନ୍ନ ସ୍ଥାନରୁ ବିଜ୍ଞ ବିଦ୍ୟାଧରମାନେ ଆସି ଏକତ୍ର ହେଲେ । ସେମାନେ ସବୁ ରତ୍ନ ସିଂହାସନରେ ଉପବେଶନ କରିଥିବା ବେଳେ ପ୍ରସିଦ୍ଧ ବିଦ୍ୟାଧରାଧିପତି ବାୟୁପଥ ମୁଖ୍ୟ ବିଚାରକ ଭାବେ ଆସି ନିଜର ଆସନ ଗ୍ରହଣ କଲେ । ଅଧ୍ୟକ୍ଷଙ୍କ ଉଭୟ ଦିଗରେ ପଡୁଥିବା ଆଲଟ ଚାମର ଯେପରି ଅଧର୍ମକୁ ତାଙ୍କ ନିକଟରୁ ଦୂରେଇ ଦେଉଥିଲା । ପାପିଷ୍ଠ ମାନସବେଗ ଏ ସମୟରେ ଧର୍ମାଧ୍ୟକ୍ଷଙ୍କ ସମ୍ମୁଖରେ ନିବେଦନ କଲା, 'ଏହି ନରବାହନଦତ୍ତ ଜଣେ ମନୁଷ୍ୟ । ସେ ମୋର ଅନ୍ତଃପୁରକୁ କଳୁଷିତ କରି ଭଗିନୀ ବେଗବତୀଙ୍କୁ ଭ୍ରଷ୍ଟ କରିଛି । ଏଣୁ ତା' ସହିତ ମୋର ଶତ୍ରୁତା । ପୁଣି ବିଦ୍ୟାଧରମାନଙ୍କ ଚକ୍ରବର୍ତ୍ତୀ ପଦଲାଭ ନିମିତ୍ତ ସେ ଅଭିଳାଷ ପୋଷଣ କରୁଛି । ତେଣୁ ତାକୁ ମୃତ୍ୟୁ ଦଣ୍ଡ ଦେବା ଉଚିତ ହେବ ।'

ମାନସବେଗର ଅଭିଯୋଗ ଶୁଣି ଅଧ୍ୟକ୍ଷ ବାୟୁପଥ ସ୍ପଷ୍ଟୀକରଣପାଇଁ ନରବାହନଦତ୍ତଙ୍କୁ ଇଙ୍ଗିତ ଦେଲେ । ବୀର ନରବାହନଦତ୍ତ ନିର୍ଭୀକ ଭାବେ କହିଲେ, 'ସଭା ହେଉଛି ତାହା, ଯେଉଁଠାରେ ନ୍ୟାୟ ମୂର୍ତ୍ତିମାନେ ଉପସ୍ଥିତ ଥାନ୍ତି; ନ୍ୟାୟମୂର୍ତ୍ତି ସେହି, ଯିଏ ଧର୍ମସଙ୍ଗତ କଥା କହେ; ଧର୍ମ ହେଉଛି ତାହା, ଯାହା ସତ୍ୟ ଉପରେ ଆଧାରିତ; ସତ୍ୟ ହେଉଛି ତାହା, ଯାହା ଛଳନାପୂର୍ଣ୍ଣ ନୁହେଁ ।'

'ସା ସଭା ଯତ୍ର ସଭ୍ୟୋଽସ୍ତି ସ ସଭ୍ୟୋ ଧର୍ମମାହ ଯଃ,
ସ ଧର୍ମୋ ଯତ୍ର ସତ୍ୟଂ ସ୍ୟାତ୍ ତତ୍‌ସତ୍ୟଂ ଯତ୍ର ନ ଛଳମ୍ ।'

ଆପଣମାନେ ଦେଖୁଛନ୍ତି ମୁଁ ଶୃଙ୍ଖଳାବଦ୍ଧ ହୋଇ ଭୂମି ଉପରେ ଠିଆ ହୋଇଛି ଏବଂ ମାନସବେଗ ବିନା ବନ୍ଧନରେ ଆସନ ଉପରେ ବସିଛି । ଏହି ସ୍ଥିତିରେ ଆମର ବିବାଦର ସମାଧାନ କିପରି ସମ୍ଭବ ହୋଇପାରିବ ?'

ବାୟୁପଥ ନରବାହନଦତ୍ତଙ୍କ ବକ୍ତବ୍ୟର ସତ୍ୟତା ଉପଲବ୍ଧି କରି ତାଙ୍କୁ ଶୃଙ୍ଖଳ ମୁକ୍ତ କଲେ । ମାନସବେଗକୁ ମଧ୍ୟ ଭୂମି ଉପରେ ବସିବାପାଇଁ ନିର୍ଦ୍ଦେଶ ଦିଆଗଲା । ସଭା ମଧ୍ୟରେ ସମସ୍ତ ବିଜ୍ଞ ବିଦ୍ୟାଧରଙ୍କୁ ଶୁଣାଇ ନରବାହନଦତ୍ତ ବାୟୁପଥଙ୍କୁ କହିଲେ, 'ଏହି ମଦନମଞ୍ଜୁକା ମୋର ପତ୍ନୀ । ମାନସବେଗ ତାଙ୍କୁ ବଳାତ୍କାରରେ ଅପହରଣ କରି ଏଠାକୁ ନେଇ ଆସିଛି । ମୁଁ ଯଦି ନିଜ ପତ୍ନୀଙ୍କ ନିକଟକୁ ଆସିଲି ତେବେ ଏହାର ଅନ୍ତଃପୁର କିପରି କଳୁଷିତ ହେଲା ? ମାନସବେଗର ଭଗିନୀ ବେଗବତୀ ମଦନମଞ୍ଜୁକାର ଛଦ୍ମବେଶରେ ମୋ ନିକଟରେ ଉପସ୍ଥିତ ହୋଇ ଛଳନା ପୂର୍ବକ ମୋତେ ପତି ରୂପରେ ବରଣ କଲେ । ଏଥିରେ ମୋର ଅପରାଧ ରହିଲା କେଉଁଠି ? ଶେଷରେ ମୁଁ ବିଦ୍ୟାଧର-ମାନଙ୍କ ଚକ୍ରବର୍ତ୍ତୀ ହେବାପାଇଁ କାମନା କରୁଛି । ବିଭିନ୍ନ ପ୍ରକାର ଅଭିଳାଷ କିଏବା ପୋଷଣ ନକରେ ?' ଅଧ୍ୟକ୍ଷ ବାୟୁପଥ ନରବାହନଦତ୍ତଙ୍କ ଯୁକ୍ତିକୁ ଉପଯୁକ୍ତ ଭାବେ ବିଶ୍ଳେଷଣ କରି କହିଲେ, 'ଭଦ୍ର ମାନସବେଗ ! ଏ ଜଣେ ମହାପୁରୁଷ ବୋଲି ମନେହେଉଛନ୍ତି । ଏହାଙ୍କ ଭବିଷ୍ୟତ ମଧ୍ୟ ଉଜ୍ଜ୍ୱଳ ଜଣାଯାଉଛି । ସେ ଯାହା କହିଛନ୍ତି ତାହା ସମ୍ପୂର୍ଣ୍ଣ ଧର୍ମସଙ୍ଗତ । ତୁମେ ଏହାଙ୍କ ପ୍ରତି କୌଣସି ପ୍ରକାର ଅଧର୍ମ ଆଚରଣ କରନାହିଁ ।'

ଧର୍ମାଧ୍ୟକ୍ଷଙ୍କ ନିଷ୍ପତ୍ତି ଶୁଣି ମୋହାନ୍ଧ ମାନସବେଗ ନରବାହନଦତ୍ତଙ୍କ ଉପରେ ପୁଣି ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହେଲା । ରାଜା ବାୟୁପଥ ଏଥିରେ କ୍ରୁଦ୍ଧ ହୋଇଉଠିଲେ । ମାନସବେଗ ତାଙ୍କ ସହିତ ମଧ୍ୟ ସଂଘର୍ଷ ଆରମ୍ଭ କଲା । ଉଭୟ ପକ୍ଷର ସୈନିକମାନେ ଏପରି ଆଶଙ୍କା କରି ପୂର୍ବରୁ ପ୍ରସ୍ତୁତ ଥିଲେ । ଯେତେବେଳେ ନ୍ୟାୟର ପକ୍ଷପାତି ନ୍ୟାୟମୂର୍ତ୍ତି ମାନେ ବିଚାର ମଞ୍ଚରେ ଆସୀନ ହୁଅନ୍ତି, ସେତେବେଳେ ସେମାନେ ଦୁର୍ବଳକୁ ମଧ୍ୟ ବଳବାନ୍ ଏବଂ ଆତ୍ମୀୟକୁ ମଧ୍ୟ ଶତ୍ରୁ ବୋଲି ବିବେଚନା କରିଥାନ୍ତି ।

'ଧର୍ମାସନୋପବିଷ୍ଟା ହି ଦୁର୍ବଳଂ ବଳିନଂ ପରମ୍
ଆତ୍ମୀୟଂ ବତ ଜାନନ୍ତି ଧୀରା ନ୍ୟାୟୈକଦର୍ଶିନଃ ।'

ଏହି ଧର୍ମସଭାର ବିଚାର ଶୁଣିବାପାଇଁ ଆକାଶ ମାର୍ଗରେ ଦିବ୍ୟାଙ୍ଗନାମାନେ ଉପସ୍ଥିତ ଥାନ୍ତି । ସେମାନଙ୍କ ପ୍ରତି ଦୃଷ୍ଟିପାତ କରି ନରବାହନଦତ୍ତ ମାନସବେଗ ଉଦ୍ଦେଶ୍ୟରେ କହିଲେ, 'ତୁ ତୋର ବିଦ୍ୟାଧରୀ ମାୟା ତ୍ୟାଗ କରି ମୋ ସମ୍ମୁଖକୁ ଆସିଯା' । ମୁଁ ତୋତେ ଗୋଟିଏ ମାତ୍ର ପ୍ରହାରରେ ହିଁ ହତ୍ୟା କରିବି ।' ବିଦ୍ୟାଧରମାନେ କଳହରେ ପ୍ରବୃତ୍ତ ଥିବାବେଳେ ସଭାଭବନ ମଧ୍ୟରେ ଥିବା ଏକ ସ୍ତମ୍ଭ ବିକଟ ଶବ୍ଦ କରି ଫାଟିଗଲା । ତା' ମଧ୍ୟରୁ ଭୟଙ୍କର ଆକୃତିର ଜଣେ ଦେବପୁରୁଷ ଆବିର୍ଭୂତ ହେଲେ । ତାଙ୍କ ବିଶାଳ ଶରୀର ଗଗନମଣ୍ଡଳକୁ ଆକ୍ରାନ୍ତ କରୁଥିଲା । ସୂର୍ଯ୍ୟ ଦେଖାଗଲେ ନାହିଁ । ତାଙ୍କ ଶରୀରର କାନ୍ତି ଘନକୃଷ୍ଣ ମେଘର ଆଭା ଧାରଣ କରିଥିଲା । ତାଙ୍କ ଚକ୍ଷୁଯୁଗଳ ବିଜୁଳି ପରି ଚମକି ଉଠୁଥିଲା । ତାଙ୍କ ଦନ୍ତପଂକ୍ତି ଉଡ୍ଡୀୟମାନ ବଳାକାପଂକ୍ତିର ବିଭ୍ରମ ସୃଷ୍ଟି କରୁଥିଲା । ମହାପ୍ରଳୟ କାଳୀନ ମେଘପୁଞ୍ଜ ପରି ସେ ଭୟଙ୍କର ଦେଖାଯାଉଥିଲେ । ସେ ଗର୍ଜନ କରି କହିଲେ, 'ବିଦ୍ୟାଧରମାନଙ୍କ ଭାବୀ ଚକ୍ରବର୍ତ୍ତୀ ରାଜା ନରବାହନଦତ୍ତଙ୍କର କେହି ଅନିଷ୍ଟ କରିପାରିବେ ନାହିଁ ।' ଦେବପୁରୁଷଙ୍କ ଏହି ସ୍ପଷ୍ଟ ଆଦେଶ ଶୁଣି ମାନସବେଗ ଅଧୋମୁଖରେ ଠିଆହେଲା । ରାଜା ବାୟୁପଥ ଆନନ୍ଦିତ ହୋଇଉଠିଲେ ।

ନରବାହନଦତ୍ତଙ୍କୁ ରକ୍ଷା କରିବାପାଇଁ ସେହି ଦେବପୁରୁଷ ତାଙ୍କ ବାହୁ ଯୁଗଳକୁ ଧାରଣ କରି ଶୀଘ୍ର ଋଷ୍ୟମୂକ ନାମକ ପବିତ୍ର ପର୍ବତ ଉପରେ ନେଇ ପହଞ୍ଚାଇ ଦେଲେ ଏବଂ ନିଜେ ଅନ୍ତର୍ହିତ ହୋଇଗଲେ । ସେମାନେ ଚାଲିଯିବା ପରେ ସଭାସ୍ଥଳ ଶାନ୍ତ ହେଲା । ବାୟୁପଥ ନିଜ ସେନାବାହିନୀ ସହିତ ସ୍ୱସ୍ଥାନକୁ ଫେରିଗଲେ । ମାନସବେଗ ମଧ୍ୟ ହର୍ଷ ଓ ବିଷାଦରେ ଆକୁଳ ହୋଇ ମଦନମଞ୍ଜୁକାଙ୍କ ସହିତ ଆଷାଢ଼ପୁରସ୍ଥିତ ନିଜ ଭବନକୁ ଫେରିଗଲା ।

# ତୃତୀୟ ତରଙ୍ଗ

'ମନ୍ୟେ କଲ୍ୟାଣମେବ ସ୍ୟାତ୍‌ପୁରୁଷସ୍ୟାସମଂ ବିଧିଃ

ମୁହୁଃ ପରୀକ୍ଷତେ ଗାଢ଼ଂ ଧୀରତ୍ୱଂ ସୁଖଦୁଃଖୟୋଃ ।'

ବିଧାତା ସୁଖଦୁଃଖଦ୍ୱାରା ଯେଉଁ ପୁରୁଷମାନଙ୍କର ପ୍ରଗାଢ଼ ଧୈର୍ଯ୍ୟ ପରୀକ୍ଷା କରିଥାନ୍ତି, ପରିଣାମରେ ସେମାନଙ୍କର କଲ୍ୟାଣ ହିଁ ହୋଇଥାଏ । ନରବାହନଦତ୍ତ ବହୁ ଦୁଃଖ କଷ୍ଟ ସହ୍ୟ କରି ବହୁ ସ୍ଥାନ ଭ୍ରମଣ କଲେ । ପ୍ରତ୍ୟେକ ସ୍ଥାନରେ ସେ ଜଣେ ଜଣେ ସ୍ତ୍ରୀ ରତ୍ନଙ୍କୁ ପ୍ରାପ୍ତ ହୋଇଛନ୍ତି ।

ଋଷ୍ୟମୂକ ପର୍ବତରେ ଅବସ୍ଥାନ କରୁଥିବା ବେଳେ ଦିନେ ପ୍ରିୟତମା ପ୍ରଭାବତୀ ସେଠାରେ ଆସି ପହଞ୍ଚିଲେ । ସେ ନରବାହନଦତ୍ତଙ୍କୁ ଜଣାଇଲେ, 'ମୁଁ ଆପଣଙ୍କ ନିକଟରେ ରହୁଥିବା ଯୋଗୁଁ ମାନସବେଗ ତା'ର କଳୁଷିତ ଆକାଂକ୍ଷା ପୂରଣ କରିପାରୁନଥିଲା । ତେଣୁ ମୋଠାରୁ ଦୂରେଇ ନେବାପାଇଁ ସେ ଆପଣଙ୍କୁ ନେଇ ଧର୍ମସଭାରେ ଉପସ୍ଥିତ ହେଲା । ମୁଁ ଏହା ଜାଣିପାରି ସେଠାରେ ଯାଇ ଉପସ୍ଥିତ ହେଲି ଏବଂ ମୋର ବିଦ୍ୟାବଳରେ ସ୍ତମ୍ଭ ମଧ୍ୟରୁ ଦେବପୁରୁଷ ରୂପେ ଆବିର୍ଭୂତ ହୋଇ ଆପଣଙ୍କୁ ଏଠାକୁ ନେଇ ଆସିଲି । ଏହି ଋଷ୍ୟମୂକ ପର୍ବତ ଏକ ପବିତ୍ର ସିଦ୍ଧ କ୍ଷେତ୍ର । ଏଠାରେ ଅତ୍ୟନ୍ତ ଶକ୍ତିଶାଳୀ ବିଦ୍ୟାଧରମାନଙ୍କ ବିଦ୍ୟା କାର୍ଯ୍ୟକାରୀ ହୁଏ ନାହିଁ । ମୋ ବିଦ୍ୟାର ପ୍ରଭାବ ମଧ୍ୟ ଏଠାରେ ଫଳବତୀ ହେବନାହିଁ । ତେଣୁ ଏହି ପର୍ବତର ନିଘଞ୍ଚ ଅରଣ୍ୟ ମଧ୍ୟରେ ଫଳମୂଳ ଆହାର କରି କିଛିଦିନ କଟାଇବାକୁ ପଡ଼ିବ । ଏହାହିଁ ଦୁଃଖର ବିଷୟ ।'

ସେହି ପର୍ବତ ଉପରେ ପ୍ରଭାବତୀ ସହିତ ନରବାହନଦତ୍ତ ମଦନମଞ୍ଚୁକାଙ୍କ ସ୍ମୃତିରେ ବ୍ୟାକୁଳ ହୋଇ ସୁଦ୍ଧା ମିଳନର ସୁଖଦ ସମୟକୁ ପ୍ରତୀକ୍ଷା କରିବାକୁ ଲାଗିଲେ । ଋଷ୍ୟମୂକ ପର୍ବତ ସମ୍ମୁଖରେ ପଂପା ସରୋବର । ସେ ପ୍ରତିଦିନ ସେଠାରେ ସ୍ନାନକରି ଫଳମୂଳ ଆହାର କରୁଥାନ୍ତି । ପର୍ବତ ଉପରେ ବୃକ୍ଷମାନଙ୍କରୁ ଝଡ଼ି ପଡୁଥିବା ସୁମିଷ୍ଟ ପାଚିଲା ଫଳଗୁଡ଼ିକ ତାଙ୍କୁ ଯଥେଷ୍ଟ ଆନନ୍ଦ ଦେଉଥାଏ । ମଝିମଝିରେ ମୃଗମାଂସ ଚାଖିବାକୁ ମିଳେ । ପଂପାର ମଧୁର ଜଳ ତାଙ୍କର ତୃଷା ମେଣ୍ଟାଉଥାଏ । ଏହି ପାର୍ବତ୍ୟ

ପ୍ରଦେଶରେ ଦିନେ ଭଗବାନ ରାମଚନ୍ଦ୍ର ଯେପରି ଜୀବନଯାପନ କରୁଥିଲେ ସେହିପରି ସେ କେତେବେଳେ ବୃକ୍ଷ ଛାୟାରେ କେତେବେଳେ ପ୍ରସ୍ତର ଶଯ୍ୟାରେ ଏବଂ ଆଉ କେତେବେଳେ ପର୍ବତର ଗୁମ୍ଫା ମଧ୍ୟରେ ବିଚରଣ କରୁଥାନ୍ତି । ପ୍ରଭାବତୀ ତାଙ୍କୁ ରାମଚନ୍ଦ୍ର ରହୁଥିବା ବିଭିନ୍ନ ସ୍ଥାନ ପ୍ରଦର୍ଶନ କରାଇ ରାମାୟଣ କଥା ଶୁଣାଉଥାଆନ୍ତି ।

## ସଂକ୍ଷିପ୍ତ ରାମାୟଣ କଥା

ଏହି ସ୍ଥାନରେ ଲକ୍ଷ୍ମଣ ଓ ସୀତାଙ୍କ ସହିତ ଭଗବାନ ରାମଚନ୍ଦ୍ର ତପସ୍ୱୀମାନଙ୍କ ସାହାଯ୍ୟରେ କୁଟୀର ନିର୍ମାଣ କରି ରହୁଥିଲେ । ଅନସୂୟାଙ୍କଦ୍ୱାରା ପ୍ରଦତ୍ତ ଅଙ୍ଗରାଗରେ ବନଭୂମିକୁ ସୁବାସିତ କରି ବଲ୍କଳ ଧାରିଣୀ ସୀତା ମୁନିପତ୍ନୀମାନଙ୍କ ସହିତ ଏହିଠାରେ କିଛିଦିନ ବିତାଇଥିଲେ । ଏହି ଗୁହା ମଧ୍ୟରେ ବାଳିଙ୍କଦ୍ୱାରା ଦୁନ୍ଦୁଭି ରାକ୍ଷସ ନିହତ ହୋଇଥିଲା । ଏହାହିଁ ଥିଲା ବାଳି ଓ ସୁଗ୍ରୀବଙ୍କ ମଧ୍ୟରେ ଶତ୍ରୁତାର କାରଣ । ସୁଗ୍ରୀବ ଭ୍ରମବଶତଃ ଧରି ନେଇଥିଲେ ଯେ ଦୁନ୍ଦୁଭିଦ୍ୱାରା ଭ୍ରାତା ବାଳି ମୃତ୍ୟୁବରଣ କରିଛନ୍ତି । ତେଣୁ ଭୟଭୀତ ହୋଇ ସେ ଗୁହା ଦ୍ୱାରକୁ ପ୍ରସ୍ତର ଖଣ୍ଡଦ୍ୱାରା ରୁଦ୍ଧ କରି ସେଠାରୁ ପଳାୟନ କରିଥିଲେ । କିନ୍ତୁ ପରେ ସେହି ପ୍ରସ୍ତରଖଣ୍ଡକୁ ଦୂରକୁ ହଟାଇ ଦେଇ ବାଳି ଗୁହା ମଧ୍ୟରୁ ନିର୍ଗତ ହେଲେ । ପରିସ୍ଥିତିକୁ ଜାଣିବାପାଇଁ ଚେଷ୍ଟା ନକରି ସେ ଧରିନେଲେ ଯେ ରାଜ୍ୟଲୋଭରେ ସୁଗ୍ରୀବ ତାଙ୍କୁ ସେହି ଗୁହା ମଧ୍ୟରେ ଅବରୁଦ୍ଧ କରି ରଖିଥିଲେ । ତେଣୁ ସେ ସୁଗ୍ରୀବଙ୍କୁ ରାଜ୍ୟରୁ ନିର୍ବାସନ କରିଦେଲେ । କପିରାଜ ସୁଗ୍ରୀବ ରାଜ୍ୟ ତ୍ୟାଗ କରି ହନୁମାନ ପ୍ରଭୃତି ପରାକ୍ରମୀ ବାନରମାନଙ୍କ ସହିତ ଏହି ଋଷ୍ୟମୂକ ପର୍ବତରେ ହିଁ ରହୁଥାନ୍ତି ।

ଏହା ପୂର୍ବରୁ ମାୟା ସ୍ୱର୍ଣ୍ଣମୃଗ ଦ୍ୱାରା ପ୍ରଲୋଭିତ କରି ରାବଣ ସୀତାଙ୍କୁ ଅପହରଣ କରି ନେଇଯାଇଥାଏ । ସେ ସୀତାଙ୍କ ସନ୍ଧାନରେ ଏହି ପର୍ବତରେ ଆସି ପହଞ୍ଚିଲେ । ବାଳି ପ୍ରତି ପ୍ରତିଶୋଧ ନେବାପାଇଁ ଚିନ୍ତା କରୁଥିବା ସୁଗ୍ରୀବଙ୍କ ସହିତ ଏଠାରେ ତାଙ୍କର ମିତ୍ରତା ହେଲା । ଏଠାରେ ଥିବା ସପ୍ତତାଳ ବୃକ୍ଷ ମଧ୍ୟରୁ ବାଳି କେବଳ ଗୋଟିଏ ବୃକ୍ଷକୁ କଷ୍ଟରେ ଭେଦ କରିପାରିଥିଲେ । କିନ୍ତୁ ରାମନ୍ଦ୍ରଙ୍କ ଗୋଟିଏ ବାଣ ସାତୋଟିଯାକ ତାଳବୃକ୍ଷକୁ ଭେଦକରି ସୁଗ୍ରୀବଙ୍କ ମନରେ ବିଶ୍ୱାସ ଜାତ କରାଇଥିଲା । ତାଙ୍କର ଗୋଟିଏ ମାତ୍ର ଶରାଘାତରେ ବାଳି ନିହତ ହେଲା । କିଷ୍କିନ୍ଧାର ରାଜଲକ୍ଷ୍ମୀ ସୁଗ୍ରୀବଙ୍କୁ ପ୍ରଦାନ କରାଗଲା । ସୁଗ୍ରୀବଙ୍କ ଆଦେଶ କ୍ରମେ ହନୁମାନ ପ୍ରଭୃତି ବୀରମାନେ ଚତୁର୍ଦ୍ଦିଗକୁ ସୀତାଙ୍କ ଅନୁସନ୍ଧାନ ପାଇଁ ବାହାରିଲେ ।

ଏ ସମୟରେ ବର୍ଷାଋତୁ ଆସି ପହଞ୍ଚିଲା । ମେଘମାନେ ଗର୍ଜ୍ଜନ କରିବାକୁ ଲାଗିଲେ । ଚତୁର୍ଦ୍ଦିଗ ଜଳଧାରାରେ ପ୍ଳାବିତ ହେଲା । ରାମ ମଧ୍ୟ ସୀତାଙ୍କ ବିୟୋଗରେ ବିଳାପ କରୁଥାନ୍ତି । ତାଙ୍କ ଚକ୍ଷୁରୁ ନିର୍ଗତ ଜଳଧାରା ବନଭୂମିକୁ ପ୍ଳାବନ କରୁଥାଏ । ବର୍ଣ୍ଣସାମ୍ୟରୁ ରାମ ଓ ମେଘ ଏକ ବୋଲି ମନେ ହେଉଥାନ୍ତି ।

ଏଣେ ସଂପାତିଙ୍କଠାରୁ ସନ୍ଧାନ ପାଇ ହନୁମାନ ଲଙ୍କାରେ ଯାଇ ପହଞ୍ଚିଲେ । ସୀତାଙ୍କ ଅବସ୍ଥିତି ଜାଣିପାରି ରାମ ସମୁଦ୍ର ଉପରେ ସେତୁବନ୍ଧ ନିର୍ମାଣ ପୂର୍ବକ ଲଙ୍କାରେ ପ୍ରବେଶ କରି ଶତ୍ରୁ ଲଙ୍କେଶ୍ୱରର ବଧସାଧନ କଲେ । ସୀତାଙ୍କ ସହିତ ସେ ଏହି ଋଷ୍ୟମୂକ ପର୍ବତ ଦେଇ ହିଁ ଅଯୋଧ୍ୟାକୁ ଫେରିଥିଲେ ।

ଆର୍ଯ୍ୟପୁତ୍ର ! ଆପଣ ମଧ୍ୟ ଏହିପରି ଭବିଷ୍ୟତରେ କଲ୍ୟାଣ ପ୍ରାପ୍ତ ହେବେ । ବିପଦ ସମୟରେ ଧୈର୍ଯ୍ୟ ଧାରଣ କରି ରହୁଥିବା ପୁରୁଷମାନଙ୍କ ନିକଟରେ ସମ୍ପଦ ସବୁ ସ୍ୱତଃ ଆସି ପହଞ୍ଚି ଯାଇଥାନ୍ତି ।'

'ଆପତ୍ସୁ ଧୀରାନ୍ ପୁରୁଷାନ୍ ସ୍ୱୟମାୟାନ୍ତି ସଂପଦଃ'

ରାମଙ୍କ ଦୁଃଖଦ କାହାଣୀ ଏବଂ ଋଷ୍ୟମୂକର ମାହାତ୍ମ୍ୟ ଶୁଣି ନରବାହନଦତ୍ତ ପ୍ରଭାବତୀଙ୍କ ସହିତ ସେଠାରେ ବିଚରଣ କରୁଥାନ୍ତି ।

ଦିନେ ପଂପା ସରୋବର ତୀରରେ ବିଚରଣ କରୁଥିବା ବେଳେ ଧନବତୀ ଓ ଅଜିନାବତୀ ଦୁଇ ବିଦ୍ୟାଧରୀ ଆକାଶ ମାର୍ଗରୁ ଅବତରଣ କରି ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ଏମାନେ ହିଁ ଅତୀତରେ ତାଙ୍କୁ ଆଣି ଗନ୍ଧର୍ବ ପୁରରୁ ଶ୍ରାବସ୍ତୀ ପୁରରେ ପହଞ୍ଚାଇଥିଲେ । ସେଠାରେ ଭଗୀରଥଯଶା ସହିତ ନରବାହନଦତ୍ତଙ୍କ ବିବାହ ସମ୍ପନ୍ନ ହୋଇଥିଲା । ପ୍ରଭାବତୀଙ୍କ ସହିତ ଅଜିନାବତୀଙ୍କ ମିତ୍ରତା ହେଲା । ନରବାହନଦତ୍ତଙ୍କୁ ଲକ୍ଷ୍ୟକରି ଧନବତୀ ନିବେଦନକଲେ, 'ଏହି ଅଜିନାବତୀ ମୋର କନ୍ୟା । ମୁଁ ଏହାକୁ ଆପଣଙ୍କ ହସ୍ତରେ ସମର୍ପଣ କରିବାପାଇଁ ସଂକଳ୍ପ କରିଥିଲି । ଏଣୁ ସେ ବାଗ୍‌ଦତ୍ତା । ଆପଣ ତା' ସହିତ ବିବାହ କରନ୍ତୁ । ମୋର ବିଦ୍ୟାବଳରେ ଆପଣଙ୍କ ଅଭ୍ୟୁଦୟରେ ଆଉ ଯେ ବିଳମ୍ବ ନାହିଁ ତାହା ମୁଁ ଜାଣିପାରୁଛି ।' ଧନବତୀଙ୍କ ଅନୁରୋଧରେ ମିତ୍ରତା ଯୋଗୁଁ ପ୍ରଭାବତୀ ଏବଂ କନ୍ୟା ରୂପରେ ଆକୃଷ୍ଟ ନରବାହନଦତ୍ତ ଏଥିରେ ସମ୍ମତି ପ୍ରକାଶ କଲେ । ତତ୍କାଳରେ ହିଁ ବତ୍ସରାଜପୁତ୍ର କୁଳୀନ ନରବାହନଦତ୍ତ ଏବଂ ବିଦ୍ୟାଧରୀ କନ୍ୟା ଅଜିନାବତୀଙ୍କ ବିବାହ ସମ୍ପନ୍ନ ହେଲା । ଧନବତୀ ନିଜ ବିଦ୍ୟା ପ୍ରଭାବରେ ବହୁ ଧନ ସମ୍ପଦ ସହିତ ଅଜିନାବତୀଙ୍କୁ ସମର୍ପଣ କଲେ ।

କିଛିଦିନ ଆନନ୍ଦରେ କଟିଗଲା । ଦିନେ ଧନବତୀ ନରବାହନଦତ୍ତଙ୍କୁ ସତର୍କ କରିଦେଇ କହିଲେ, 'ପୁତ୍ର ! ଦୀର୍ଘଦିନ ଗୋଟିଏ ସ୍ଥାନରେ ରହିବା ତୁମ ପକ୍ଷରେ ଉଚିତ ନୁହେଁ । ବିଦ୍ୟାଧରମାନେ ବଡ଼ ମାୟାବୀ । ତୁମର ସନ୍ଧାନ ପାଇଲେ ସେମାନେ ଅନିଷ୍ଟ କରିପାରନ୍ତି । ଏଠାରେ ତୁମର ବିଶେଷ କିଛି କାର୍ଯ୍ୟ ନାହିଁ । ତେଣୁ ଚାଲ, ଅଜିନାବତୀ ସହିତ କୌଶାମ୍ବୀ ଚାଲିଯିବା । ମୁଁ ମଧ୍ୟ ପୁତ୍ର ଚଣ୍ଡସିଂହ ଏବଂ ଅନ୍ୟ ସ୍ୱଜନମାନଙ୍କୁ ଧରି ତୁମର ସହାୟତା ନିମିତ୍ତ ସେଠାରେ ଯାଇ ପହଞ୍ଚିବି ।' ଏହା କହି ନିଜର ସ୍ୱଚ୍ଛ ଶୁଭ୍ର ପରିଧେୟଦ୍ୱାରା ଆକାଶ ମାର୍ଗକୁ ଚନ୍ଦ୍ରିକା-ସ୍ନାତ କରି ଧନବତୀ ନିଜ ଆସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ ।

ପ୍ରଭାବତୀ ଓ ଅଜିନାବତୀ ବିଦ୍ୟାଧରୀ ବିଦ୍ୟା ପ୍ରଭାବରୁ ମୁହୂର୍ତ୍ତକ ମଧ୍ୟରେ ନରବାହନଦତ୍ତଙ୍କ ସହିତ ଆକାଶ ମାର୍ଗରେ ଯାଇ କୌଶାମ୍ବୀରେ ଉପନୀତ ହେଲେ । ନଗରର ଉପବନ ମଧ୍ୟରେ ଅବତୀର୍ଣ୍ଣ ହେବା ମାତ୍ରେ ରାଜ ପରିଜନମାନଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ରାଜପୁତ୍ର ଫେରିଆସିଥିବା ଯୋଗୁଁ ନଗରବାସୀ ଆନନ୍ଦ କୋଳାହଳରେ ଉପବନକୁ ମୁଖରିତ କଲେ ।

ଅନୁଚରମାନଙ୍କଠାରୁ ଏହି ଅମୃତତୁଲ୍ୟ ସମ୍ବାଦ ଲାଭକରି ହର୍ଷୋତ୍‌ଫୁଲ୍ଲ ବତ୍ସରାଜ ଉଦୟନ, ଉଲ୍ଲସିତ ବାସବଦତ୍ତା, ପଦ୍ମାବତୀ ପ୍ରଭୃତି ପତ୍ନୀ ସମୂହ, ରତ୍ନପ୍ରଭା ପ୍ରଭୃତି ବନ୍ଧୁସ୍ୱଜନ, ଯୌଗନ୍ଧରାୟଣ ପ୍ରଭୃତି ମନ୍ତ୍ରୀ, କଳିଙ୍ଗ ସେନା ତଥା ଗୋମୁଖ ପ୍ରଭୃତି ପୁତ୍ରର ସଚିବମାନଙ୍କ ସହିତ ଅତ୍ୟନ୍ତ ଉତ୍କଣ୍ଠିତ ଭାବେ ନରବାହନଦତ୍ତଙ୍କ ନିକଟରେ ଆସି ପହଞ୍ଚିଲେ । ଗ୍ରୀଷ୍ମଋତୁର ପ୍ରଚଣ୍ଡ ମଧ୍ୟାହ୍ନରେ ପଥିକମାନେ ଶୀତଳ ଜଳପୂର୍ଣ୍ଣ ସରୋବର ନିକଟକୁ ଆସିବା ପରି ମନେହେଲା । ସେମାନେ ରୁକ୍ମିଣୀ ଓ ସତ୍ୟଭାମାଙ୍କ ମଧ୍ୟରେ ବସିଥିବା ଶ୍ରୀକୃଷ୍ଣଙ୍କ ପରି ପ୍ରଭାବତୀ ଓ ଅଜିନାବତୀଙ୍କ ଗହଣରେ ନରବାହନଦତ୍ତଙ୍କୁ ଦେଖି ଗଭୀର ଆନନ୍ଦ ଲାଭ କଲେ । ସେମାନଙ୍କ ଚକ୍ଷୁ ଆନନ୍ଦାଶ୍ରୁରେ ଅନ୍ଧୀଭୂତ ହୋଇଗଲା । ମନେହେଲା ଦୀର୍ଘ ସମୟ ଧରି ଗୋଟିଏ ବସ୍ତୁକୁ ଚାହିଁବାର ପୀଡ଼ା ହେତୁ ସେଗୁଡ଼ିକ ଫାଟିପଡ଼ିବ ବୋଲି ବିଧାତା ସେସବୁକୁ ମୁଦ୍ରିତ କରିଦେଇଛି । ଉଦୟନ, ବାସବଦତ୍ତା ଏବଂ ପଦ୍ମାବତୀ ଦୀର୍ଘ ସମୟ ଧରି ପୁତ୍ରକୁ ଛାତିରେ ଭିଡ଼ି ଧରିଲେ । ମନେହେଲା ହର୍ଷରୂପକ ସୂତ୍ରରେ ସେମାନେ ଗୁନ୍ଥି ହୋଇଯାଇଛନ୍ତି । ଚତୁର୍ଦ୍ଦିଗ ବାଦ୍ୟନାଦରେ ଉଚ୍ଛୁଳି ପଡ଼ିଲା ।

ଏପରି ମହୋତ୍ସବ ପାଳିତ ହେଉଥିବା ବେଳେ ବାନପ୍ରସ୍ଥୀ ବେଗବାନଙ୍କ କନ୍ୟା, ମାନସବେଗଙ୍କ ଭଗିନୀ ଏବଂ ନରବାହନଦତ୍ତଙ୍କ ସହିତ ବିବାହ ସୂତ୍ରରେ ଆବଦ୍ଧା

ବେଗବତୀ ନିଜ ସିଦ୍ଧ ବିଦ୍ୟାଦ୍ୱାରା ଏସବୁ ଜାଣିପାରି ଆକାଶ ମାର୍ଗରେ ଆସି ସେଠାରେ ଅବତରଣ କଲେ ।

ଶାଶୁ ଶ୍ୱଶୁରଙ୍କ ପାଦରେ ପ୍ରଣିପାତ କରି ସେ ନରବାହନଦତ୍ତଙ୍କ ଚରଣ ସ୍ପର୍ଶ ପୂର୍ବକ କହିଲେ, 'ଆର୍ଯ୍ୟପୁତ୍ର ! ଆପଣଙ୍କ କାର୍ଯ୍ୟ ନିର୍ବାହ କରିବା ଫଳରେ ମୋର ଯେଉଁ ବିଦ୍ୟାଗୁଡ଼ିକ କ୍ଷୀଣ ହୋଇଯାଇଥିଲେ, ମୁଁ ତପୋବନ ମଧ୍ୟରେ କଠୋର ତପସ୍ୟା କରି ସେସବୁକୁ ପୁଣି ଉଜ୍ଜୀବିତ କରିପାରିଛି ।' ବେଗବତୀଙ୍କ କଥାରେ ନରବାହନଦତ୍ତ ଏବଂ ସ୍ୱଜନମାନେ ତାଙ୍କୁ ଯଥୋଚିତ ଅଭିନନ୍ଦନ ଜଣାଇଲେ । ବହୁଦିନ ପରେ ସାକ୍ଷାତ ହୋଇଥିବାରୁ ସେ ସଖୀ ପ୍ରଭାବତୀ ଓ ଅଜିନାବତୀଙ୍କୁ ଦୃଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରି ନିଜର ସ୍ନେହ ଓ ଅନୁରକ୍ତି ଜଣାଇଲେ ।

ଏ ସମୟରେ ଅଜିନାବତୀଙ୍କ ମାତା ଧନବତୀ ସେଠାରେ ଆସି ଅବତୀର୍ଣ୍ଣ ହେଲେ । ତାଙ୍କ ସହିତ ବିଦ୍ୟାଧରରାଜ ମଧ୍ୟ ଆସିଥାନ୍ତି । ତାଙ୍କ ସେନାବାହିନୀ ଆକାଶକୁ ମେଘାଚ୍ଛନ୍ନ କଲାଭଳି ମନେହେଉଥାଏ । ସେମାନଙ୍କ ସହିତ ଥାଆନ୍ତି ଅଜିନାବତୀଙ୍କ ଭ୍ରାତା ପ୍ରବଳ ପ୍ରତାପୀ ଚଣ୍ଡସିଂହ ଏବଂ ତାଙ୍କ ଶ୍ୱଶୁର ପରାକ୍ରମଶାଳୀ ଅମିତଗତି । ପ୍ରଭାବତୀଙ୍କ ପିତା ପ୍ରଚଣ୍ଡ ବୀର ପିଙ୍ଗଳଗାନ୍ଧାର ଏବଂ ପୂର୍ବେ ଧର୍ମସଭାର ସଭାପତିତ୍ୱ କରିଥିବା ବାୟୁପଥ ମଧ୍ୟ ଏ ସମୟରେ ଆସି ପହଞ୍ଚିଲେ । ରତ୍ନପ୍ରଭଙ୍କ ପିତା ଶୌର୍ଯ୍ୟଶାଳୀ ରାଜା ହେମପ୍ରଭ ପୁତ୍ର ବଜ୍ରପ୍ରଭଙ୍କ ସହିତ ନିଜ ସେନାବାହିନୀ ଧରି ଆକାଶ ମାର୍ଗରୁ ଅବତରଣ କଲେ । ଗନ୍ଧର୍ବରାଜ ସାଗରଦତ୍ତ କନ୍ୟା ଗନ୍ଧର୍ବଦତ୍ତା ଏବଂ ପୁତ୍ର ଚିତ୍ରାଙ୍ଗଦ ସହିତ ଆସି ସେମାନଙ୍କ ସହିତ ମିଳିତ ହେଲେ ।

ବତ୍ସରାଜ ଉଦୟନ ପୁତ୍ର ସହିତ ଏମାନଙ୍କ ସ୍ୱାଗତ ଓ ଅତିଥି ସତ୍କାର କରୁଥାନ୍ତି । ପ୍ରତ୍ୟେକେ ସେମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଆସନରେ ଉପବେଶନ କରିବା ପରେ ରାଜା ପିଙ୍ଗଳଗାନ୍ଧାର ଜାମାତା ନରବାହନଦତ୍ତଙ୍କୁ ଉଦ୍ଦେଶ୍ୟ କରି ନିବେଦନ କଲେ—

'ଈଶ୍ୱର ଆପଣଙ୍କୁ ଚକ୍ରବର୍ତ୍ତୀ ସମ୍ରାଟ ରୂପେ ନିର୍ବାଚନ କରିଛନ୍ତି । ଅତ୍ୟନ୍ତ ସ୍ନେହବଶରୁ ଆମେ ସମସ୍ତେ ଏଠାରେ ଆସି ସମ୍ମିଳିତ ହୋଇଛୁ । ଅଖଣ୍ଡ ବ୍ରତଚାରିଣୀ, ଅଲୌକିକ ଜ୍ଞାନବତୀ, ରୁଦ୍ରାକ୍ଷମାଳା ଧାରିଣୀ, କୃଷ୍ଣସାର ମୃଗଚର୍ମ ପରିହିତା, ସାକ୍ଷାତ୍ ଭଗବତୀ ସାବିତ୍ରୀ ତୁଲ୍ୟା ଆପଣଙ୍କ ଶାଶୁ ଧନବତୀ ମଧ୍ୟ ଏଠାରେ ଉପସ୍ଥିତ ଅଛନ୍ତି । ସେ ବିଦ୍ୟାଧରମାନଙ୍କ ସମସ୍ତ ବିଦ୍ୟାରେ ସୁସିଦ୍ଧା । ଶ୍ରେଷ୍ଠ ବିଦ୍ୟାଧରମାନେ ମଧ୍ୟ ତାଙ୍କୁ ବନ୍ଦନା କରିଥାନ୍ତି । ଆପଣଙ୍କ ସୁରକ୍ଷାପାଇଁ ସେ ସର୍ବଦା ସତର୍କ ଅଛନ୍ତି । ତେଣୁ ଆପଣଙ୍କର ସଫଳତା ଅବଶ୍ୟମ୍ଭାବୀ, ତଥାପି ମୁଁ ଯାହା କହୁଛି ତାହା ମନଦେଇ ଶୁଣନ୍ତୁ ।

'ହିମାଳୟ ଉପରେ ଯେଉଁ ବିଦ୍ୟାଧର ବେଦୀ ରହିଛି ତାହା ଦୁଇଭାଗରେ ବିଭକ୍ତ । ଏହି ଉଭୟ ବିଦ୍ୟାଧର ରାଜ୍ୟ ହିମାଳୟର ବିଭିନ୍ନ ଶିଖର ଉପରେ ବିସ୍ତୃତ । ଗୋଟିଏ ଦକ୍ଷିଣବେଦୀ ଏବଂ ଅନ୍ୟଟି ଉତ୍ତରବେଦୀ ରୂପେ ପରିଚିତ । କୈଳାସ ପର୍ବତର ଅପର ଦିଗରେ ଉତ୍ତରବେଦୀର ଅବସ୍ଥିତି । ଏହି ଭାଗଟି ଦକ୍ଷିଣବେଦୀ । ଉତ୍ତରବେଦୀରେ ପ୍ରଭୁତ୍ୱ ଲାଭପାଇଁ ଅମିତଗତି କଠୋର ତପସ୍ୟା କରି ଭଗବାନ ଶଙ୍କରଙ୍କୁ ଏବେ ପ୍ରସନ୍ନ କରିପାରିଛନ୍ତି । ଭଗବାନ ତାଙ୍କୁ ଆଦେଶ ଦେଇଛନ୍ତି ଯେ ନରବାହନଦତ୍ତ ତାଙ୍କର କାମନା ପୂରଣ କରିବେ । ତେଣୁ ଆପଣଙ୍କ ଅନୁଗ୍ରହପାଇଁ ସେ ଏଠାରେ ଆସି ପହଞ୍ଚିଛନ୍ତି । ଉତ୍ତର ବେଦୀରେ ମନ୍ଦରଦେବ ନାମରେ ଜଣେ ବଳଶାଳୀ ରାଜା ରାଜତ୍ୱ କରନ୍ତି । ଦୁର୍ମତି ମନ୍ଦରଦେବ ଶକ୍ତିଶାଳୀ ହେଲେ ହେଁ, ଆପଣ ବିଦ୍ୟାଧରମାନଙ୍କ ବିଦ୍ୟାସିଦ୍ଧ କରିଥିବା ଯୋଗୁଁ, ଆପଣଙ୍କପାଇଁ ଅସାଧ ନୁହଁନ୍ତି । କିନ୍ତୁ ଦକ୍ଷିଣ ବେଦୀ ମଧ୍ୟରେ ଗୌରୀମୁଣ୍ଡ ନାମରେ ଯେଉଁ ପ୍ରଖ୍ୟାତ ରାଜା ଅଛନ୍ତି ସେହି ଦୁଷ୍ଟାତ୍ମା ବିଦ୍ୟା ପ୍ରଭାବରେ ଦୁର୍ଜେୟ । ସେ ଆପଣଙ୍କ ଶତ୍ରୁ ମାନସବେଗର ପରମ ମିତ୍ର । ଆପଣ ସେହି ଗୌରୀମୁଣ୍ଡକୁ ପରାଜିତ ନ କରିବା ପର୍ଯ୍ୟନ୍ତ ନିଜ କାର୍ଯ୍ୟରେ ସଫଳତା ଲାଭ କରିପାରିବେ ନାହିଁ । ସେଥିପାଇଁ ତପଶ୍ଚରଣ ପୂର୍ବକ ଯଥାଶୀଘ୍ର ମହତ୍ ଓ ଶ୍ରେଷ୍ଠ ବିଦ୍ୟା ବଳରେ ବଳୀୟାନ୍ ହୁଅନ୍ତୁ ।'

ପିଙ୍ଗଳଗାନ୍ଧାରଙ୍କ ବକ୍ତବ୍ୟକୁ ସମର୍ଥନ କଲେ ଧନବତୀ, 'ହଁ ପୁତ୍ର, ରାଜା ପିଙ୍ଗଳଗାନ୍ଧାର ଯାହା କହିଲେ ତାହା ଅସତ୍ୟ ନୁହେଁ । ତେଣୁ ତୁମେ ସିଦ୍ଧକ୍ଷେତ୍ରକୁ ଯାଇ ବିଦ୍ୟା ସିଦ୍ଧି ନିମିତ୍ତ ଈଶ୍ୱରଙ୍କ ଆରାଧନା କର । ତାଙ୍କୁ ପ୍ରସନ୍ନ ନକଲେ ତୁମର ଅଭ୍ୟୁଦୟ କିପରି ବା ସମ୍ଭବ ହେବ ! ବିଦ୍ୟାଧର ଅଧିପତିମାନେ ମିଳିତଭାବେ ତୁମକୁ ରକ୍ଷା କରିବେ ।'

ଏହାଶୁଣି ଚିତ୍ରାଙ୍ଗଦ ସଙ୍ଗେସଙ୍ଗେ କହିଲେ, 'ଏକଥା ଠିକ୍ । ମୁଁ ଆଗରୁ ଯାଉଛି । ଆପଣମାନେ ଶୀଘ୍ର ଆସିବା ହୁଅନ୍ତୁ ।'

## ନରବାହନଦତ୍ତଙ୍କ ତପସ୍ୟା ଓ ସିଦ୍ଧିପ୍ରାପ୍ତି

ପ୍ରସ୍ଥାନକାଳୀନ ସମସ୍ତ ମଙ୍ଗଳକର୍ମ ଅନୁଷ୍ଠାନ ପୂର୍ବକ ନରବାହନଦତ୍ତ ଗୁରୁଜନମାନଙ୍କ ଚରଣରେ ପ୍ରଣାମ କରି ସେମାନଙ୍କ ଆଶୀର୍ବାଦ ଗ୍ରହଣ କଲେ । ବାଷ୍ପାକୁଳ ନେତ୍ରରେ ଉଦୟନ ଓ ମାତାମାନେ ମଧ୍ୟ ତାଙ୍କୁ ଆଶୀର୍ବାଦ ପ୍ରଦାନ କରି ପ୍ରସ୍ଥାନ ପାଇଁ ଅନୁମତି ଦେଲେ । ନରବାହନଦତ୍ତ ନିଜର ପତ୍ନୀ ଓ ସଚିବମାନଙ୍କ ସହିତ

ଅମିତଗତିଙ୍କଦ୍ୱାରା ଆନୀତ ଯାନ ଆରୋହଣ କରି ସିଦ୍ଧକ୍ଷେତ୍ର ଅଭିମୁଖରେ ଅଗ୍ରସର ହେଲେ । ସେନାବାହିନୀ ଆକାଶକୁ ଆଚ୍ଛନ୍ନ କରି ତାଙ୍କର ଅନୁଗମନ କରୁଥାନ୍ତି । ମନେ ହେଉଥାଏ, ମହାପ୍ରଳୟକାଳୀନ ପ୍ରଚଣ୍ଡ ବାୟୁ ପ୍ରବାହରେ ସାଗର ସବୁ ଉଦ୍‌ବେଳିତ ହୋଇଉଠିଛନ୍ତି । ସେନାବାହିନୀରୁ ଉତ୍‌ଥିତ ଗର୍ଜନ ଆକାଶଚାରୀ ବିଦ୍ୟାଧରମାନଙ୍କୁ ସେମାନଙ୍କ ଚକ୍ରବର୍ତ୍ତୀ ଆସିଗଲେ ବୋଲି ଯେପରି ପୂର୍ବରୁ ଜଣାଇ ଦେଉଥାଏ । ମୁହୂର୍ତ୍ତକ ମଧ୍ୟରେ ଗନ୍ଧର୍ବପତି ପିଙ୍ଗଳଗାନ୍ଧାର ଓ ଅନ୍ୟାନ୍ୟ ବିଦ୍ୟାଧର ରାଜନ୍ୟ ମଣ୍ଡଳୀ ଧନବତୀ ଓ ନରବାହନଦତ୍ତଙ୍କୁ ଘେନି ସିଦ୍ଧକ୍ଷେତ୍ରରେ ପହଞ୍ଚିଗଲେ ।

ସିଦ୍ଧକ୍ଷେତ୍ରର ପର୍ବତ ଉପରେ ନରବାହନଦତ୍ତ ସିଦ୍ଧମାନଙ୍କଦ୍ୱାରା ନିର୍ଦ୍ଦିଷ୍ଟ ବ୍ରତ ଆଚରଣ କରୁଥାନ୍ତି । ସେ ପ୍ରତ୍ୟହ ପ୍ରାତଃ ସ୍ନାନ କରି ଭଗବାନ୍ ଶଙ୍କରଙ୍କୁ ଆରାଧନା କରନ୍ତି, ଭୂମି ଉପରେ ଶୟନ କରନ୍ତି ଏବଂ ଫଳାହାର ପୂର୍ବକ ଉପବାସ ରହନ୍ତି । ବିଦ୍ୟାଧର ଅଧିପତିମାନେ ଦିନରାତି ଜାଗ୍ରତ ରହି ସିଦ୍ଧକ୍ଷେତ୍ରର ଚତୁର୍ଦ୍ଦିଗରେ ପ୍ରହରୀ ରୂପେ ବିଚରଣ କରୁଥାନ୍ତି ।

ତପସ୍ୟାରେ ନିମଜ୍ଜିତ ଥିବା ନରବାହନଦତ୍ତଙ୍କୁ ନିର୍ନିମେଷ ନୟନରେ ଚାହିଁ ଚାହିଁ ବିଦ୍ୟାଧର କୁମାରୀମାନଙ୍କ ଚକ୍ଷୁପଲକ ସବୁ କୃଷ୍ଣବର୍ଣ୍ଣ ଧାରଣ କରିଯାଉଥାଏ । ଆଉକିଛି ବିଦ୍ୟାଧର କନ୍ୟା ତାଙ୍କୁ ଚାହିଁ ଚକ୍ଷୁ ନିମୀଳନ ପୂର୍ବକ ଛାତି ଉପରେ ହାତ ରଖି ଧ୍ୟାନସ୍ଥ ହୋଇପଡୁଥିଲେ । ସତେ ଯେପରି ଦର୍ଶନେନ୍ଦ୍ରିୟ ମାଧ୍ୟମରେ ସେମାନଙ୍କ ହୃଦୟରେ ପ୍ରବେଶ କରିଥିବା ରାଜକୁମାରଙ୍କୁ ସେମାନେ ବାହାରକୁ ବାହାରିବାପାଇଁ ଦେବେ ନାହିଁ । ଆଉ ପାଞ୍ଚଜଣ ବିଦ୍ୟାଧର କୁମାରୀ ତାଙ୍କୁ ଦେଖି କାମାଗ୍ନିରେ ସନ୍ତପ୍ତ ହେଉଥାନ୍ତି । ସେମାନେ ନିଜନିଜ ମଧ୍ୟରେ ନିଶ୍ଚୟ କରିଥାନ୍ତି ଯେ ପାଞ୍ଚଜଣଯାକ ଭେଦଭାବ ଭୁଲି ଏକ ସଙ୍ଗରେ ତାଙ୍କୁ ପତି ରୂପରେ ବରଣ କରିବେ । ଯଦି ସେମାନଙ୍କ ମଧ୍ୟରୁ କେହି ଜଣେ ଏକାକିନୀ ତାଙ୍କୁ ବିବାହ କରେ ତାହାହେଲେ ଅନ୍ୟମାନେ ତାର ନାମ ଉଚ୍ଚାରଣ କରି ଅଗ୍ନି ମଧ୍ୟରେ ଶରୀର ତ୍ୟାଗ କରିବେ ।

ଆକାଶଚାରିଣୀ କୁମାରୀମାନେ ଏହିପରି ଆଚରଣ ଓ ଚିନ୍ତା କରୁଥିବା ବେଳେ ସିଦ୍ଧକ୍ଷେତ୍ରର ସେହି ଉପବନ ମଧ୍ୟରେ ଅକସ୍ମାତ୍ ମହାଉତ୍ପାତ ଦେଖାଦେଲା । ପ୍ରଚଣ୍ଡ ବାୟୁ ବେଗରେ ଫଳପୁଷ୍ପଭରା ବୃକ୍ଷଗୁଡ଼ିକ ଉପୁଡ଼ି ପଡ଼ିଲେ । ଭାବୀ ଯୁଦ୍ଧରେ ପ୍ରଚଣ୍ଡ ବୀରମାନେ ଏହିପରି ଧରାଶାୟୀ ହେବାର ଏହା ଯେପରି ଥିଲା ପୂର୍ବ ସୂଚନା । ଭୂମି ପ୍ରକମ୍ପିତ ହେବାକୁ ଲାଗିଲା । ପର୍ବତ ଶିଖର ସବୁ ବିଦୀର୍ଣ୍ଣ ହେଲା । ବିନା ମେଘରେ

ଆକାଶ ମାର୍ଗରୁ ଭୀଷଣ ଗର୍ଜନ ଶୁଣାଗଲା । ଭୂମି, ପର୍ବତ, ଆକାଶ ସତେ ଯେପରି ନରବାହନଦତ୍ତଙ୍କୁ ରକ୍ଷା କରିବାପାଇଁ ସତର୍କ ଥିଲେ ।

କିନ୍ତୁ ଏସବୁ ମଧ୍ୟରେ ନରବାହନଦତ୍ତ ଭଗବାନ୍ ଶଙ୍କରଙ୍କ ଆରାଧନା ଓ ତପସ୍ୟାରେ ଅଚଳ ଓ ଅଟଳ ରହିଥାନ୍ତି । ଅନିଷ୍ଟ ଆଶଙ୍କାରେ ଗନ୍ଧର୍ବ ଓ ବିଦ୍ୟାଧର ରାଜାମାନେ ସମ୍ମିଳିତ ଭାବେ ରାଜକୁମାରଙ୍କୁ ରକ୍ଷା କରିବାପାଇଁ ଶସ୍ତ୍ର ଉତ୍ତୋଳନ ପୂର୍ବକ ଜାଗ୍ରତ ହୋଇଉଠିଲେ । ସେମାନଙ୍କ ତରବାରି ସବୁର ଝଲକ ଏବଂ ରଣହୁଙ୍କାର ସତେ ଯେପରି ଅନାଗତ ବିପଦକୁ ଦୂରରୁ ଦୂରେଇ ଦେବାପାଇଁ ଉଦ୍ୟମ କରୁଥାନ୍ତି । ପରଦିନ ଅକସ୍ମାତ୍ ଆକାଶମାର୍ଗରେ ମହାପ୍ରଳୟ କାଳୀନ ମେଘ ସଦୃଶ ବିଦ୍ୟାଧର ସେନା ଦେଖାଦେଲା । ସେମାନଙ୍କ ରଣହୁଙ୍କାରରେ ଦିଗବିଦିଗ ପ୍ରକମ୍ପିତ ହେଲା ।

ଧନବତୀ ଏହା ଦେଖି ନିଜ ବିଦ୍ୟାକୁ ସ୍ମରଣ କରୁଥିବା ବେଳେ ମାନସବେଗ ସହିତ ଗୌରୀମୁଣ୍ଡ ସେଠାରେ ଆସି ପହଞ୍ଚିଲା । ସେ ସଂଗ୍ରାମ ପାଇଁ ପ୍ରସ୍ତୁତ ଥିବା ଗନ୍ଧର୍ବ ଓ ବିଦ୍ୟାଧର ରାଜାମାନଙ୍କୁ ଉଦ୍ଦେଶ୍ୟ କରି କହିଲା, 'ହେ ଆକାଶଚାରୀ ଦିବ୍ୟ ରାଜନ୍ୟ ବୃନ୍ଦ ! ଆମେ କେଉଁଠି ଆଉ ଏହି ଅଧମ ମାନବ ନରବାହନଦତ୍ତ କେଉଁଠି ? ନିଜ ଜାତିକୁ ପରିତ୍ୟାଗ କରି ମନୁଷ୍ୟର ପକ୍ଷ ଗ୍ରହଣ କରୁଥିବା ତୁମମାନଙ୍କର ଗର୍ବ ଖର୍ବ କରିବାପାଇଁ ମୁଁ ଆସିଗଲି ।'

ସେ ଏପରି କହୁଥିବା ବେଳେ ଚିତ୍ରାଙ୍ଗଦ ତାକୁ ଆକ୍ରମଣ କଲେ । ଗନ୍ଧର୍ବରାଜ ସାଗରଦତ୍ତ, ଚଣ୍ଡସିଂହ, ଅମିତଗତି, ରାଜା ବାୟୁପଥ, ପିଙ୍ଗଳଗାନ୍ଧାର ତଥା ଅନ୍ୟ ସମସ୍ତ ରାଜନ୍ୟବର୍ଗ ଓ ମହାରଥୀମାନେ ସସୈନ୍ୟ ଉନ୍ମତ୍ତ ପଶୁରାଜ ପରି ଗର୍ଜନ କରି ମାନସବେଗ ଉପରକୁ ମାଡ଼ିଗଲେ । ଯୋଦ୍ଧାମାନଙ୍କ ପଦୋତ୍ଥିତ ଧୂଳିରାଶି ମେଘତୁଲ୍ୟ ଆକାଶକୁ ଆଚ୍ଛନ୍ନ କଲା । ଅସ୍ତ୍ରଶସ୍ତ୍ର ବିଜୁଳି ପରି ଚମକିବାକୁ ଲାଗିଲେ । ରକ୍ତଧାରା ଜଳଧାରା ତୁଲ୍ୟ ପ୍ରବାହିତ ହେଲା । ସଂଗ୍ରାମ ବର୍ଷାଋତୁ ପରି ପ୍ରତୀୟମାନ ହେଲା । ଯୁଦ୍ଧରୂପକ ଏହି ଭୂତମହାଯଜ୍ଞରେ ରୁଧିର ରୂପକ ମଦିରାଦ୍ୱାରା ସଂଗ୍ରାମ ଭୂମି ପରିପୂର୍ଣ୍ଣ ହୋଇ ରହିଥିଲା । ସୈନିକମାନଙ୍କର ମସ୍ତକ ସବୁ ବଳି ସ୍ୱରୂପ ପ୍ରଦାନ କରାଯାଉଥିଲା । ଯୁଦ୍ଧଭୂମିରୁ ଏକ ରକ୍ତନଦୀ ପ୍ରବାହିତ ହେଲା । ଏଥିରେ କବନ୍ଧଗୁଡ଼ିକ କୁମ୍ଭୀର ପରି ନୃତ୍ୟ କରୁଥିଲେ, ଅସ୍ତ୍ରଶସ୍ତ୍ର ସବୁ ସର୍ପ ତୁଲ୍ୟ ଭାସି ବୁଲୁଥିଲେ ।

ଗୌରୀମୁଣ୍ଡର ବହୁସୈନିକ ଯୁଦ୍ଧରେ ନିହତ ହେଲେ । ସେ ମଧ୍ୟ ମୃତପ୍ରାୟ ହୋଇପଡ଼ିଲା । ବାହୁବଳରେ ଜୟଯୁକ୍ତ ହେବା ସମ୍ଭବ ନଦେଖି ସେ ପୂର୍ବରୁ ସିଦ୍ଧ କରିଥିବା

ଗୌରୀ ବିଦ୍ୟାକୁ ସ୍ମରଣ କଲା । ସ୍ମରଣ ମାତ୍ରେ ତ୍ରିନୟନ ବିଶିଷ୍ଟ ତ୍ରିଶୂଳ ଧାରିଣୀ ଏହି ବିଦ୍ୟା ପ୍ରକଟ ହୋଇ ନରବାହନଦତ୍ତଙ୍କ ପକ୍ଷର ବହୁ ବିଶିଷ୍ଟ ଯୋଦ୍ଧାଙ୍କୁ ମୂର୍ଚ୍ଛିତ କରିଦେଲା । ବିଦ୍ୟା ପ୍ରଭାବରେ ଗୌରୀମୁଣ୍ଡ ପୁନଃ ଶକ୍ତି ସଞ୍ଚୟ କରି ନରବାହନଦତ୍ତଙ୍କୁ ବାହୁଯୁଦ୍ଧ ପାଇଁ ଆହ୍ୱାନ କଲା । ସେଥିରେ ମଧ୍ୟ ସେ ଯେତେବେଳେ ନିଶ୍ଚେଷ୍ଟ ହୋଇପଡ଼ିଲା ସେତେବେଳେ ପୁଣି ସେହି ମାୟାବୀ ଗୌରୀ ବିଦ୍ୟାକୁ ସ୍ମରଣ କଲା । ବିଦ୍ୟା ପ୍ରଭାବରେ ପୁଣି ଶକ୍ତିମାନ ହୋଇଉଠିବାରୁ ସେ ନରବାହନଦତ୍ତଙ୍କୁ ଦୁଇବାହୁରେ ଧରି ଆକାଶମାର୍ଗରେ ଉଡ଼ିଗଲା । କିନ୍ତୁ ଧନବତୀଙ୍କ ବିଦ୍ୟାର ପ୍ରଭାବ ଫଳରୁ ନରବାହନଦତ୍ତଙ୍କୁ ହତ୍ୟା କରିବା ତା' ପକ୍ଷରେ ସମ୍ଭବ ହେଲା ନାହିଁ । ସେ ତାଙ୍କୁ ନେଇ ଅଗ୍ନି ପର୍ବତ ଉପରେ ନିକ୍ଷେପ କଲା । ମାନସବେଗ ମଧ୍ୟ ସେହି ବିଦ୍ୟା ପ୍ରଭାବରେ ଶକ୍ତିଶାଳୀ ହୋଇ ନରବାହନଦତ୍ତଙ୍କ ସଚିବମାନଙ୍କୁ ଆକାଶ ମାର୍ଗରେ ନେଇ ବିଭିନ୍ନ ଦିଗରେ ନିକ୍ଷେପ କଲା । କିନ୍ତୁ ଧନବତୀଙ୍କ ବିଦ୍ୟା ସେମାନଙ୍କୁ ଆକାଶ ମାର୍ଗରୁ ଧରିନେଇ ଅକ୍ଷତଭାବେ ପୃଥିବୀ ପୃଷ୍ଠକୁ ଓହ୍ଲାଇ ଆଣିଲେ ସୁଦ୍ଧା ସେମାନେ ଏକତ୍ର ହୋଇପାରିଲେ ନାହିଁ । ସେମାନଙ୍କ ଉଦ୍‌ବେଗ ଓ ବିବ୍ରତଭାବ ଦେଖି ପ୍ରତ୍ୟେକଙ୍କୁ ସ୍ୱତନ୍ତ୍ରଭାବେ ବିଦ୍ୟା ଆଶ୍ୱାସନା ପ୍ରଦାନ ପୂର୍ବକ କହିଲା ଯେ ସେମାନେ ସେମାନଙ୍କ କାର୍ଯ୍ୟରେ ନିଶ୍ଚିତ ଭାବେ ସଫଳତା ଲାଭ କରିବେ; ଏବଂ ନରବାହନଦତ୍ତଙ୍କ ସହିତ ଅବିଳମ୍ବେ ସେମାନଙ୍କର ମିଳନ ଘଟିବ ।

ସେନାବାହିନୀ, ରାଜନ୍ୟମଣ୍ଡଳୀ, ନରବାହନଦତ୍ତ ଏବଂ ତାଙ୍କ ସଚିବମାନଙ୍କୁ ବିକ୍ଷିପ୍ତ ଓ ବିବ୍ରତ କରି ଗୌରୀମୁଣ୍ଡ ଓ ମାନସବେଗ ଜୟଯୁକ୍ତ ହେଲେ ବୋଲି ମନେକଲେ; ତେଣୁ ସେମାନେ ନିଜନିଜ ଆସ୍ଥାନକୁ ଫେରିଗଲେ ।

ବନ୍ଧୁରାଜାମାନେ ମ୍ରିୟମାଣ ହୋଇପଡୁଥିବା ଦେଖି ଧନବତୀ ସେମାନଙ୍କୁ ଧୈର୍ଯ୍ୟ ଓ ଆଶ୍ୱାସନା ଦେଲେ, 'ଆପଣମାନେ ଚିନ୍ତିତ ହେବା ଅନାବଶ୍ୟକ । ନରବାହନଦତ୍ତ ନିଜ କାର୍ଯ୍ୟରେ ସଫଳତା ଲାଭ କରି ଯଥାଶୀଘ୍ର ଫେରିଆସିବେ । କେହି ତାଙ୍କର ଅନିଷ୍ଟ କରିବା ସମ୍ଭବ ନୁହେଁ । ଗନ୍ଧର୍ବରାଜ ଓ ବିଦ୍ୟାଧରରାଜ ପ୍ରଭୃତି ଜୀବନଲାଭ କଲାପରି ନିଜ ନିଜ ରାଜଧାନୀକୁ ଫେରିଗଲେ । ଧନବତୀ ମଧ୍ୟ ନିଜର କନ୍ୟା ଓ ତାର ସପତ୍ନୀମାନଙ୍କୁ ଧରି ସ୍ୱବାସଭବନକୁ ପ୍ରତ୍ୟାବର୍ତ୍ତନ କଲେ ।

ଏଣେ ନରବାହନଦତ୍ତ ଓ ତାଙ୍କ ସଚିବମାନଙ୍କୁ ଦୂରରେ ନିକ୍ଷେପ କରି ମାନସବେଗ ମଦନମଞ୍ଚୁକାଙ୍କ ନିକଟରେ ଯାଇ ପହଞ୍ଚିଲା । ତାଙ୍କୁ ଏହି ସୁସମ୍ବାଦ ଓ ଦୁଃସମ୍ବାଦ ଶୁଣାଇ ପତିଙ୍କ ମୃତ୍ୟୁ ହୋଇଥିବାରୁ ତାକୁ ବରଣ କରିବାପାଇଁ ଅନୁରୋଧ

ଜଣାଇଲା । କିନ୍ତୁ ମଦନମଞ୍ଜୁକା ହସିହସି କହିଲେ, 'ନରବାହନଦତ୍ତ ତୁମମାନଙ୍କୁ ମାରିବେ; ତାଙ୍କୁ ମାରିବ ବା କିଏ ? ସେ ଭଗବାନ ଶଙ୍କରଙ୍କଦ୍ୱାରା ପୃଥିବୀ ପୃଷ୍ଠକୁ ଆସିଛନ୍ତି ।'

ଏହା ମଧରେ ମାନସବେଗଦ୍ୱାରା ନିକ୍ଷିପ୍ତ ନରବାହନଦତ୍ତ ଅଗ୍ନି ପର୍ବତ ଉପରେ ପଡ଼ିବା ପୂର୍ବରୁ କୌଣସି ଜଣେ ଦିବ୍ୟ ପୁରୁଷ ଆସି ତାଙ୍କୁ ଧରିନେଲା । ତା'ଦ୍ୱାରା ସେ ଶୀତଳ ଗଙ୍ଗାକୂଳରେ ଯାଇ ପହଞ୍ଚିଲେ । ପରିଚୟ ଜିଜ୍ଞାସା କରିବାରୁ ପୁରୁଷଟି ଉତ୍ତର ଦେଲା, 'ଦେବ ! ମୁଁ ଅମୃତପ୍ରଭ ନାମକ ବିଦ୍ୟାଧରାଧିପତି । ଭଗବାନ ଶଙ୍କର ଆପଣଙ୍କୁ ରକ୍ଷା କରିବା ନିମିତ୍ତ ମୋତେ ଏହିକ୍ଷଣି ପଠାଇଲେ । ତାଙ୍କ ନିବାସ ଭୂମି କୈଳାସ ପର୍ବତ ଆପଣଙ୍କ ସମ୍ମୁଖରେ ହିଁ ରହିଛି । ଏଠାରେ ଆପଣ ଭଗବାନଙ୍କର ଆରାଧନା କରନ୍ତୁ । ବିନା ବିଘ୍ନରେ ଆପଣଙ୍କ ଅଭୀଷ୍ଟ ସିଦ୍ଧ ହେବ ।'

ଏତିକି କହି ବିଦ୍ୟାଧରରାଜ ଅନ୍ତର୍ହିତ ହୁଅନ୍ତେ ନରବାହନଦତ୍ତ ପବିତ୍ର କୈଳାସ ପର୍ବତରେ ଯାଇ ପହଞ୍ଚିଲେ । କୈଳାସର ସମ୍ମୁଖରେ ଗଣପତିଙ୍କ ଆବାସ ଭୂମି । ସେ ପ୍ରଥମେ ବିଘ୍ନରାଜଙ୍କୁ ତପସ୍ୟାରେ ପ୍ରସନ୍ନ କଲେ । ଭଗବାନ ବିନାୟକଙ୍କଠାରୁ ଅନୁମତି ପ୍ରାପ୍ତ ହୋଇ ସେ ଯେତେବେଳେ ଗିରିଜା ପତି ଦେବଦେବ ମହାଦେବଙ୍କ ଆଶ୍ରମରେ ପ୍ରବେଶ କଲେ ସେତେବେଳେ ଦ୍ୱାରଦେଶରେ ନନ୍ଦି ପ୍ରହରୀ ରୂପେ ଜାଗ୍ରତ ରହିଥାନ୍ତି । ସେ ପ୍ରଣାମ କରି ତାଙ୍କର ପ୍ରଦକ୍ଷିଣା କଲେ । ନନ୍ଦି ଦୟାପରବଶ ହୋଇ କହିଲେ, 'ନରବାହନଦତ୍ତ ! ତୁମର ସମସ୍ତ ବିଘ୍ନ ଦୂର ହୋଇଛି । ତୁମେ ବର୍ତ୍ତମାନ ସିଦ୍ଧିର ନିକଟବର୍ତ୍ତୀ । ତେଣୁ ଏଠାରେ ରହି ଭଗବାନ ଶଙ୍କର ପ୍ରସନ୍ନ ନହେବା ପର୍ଯ୍ୟନ୍ତ ତପସ୍ୟା ଆଚରଣ କର । ତପସ୍ୟାଦ୍ୱାରା ପ୍ରଥମେ ସମସ୍ତ ପାପ କ୍ଷାଳିତ ନହେଲେ ସିଦ୍ଧିଲାଭ ସମ୍ଭବ ନୁହେଁ ।'

ନନ୍ଦିଙ୍କ ଉପଦେଶ କ୍ରମେ ନରବାହନଦତ୍ତ କେବଳ ବାୟୁ ଆହାର କରି ଶିବ ଓ ପାର୍ବତୀଙ୍କ ଧାନରେ ନିମଗ୍ନ ହେଲେ । କିଛିଦିନ ମଧରେ ତାଙ୍କର ତପସ୍ୟା ସଫଳ ହେଲା । ଶିବପାର୍ବତୀ ତାଙ୍କୁ ସାକ୍ଷାତ ଦର୍ଶନ ଦେଲେ । ସେମାନେ ସାଷ୍ଟାଙ୍ଗ ପ୍ରଣାମ କରୁଥିବା ନରବାହନଦତ୍ତଙ୍କୁ ବର ପ୍ରଦାନ କରି କହିଲେ, 'ବର୍ତ୍ତମାନ ତୁମେ ସମସ୍ତ ବିଦ୍ୟାଧରଙ୍କ ଚକ୍ରବର୍ତ୍ତୀ ସମ୍ରାଟ ହୁଅ । ସମସ୍ତଙ୍କ ଅପେକ୍ଷା ଅଧିକ ପ୍ରଭାବଶାଳୀ ବିଦ୍ୟାଗୁଡ଼ିକ ତୁମ ଭିତରେ ଉଦୟ ହୁଅନ୍ତୁ । ଆମ୍ଭମାନଙ୍କ ପ୍ରଭାବରୁ ତୁମେ ଶତ୍ରୁମାନଙ୍କ ଦ୍ୱାରା ଅଜେୟ, ଅଚ୍ଛେଦ୍ୟ ଓ ଅଭେଦ୍ୟ ହେବ । ସମସ୍ତ ଶତ୍ରୁଙ୍କୁ ନିହତ କରିବା ଆଶୀର୍ବାଦ ଗ୍ରହଣ କର ।

ତୁମକୁ ଦେଖିବା ମାତ୍ରେ ଶତ୍ରୁମାନଙ୍କର ସମସ୍ତ ବିଦ୍ୟା ପ୍ରଭାବହୀନ ହୋଇପଡ଼ିବେ । ବର୍ତ୍ତମାନ ତୁମେ ଯାଇପାର । ଗୌରୀ ନାମକ ବିଦ୍ୟା ମଧ୍ୟ ତୁମର ଅଧୀନ ହୋଇଯିବ ।' ଏହିପରି ବରପ୍ରଦାନ ପୂର୍ବକ ଭଗବାନ୍ ଶଙ୍କର ସ୍ୱୟଂ ବ୍ରହ୍ମାଙ୍କଦ୍ୱାରା ଚକ୍ରବର୍ତ୍ତୀମାନଙ୍କ ପାଇଁ ନିର୍ମିତ ପଦ୍ମପୁଷ୍ପ ଆକାର ବିଶିଷ୍ଟ ବିଶାଳ ମହାପଦ୍ମ ବିମାନ ତାଙ୍କ ହସ୍ତରେ ଅର୍ପଣ କଲେ । ଭଗବାନଙ୍କ ସମ୍ମୁଖରେ ହିଁ ସମସ୍ତ ବିଦ୍ୟା ସଶରୀରେ ଉପସ୍ଥିତ ହୋଇ ନରବାହନଦତ୍ତଙ୍କ ଆଦେଶ ପାଳନପାଇଁ ଆଗ୍ରହ ପ୍ରକାଶ କଲେ । ଏହିପରି ସମସ୍ତ ସିଦ୍ଧି ଓ ବିଦ୍ୟାର ଅଧିକାରୀ ହୋଇ ନରବାହନଦତ୍ତ ଭଗବାନ ଓ ଭଗବତୀଙ୍କଠାରୁ ବିନମ୍ରଭାବେ ବିଦାୟ ନେଲେ । ସେ ଅଲୌକିକ ପଦ୍ମବିମାନକୁ ପ୍ରଣାମ କରି ତା' ଉପରେ ଆରୋହଣ କରିବା ମାତ୍ରେ ବିମାନ ଚଞ୍ଚଳ ହୋଇଉଠିଲା ।

ନରବାହନଦତ୍ତଙ୍କ ନିର୍ଦ୍ଦେଶରେ ଏବଂ ବିଦ୍ୟାମାନଙ୍କ ପ୍ରଦର୍ଶିତ ମାର୍ଗରେ ନରବାହନଦତ୍ତ ପ୍ରଥମେ ଯାଇ ଅମିତଗତିଙ୍କ ବକ୍ରପୁର ନଗରରେ ପହଞ୍ଚିଲେ । ସେ ଆକାଶ ମାର୍ଗରେ ଯାଉଥିବା ବେଳେ ଚାରଣ ବିଦ୍ୟାଧରମାନେ ତାଙ୍କ ସ୍ତୁତିଗାନ କରୁଥାନ୍ତି । ଅମିତଗତି ତାଙ୍କୁ ଦୂରରୁ ଦେଖିପାରି ଆଦରର ସହିତ ସ୍ୱାଗତ ଜଣାଇଲେ । ତାଙ୍କ ଅନୁରୋଧ କ୍ରମେ ସଦ୍ୟ ଚକ୍ରବର୍ତ୍ତୀ ପଦବୀ ଲାଭ କରିଥିବା ନରବାହନଦତ୍ତ ବନ୍ଧୁଙ୍କ ବାସଭବନରେ ଯାଇ ପଦାର୍ପଣ କଲେ । ତାଙ୍କ ସିଦ୍ଧିପ୍ରାପ୍ତି କଥା ଶୁଣି ଅମିତଗତି କେବଳ ଯେ ପ୍ରଭୂତ ଆନନ୍ଦ ଅନୁଭବ କଲେ ତା' ନୁହେଁ, ନିଜ କନ୍ୟା ସୁଲୋଚନାଙ୍କୁ ଆଣି ତାଙ୍କ ହସ୍ତରେ ସମର୍ପଣ କଲେ । ନରବାହନଦତ୍ତ ମଧ୍ୟ ରାଜଲକ୍ଷ୍ମୀ ତୁଲ୍ୟ ସୁଲୋଚନାଙ୍କୁ ବିବାହ କରି ଉତ୍ସବମୁଖର ଦିବସଟିକୁ ଆନନ୍ଦର ସହିତ ବିତାଇଦେଲେ ।

# ଚତୁର୍ଥ ତରଙ୍ଗ

ଦିନେ ଚକ୍ରବର୍ତ୍ତୀ ନରବାହନଦତ୍ତ ବକ୍ରପୁରର ରାଜସଭା ମଧ୍ୟରେ ବସିଥାନ୍ତି । ଏ ସମୟରେ ଜଣେ ପୁରୁଷ ଆକାଶରୁ ଅବତରଣ କରି ତାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲା । ସେ ହସ୍ତରେ ବେତ୍ର ଧାରଣ କରିଥାଏ । ପୁରୁଷଟି ନରବାହନଦତ୍ତଙ୍କୁ ନିବେଦନ କଲା, 'ପ୍ରଭୁ ! ମୁଁ ପରମ୍ପରା କ୍ରମେ ବିଦ୍ୟାଧର ଚକ୍ରବର୍ତ୍ତୀମାନଙ୍କର ଦ୍ୱାରପାଳ ରୂପେ କାର୍ଯ୍ୟ କରି ଆସୁଛି । ମୋର ନାମ ପୌରରୁଚିଦେବ । ଆପଣଙ୍କ ସେବାରେ ନିଯୁକ୍ତ ହେବାପାଇଁ ଏଠାକୁ ଆସିଅଛି ।' ତା' କଥାର ସତ୍ୟତା ଜାଣିବାପାଇଁ ନରବାହନଦତ୍ତ ଅମିତଗତିଙ୍କୁ ଚାହିଁ ରହିଲେ । ଅମିତଗତି ତା' କଥାର ସତ୍ୟତାରେ ସମ୍ମତି ପ୍ରକାଶ କରିବାରୁ ତାକୁ ଦ୍ୱାରପାଳ ରୂପେ ନିଯୁକ୍ତ କରାଗଲା ।

ଏ ସମୟରେ ନିଜ ବିଦ୍ୟା ପ୍ରଭାବରୁ ନରବାହନଦତ୍ତ ବକ୍ରପୁରରେ ଅବସ୍ଥାନ କରୁଥିବା ଜାଣି ବେଗବତୀ ପ୍ରଭୃତି ନରବାହନଦତ୍ତଙ୍କ ପତ୍ନୀମାନଙ୍କ ସହିତ ଧନବତୀ ଆସି ସେଠାରେ ପହଞ୍ଚିଲେ । ତାଙ୍କ ପୁତ୍ର ଚଣ୍ଡସିଂହ, ବାୟୁପଥଙ୍କ ସହିତ ରାଜା ପିଙ୍ଗଳଗାନ୍ଧାର, ସାଗରଦତ୍ତଙ୍କ ସହିତ ଚିତ୍ରାଙ୍ଗଦ ତଥା ହେମପ୍ରଭ ପ୍ରଭୃତି ମଧ୍ୟ କ୍ରମେ କ୍ରମେ ଆସି ସେଠାରେ ଉପସ୍ଥିତ ହେବାକୁ ଲାଗିଲେ । ଏମାନଙ୍କ ସେନାବାହିନୀଦ୍ୱାରା ସୂର୍ଯ୍ୟମଣ୍ଡଳ ଆଚ୍ଛାଦିତ ହୋଇପଡ଼ିଲା । ମନେହେଲା, ବନ୍ଧୁରାଜାମାନେ ଚକ୍ରବର୍ତ୍ତୀଙ୍କ ନିକଟରେ ଅନ୍ୟର ତେଜ ସହ୍ୟ କରିପାରୁ ନାହାଁନ୍ତି । ଏମାନେ ନରବାହନଦତ୍ତଙ୍କ ପଦପ୍ରାନ୍ତରେ ପ୍ରଣତି ଜ୍ଞାପନ କରନ୍ତେ ସେ ପ୍ରତ୍ୟେକଙ୍କର ଯଥାଯୋଗ୍ୟ ସତ୍କାର କଲେ । ଧନବତୀଙ୍କ ପଦସ୍ପର୍ଶ କରିବାରୁ ସେ ନରବାହନଦତ୍ତଙ୍କୁ ପ୍ରସନ୍ନ ଚିତ୍ତରେ ଆଶୀର୍ବାଦ ପ୍ରଦାନ ପୂର୍ବକ ତାଙ୍କର କଲ୍ୟାଣ କାମନା କଲେ । ନରବାହନଦତ୍ତଙ୍କଠାରୁ ତାଙ୍କ ସିଦ୍ଧିପ୍ରାପ୍ତିର ଅପୂର୍ବ ବୃତ୍ତାନ୍ତ ଶୁଣି ସମବେତ ରାଜନ୍ୟ ମଣ୍ଡଳୀଙ୍କ ଆନନ୍ଦ ଓ ବିସ୍ମୟର ସୀମା ରହିଲା ନାହିଁ ।

ଧନବତୀଙ୍କୁ ଦେଖି ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କ ମନରେ ତାଙ୍କ ସଚିବମାନଙ୍କ ପାଇଁ ଉଦ୍‌ବେଗ ସୃଷ୍ଟିହେଲା । ଏ ସମ୍ପର୍କରେ ସେ ଧନବତୀଙ୍କଠାରୁ ଜାଣିବାପାଇଁ ଚାହିଁବାରୁ

ଧନବତୀ କହିଲେ ଯେ ସେ ମାନସବେଗଦ୍ୱାରା ବିଭିନ୍ନ ଦିଗରେ ନିକ୍ଷିପ୍ତ ଗୋମୁଖ ପ୍ରଭୃତି ସଚିବମାନଙ୍କୁ ନିଜ ବିଦ୍ୟାବଳରେ ଭିନ୍ନଭିନ୍ନ ସ୍ଥାନରେ ସୁରକ୍ଷିତ କରି ରଖିଛନ୍ତି । ଏହାଶୁଣି ନରବାହନଦତ୍ତ ନିଜ ସ୍ୱାକାର ବିଦ୍ୟାଦ୍ୱାରା ସେମାନଙ୍କୁ ସଙ୍ଗେସଙ୍ଗେ ନିକଟକୁ ନେଇଆସିଲେ । ଚକ୍ରବର୍ତ୍ତୀଙ୍କ ସହିତ ସାକ୍ଷାତରୁ ସେମାନଙ୍କ ମନରେ ଅଶେଷ ଆନନ୍ଦ ଜାତ ହେଲା । ଚରଣ ପ୍ରାନ୍ତରେ ପ୍ରଣାମ କରୁଥିବା ସଚିବମାନଙ୍କଠାରୁ ନରବାହନଦତ୍ତ ସେମାନଙ୍କ ବିଚ୍ଛେଦକାଳୀନ ଅନୁଭୂତି ସବୁ ଜାଣିବାକୁ ଚାହିଁଲେ ।

## ଗୋମୁଖଙ୍କ ବିଚିତ୍ରାନୁଭୂତି

ପ୍ରଥମେ ମନ୍ତ୍ରୀ ଗୋମୁଖ ନିଜ ବୃତ୍ତାନ୍ତ ଶୁଣାଇବାକୁ ଯାଇ ଆରମ୍ଭ କଲେ, ''ଦେବ ! ଦୁଷ୍ଟ ମାନସବେଗ ମୋତେ ବାୟୁବେଗରେ ଉଡ଼ାଇ ନେଇଯାଉଥିବା ବେଳେ କୌଣସି ଦେବୀ ତାଙ୍କର ଅଭୟ ହସ୍ତରେ ମୋତେ ଧରିନେଲେ । ସେ ଆଶ୍ୱାସନା ପ୍ରଦାନପୂର୍ବକ ଦୂରବର୍ତ୍ତୀ ଏକ ଅରଣ୍ୟ ମଧ୍ୟରେ ମୋତେ ଛାଡ଼ିଦେଇ ଅନ୍ତର୍ହିତା ହୋଇଗଲେ । ମୁଁ ଦୁଃଖରେ ବ୍ୟାକୁଳ ହୋଇ ନିକଟସ୍ଥ ଜଳପ୍ରପାତରେ ଶରୀର ବିସର୍ଜନ କରିବାପାଇଁ ଉଦ୍ୟତ ହେଲି । ଏ ସମୟରେ ଜଣେ ତପସ୍ୱୀ ମୋ ନିକରେ ଆସି ପହଞ୍ଚିଲେ । ତାଙ୍କଠାରୁ ଆପଣଙ୍କ ସହିତ ଅବିଳମ୍ବେ ସାକ୍ଷାତ ହେବାର ଆଶ୍ୱାସନା ପାଇ ମୁଁ ମୋର ସଙ୍କଳ୍ପରୁ କ୍ଷାନ୍ତ ହେଲି । ଆପଣ ନିକଟରେ ସିଦ୍ଧିପ୍ରାପ୍ତ ହେବା କଥା ମଧ୍ୟ ସେ ମୋତେ ଜଣାଇଲେ । ମୁଁ ତାଙ୍କ ପରିଚୟ ଏବଂ ସେ ମୋତେ କିପରି ଜାଣନ୍ତି, ଜାଣିବାପାଇଁ କୌତୂହଳ ପ୍ରକାଶ କରନ୍ତେ ସେ କହିଲେ, 'ପ୍ରଥମେ ତୁମେ ଆମ ଆଶ୍ରମକୁ ଚାଲ । ସେଠାରେ ମୁଁ ତୁମକୁ ସବୁକଥା କହିବି ।' ମୁଁ କହିବା ପୂର୍ବରୁ ସେ ମୋର ନାମ ଓ ପରିଚୟ ଜାଣିଥିବା ଦେଖି ସେ ଯେ ଜଣେ ଜ୍ଞାନସିଦ୍ଧ ତପସ୍ୱୀ, ଏଥିରେ ମୋର ସନ୍ଦେହ ରହିଲା ନାହିଁ । ତାଙ୍କ ସହିତ ଯାଇ ମୁଁ ଶିବକ୍ଷେତ୍ର ସ୍ଥିତ ତାଙ୍କ ଆଶ୍ରମରେ ପହଞ୍ଚିଲି ।

ଆଶ୍ରମରେ ମୋର ଯଥୋଚିତ ସତ୍କାର କରିବା ପରେ ସେ ନିଜ କଥା କହି ଶୁଣାଇଲେ ।

## ନାଗସ୍ୱାମୀ ଓ ଯୋଗିନୀ କଥା

'ମୁଁ ନାଗସ୍ୱାମୀ ନାମକ ବ୍ରାହ୍ମଣ । ଆଦ୍ୟ ଯୌବନରେ ପିତାଙ୍କ ଦେହାନ୍ତ ହୋଇଗଲା । ବିଦ୍ୟାଲାଭ ଆଶାରେ ମୁଁ ଆମ କୁଣ୍ଡିନ ନଗର ଛାଡ଼ି ପାଟଳିପୁତ୍ର ଚାଲିଆସିଲି । ସେଠାରେ ଜୟଦତ୍ତ ନାମରେ ଜଣେ ଉପାଧ୍ୟାୟ ଶିକ୍ଷାର୍ଥୀମାନଙ୍କୁ ଶିକ୍ଷାଦାନ

କରୁଥାନ୍ତି । ମୁଁ ତାଙ୍କ ନିକଟରେ ରହି ଅଧ୍ୟୟନ କଲି । କିନ୍ତୁ ମୁଁ ଥିଲି ଅତ୍ୟନ୍ତ ମନ୍ଦବୁଦ୍ଧି । ତେଣୁ ଦୀର୍ଘଦିନ ମଧ୍ୟରେ ମୋର ଗୋଟିଏ ମାତ୍ର ଅକ୍ଷର ଶିକ୍ଷା ହୋଇପାରିଲା ନାହିଁ । ସହାଧ୍ୟାୟୀମାନେ ମୋତେ ଉପହାସ କରିବାକୁ ଲାଗିଲେ । ମୁଁ ଏଥିରେ ଦୁଃଖିତ ହୋଇ ବିନ୍ଧ୍ୟବାସିନୀ ଭଗବତୀ ପାର୍ବତୀଙ୍କ ଦର୍ଶନପାଇଁ ଗୁରୁକୁଳରୁ ବାହାରିପଡ଼ିଲି । କିଛିଦୂର ଗଲାପରେ ମୁଁ ଆସି ବକ୍ରୋଳକ ନାମକ ଗୋଟିଏ ଗାଁରେ ପହଞ୍ଚିଲି । ସେଠାରେ ଭିକ୍ଷା ମାଗିବା ପାଇଁ ଜଣେ ଗୃହସ୍ଥଙ୍କ ଦ୍ୱାରସ୍ଥ ହେବାରୁ ଗୃହିଣୀ ମୋତେ ଭିକ୍ଷା ସହ ଗୋଟିଏ ରକ୍ତକମଳ ପ୍ରଦାନ କଲେ । ତାକୁ ଧରି ମୁଁ ଯେତେବେଳେ ଦ୍ୱିତୀୟ ଗୃହକୁ ଗଲି ସେତେବେଳେ ମୋ ହାତରେ ରକ୍ତକମଳ ଦେଖି ଗୃହିଣୀ କହିଲା, 'ଆହା ! ତୁମକୁ ସେ ଯୋଗିନୀ ନିଜର କରିନେଲା । ଦେଖ, ରକ୍ତକମଳ ଛଳରେ ଯାଦୁ କରିବାପାଇଁ ତୁମ ହାତରେ ଗୋଟିଏ ମନୁଷ୍ୟର ହାତ ଧରାଇ ଦେଇଛି ।' ତାଙ୍କ କଥାଶୁଣି ମୁଁ ଫୁଲଟିକୁ ଦେଖିଲା ବେଳକୁ ତାହା ଗୋଟିଏ ମୃତ ମଣିଷର ହାତରେ ପରିଣତ ହୋଇଯାଇଛି । ମୁଁ ତାକୁ ଦୂରକୁ ଫୋପାଡ଼ି ଦେଇ ତାଙ୍କ ପାଦତଳେ ପଡ଼ିଗଲି । କହିଲି, 'ମାତା ! କିଛି ଉପାୟ କରି ମୋତେ ବଞ୍ଚାଅ । ନହେଲେ ସେ ଯୋଗିନୀ ମୋତେ ମାରିଦେବ ।' ମୋର ବ୍ୟାକୁଳତା ଦେଖି ଗୃହିଣୀ କହିଲା, 'ଏଠାରୁ ତିନିଯୋଜନ ଦୂରରେ କରଭକ ବୋଲି ଗୋଟିଏ ଗାଁ ଅଛି । ସେଠାରେ ଦେବରକ୍ଷିତ ନାମରେ ଜଣେ ବ୍ରାହ୍ମଣ ରହନ୍ତି । ସେହି ବ୍ରାହ୍ମଣଙ୍କ ଘରେ କାମଧେନୁ ତୁଲ୍ୟ ଗୋଟିଏ କପିଳା ଗାଈ ଅଛି । ଯାଅ ! ତାର ଶରଣ ନିଅ । ସେ ତୁମକୁ ଆଜି ରାତିଟି ପାଇଁ ରକ୍ଷା କରିବ ।'

ତାଙ୍କ କଥା ଶୁଣି ଭୟରେ ମୁଁ ପ୍ରାୟ ଦୌଡ଼ିବାକୁ ଲାଗିଲି । ସନ୍ଧ୍ୟା ବେଳକୁ ମୁଁ କରଭକର ସେହି ବ୍ରାହ୍ମଣଙ୍କ ଦ୍ୱାରରେ ଯାଇ ପହଞ୍ଚିଲି । ସେଠାରେ କପିଳାକୁ ଦେଖି ପ୍ରଣାମ ପୂର୍ବକ ମୋତେ ରକ୍ଷା କରିବାପାଇଁ ନିବେଦନ କଲି ।

ଏ ସମୟରେ ସେହି ଯୋଗିନୀ ତାର ଅନ୍ୟ ସହଚାରିଣୀମାନଙ୍କ ସହିତ ଆକାଶ ମାର୍ଗରେ ଆସି ସେଠାରେ ଅବତରଣ କଲା । ସେମାନେ ଆଜି ରାତିରେ ମୋର ମାଂସ ଆହାର କରି ରକ୍ତପାନ କରିଥାନ୍ତେ । କପିଳାଠାରୁ ଦୂରେଇ ନେବାପାଇଁ ସେ ମୋତେ ବିଭିନ୍ନ ପ୍ରକାର ଭୟ ଦେଖାଉଥାଏ । କିନ୍ତୁ କପିଳା ତାର ଖୁରାଗୁଡ଼ିକ ମଧ୍ୟରେ ମୋତେ ସ୍ଥାପନ କରି ସମଗ୍ର ରାତିଟି ତା' ସହିତ ସଂଘର୍ଷ କଲା । ସେମାନଙ୍କ ହାତରୁ ମୁଁ ରକ୍ଷା ପାଇଗଲି । ରାତ୍ରି ପ୍ରଭାତ ହେବାରୁ ଡାକିନୀମାନେ ଚାଲିଗଲେ । କପିଳା ମୋତେ ସ୍ପଷ୍ଟ ମନୁଷ୍ୟ ସ୍ୱରରେ କହିଲା, 'ପୁତ୍ର ! ଆଜି ମୁଁ ତୋତେ ଆଉ ରକ୍ଷା କରିପାରିବି ନାହିଁ । ତେଣୁ ଏଠାରୁ ପାଞ୍ଚଯୋଜନ ଦୂରରେ ଥିବା ଅରଣ୍ୟ ମଧ୍ୟସ୍ଥିତ ଶିବକ୍ଷେତ୍ରକୁ ଚାଲିଯା' ।

ସେଠାରେ ଭୂତିଶିବ ନାମରେ ଜଣେ ପାଶୁପତ ତପସ୍ୱୀ ରହନ୍ତି । ଆଜି ରାତିଟି ସେ ତୋତେ ରକ୍ଷା କରିପାରିବେ ।'

କପିଳାଠାରୁ ଏହାଶୁଣି ମୁଁ ତୁରନ୍ତ ସେଠାରୁ ବିଦାୟ ହେଲି । ଅରଣ୍ୟ ମଧ୍ୟରେ ଭୂତିଶିବଙ୍କ ସହିତ ସାକ୍ଷାତ ହେଲା । ସେ ମୋତେ ଶରଣାଗତ ଜାଣି ତାଙ୍କ ଗୃହ ମଧ୍ୟରେ ଆଶ୍ରୟ ଦେଲେ । ତ୍ରିଶୂଳ ଧାରଣ କରି ଦ୍ୱାରଦେଶରେ ସେ ଜାଗ୍ରତ ରହିଥାନ୍ତି । ରାତିରେ ଯୋଗିନୀମାନେ ଆସି ପୁଣି ସେହିପରି ଉପଦ୍ରବ କଲେ । କିନ୍ତୁ ତପସ୍ୱୀଙ୍କ ଯୋଗୁଁ ମୋର କିଛି ଅନିଷ୍ଟ ହେଲାନାହିଁ । ରାତ୍ରିଶେଷ ହେବାରୁ ସେ ମୋତେ ଖାଦ୍ୟପେୟ ଦେଇ ଆଶ୍ୱସ୍ତ କଲେ । କହିଲେ, 'ବ୍ରାହ୍ମଣ ! ମୁଁ ତୁମକୁ ଆଉ ରକ୍ଷା କରିପାରିବି ନାହିଁ । ତେଣୁ ତୁମେ ଏଠାରୁ ଦଶଯୋଜନ ଦୂରବର୍ତ୍ତୀ ସଂନ୍ଧ୍ୟାବାସ ଗ୍ରାମକୁ ଚାଲିଯାଅ । ସେଠାରେ ବସୁମତି ବୋଲି ଜଣେ ବ୍ରାହ୍ମଣ ରହନ୍ତି । ତୁମେ ତାଙ୍କର ଆଶ୍ରୟ ନେଲେ ତୃତୀୟ ରାତ୍ରିଟିରେ ମଧ୍ୟ ତୁମର କିଛି ଅନିଷ୍ଟ ହେବନାହିଁ ଏବଂ ତୁମେ ସମସ୍ତ ସଙ୍କଟରୁ ମୁକ୍ତ ହେବ ।'

ତାଙ୍କ ନିର୍ଦ୍ଦେଶ କ୍ରମେ ମୁଁ ଯଥାଶୀଘ୍ର ସେଠାରୁ ପଳାଇ ଆସିଲି । ମୁଁ ଖୁବ୍ ଜୋର୍‌ରେ ଚାଲୁଥାଏ । ତଥାପି ସୂର୍ଯ୍ୟାସ୍ତ ପୂର୍ବରୁ ମୁଁ ସେହି ଗାଁରେ ପହଞ୍ଚି ପାରିଲି ନାହିଁ । ଯୋଗିନୀମାନେ ରାସ୍ତାରେ ଆସି ମୋତେ ଧରିନେଲେ । ମୋତେ ପାଇ ସେମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ଆକାଶ ମାର୍ଗରେ ମୋତେ ଧରି ଫେରିଯାଉଥିବା ବେଳେ ସମ୍ମୁଖରୁ ଆଉ ଦଳେ ଅଦ୍ଭୁତ ଯୋଗିନୀ ଆସି ସେଠାରେ ଦେଖାଦେଲେ । ଉଭୟ ଦଳ ମଧ୍ୟରେ ଭୟଙ୍କର ସଂଘର୍ଷ ହେଲା । ତା' ଭିତରେ ମୁଁ ସେହି ଦୁଷ୍ଟା ଯୋଗିନୀ ହାତରୁ ଛିଟିକି ଏକ ନିର୍ଜନ ସ୍ଥାନରେ ଆସି ପଡ଼ିଲି । ସେଠାରେ ଏକ ବିଶାଳ ମନ୍ଦିର ଥାଏ । ମନ୍ଦିରଟିର ଦ୍ୱାର ଉନ୍ମୁକ୍ତ ଥିବା ଦେଖି ମୋର ମନେହେଲା ସତେ ଯେପରି ମନ୍ଦିରଟି ଯଥାଶୀଘ୍ର ତା' ଭିତରକୁ ଚାଲିଆସିବା ପାଇଁ ମୋତେ ଇଙ୍ଗିତ ଦେଉଛି । ମୁଁ ଭୀତତ୍ରସ୍ତ ଅବସ୍ଥାରେ ସେହି ମନ୍ଦିର ଭିତରକୁ ଚାଲିଗଲି । ସେଠାରେ ଜଣେ ଅଦ୍ଭୁତ ରୂପଧାରିଣୀ ରମଣୀ ବସିଥାନ୍ତି । ତାଙ୍କୁ ଘେରି ରହିଥାନ୍ତି ଶତାଧିକ ମହିଳା । ତାଙ୍କ ଶରୀରରୁ ଯେଉଁ କାନ୍ତି ନିର୍ଗତ ହେଉଥିଲା ତାକୁ ଦେଖି ମୋର ମନେହେଲା ବିଧାତା ଦୟାପରବଶ ହୋଇ ସଂନ୍ଧ୍ୟାବେଳେ କିଛି ଔଷଧି ଲତାର ଜୀବନ ରକ୍ଷାକାରିଣୀ ରଶ୍ମି ମୋ ଉପରକୁ ନିକ୍ଷେପ କରୁଛନ୍ତି । ତାଙ୍କୁ ଦେଖି କିଛି ସାହସ ଫେରିପାଇଲି । ମୋ ଜିଜ୍ଞାସାର ଉତ୍ତର ଦେଇ ମହିଳା ଜଣକ କହିଲେ, 'ମୁଁ ସୁମିତ୍ରା ନାମକ ଯକ୍ଷିଣୀ । ଶାପଗ୍ରସ୍ତ ହୋଇ ଏଠାରେ ଏପରି ପଡ଼ିରହିଛି । କୌଣସି ମନୁଷ୍ୟ ସହିତ ସଙ୍ଗମ ହେଲେ ମୋର ଶାପ ଶାନ୍ତ ହେବ । ତେଣୁ ଅତର୍କିତ ରୂପରେ ଆସି ଏଠାରେ ପହଞ୍ଚିଥିବା ତୁମ ପରି ପୁରୁଷକୁ ଦେଖି ମୋର

ଅଭିଶାପ ସମୟ ଶେଷ ହୋଇଆସିଲା ବୋଲି ମନେହେଉଛି । ତୁମେ ମୋତେ ଉପଭୋଗ କର ଏବଂ ଏଠାରେ ନିର୍ଭୟରେ ରହ ।'

ଯକ୍ଷିଣୀ ଏହାକହି ଦାସୀମାନଙ୍କ ଦ୍ୱାରା ମୋତେ ସ୍ନାନ, ଚନ୍ଦନ, ଲେପନ, ବସ୍ତ୍ର, ଆଭୂଷଣ ଇତ୍ୟାଦି ଦ୍ୱାରା ସତ୍କୃତ କଲେ । କାହିଁ ସେହି ଯୋଗିନୀମାନଙ୍କର ଭୟ, କାହିଁ ଏହି ସଦ୍ୟସୁଖ ! ସତ ! ସୁଖ ଆଉ ଦୁଃଖ କେତେବେଳେ କେଉଁପରି ଆସିବ ସ୍ୱୟଂ ବିଧାତା ମଧ୍ୟ ଚିନ୍ତା କରି କହିପାରିବ ନାହିଁ ।

'ଅଚିନ୍ତ୍ୟୋ ବତ ଦୈବେନାପ୍ୟାପାତଃ ସୁଖଦୁଃଖୟୋଃ'

ସେହି ସୁମିତ୍ରା ଯକ୍ଷିଣୀ ସହିତ ମୁଁ ସେଠାରେ କିଛିଦିନ ଆନନ୍ଦରେ କଟାଇଲି । ଦିନେ ସେ ସ୍ୱେଚ୍ଛାପୂର୍ବକ କହିଲେ, 'ଆର୍ଯ୍ୟପୁତ୍ର ! ତୁମ ସହିତ ଏତେଦିନ ଧରି ସଙ୍ଗମ କରିବା ଫଳରେ ମୋର ଶାପ ଶମିତ ହୋଇଛି । ତେଣୁ ଆଜି ମୁଁ ଏଠାରୁ ଚାଲିଯିବି । ମୋ ପ୍ରଭାବରୁ ତୁମେ ଅଲୌକିକ ଜ୍ଞାନ ଲାଭ କରିବ । ଏହି ପ୍ରାସାଦ ମଧ୍ୟରେ ରହି ତପସ୍ୱୀର ଜୀବନ ଯାପନ କର । ଭୟର କୌଣସି କାରଣ ନାହିଁ । କିନ୍ତୁ ତୁମେ କଦାପି ଏହି ଗୃହ ମଧ୍ୟରେ ଥିବା ମଝି କୋଠରିଟିକୁ ଖୋଲିବ ନାହିଁ । ଏହିପରି କହି ଯକ୍ଷିଣୀ ଅନ୍ତର୍ଦ୍ଧାନ ହୋଇଗଲେ ।

ମୁଁ ତ ମନୁଷ୍ୟ । ତେଣୁ ସେ ନିଷିଦ୍ଧ କୋଠରିଟିକୁ ଦେଖିବାର ଲୋଭ ସମ୍ବରଣ କରିପାରିଲି ନାହିଁ । କୋଠରିଟି ଖୋଲିବା ମାତ୍ରେ ତା' ଭିତରେ ଥିବା ଅଶ୍ୱଟିଏ ମୋର ଦୃଷ୍ଟି ଆକର୍ଷଣ କଲା । ତା'ର ସୁନ୍ଦର ଚେହେରା ଦେଖି ମୁଁ ତା' ନିକଟକୁ ଗଲି । କିନ୍ତୁ ସେ ମୋତେ ଖୁରାଘାତରେ ଦୂରକୁ ଫୋପାଡ଼ି ଦେଲା । ମୁଁ ମୁହୂର୍ତ୍ତକ ମଧ୍ୟରେ ଆସି ଏହି ଶିବମନ୍ଦିର ମଧ୍ୟରେ ପଡ଼ିଲି । ସେହିଦିନଠାରୁ ମୁଁ ଏଠାରେ ରହି ତପସ୍ୟା କରୁଛି । ବିଭିନ୍ନ ବିଦ୍ୟା ମଧ୍ୟ ମୋର ସିଦ୍ଧ ହେଲାଣି । ମୁଁ ବର୍ତ୍ତମାନ ମନୁଷ୍ୟ ହୋଇ ସୁଦ୍ଧା ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର କଥା ଜାଣିପାରୁଛି ।

ତେଣୁ ସିଦ୍ଧିପ୍ରାପ୍ତ କରିବାକୁ ହେଲେ ବହୁକ୍ଲେଶ ସହ୍ୟ କରିବାକୁ ପଡ଼ିଥାଏ । ତେଣୁ ହେ ଗୋମୁଖ ! ତୁମେ ଏଠାରେ ରହ । ଭଗବାନ୍ ଶିବ ତୁମର ଅବଶ୍ୟ ମଙ୍ଗଳ କରିବେ ।'

ଏହା କହି ତପସ୍ୱୀ ନାଗସ୍ୱାମୀ ମୋ ମନରେ ଆଶାର ସଞ୍ଚାର କଲେ । ମୁଁ କେବଳ ଆପଣଙ୍କୁ ପାଇବା ଆଶାରେ ସେହି ଶିବ କ୍ଷେତ୍ରରେ ରହିଥାଏ । ଆଜି ଭଗବାନ ମୋତେ ସ୍ୱପ୍ନରେ ଆପଣଙ୍କ ସିଦ୍ଧିପ୍ରାପ୍ତି କଥା ଜଣାଇଲେ ଏବଂ ସେହି ସ୍ୱପ୍ନାବସ୍ଥାରେ ହିଁ କୌଣସି ଦିବ୍ୟ ରମଣୀ ମୋତେ ଏଠାରେ ଆଣି ପହଞ୍ଚାଇଛନ୍ତି । ଏହାହିଁ ମୋର ବିଚ୍ଛେଦକାଳୀନ ଅନୁଭୂତି ।''

ଏହାକହି ଗୋମୁଖ ଯେତେବେଳେ ନୀରବ ହେଲେ ସେତେବେଳେ ମରୁଭୂତି ତାଙ୍କ ଅନୁଭୂତି କହିବା ଆରମ୍ଭ କଲେ ।

## ମରୁଭୂତିଙ୍କ ଦିବ୍ୟାନୁଭୂତି

''ମାନସବେଗ ମୋତେ ଫୋପାଡ଼ିଦେବା ଯୋଗୁଁ ମୁଁ ତୀବ୍ର ବେଗରେ ଉଡ଼ିଯାଉଥାଏ । ଏ ସମୟରେ କୌଣସି ଜଣେ ଦିବ୍ୟ ମହିଳା ମୋତେ ଧରିନେଇ ଏକ ଅରଣ୍ୟ ମଧ୍ୟରେ ଛାଡ଼ିଦେଲେ । ମୁଁ ତାଙ୍କୁ ଦେଖିବା ପୂର୍ବରୁ ସେ ସେଠାରୁ ଅନ୍ତର୍ହିତା ହୋଇଯାଇଥାନ୍ତି । ଖାଦ୍ୟପେୟର ଅଭାବ ଏବଂ ଆପଣଙ୍କଠାରୁ ବିଚ୍ଛିନ୍ନ ହେବାର ଦୁଃଖ ମୋପାଇଁ ଅସହ୍ୟ ହୋଇପଡୁଥିଲା । ମୁଁ ଆତ୍ମହତ୍ୟା କରିବାପାଇଁ ଚିନ୍ତା କରୁଥାଏ । ଏ ସମୟରେ ସେହି ଅରଣ୍ୟ ମଧ୍ୟରେ ବହିଯାଉଥିବା ଗୋଟିଏ ନଦୀତଟରେ ଥିବା କୌଣସି ଆଶ୍ରମ ମୋର ଦୃଷ୍ଟି ଆକର୍ଷଣ କଲା । ମୁଁ ତା' ମଧ୍ୟରେ ଯାଇ ପ୍ରବେଶ କଲି । ସେଠାରେ ଜଟାଜୁଟଧାରୀ ଜଣେ ତପସ୍ୱୀ ଏକ ବେଦିକା ଉପରେ ବସିଥାନ୍ତି । ମୁଁ ତାଙ୍କୁ ଯାଇ ପ୍ରଣାମ କଲି । ସେ ମୋର ପରିଚୟ ଏବଂ ଏପରି ଏକ ନିର୍ଜନ ଅରଣ୍ୟକୁ ଆସିବାର କାରଣ ଜିଜ୍ଞାସା କଲେ । ମୁଁ ତାଙ୍କ ନିକଟରେ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲି । ସେ ମୋତେ ଆଶ୍ୱାସନା ଦେଇ କହିଲେ, 'ତୁମେ ବର୍ତ୍ତମାନ ଆତ୍ମହତ୍ୟା କରିବା ଉଚିତ ନୁହେଁ । ଏଠାରେ କିଛିଦିନ ଅବସ୍ଥାନ କର । ତୁମ ପ୍ରଭୁ ନରବାହନଦତ୍ତଙ୍କ ବାର୍ତ୍ତା ପାଇଯିବ । ତା'ପରେ ତୁମର ଯାହା ଇଚ୍ଛା ତାହା କରିପାର ।' ମୁଁ ତପସ୍ୱୀଙ୍କ କଥାରେ ଆଶ୍ୱାସିତ ହୋଇ ସେଠାରେ ରହିବାକୁ ଲାଗିଲି ।

ଏହିପରି କିଛିଦିନ ବିତିଗଲା । ଦିନେ ନଦୀରେ ସ୍ନାନ କରିବାପାଇଁ କେତେଜଣ ଦିବ୍ୟରମଣୀ ଆସି ପହଞ୍ଚିଲେ । ତପସ୍ୱୀ ସେମାନଙ୍କୁ ଦେଖି ମୋତେ କହିଲେ, 'ତୁମେ ଯାଇ ଏହି ନାରୀମାନଙ୍କ ମଧ୍ୟରୁ କୌଣସି ଜଣକର ପରିଧେୟ ବସ୍ତ୍ର ନେଇଆସ । ତାଙ୍କଠାରୁ ନରବାହନଦତ୍ତଙ୍କ ସମ୍ପର୍କରେ ଜାଣିପାରିବ ।'

ମୁଁ ତପସ୍ୱୀଙ୍କ ନିର୍ଦ୍ଦେଶ ପାଳନ କଲି । ଯେଉଁ ନାରୀଙ୍କର ବସ୍ତ୍ର ନେଇଆସିଲି ସେ ମୋର ଅନୁସରଣ କଲେ । ମୁଁ ତାଙ୍କର ପରିଧେୟ ବସ୍ତ୍ରଟିକୁ ନେଇ ଆସିଥିବା ଯୋଗୁଁ ସେ କେବଳ ଜଳସିକ୍ତ ଅନ୍ତର୍ବାସଟିଏ ହିଁ ପିନ୍ଧିଥାନ୍ତି । ହାତ ଦୁଇଟି ତାଙ୍କ ସ୍ତନଯୁଗଳ ଉପରେ ଛନ୍ଦି ହୋଇ ରହିଥାଏ । ତପସ୍ୱୀ ତାଙ୍କୁ କହିଲେ ଯେ ନରବାହନଦତ୍ତଙ୍କ ସମାଚାର ଜଣାଇ ସେ ତାଙ୍କ ବସ୍ତ୍ରଟି ନେଇଯାନ୍ତୁ । ତପସ୍ୱୀଙ୍କ କଥାଶୁଣି ରମଣୀ ଜଣକ ଜଣାଇଲେ ଯେ

ସେହି ସମୟରେ ନରବାହନଦତ୍ତ କୈଳାସ ପର୍ବତ ଉପରେ ଭଗବାନ ଗୌରୀପତିଙ୍କ ଆରାଧନା କରୁଛନ୍ତି । ସେ ଯଥାଶୀଘ୍ର ବିଦ୍ୟାଧରମାନଙ୍କ ଚକ୍ରବର୍ତ୍ତୀ ସମ୍ରାଟ ହେବେ । ରମଣୀ ଜଣକ ଏହିପରି କହି ନିଜର ପରିଧେୟଦ୍ୱାରା ଶରୀରକୁ ଆବୃତ କଲେ । କିନ୍ତୁ କୌଣସି ଅଭିଶାପ ପ୍ରଭାବରୁ ସେ ତପସ୍ୱୀଙ୍କ ପତ୍ନୀତ୍ୱ ସ୍ୱୀକାର କଲେ । ନବବିବାହିତ ପତିପତ୍ନୀ ସେହି ଆଶ୍ରମ ମଧ୍ୟରେ ରହୁଥାନ୍ତି । ମୁଁ ମଧ୍ୟ ସେହି ବିଦ୍ୟାଧର ରମଣୀଙ୍କ କଥାରେ ବିଶ୍ୱାସ କରି ଆପଣଙ୍କ ସହିତ ମିଳନ ଆଶାରେ ସେଠାରେ ରହିବାକୁ ଲାଗିଲି ।

କିଛିଦିନ ମଧ୍ୟରେ ବିଦ୍ୟାଧରୀଙ୍କ ଗର୍ଭୋଦୟ ହେଲା । ସେ ସନ୍ତାନଟିଏ ପ୍ରସବ କରି ତପସ୍ୱୀଙ୍କୁ କହିଲେ, 'ବିଦ୍ୟାଧରମାନଙ୍କ ନିୟମ ଅନୁଯାୟୀ ସନ୍ତାନ ଜନ୍ମପରେ ମୋର ଅଭିଶାପର ଅବଧି ଶେଷ ହେଲା । ଯଦି ଆପଣ ମୋ ସହିତ ପୁଣି ମିଳିତ ହେବା ପାଇଁ ଚାହାନ୍ତି, ତେବେ ଏ ସନ୍ତାନଟିକୁ ଚାଉଳ ସହିତ ରାନ୍ଧି ଭୋଜନ କରନ୍ତୁ ।' ଏତିକି କହି ବିଦ୍ୟାଧରୀ ଆକାଶ ମାର୍ଗରେ ଚାଲିଗଲେ । ତପସ୍ୱୀ ପତ୍ନୀ ସମାଗମ ଅଭିଳାଷରେ ସେହିପରି ସନ୍ତାନଟିକୁ ଚାଉଳ ସହିତ ସିଝାଇ ଆହାର କଲେ । ଚାହୁଁଚାହୁଁ ସେ ମଧ୍ୟ ବିଦ୍ୟାଧରୀଙ୍କୁ ଅନୁସରଣ କରି ଆକାଶ ମାର୍ଗରେ ଉଡ଼ିଗଲେ ।

ପୂର୍ବରୁ ତପସ୍ୱୀ ମୋତେ ସେହି ଅନ୍ନ ଭୋଜନ କରିବାପାଇଁ କହିଥିଲେ କିନ୍ତୁ ମୁଁ ତାହା କରିପାରିନଥିଲି । ପରେ ଅନ୍ନର ପ୍ରଭାବ ଲକ୍ଷ୍ୟକରି ମୁଁ ହାଣ୍ଡିରେ ଲାଗିଥିବା ଦୁଇଚାରୋଟି ଅନ୍ନକଣାକୁ ଆଣି ଖାଇଲି । ତା'ର ଅଦ୍ଭୁତ ପ୍ରଭାବରୁ ମୁଁ ତା'ପରେ ଯେଉଁଠି ଛେପ ପକାଇଲି ତାହା ସୁନା ହୋଇଗଲା । ଧୀରେ ଧୀରେ ମୁଁ ଅଜସ୍ର ସମ୍ପତ୍ତିର ଅଧିକାରୀ ହେଲି । ଦାରିଦ୍ର୍ୟ ଦୂର ହେବାରୁ ମୁଁ ସେଠାରୁ ଚାଲିଆସି ଗୋଟିଏ ନଗରୀରେ ପହଞ୍ଚିଲି । ସୁନାଗୁଡ଼ିକୁ ବିକ୍ରିକରି ଯଥେଚ୍ଛଭାବେ ବ୍ୟୟ କରୁଥାଏ । ସେତେବେଳେ ମୁଁ ଜଣେ ବେଶ୍ୟାର କୋଠିରେ ରହୁଥାଏ । ସୁବର୍ଣ୍ଣ ସଂଗ୍ରହ କରିବାର ରହସ୍ୟ ଜାଣିବାପାଇଁ ଦିନେ ସେଠାରେ ଥିବା କୁଟ୍ଟନୀ ମୋତେ ବାନ୍ତି ହେବାପାଇଁ କିଛି ଔଷଧ ଖୁଆଇଦେଲା । ମୁଁ କୁଟ୍ଟନୀର ଛଳନା ବୁଝିପାରିଲି ନାହିଁ । ସେହି ଔଷଧ ପ୍ରଭାବରେ ମୁଁ ବାରମ୍ବାର ବାନ୍ତି କଲି । ମୋର ବାନ୍ତିରେ ପଦ୍ମରାଗ ତୁଲ୍ୟ ଦୁଇଖଣ୍ଡ ମଣିକୁ ଦେଖି କୁଟ୍ଟନୀ ସାଙ୍ଗେ ସାଙ୍ଗେ ତାକୁ ଗିଳିଦେଲା, ଫଳରେ ମୋର ସୁବର୍ଣ୍ଣ ବମନ କରିବାର ଶକ୍ତି ଲୋପ ପାଇଲା; ଏବଂ କୁଟ୍ଟନୀ ତାର ଅଧିକାରିଣୀ ହେଲା । ଆଜିପର୍ଯ୍ୟନ୍ତ ଶଙ୍କରଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଏବଂ ବିଷ୍ଣୁ ବକ୍ଷରେ କୌସ୍ତୁଭ ମଣି ଦେଖି ମୁଁ ଭାବିଲି ଏମାନେ କୌଣସି କୁଟ୍ଟନୀର ଦୃଷ୍ଟିରେ ପଡ଼ିନାହାଁନ୍ତି । ପଡ଼ିଥିଲେ ଏଗୁଡ଼ିକ ଆଉ ତାଙ୍କ ପାଖରେ ରହିପାରି ନଥାନ୍ତା ।

ଏହିପରି ଏ ସଂସାର ବଡ଼ ବିଚିତ୍ର ଓ ଅଦ୍ଭୁତ । ଛଳନାର ବିଭିନ୍ନ ରୂପ ଏଠାରେ ଅନନ୍ତ । ଏହି ସଂସାର ରୂପକ ସାଗରକୁ କିଏ ବା ଉତ୍ତୀର୍ଣ୍ଣ ହୋଇପାରେ ।

'ସ ଚନ୍ଦ୍ରାର୍ଧଃ ଶିବୋଽପ୍ୟାପି ହରିର୍ଯଚ ସକୌସ୍ତୁଭଃ
ତତ୍ତୟୋର୍ବେଦ୍ଧି କୁଟ୍ଟନ୍ୟା ଗୋଚରାପତନେ ଫଳମ୍ ।
କିଂ ଚେଦୃଗେଷ ସଂସାରୋ ବହ୍ୱାଶ୍ଚର୍ଯୋ ବହୁଚ୍ଛଳଃ
ପରିଚ୍ଛେତ୍ତୁଂ କଦା କେନ ସମୁଦ୍ର ଇବ ପାର୍ଯତେ ।'

ସିଦ୍ଧି ରହିତ ହୋଇ ମୁଁ ପୁଣି ଆପଣଙ୍କ ଚିନ୍ତାରେ ବ୍ୟାକୁଳ ହୋଇଉଠିଲି । ଏଣୁ ସେହି ବେଶ୍ୟା ଗୃହ ପରିତ୍ୟାଗ କରି ଚଣ୍ଡିକା ମନ୍ଦିରର ଆଶ୍ରୟ ନେଲି । ଆପଣଙ୍କ ଦର୍ଶନ ଲାଭପାଇଁ ପ୍ରତିଦିନ ଦେବୀ ଭବାନୀଙ୍କ ଆରାଧନା କରୁଥାଏ । ତିନିଦିନ ଉପବାସ ରହି ଧାରଣା ଦେବାପରେ ଦେବୀ ସ୍ୱପ୍ନରେ ଆଦେଶ ଦେଲେ 'ତୁମ ସ୍ୱାମୀ ନରବାହନଦତ୍ତ ସିଦ୍ଧିପ୍ରାପ୍ତ ହୋଇଛନ୍ତି । ବର୍ତ୍ତମାନ ଯାଇ ସାକ୍ଷାତ କର ।' ପ୍ରଭାତରୁ କୌଣସି ଦିବ୍ୟ ରମଣୀ ମୋତେ ଆଣି ଆପଣଙ୍କ ପଦପ୍ରାନ୍ତରେ ପହଞ୍ଚାଇ ଦେଇଛନ୍ତି । ଦେବ ! ଏହା ହିଁ ମୋର ସମାଚାର ।''

ତାଙ୍କର ବିବରଣୀ ଉପସ୍ଥିତ ସମସ୍ତଙ୍କୁ ଆନନ୍ଦିତ କଲା । କୁଟ୍ଟନୀଦ୍ୱାରା ବଞ୍ଚିତ ହୋଇଥିବା କଥାଶୁଣି ସମସ୍ତେ ହସିଉଠିଲେ ।

## ହରିଶିଖଙ୍କ ଅନୁଭୂତି

ମରୁଭୂତିଙ୍କ ପରେ ଅନ୍ୟତମ ମନ୍ତ୍ରୀ ହରିଶିଖ କହିଲେ ''ରାଜନ୍ ! ମାନସବେଗର ପ୍ରଭାବରୁ କୌଣସି ଏକ ଦିବ୍ୟଶକ୍ତି ମୋତେ ରକ୍ଷାକରି ଉଜ୍ଜୟିନୀରେ ନେଇ ଛାଡ଼ିଦେଲା । ଆପଣମାନଙ୍କ ସହିତ ମିଳନର ଆଶା ନଦେଖି ମୁଁ ଆତ୍ମହତ୍ୟା କରିବା ନିମିତ୍ତ ଉଜ୍ଜୟିନୀର ମହାଶ୍ମଶାନରେ ଯାଇ ପ୍ରବେଶ କଲି । ସେଠାରେ ଇତସ୍ତତଃ ପଡ଼ିଥିବା ଅର୍ଦ୍ଧଦଗ୍ଧ କାଷ୍ଠଖଣ୍ଡଗୁଡ଼ିକୁ ଏକତ୍ର କରି ମୁଁ ଚିତା ପ୍ରସ୍ତୁତ କଲି । ଚିତାଗ୍ନିରେ ପ୍ରବେଶ ପୂର୍ବରୁ ମୁଁ ଅଗ୍ନିଦେବଙ୍କର ପୂଜା କରୁଥାଏ । ଏ ସମୟରେ ସେଠାରେ ଥିବା ତାଳଜଙ୍ଘ ନାମରେ ଏକ ଭୂତାଧିପତି ଆସି ମୋତେ କହିଲେ, 'ହରିଶିଖ ! ତୁମେ କାହିଁକି ଆତ୍ମହତ୍ୟା କରିବାକୁ ଯାଉଛ ? ତୁମର ସ୍ୱାମୀ ନରବାହନଦତ୍ତ ସିଦ୍ଧିପ୍ରାପ୍ତ ହେଲେଣି । ତାଙ୍କ ସହିତ ଅତିଶୀଘ୍ର ତୁମର ମିଳନ ଘଟିବ ।' ସ୍ୱଭାବତଃ କ୍ରୂର ହେଲେ ସୁଦ୍ଧା ସେହି ଭୂତାଧିପତି ଅତ୍ୟନ୍ତ ସ୍ନେହଶୀଳ ଓ ଦୟାଶୀଳ ଥିଲେ । ମୁଁ ଶରୀର ତ୍ୟାଗ ପ୍ରତିଜ୍ଞାରୁ ଓହରିଗଲି । ବିଧାତା ଅନୁକୂଳ ହେଲେ ପଥର ମଧ୍ୟ ଜଳରେ ରୂପାନ୍ତରିତ ହୋଇପାରେ ।

'ଗ୍ରାବାଣୋଽପ୍ୟାର୍ଦ୍ରତାଂ ସମ୍ୟଗ୍‌ଭକ୍ତ୍ୟଭିମୁଖେ ବିଧୌ'

ତାଙ୍କ ନିର୍ଦ୍ଦେଶ ଅନୁସାରେ ମୁଁ ନିକଟସ୍ଥ କୌଣସି ଦେବ ମନ୍ଦିରରେ ଯାଇ ତପସ୍ୟା ଆରମ୍ଭ କଲି । କୌଣସି ଦେବପୁରୁଷ ମୋତେ ଆଜି ଧରି ଆସି ଏଠାରେ ଛାଡ଼ି ଦେଇଛନ୍ତି ।''

ହରିଶିଖ ନିଜର ଅନୁଭବ ବ୍ୟକ୍ତ କରିସାରିବା ପରେ ଅନ୍ୟମାନେ ମଧ୍ୟ ନିଜ ନିଜର ବିଚିତ୍ର ଅନୁଭୂତି ସବୁ କହି ଶୁଣାଇଲେ । ପ୍ରୀତ ନରବାହନଦତ୍ତ ମନ୍ତ୍ରୀମାନଙ୍କ କଥା ଶୁଣି ଅମିତଗତିଙ୍କ ପ୍ରତି ଦୃଷ୍ଟିପାତ କରନ୍ତେ ସେ ବିଦ୍ୟାଧର କୁଳର ଆଦରଣୀୟା ଓ ପୂଜନୀୟା ଧନବତୀଙ୍କୁ ପ୍ରାର୍ଥନା କରି ଏହି ମନ୍ତ୍ରୀମାନଙ୍କୁ ବିଭିନ୍ନ ବିଦ୍ୟାର ଅଧିକାରୀ କରାଇଦେଲେ ।

ନିଜେ ନରବାହନଦତ୍ତ ଏବଂ ମନ୍ତ୍ରୀମାନେ ବିଭିନ୍ନ ବିଦ୍ୟାଧରୀସିଦ୍ଧି ଲାଭ କରି ସେଠାରେ ଦିନଯାପନ କରୁଥାନ୍ତି । ଦିନେ ଧନବତୀ ସେମାନଙ୍କୁ ଶତ୍ରୁବିନାଶପାଇଁ ନିର୍ଦ୍ଦେଶ ଦେଲେ । ବିଜୟ ଯାତ୍ରାପାଇଁ ଶୁଭ ଦିନ ନିର୍ଣ୍ଣୀତ ହେଲା । ଚକ୍ରବର୍ତ୍ତୀ ନରବାହନଦତ୍ତ ଶୁଭ ମୁହୂର୍ତ୍ତରେ ଶତ୍ରୁ ଗୌରୀମୁଣ୍ଡର ରାଜଧାନୀ ଗୋବିନ୍ଦକୂଟ ଆକ୍ରମଣ କରିବାପାଇଁ ସେନାବାହିନୀକୁ ଆଦେଶ ଦେଲେ ।

ଧନବତୀଙ୍କ ଆଦେଶ କ୍ରମେ ବିଦ୍ୟାଧରୀ ସେନାବାହିନୀ ଆକାଶ ମାର୍ଗରେ ଉଡ଼ିଚାଲିଲା । ସୂର୍ଯ୍ୟ ଆଚ୍ଛାଦିତ ହୋଇପଡ଼ିଲେ । ଶତ୍ରୁ ଚନ୍ଦ୍ରକୁ ଗ୍ରାସ କରିବାପାଇଁ ସେନା ରୂପକ ରାହୁ ଅକାଳରେ ଉଦୟ ହେବାପରି ଜଣାଗଲା । ଚକ୍ରବର୍ତ୍ତୀ ନରବାହନଦତ୍ତ ମହାପଦ୍ମବିମାନର କେଶରରେ ଯାଇ ଉପବେଶନ କଲେ । ଚତୁର୍ଦ୍ଦିଗର ପାଖୁଡ଼ା ଉପରେ ତାଙ୍କ ରାଣୀମାନଙ୍କୁ ଆସୀନ କରାଗଲା । ମନ୍ତ୍ରୀମାନେ ପତ୍ର ଉପରେ ଆସନ ଗ୍ରହଣ କଲେ । ଚଣ୍ଡସିଂହ ପ୍ରଭୃତି ବୀରମାନେ ବିମାନ ଆଗରେ ଆକାଶମାର୍ଗରେ ଅଗ୍ରସର ହେବାକୁ ଲାଗିଲେ ।

ମାର୍ଗ ମଧ୍ୟରେ ମାତଙ୍ଗପୁର ପଡ଼ିଲା । ତାହା ଧନବତୀଙ୍କ ନିଜ ନଗର । ସେଠାରେ ସେ ସମସ୍ତଙ୍କ ଯଥୋଚିତ ସତ୍କାର କଲେ । ନରବାହନଦତ୍ତ ସେଠାରୁ ଶତ୍ରୁ ମାନସବେଗ ଓ ଗୌରୀମୁଣ୍ଡକୁ ଯୁଦ୍ଧର ଆହ୍ୱାନ ଦେଇ ଗୋଟିଏ ଦୂତ ପ୍ରେରଣ କଲେ । ପରଦିନ ମାତଙ୍ଗପୁରରେ ରାଣୀମାନଙ୍କୁ ରଖି ବିଦ୍ୟାଧର ରାଜା ଓ ସେନାବାହିନୀ ସହିତ ସେ ଯାଇ ଗୋବିନ୍ଦକୂଟରେ ପହଞ୍ଚିଲେ । ଗୌରୀମୁଣ୍ଡ ଓ

ମାନସବେଗ ସଂଗ୍ରାମ ସ୍ଥଳରେ ଆସି ପହଞ୍ଚିବାରୁ ପ୍ରଥମେ ଚଣ୍ଡସିଂହ ପ୍ରଭୃତି ବୀରମାନେ ସେମାନଙ୍କର ସମ୍ମୁଖୀନ ହେଲେ । ଭୟଙ୍କର ସଂଗ୍ରାମ ଫଳରେ ଗୋବିନ୍ଦକୂଟ ରକ୍ତନଦୀର ଗୋଟିଏ ଧାରା ବୋଲି ମନେହେଲା । ସେଥିରେ ମହାଯୋଦ୍ଧା ରୂପକ ବୃକ୍ଷ ସବୁ ଭାସିଯାଉଥାନ୍ତି । ସଂଗ୍ରାମରୂପୀ କାଳପୁରୁଷ ସେଠାରେ ଠିଆ ହୋଇ ଜୃମ୍ଭା ପ୍ରକାଶ କରୁଥାଏ । ଶତ୍ରୁମାନଙ୍କୁ ଗ୍ରାସ କରିବାପାଇଁ ତା'ର ଅସ୍ତ୍ରରୂପକ ରକ୍ତରଞ୍ଜିତ ଜିହ୍ୱା ଲହଲହ ହେଉଥାଏ । ଭୂତପ୍ରେତମାନଙ୍କପାଇଁ ଏହି ଯୁଦ୍ଧ ଏକ ମହୋତ୍ସବ ଥିଲା । କବନ୍ଧଗୁଡ଼ିକ ନୃତ୍ୟ କରୁଥିଲେ । ରକ୍ତପାନ ଓ ମାଂସ ଭକ୍ଷଣ କରି ବେତାଳମାନେ ବାଦ୍ୟବାଦନ କରୁଥାନ୍ତି ।

ଦୀର୍ଘ ସମୟ ଧରି ସଂଗ୍ରାମ ଅବ୍ୟାହତ ରହିବା ଦେଖି ନିଜେ ନରବାହନଦତ୍ତ ଯୁଦ୍ଧଭୂମିରେ ଅବତୀର୍ଣ୍ଣ ହୋଇ ମାନସବେଗକୁ ଆକ୍ରମଣ କଲେ । ସେ ପ୍ରସ୍ତୁତ ହେବା ପୂର୍ବରୁ ହିଁ କେଶ ଆକର୍ଷଣ ପୂର୍ବକ ନରବାହନଦତ୍ତ ତାର ମସ୍ତକକୁ ଶରୀରରୁ ବିଚ୍ୟୁତ କରିଦେଲେ । ମିତ୍ରର ମୃତ୍ୟୁ ଦେଖି ଗୌରୀମୁଣ୍ଡ ଦ୍ରୁତ ଗତିରେ ଆସି ତାଙ୍କ ସମ୍ମୁଖସ୍ଥ ହେଲା । କିନ୍ତୁ ନରବାହନଦତ୍ତଙ୍କୁ ଦେଖିବାମାତ୍ରେ ତା'ର ସମସ୍ତ ବିଦ୍ୟା ପ୍ରଭାବହୀନ ହୋଇପଡ଼ିଲେ । ସେ ବଳହୀନ ହୋଇପଡ଼ିଲା । ନରବାହନଦତ୍ତ ତାକୁ ଭୂମି ଉପରେ କଚାଡ଼ି ଦେଇ ତାର ଶରୀରକୁ ଖଣ୍ଡବିଖଣ୍ଡିତ କରିଦେଲେ ।

ମାନସବେଗ ଓ ଗୌରୀମୁଣ୍ଡର ନିଧନ ଦେଖି ସେମାନଙ୍କ ସେନାବାହିନୀ ପୃଷ୍ଠଭଙ୍ଗ ଦେଲା । ଚକ୍ରବର୍ତ୍ତୀଙ୍କ ଉପରେ ପୁଷ୍ପବୃଷ୍ଟି ହେଲା । ଆକାଶ ମାର୍ଗରୁ ଲକ୍ଷ୍ୟ କରୁଥିବା ଦେବଗଣ ଧନ୍ୟଧନ୍ୟ କଲେ । ନରବାହନଦତ୍ତ ମିତ୍ର ରାଜାମାନଙ୍କ ସହିତ ଗୌରୀମୁଣ୍ଡର ରାଜଧାନୀରେ ପ୍ରବେଶ କଲେ । ଶତ୍ରୁମାନଙ୍କ ବନ୍ଧୁ ରାଜାମାନେ ଚକ୍ରବର୍ତ୍ତୀ ସମ୍ରାଟଙ୍କ ଅଧୀନତା ସ୍ୱୀକାର କଲେ । ରାଜ୍ୟରେ ବିଜୟ ଉତ୍ସବ ପାଳିତ ହେଲା ।

ଏହି ଉତ୍ସବ ମଧ୍ୟରେ ଧନବତୀ ଆସି ନରବାହନଦତ୍ତଙ୍କୁ କହିଲେ ଯେ, ଆତ୍ମନିକା ନାମରେ ଗୌରୀମୁଣ୍ଡର ଏକ କନ୍ୟା ଅଛି । ସେ ଅତ୍ୟନ୍ତ ରୂପବତୀ ଓ ଗୁଣବତୀ ମଧ୍ୟ । ସେ ତାକୁ ବିବାହ କରନ୍ତୁ । ଧନବତୀଙ୍କ ନିର୍ଦ୍ଦେଶରେ ନରବାହନଦତ୍ତ ତା' ସହିତ ବିବାହ କଲେ । ଉକ୍ତ ଦିବସଟି ଆନନ୍ଦଉତ୍ସବ ମଧ୍ୟରେ କଟିଗଲା ।

ପରଦିନ ପ୍ରଭାତରୁ ବେଗବତୀ ଓ ପ୍ରଭାବତୀଙ୍କୁ ପଠାଇ ନରବାହନଦତ୍ତ ମାନସବେଗର ବାସଭବନରୁ ମଦନମଞ୍ଚୁକାଙ୍କୁ ନେଇଆସିଲେ । ବିରହର ରାତ୍ରି ଶେଷ ହୋଇଯିବା ଯୋଗୁଁ ଆନନ୍ଦାଶ୍ରୁସିକ୍ତ ତାଙ୍କର ମୁଖମଣ୍ଡଳ କମଳଲତା ପରି ବିକଶିତ

ହୋଇଉଠୁଥିଲା । ଶତ୍ରୁରୂପୀ ଅନ୍ଧକାରକୁ ଦୂର କରିଥିବା ଚନ୍ଦ୍ରତୁଲ୍ୟ ସମ୍ରାଟ ନରବାହନଦତ୍ତଙ୍କୁ ଦେଖି ସେ ଅତ୍ୟନ୍ତ ଆନନ୍ଦ ଲାଭ କରୁଥିଲେ । ନରବାହନଦତ୍ତଙ୍କ ବହୁଦିନର ବିରହବେଦନା ଦୂରୀଭୂତ ହେଲା । ସେ ସେହି ମୁହୂର୍ତ୍ତରେ ହିଁ ତାଙ୍କୁ ସମସ୍ତ ବିଦ୍ୟା ଅର୍ପଣ କରିଦେଲେ । ମଦନମଞ୍ଜୁକା କ୍ଷଣକ ମଧ୍ୟରେ ବିଦ୍ୟାଧରୀରେ ପରିଣତ ହେଲେ । ରାଣୀମାନଙ୍କ ସହିତ ସଦ୍ୟଚକ୍ରବର୍ତ୍ତୀ ପଦବୀ ଲାଭ କରିଥିବା ନରବାହନଦତ୍ତ ଗୌରୀମୁଣ୍ଡଙ୍କ ବିଳାସ ଉଦ୍ୟାନ ମଧ୍ୟରେ ଆସବପାନ, କେଳିବିଳାସ କରି ସମୟ ବିତାଉଥାନ୍ତି । ଏ ମଧ୍ୟରେ ପ୍ରଭାବତୀଙ୍କୁ ପ୍ରେରଣ କରି ଭଗୀରଥଯଶାଙ୍କୁ ମଧ୍ୟ ଅଣାଗଲା । ସେ ମଧ୍ୟ ପତିଙ୍କଠାରୁ ବିଦ୍ୟାଧରୀ ବିଦ୍ୟା ଗ୍ରହଣ କରି ବିଦ୍ୟାଧରୀତ୍ୱ ପ୍ରାପ୍ତ ହେଲେ ।

ଏକଦା ଚକ୍ରବର୍ତ୍ତୀ ନରବାହନଦତ୍ତ ରାଜସଭାରେ ବସିଥାନ୍ତି । ଏ ସମୟରେ ଦୁଇଜଣ ବିଦ୍ୟାଧର ସେଠାରେ ଆସି ଉପସ୍ଥିତ ହେଲେ । ସେମାନେ ସମୁଚିତ ସମ୍ମାନ ଜଣାଇ ନିବେଦନ କଲେ ଯେ ଧନବତୀଙ୍କ ନିର୍ଦ୍ଦେଶକ୍ରମେ ସେମାନେ ବିଦ୍ୟାଧର କ୍ଷେତ୍ରର ଉତ୍ତର ବେଦୀକୁ ଯାଇଥିଲେ । ସେଠାରେ ରାଜତ୍ୱ କରୁଥିବା ମନ୍ଦରଦେବଙ୍କ ମନୋଗତ ଭାବ ଜାଣିବା ସେମାନଙ୍କ ଉଦ୍ଦେଶ୍ୟ ଥିଲା । ସେଠାରେ ଅଦୃଶ୍ୟ ଭାବେ ରାଜସଭା ମଧ୍ୟରେ ପ୍ରବେଶ କରି ମନ୍ଦରଦେବ କହୁଥିବା ଶୁଣିଲେ, 'ମୁଁ ଶୁଣିଲି ଯେ ନରବାହନଦତ୍ତ ବିଦ୍ୟାଧରମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରି ଗୌରୀମୁଣ୍ଡ ପ୍ରମୁଖଙ୍କୁ ହତ୍ୟା କରିଛନ୍ତି । ଆମମାନଙ୍କପାଇଁ ଏହା ଆଦୌ ଉପେକ୍ଷଣୀୟ ବିଷୟ ନୁହେଁ । ଶତ୍ରୁକୁ ଜନ୍ମମାତ୍ରେ ମାରିଦେବା ଉଚିତ ।' ମନ୍ଦରଦେବଙ୍କଠାରୁ ଏହାଶୁଣି ଆମେ ଆପଣଙ୍କୁ ଜଣାଇବାପାଇଁ ଏଠାକୁ ଚାଲିଆସିଲୁ ।

ଗୁପ୍ତଚରମାନଙ୍କଠାରୁ ଏହାଶୁଣି ସମଗ୍ର ରାଜସଭା ବାତ୍ୟା ବିକ୍ଷୁବ୍ଧ କମଳବନପରି କ୍ରୋଧରେ ଚଞ୍ଚଳ ହୋଇଉଠିଲା । ଚିତ୍ରାଙ୍ଗଦଙ୍କ ବାହୁଯୁଗଳ ଯୁଦ୍ଧପାଇଁ କମ୍ପି ଉଠିଲା, ଫଳରେ ମନେହେଉଥିଲା କମ୍ପିତ ବାହୁ ଯୁଗଳର କଙ୍କଣଗୁଡ଼ିକ ସଂଗ୍ରାମପାଇଁ ଆଦେଶ ଭିକ୍ଷା କରୁଥିଲେ । ଅମିତଗତିଙ୍କ ନିଃଶ୍ୱାସ କ୍ରୋଧରେ ପ୍ରଖର ହୋଇଉଠିଲା । ତାଙ୍କ ସ୍ପନ୍ଦିତ ହୃଦୟସ୍ଥିତ ହାରାବଳୀ ତାଙ୍କୁ ଶୀଘ୍ର ଉଠିବାପାଇଁ ପ୍ରେରିତ କରୁଥିଲେ । ପିଙ୍ଗଳଗାନ୍ଧାର ବାହାସ୍ଫୋଟ ମାରି ଭୂମି ଉପରେ ପଦାଘାତ କଲେ । ଶତ୍ରୁକୁ ନିଷ୍ପେଷଣ କରିବାପାଇଁ ଏହା ଯେପରି ଥିଲା ତାଙ୍କର ପୂର୍ବ ପ୍ରତିଶ୍ରୁତି । ବାୟୁପଥଙ୍କ ମୁଖମଣ୍ଡଳରେ ତୀକ୍ଷ୍ଣ ଭ୍ରୂକୁଟି ଦେଖାଦେଲା । ସତେ ଯେପରି ତାଙ୍କର କ୍ରୋଧ ଶତ୍ରୁକୁ ନିଃଶେଷ କରିବାପାଇଁ ଧନୁରେ

ଗୁଣ ସନ୍ଧାନ କରୁଛି । ଚଣ୍ଡସିଂହ ଏହିମାତ୍ର ଶତ୍ରୁମାନଙ୍କୁ ମଥିତ କରିବି ବୋଲି ହାତ ମଲୁଥାନ୍ତି । ସାଗରଦତ୍ତଙ୍କ ବାହୁଯୁଗଳ ଊର୍ଦ୍ଧ୍ୱକୁ ଉଠି ଶତ୍ରୁମାନଙ୍କୁ ଆହ୍ୱାନ କଲାପରି ମନେହେଉଥାଏ । କିନ୍ତୁ ନରବାହନଦତ୍ତ ଅତ୍ୟନ୍ତ କ୍ରୁଦ୍ଧ ହେଲେ ସୁଦ୍ଧା କ୍ଷୁବ୍ଧ ଜଣାଯାଉ ନଥାନ୍ତି । କୌଣସି ପରିସ୍ଥିତିରେ ତତ୍‌କ୍ଷଣାତ୍ ବିକ୍ଷୁବ୍ଧ ନହେବା ତ ମହାପୁରୁଷମାନଙ୍କ ଲକ୍ଷଣ ।

'ଅକ୍ଷୋଭ୍ୟତୈବ ମହତାଂ ମହତ୍ତ୍ୱସ୍ୟ ହି ଲକ୍ଷଣମ୍'

ବିଦ୍ୟାଧର ଚକ୍ରବର୍ତ୍ତୀ ପଦବୀ ସହିତ ସମସ୍ତ ବିଦ୍ୟାଧରୀ ସିଦ୍ଧିର ଅଧିକାରୀ ନରବାହନଦତ୍ତ ଯୁଦ୍ଧଯାତ୍ରା କରିବା ନିଶ୍ଚୟ କଲେ । ତାଙ୍କୁ ଏବଂ ତାଙ୍କ ପତ୍ନୀ ଓ ମନ୍ତ୍ରୀମାନଙ୍କୁ ଧରି ମହାପଦ୍ମବିମାନ ଗୋବିନ୍ଦକୂଟରୁ ଯାତ୍ରା ଆରମ୍ଭ କଲା । ଚନ୍ଦ୍ରଙ୍କୁ ଗ୍ରହ ଓ ନକ୍ଷତ୍ରମାନେ ପରିବେଷ୍ଟନ କରି ରହିଥିବା ପରି ତାଙ୍କୁ ଗନ୍ଧର୍ବ ଓ ବିଦ୍ୟାଧର ରାଜାମାନେ ଘେରି ଚାଲିଥାନ୍ତି । ଧନବତୀଙ୍କୁ ଅନୁସରଣ କରି ନରବାହନଦତ୍ତ ହିମାଳୟର ଏକ ବିଶାଳ ସରୋବର ନିକଟରେ ଯାଇ ପହଞ୍ଚିଲେ । ଶ୍ୱେତପଦ୍ମଗୁଡ଼ିକ ଛତ୍ର ଆକାରରେ ଏହାକୁ ଆଚ୍ଛାଦନ କରି ରଖିଥାନ୍ତି । ହଂସଗୁଡ଼ିକ ଚାମର ପରି ସତେ ଯେପରି ସମ୍ରାଟଙ୍କୁ ସ୍ୱାଗତ କରୁଥାନ୍ତି । ସାମ୍ରାଜ୍ୟ ଆଶାରେ ଯାଉଥିବା ନରବାହନଦତ୍ତଙ୍କୁ ତରଙ୍ଗସମୂହ ସରୋବରରେ ସ୍ନାନ କରିଯିବାପାଇଁ ନିମନ୍ତ୍ରଣ ଜଣାଉଥାନ୍ତି ।

ବାୟୁପଥଙ୍କ ନିର୍ଦ୍ଦେଶ କ୍ରମେ ସେ ସ୍ନାନ କରିବା ନିମିତ୍ତ ପୁଷ୍କରିଣୀରେ ପ୍ରବେଶ କଲେ । ଏ ସମୟରେ ଆକାଶରୁ ଦିବ୍ୟବାଣୀ ଶୁଣାଗଲା, ବିଦ୍ୟାଧର ଚକ୍ରବର୍ତ୍ତୀଙ୍କ ବ୍ୟତୀତ ଅନ୍ୟ କେହି ଏହି ସରୋବରରେ ସ୍ନାନ କରିବା ସମ୍ଭବ ନୁହେଁ । ତେଣୁ ଆଜି ତୁମର ଚକ୍ରବର୍ତ୍ତୀ ପଦ ସିଦ୍ଧ ହେଲା । ତୁମେ ଚକ୍ରବର୍ତ୍ତୀ ହେଲ । ଦିବ୍ୟବାଣୀ ଶୁଣି ନରବାହନଦତ୍ତ ସ୍ୱୟଂ ଜଳାଧିପତି ବରୁଣଙ୍କ ପରି ରାଣୀମାନଙ୍କ ସହିତ ସେଠାରେ ଜଳକ୍ରୀଡ଼ା କରିବାକୁ ଲାଗିଲେ । ରାଣୀମାନଙ୍କର ଅଞ୍ଜନରହିତ ରକ୍ତାଭ ନୟନ, ଶିଥିଳ ଓ ଆର୍ଦ୍ରକେଶପାଶ, ଜଳସିକ୍ତ ଝୀନ ବସନଗୁଡ଼ିକ ମଧ୍ୟରୁ ସେମାନଙ୍କ ଅଙ୍ଗରେଖା ନରବାହନଦତ୍ତଙ୍କୁ ପଲକହୀନ କରିଦେଉଥାଏ । ବିକଶିତ ପଦ୍ମପୁଷ୍ପ ସବୁ ରାଣୀମାନଙ୍କ ମୁଖକମଳଦ୍ୱାରା ପରାଜିତ ହୋଇ ତରଙ୍ଗ ମଧ୍ୟରେ ବୁଡ଼ିଯାଉଥାନ୍ତି । ସୌନ୍ଦର୍ଯ୍ୟଲକ୍ଷ୍ମୀ ଏମାନଙ୍କ ସୌନ୍ଦର୍ଯ୍ୟ ଦେଖି ସରୋବର ମଧ୍ୟରୁ ଅନ୍ୟତ୍ର ଚାଲିଯାଉଥିବା ମନେହେଉଥିଲା । ପକ୍ଷୀମାନଙ୍କର କଳନାଦ ଏବଂ ସେମାନଙ୍କ ପକ୍ଷଚାଳନାର ଧ୍ୱନି ସୌନ୍ଦର୍ଯ୍ୟଲକ୍ଷ୍ମୀଙ୍କ କଟୀ କିଙ୍କିଣୀର ନିକ୍ୱଣ ବୋଲି ମନେହେଉଥାଏ ।

## ନରବାହନଦତ୍ତଙ୍କ ପଞ୍ଚ କନ୍ୟାପ୍ରାପ୍ତି

ସ୍ନାନ ଓ ଜଳକ୍ରୀଡ଼ା ଶେଷକରି ସରୋବର ତଟରେ ନରବାହନଦତ୍ତ ସେହି ଦିନଟି ରାଣୀମାନଙ୍କ ସହିତ ପ୍ରେମାଳାପ ଏବଂ ବନ୍ଧୁରାଜାମାନଙ୍କ ସହିତ ମନ୍ତ୍ରଣା କରି କଟାଇଦେଲେ । ପରଦିନ ପୁଣି ବିଜୟ ଯାତ୍ରା ଆରମ୍ଭ ହେଲା । ପଥ ମଧ୍ୟରେ ବାୟୁପଥଙ୍କ ରାଜଧାନୀ । ତାଙ୍କ ଅନୁରୋଧ କ୍ରମେ ସେନାବାହିନୀ ଗୋଟିଏ ଦିନ ସେଠାରେ ବିଶ୍ରାମ ନେଲେ । ନରବାହନଦତ୍ତ ବାୟୁପଥଙ୍କ ଭଗିନୀ କୁମାରୀ ବାୟୁବେଗଯଶାଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହୋଇପଡ଼ିଲେ । ସେହି ପୂର୍ଣ୍ଣଚନ୍ଦ୍ରବଦନା, ମଧୁର ଆଳାପବତୀ, ସ୍ମିତହାସିନୀ, ଗୁରୁନିତମ୍ବବତୀ, ସଦ୍‌ଗ୍ରହଶାଳିନୀ କୁମାରୀ ହେମବାଲୁକା ନଦୀତୀରରେ ବିଚରଣ କରୁଥିବା ବେଳେ ନରବାହନଦତ୍ତ ତାଙ୍କୁ ପ୍ରଥମେ ଦେଖିଥିଲେ । ସମ୍ରାଟଙ୍କ ଉପରେ ଦୃଷ୍ଟିପାତ ହେବାମାତ୍ରେ ବାୟୁବେଗଯଶା ଲଜ୍ଜାବଶତଃ ସେଠାରୁ ସଖୀମାନଙ୍କ ସହିତ ଚାଲିଯାଇଥିଲେ । ତାଙ୍କର ଏ ପ୍ରକାର ଆଚରଣ ନରବାହନଦତ୍ତଙ୍କ ମନରେ ଭ୍ରାନ୍ତ ଧାରଣା ସୃଷ୍ଟି କରିଥିଲା । ସେ ଭାବିନେଲେ ଯେ ରାଜଭଗିନୀ କୌଣସି କାରଣରୁ ତାଙ୍କ ପ୍ରତି ବିରକ୍ତ ହୋଇଉଠିଛନ୍ତି । ମନଦୁଃଖରେ ସେ ନଦୀ ତୀରରୁ ଫେରି ଆସିଥିଲେ ।

ସମ୍ରାଟଙ୍କ ମନୋବେଦନା ରାଣୀମାନଙ୍କଠାରେ ଅଛପା ରହିଲା ନାହିଁ । ସେମାନେ ପତିଙ୍କ ସହିତ ଯାଇଥିବା ଗୋମୁଖ ଓ ମରୁଭୂତିଙ୍କଠାରୁ ସମସ୍ତ ଘଟଣାର ବିବରଣୀ ଶୁଣିସାରିଥିଲେ । ବାୟୁବେଗଯଶାଙ୍କୁ ନେଇ ସେମାନେ ନରବାହନଦତ୍ତଙ୍କୁ ହାସ ପରିହାସ କରିବାକୁ ଲାଗିଲେ । ମରୁଭୂତି ଓ ଗୋମୁଖ ଘଟଣାଟି ରାଣୀମାନଙ୍କ କର୍ଣ୍ଣଗୋଚର କରାଇଥିବା ଯୋଗୁଁ ଲଜ୍ଜିତ ହୋଇପଡ଼ିଥାନ୍ତି । ସେମାନଙ୍କ ମଧ୍ୟରୁ ଗୋମୁଖ ବାୟୁବେଗଯଶାଙ୍କ ମନୋଭାବ ଜାଣିବାପାଇଁ ନଗରୀ ମଧ୍ୟରେ ପ୍ରବେଶ କଲେ ।

ନିଜର ମନୋଭାବ ଗୋପନ କରି ଗୋମୁଖ ନଗର ମଧ୍ୟରେ ଭ୍ରମଣ କରୁଥାନ୍ତି । ରାଜଭବନରୁ ଦେଖିପାରି ବାୟୁପଥ ତାଙ୍କୁ ଆଗ୍ରହର ସହିତ ନିଜ ବାସଭବନ ମଧ୍ୟକୁ ପାଛୋଟି ନେଲେ । ସେଠାରେ ସେ ଏକାନ୍ତରେ ଜଣାଇଲେ ଯେ ବାୟୁବେଗଯଶା ନାମରେ ତାଙ୍କର ଗୋଟିଏ ଭଉଣୀ ଅଛି । ସିଦ୍ଧମାନଙ୍କ କହିବାନୁଯାୟୀ ସେ ଚକ୍ରବର୍ତ୍ତୀଙ୍କ ଭାର୍ଯ୍ୟା ହେବ । ତେଣୁ ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କ ହସ୍ତରେ ତାକୁ ସମର୍ପଣ କରିବାପାଇଁ ସେ ଚାହାଁନ୍ତି । ନିଜର ଅଭିଳାଷ ଜଣାଇ ସେ ଗୋମୁଖଙ୍କୁ ଏ ଦିଗରେ ତାଙ୍କୁ ସାହାଯ୍ୟ କରିବା ନିମିତ୍ତ ପ୍ରାର୍ଥନା କଲେ । ତାଙ୍କ ଅନୁରୋଧ ଶୁଣି ଗୋମୁଖ ପ୍ରକୃତ ସତ୍ୟ ପ୍ରକାଶ ନକରି କହିଲେ, 'ଆପଣ ଜାଣନ୍ତି ସମ୍ରାଟ ବର୍ତ୍ତମାନ ଶତ୍ରୁର ବିନାଶପାଇଁ ବାହାରିଛନ୍ତି । ତଥାପି

ଆପଣ ତାଙ୍କ ନିକଟରେ ଏ ପ୍ରସ୍ତାବ ରଖନ୍ତୁ । ମୁଁ ଆପଣଙ୍କ ଅଭିଳାଷ ପୂର୍ଣ୍ଣ ହେବାରେ ସହାୟତା କରିବି ।'

ଗୋମୁଖ ବାୟୁପଥଙ୍କୁ ଏପରି ପ୍ରତିଶ୍ରୁତି ଦେଇ ନରବାହନଦତ୍ତଙ୍କ ନିକଟରେ ଆସି ପହଞ୍ଚିଲେ । ଜଣାଇଲେ ଯେ ବିନା ପ୍ରାର୍ଥନାରେ ତାଙ୍କ କାର୍ଯ୍ୟ ସିଦ୍ଧ ହୋଇଯାଇଛି ।

ପରଦିନ ବାୟୁପଥ ଆସି ତାଙ୍କ ମନୋରଥ ନରବାହନଦତ୍ତଙ୍କ ନିକଟରେ ପ୍ରକାଶ କଲେ । ଏ ସମୟରେ ଚତୁର ଗୋମୁଖ କହିଲେ, 'ଦେବ ! ବାୟୁପଥ ଆପଣଙ୍କ ନିଜଲୋକ । ଆପଣଙ୍କପାଇଁ ତାଙ୍କ ଭକ୍ତି ଅମାପ । ତେଣୁ ଆପଣ ତାଙ୍କ ପ୍ରାର୍ଥନାକୁ ଅସ୍ୱୀକାର କରନ୍ତୁ ନାହିଁ । ସେ ଯାହା କହୁଛନ୍ତି ତାହା ହିଁ ହେଉ ।' ନରବାହନଦତ୍ତ ବାୟୁପଥଙ୍କ ପ୍ରାର୍ଥନା ସ୍ୱୀକାର କଲେ । ବାୟୁବେଗଯଶାଙ୍କ ସହିତ ନରବାହନଦତ୍ତଙ୍କ ବିବାହ ଅନୁଷ୍ଠିତ ହେଲା । ବିବାହ ବେଦୀରେ କନ୍ୟା ଅଗ୍ନି ପ୍ରଦକ୍ଷିଣ ବେଳେ ନମ୍ର ସ୍ୱରରେ କହୁଥାଏ, 'ହେ ଲୋକପାଳ ! ହେ ଇନ୍ଦ୍ରାଦିଦେବତା ବୃନ୍ଦ ! ଏ ବିବାହ କରିବାପାଇଁ ମୁଁ ଚାହୁଁ ନଥିଲି । ଭାଇଙ୍କ ଦ୍ୱାରା ବଳପୂର୍ବକ ମୋତେ ପ୍ରଦାନ କରାଯାଇଛି । ଏଥିରେ ମୋର କୌଣସି ଅପରାଧ ନାହିଁ ।' ସେତେବେଳେ ବିବାହ ବେଦୀରେ ଏତେ ଜୋର୍ ଆନନ୍ଦ କୋଳାହଳ ହେଉଥିଲା ଯେ ତାଙ୍କ କଥା କେହି ଶୁଣିପାରିଲେ ନାହିଁ । କିନ୍ତୁ ଗୋମୁଖ ଏହା ଶୁଣିପାରି ଚିନ୍ତିତ ହୋଇପଡ଼ିଲେ । ରାଜା ନିଜେ ମଧ୍ୟ ଏଥିରେ ଲଜ୍ଜିତ ହେଲେ । ପରିସ୍ଥିତି ସମ୍ପର୍କରେ ଜାଣିବା ନିମିତ୍ତ ଗୋମୁଖ ସେଠାରୁ ଚାଲିଆସିଲେ । ବିଭିନ୍ନ ସ୍ଥାନରେ ଏକଥାର ତାତ୍ପର୍ଯ୍ୟ ଜାଣିବାପାଇଁ ସେ ଅନୁସନ୍ଧାନ କରୁଥାନ୍ତି । ଏକ ନିଭୃତ ସ୍ଥାନରେ ସେ ଦେଖିଲେ ଯେ ଚାରୋଟି ବିଦ୍ୟାଧର କୁମାରୀ ଏକସଙ୍ଗରେ ଅଗ୍ନି ମଧ୍ୟରେ ପ୍ରବେଶ କରିବାପାଇଁ ଉଦ୍ୟତ ହେଉଛନ୍ତି । ଏହାର କାରଣ ଜିଜ୍ଞାସା କରନ୍ତେ ସେହି ସୁନ୍ଦରୀ କୁମାରୀମାନେ କହିଲେ ଯେ ବାୟୁବେଗଯଶା ସେମାନଙ୍କ ମଧ୍ୟରେ ହୋଇଥିବା ପ୍ରତିଜ୍ଞା ଓ ଚୁକ୍ତି ଭଙ୍ଗ କରିଛନ୍ତି । ଏହା ଶୁଣିବାମାତ୍ରେ ଗୋମୁଖ ଫେରିଯାଇ ସମସ୍ତଙ୍କ ସମ୍ମୁଖରେ ଏହି ଘଟଣାଟି ପ୍ରକାଶ କଲେ ।

ବାୟୁବେଗଯଶାଙ୍କ ସ୍ୱଗତୋକ୍ତି ଏବଂ ଗୋମୁଖଙ୍କ ରହସ୍ୟମୟ ବୃତ୍ତାନ୍ତ ନରବାହନଦତ୍ତଙ୍କୁ ବିସ୍ମିତ କଲା । କିନ୍ତୁ ବାୟୁବେଗଯଶା ତାଙ୍କୁ ଚିନ୍ତା କରିବା ନିମିତ୍ତ ଅବସର ନଦେଇ କହିଲେ, 'ଆର୍ଯ୍ୟପୁତ୍ର ! ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ କଲେ ସେମାନେ ଅଗ୍ନି ମଧ୍ୟରେ ପ୍ରବେଶ କରିଯିବେ । ଚାଲନ୍ତୁ ପ୍ରଥମେ ସେମାନଙ୍କ ଜୀବନ ରକ୍ଷା କରିବା, ତାପରେ ସମସ୍ତ କଥା ମୁଁ ଆପଣଙ୍କୁ କହି ଶୁଣାଇବି ।' ସମସ୍ତେ ଯାଇ ଅଗ୍ନି ପ୍ରଜ୍ୱଳନ

କରୁଥିବା ସେହି ଚାରିଜଣ କୁମାରୀଙ୍କ ନିକଟରେ ପହଞ୍ଚିଲେ । ସେଥିରୁ ସେମାନଙ୍କୁ ନିବୃତ୍ତ କରି ବିଦ୍ୟାଧର କୁମାରୀ ନରବାହନଦତ୍ତଙ୍କୁ ଜଣାଇଲେ, 'ଆର୍ଯ୍ୟପୁତ୍ର ! ଏହାର ନାମ କଳିକା । ସେ କାଳକୂଟର ଅଧିପତିଙ୍କ କନ୍ୟା । ଏହି ଦ୍ୱିତୀୟ ସଖୀ ବିଦ୍ୟୁତ୍‌ପୁଞ୍ଜଙ୍କ ପୁତ୍ରୀ ବିଦ୍ୟୁତ୍‌ପୁଞ୍ଜା । ମୋର ଏହି ତୃତୀୟ ସଖୀ ମତଙ୍ଗିନୀ ମନ୍ଦରଙ୍କ ପୁତ୍ରୀ ଏବଂ ଏହି ଚତୁର୍ଥ ମହାଦଂଷ୍ଟ୍ରଙ୍କ କନ୍ୟା ପଦ୍ମପ୍ରଭା ଏବଂ ମୁଁ ହେଉଛି ପଞ୍ଚମ ବାୟୁବେଗଯଶା । ଆମେ ପାଞ୍ଚଜଣ ଏକତ୍ର ସିଦ୍ଧକ୍ଷେତ୍ରରେ ତପସ୍ୟା କରୁଥିଲା ବେଳେ ଆପଣଙ୍କୁ ଦେଖି କାମମୋହିତ ହୋଇପଡ଼ିଥିଲୁ । ସେତେବେଳେ ଆମେ ପ୍ରତିଜ୍ଞା କରିଥିଲୁ ଯେ ଆମେ ସମସ୍ତେ ଏକସଙ୍ଗେ ନରବାହନଦତ୍ତଙ୍କ ସହିତ ବିବାହ କରିବୁ । କେହି ସ୍ୱତନ୍ତ୍ର ଭାବେ ତାଙ୍କୁ ନିଜର କରିବେ ନାହିଁ । ଯଦି ଆମ ଭିତରୁ କେହି ଏକାକିନୀ ନରବାହନଦତ୍ତଙ୍କୁ ବିବାହ କରେ ତେବେ ସେହି ସଖୀଦ୍ରୋହିଣୀର ନାମରେ ଅନ୍ୟମାନେ ଅଗ୍ନିରେ ପ୍ରବେଶ କରି ପ୍ରାଣ ବିସର୍ଜନ କରିବେ । ଏହି ପଣକୁ ଭୟକରି ମୁଁ ଆପଣଙ୍କ ସହିତ ବିବାହ କରିବାପାଇଁ ଚାହୁଁନଥିଲି । ବର୍ତ୍ତମାନ ଆମର ବିବାହ ହେଲାପରେ ମଧ୍ୟ ମୁଁ ମୋର ଆତ୍ମାକୁ ଆପଣଙ୍କ ନିକଟରେ ସମର୍ପଣ କରୁନାହିଁ । ଏ ସମ୍ପର୍କରେ ଆପଣ ଏବଂ ଲୋକପାଳମାନେ ମୋର ସାକ୍ଷୀ । ମୁଁ ଏ ପର୍ଯ୍ୟନ୍ତ ସ୍ୱେଚ୍ଛା ପୂର୍ବକ ଆମ ପ୍ରତିଜ୍ଞାକୁ ଉଲ୍ଲଙ୍ଘନ କରିନାହିଁ । ତେଣୁ ଆର୍ଯ୍ୟପୁତ୍ର ! ଆପଣ ମୋର ଏହି ଚାରିଜଣ ସଖୀଙ୍କ ସହିତ ମଧ୍ୟ ବିବାହ କରନ୍ତୁ । ଏବଂ ପ୍ରିୟ ସଖି ! ତୁମେ ମଧ୍ୟ ମୋତେ ଅନ୍ୟଥା ବୁଝନାହିଁ ।'

ବାୟୁବେଗଯଶାଙ୍କ କଥାଶୁଣି ସଖୀମାନେ ଆତ୍ମବିସର୍ଜନ ଚିନ୍ତାରୁ ଓହରି ଆସିଲେ । ପରସ୍ପରକୁ ଆଲିଙ୍ଗନ କରି ସେମାନେ ନିଜର ଆନ୍ତରିକତା ଓ ବନ୍ଧୁତା ଫେରିପାଇଲେ । ନରବାହନଦତ୍ତ ମଧ୍ୟ ଏହି ଅପ୍ରତ୍ୟାଶିତ କନ୍ୟାଲାଭରେ ଅନ୍ତର୍ଗତ ଆନନ୍ଦିତ ହୋଇଉଠୁଥାନ୍ତି ।

ନିଜନିଜ କନ୍ୟାମାନଙ୍କ ସମାଚାର ଶୁଣି କନ୍ୟା ପିତାମାନେ ମଧ୍ୟ ତୁରନ୍ତ ସେଠାରେ ଉପସ୍ଥିତ ହୋଇ ନିଜନିଜ କନ୍ୟାମାନଙ୍କୁ ଚକ୍ରବର୍ତ୍ତୀ ସମ୍ରାଟଙ୍କ ହସ୍ତରେ ସମର୍ପଣ କରିଦେଲେ । ସେହିଦିନଠାରୁ ସେମାନେ ନରବାହନଦତ୍ତଙ୍କ ଆଧିପତ୍ୟକୁ ସ୍ୱୀକାର କଲେ । ନରବାହନଦତ୍ତ ଏହି ପଞ୍ଚ ମହାବିଦ୍ୟାଧର ଏବଂ ସେମାନଙ୍କ କନ୍ୟାମାନଙ୍କୁ ଲାଭକରି ସେଠାରେ କିଛିଦିନ ଅବସ୍ଥାନ କଲେ ।

ଏକଦା ସେନାପତି ହରିଶିଖ ଆସି ଜଣାଇଲେ, 'ଦେବ ! ଆପଣ ଅତ୍ୟନ୍ତ ବିଦ୍ୱାନ୍, ତଥାପି ରାଜନୀତିକୁ ଉଲ୍ଲଙ୍ଘନ କରି ଏଠାରେ କିପରି ଅଟକି ଯାଉଛନ୍ତି ? ବିଜୟ

ଯାତ୍ରା ଅବସରରେ ଏହିପରି କାମକ୍ରୀଡ଼ା ଆପଣଙ୍କୁ କିପରି ଆନନ୍ଦ ଦେଉଛି ? ମନ୍ଦରଦେବଙ୍କୁ ଜୟ କରିବାର ଅଭିଳାଷ ଆପଣଙ୍କର କୁଆଡ଼େ ଗଲା ? ଏଠାରେ ରହି ରାଣୀମାନଙ୍କ ସହିତ ବିହାର କରିବାର ରସ କିପରି ଆସ୍ୱାଦନ କରୁଛନ୍ତି ?'

ହରିଶିଖଙ୍କ କଥାଶୁଣି ନରବାହନଦତ୍ତ କହିଲେ, 'ମିତ୍ର ! ତୁମେ ଯାହା କହିଛ ତାହା ସମ୍ପୂର୍ଣ୍ଣ ଠିକ୍ । କିନ୍ତୁ ଏପରି ଭୋଗ ବିଳାସପାଇଁ ମୁଁ ଆଦୌ ପ୍ରୟାସ କରିନାହିଁ । ଏଠାରେ ଯେଉଁ ପତ୍ନୀମାନଙ୍କୁ ମୁଁ ଗ୍ରହଣ କଲି ସେମାନେ ସମସ୍ତେ ଜଣେ ଜଣେ ମିତ୍ରରାଜାଙ୍କୁ ପାଇବାରେ ଆମର ମାଧ୍ୟମ । ଏମାନେ ସମସ୍ତେ ଶତ୍ରୁସଂହାରପାଇଁ ଆମର ଉପକରଣ । ତେଣୁ ଏହି ନବବିବାହିତା ପତ୍ନୀମାନଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ଚାଲ, ଆଜି ଏଠାରୁ ପୁଣି ଯାତ୍ରା ଆରମ୍ଭ କରିବା ।' ଜାମାତାଙ୍କ ପ୍ରସ୍ତାବରେ ଶ୍ୱଶୁର ମନ୍ଦର ସଚେତନ କରାଇଦେଲେ, 'ଦେଖନ୍ତୁ, ମନ୍ଦରଦେବ କେବଳ ବହୁ ଦୂରରେ ନୁହଁନ୍ତି, ଏକ ଦୁର୍ଗମ ସ୍ଥାନରେ ନିଜର ରାଜଧାନୀ ସ୍ଥାପନ କରିଛନ୍ତି । ତାଙ୍କୁ ଜୟ କରିବା ସହଜସାଧ୍ୟ ନୁହେଁ । ସାଧାରଣଭାବେ ସେ ପରାଜିତ ହେବେନାହିଁ । ଚକ୍ରବର୍ତ୍ତୀତ୍ୱ ଲାଭ କରିବାପାଇଁ ଯେଉଁ ସବୁ ରତ୍ନ ସିଦ୍ଧ କରିବା ଆବଶ୍ୟକ ସେଗୁଡ଼ିକ ପ୍ରଥମେ ସିଦ୍ଧ ନକଲେ ଯୁଦ୍ଧରେ ମନ୍ଦରଦେବଙ୍କୁ ଜୟ କରିବା ସମ୍ଭବ ନୁହେଁ । ମନ୍ଦରଦେବ ଯେଉଁଠାରେ ରହୁଛନ୍ତି ତା'ର ସମ୍ମୁଖରେ ଏକ ଗୁହା ଅଛି । ତାହା ତ୍ରିଶୀର୍ଷ ରୂପେ ପରିଚିତ । ଏହା ତାଙ୍କୁ ରକ୍ଷା କରୁଛି । ଏହାର ଦ୍ୱାରଦେଶରେ ଦେବମାୟ ନାମରେ ଏକ ମହାନ୍ ପରାକ୍ରମଶାଳୀ ବୀର ପ୍ରହରୀ ରୂପେ ନିଯୁକ୍ତ ଅଛି । କୌଣସି ବ୍ୟକ୍ତି ଚକ୍ରବର୍ତ୍ତୀ ପଦପ୍ରାପ୍ତିପାଇଁ ଆବଶ୍ୟକ ସମସ୍ତ ରତ୍ନ ସିଦ୍ଧ ନକଲେ ଏହି ଗୁହାକୁ ପାର କରିବା ଅସମ୍ଭବ । ଏହି ରତ୍ନ ହେଉଛି ଏକ ଚନ୍ଦନ ବୃକ୍ଷ । ତାହା ଏଠାରେ ହିଁ ଅଛି । ତେଣୁ ରାଜନ୍, ନିଜର ମନୋରଥ ସିଦ୍ଧି ପାଇଁ ପ୍ରଥମେ ଏହି ଚନ୍ଦନ ବୃକ୍ଷକୁ ସିଦ୍ଧ କରନ୍ତୁ । ଏହା ନିକଟକୁ ଚକ୍ରବର୍ତ୍ତୀଙ୍କ ବ୍ୟତୀତ ଅନ୍ୟ କେହି ଯାଇ ପାରିବେ ନାହିଁ ।'

ମନ୍ଦରଙ୍କଠାରୁ ଏହାଶୁଣି ନରବାହନଦତ୍ତ ସେହି ଦିନଟି ବ୍ରତ ଓ ନିୟମ ପାଳନ ପୂର୍ବକ ନିରାହାର ରହିଲେ । ରାତିରେ ସେ ସେହି ଚନ୍ଦନ ବୃକ୍ଷ ନିକଟରେ ପହଞ୍ଚିବାପାଇଁ ପ୍ରୟାସ କଲେ । ପଥ ମଧ୍ୟରେ ବିଭିନ୍ନ ଭୟଙ୍କର ଜୀବ ତାଙ୍କୁ ଭୟଭୀତ କରୁଥାନ୍ତି । କିନ୍ତୁ ସେ ନିର୍ଭୟ ଚିତ୍ତରେ ଚନ୍ଦନବୃକ୍ଷ ମୂଳରେ ଯାଇ ଉପସ୍ଥିତ ହେଲେ । ତାର ଚତୁର୍ଦ୍ଦିଗରେ ଏକ ଉଚ୍ଚମଣ୍ଡପ ଶୋଭା ପାଉଥାଏ । ଏହି ମହାରତ୍ନକୁ ଦେଖି ନରବାହନଦତ୍ତ ସୋପାନମାର୍ଗରେ ମଣ୍ଡପ ଉପରକୁ ଆସି ବୃକ୍ଷର ଆରାଧନା କଲେ । ଏ ସମୟରେ

ଆକାଶରୁ ଦିବ୍ୟବାଣୀ ଶୁଭିଲା, 'ଚକ୍ରବର୍ତ୍ତୀ ନରବାହନଦତ୍ତ ! ବର୍ତ୍ତମାନ ଏହି ଚନ୍ଦନ ବୃକ୍ଷ ତୁମର ସିଦ୍ଧ ହୋଇଗଲା । ଯେତେବେଳେ ସ୍ମରଣ କରିବ ସେତେବେଳେ ଏହା ଆସି ତୁମ ନିକଟରେ ଉପସ୍ଥିତ ହେବ । ତେଣୁ ବର୍ତ୍ତମାନ ତୁମେ ଗୋବିନ୍ଦକୂଟ ଫେରିଯାଅ । ସେଠାରେ ଅନ୍ୟାନ୍ୟ ରତ୍ନ ମଧ୍ୟ ତୁମର ସିଦ୍ଧ ହେବ । ତାପରେ ଯାଇ ତୁମେ ବିନା ପ୍ରୟାସରେ ମନ୍ଦରଦେବଙ୍କୁ ପରାଜିତ କରିପାରିବ ।'

ଦିବ୍ୟବାଣୀ ଶାନ୍ତହେବା ପରେ ନରବାହନଦତ୍ତ ଅନୁରୂପ ଭାବେ କାର୍ଯ୍ୟ କରିବେ ବୋଲି ଜଣାଇ ସେହି ମହାବୃକ୍ଷକୁ ସାଷ୍ଟାଙ୍ଗ ପ୍ରଣିପାତ କଲେ । ଆଗକୁ ଅଗ୍ରସର ନହୋଇ ନିଜ ରାଜଧାନୀକୁ ଫେରିଯିବା ତାଙ୍କ ପକ୍ଷେ ଶ୍ରେୟସ୍କର ମନେହେଲା । ସେ ଗୋବିନ୍ଦକୂଟ ଫେରିଯିବା ପାଇଁ ନିଶ୍ଚୟ କଲେ ।

ପରଦିନ ପ୍ରଭାତରେ ସେ ଏହି ବୃତ୍ତାନ୍ତ କହି ଶୁଣାଇବାରୁ ପତ୍ନୀମାନେ, ବାଲ୍ୟମିତ୍ର ତଥା ବିଶ୍ୱସ୍ତ ସଚିବମାନେ, ବାୟୁପଥ ପ୍ରଭୃତି ବିଦ୍ୟାଧର, ଚିତ୍ରାଙ୍ଗଦ ପ୍ରଭୃତି ଗନ୍ଧର୍ବ ଏବଂ ସମଗ୍ର ସୈନ୍ୟବାହିନୀ ପରମ ଆନନ୍ଦ ଲାଭ କରି ସଦ୍ୟ ସିଦ୍ଧିପ୍ରାପ୍ତ ନରବାହନଦତ୍ତଙ୍କ ବୀରତ୍ୱ, ସାହସ ଓ କର୍ମତତ୍ପରତାର ଜୟଗାନ କରିବାକୁ ଲାଗିଲେ ।

ପରଦିନ ଦଳବଳ ସହ ନରବାହନଦତ୍ତ ଗୋବିନ୍ଦକୂଟ ଫେରିଚାଲିଲେ । ତାଙ୍କର ଏକମାତ୍ର ଲକ୍ଷ୍ୟ ହେଲା ଯେ ସେ ମନ୍ଦରଦେବର ଗର୍ବକୁ ଖର୍ବ କରିବାପାଇଁ ଚନ୍ଦନବୃକ୍ଷ ନିର୍ଦ୍ଦିଷ୍ଟ ଅନ୍ୟସବୁ ରତ୍ନକୁ ସିଦ୍ଧ କରିବେ । ଅଲୌକିକ ମହାପଦ୍ମ ବିମାନ ସେମାନଙ୍କୁ ଧରି ଆକାଶ ମାର୍ଗରେ ଉଡ଼ିଚାଲିଲା ।





ନିଶାସୁ ତାଣ୍ଡବୋଦ୍‌ଦଣ୍ଡଶୁଣ୍ଡାସୀତ୍କାରଶୀକରୈଃ
ଜ୍ୟୋତୀଂଷି ପୁଷ୍ଣନ୍ନିବ ବସ୍ତମୋ ମୁଷ୍ଣାତୁ ବିଘ୍ନଜିତ୍ ।।



## ପ୍ରଥମ ତରଙ୍ଗ

ନରବାହନଦତ୍ତ ଗୋବିନ୍ଦକୂଟ ପର୍ବତ ଉପରେ ରହିଥାନ୍ତି । ଦିନେ ସେ ରାଜସଭା ମଧ୍ୟରେ ବସିଥିବା ବେଳେ ଅମୃତପ୍ରଭ ଆସି ସେଠାରେ ଉପସ୍ଥିତ ହେଲେ । ସେ ନିଜର ପରିଚୟ ଦେବା ପରେ ନରବାହନଦତ୍ତଙ୍କ ପୂର୍ବ ସ୍ମୃତି ଜାଗ୍ରତ ହେଲା । ଅଗ୍ନି ପର୍ବତ ଉପରେ ଶତ୍ରୁଦ୍ୱାରା ନିକ୍ଷିପ୍ତ ହେବା ପରେ ସେ ତାଙ୍କୁ ରକ୍ଷା କରିଥିଲେ । ଏଣୁ ସେ ସସମ୍ମାନ ପ୍ରଣାମ କରୁଥିବା ଅମୃତପ୍ରଭଙ୍କୁ ସ୍ୱାଗତ କଲେ । ବିଦ୍ୟାଧର ଅମୃତପ୍ରଭ କୃତାଞ୍ଜଳି ପୁଟରେ ଜଣାଇଲେ–

'ଦେବ ! ଏଠାରୁ ଦକ୍ଷିଣ ଦିଗରେ ମଳୟ ବୋଲି ଏକ ବିଶାଳ ପର୍ବତ ଅଛି । ତା'ର ଗୋଟିଏ ଅଂଶରେ ଆଶ୍ରମ ସ୍ଥାପନ କରି ମୁନିଋଷିମାନେ ତପସ୍ୟା କରୁଛନ୍ତି । ସେଠାରେ ବାମଦେବ ନାମକ ଜଣେ ମହର୍ଷିଙ୍କ ଆଶ୍ରମ । ସେ କୌଣସି କାରଣରୁ ଆପଣଙ୍କୁ ଯିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି । ଆପଣ ଏକାକୀ ହିଁ ସେଠାକୁ ଯିବେ । ଏହି ବାର୍ତ୍ତା ଦେବା ନିମିତ୍ତ ସେ ମୋତେ ପଠାଇଛନ୍ତି । ମୁଁ ଆପଣଙ୍କୁ ପୂର୍ବରୁ ହିଁ ନିଜର ପ୍ରଭୁଭାବେ ସ୍ୱୀକାର କରିସାରିଛି । ସେଥିପାଇଁ ମୁନିଙ୍କ ଆଦେଶରେ ଏଠାକୁ ଆସିଛି । ଆସନ୍ତୁ, କାର୍ଯ୍ୟସିଦ୍ଧି ନିମିତ୍ତ ଆଉ ବିଳମ୍ବ ନକରି ଆମେ ତାଙ୍କ ଆଶ୍ରମରେ ଯାଇ ପହଞ୍ଚିବା ।'

ବିଦ୍ୟାଧରଠାରୁ ଏହାଶୁଣି ନରବାହନଦତ୍ତ ନିଜର ପତ୍ନୀ, ଅନୁଚର, ସେନାପତି ଓ ସେନାବାହିନୀକୁ ସେଠାରେ ଛାଡ଼ି ମଳୟପର୍ବତ ପ୍ରତି ଅଗ୍ରସର ହେଲେ । ଆକାଶଚାରୀ ବିଦ୍ୟା ସେମାନଙ୍କୁ ମୁହୂର୍ତ୍ତକ ମଧ୍ୟରେ ସେଠାରେ ପହଞ୍ଚାଇଦେଲା । ନରବାହନଦତ୍ତ ଆଶ୍ରମରେ ପ୍ରବେଶ କରି ମହର୍ଷିଙ୍କ ଚରଣ ବନ୍ଦନା କଲେ । ବାମଦେବ ବାର୍ଦ୍ଧକ୍ୟ ଯୋଗୁଁ ଅତ୍ୟନ୍ତ ଦୁର୍ବଳ ହୋଇପଡ଼ିଥାଆନ୍ତି । ତଥାପି ଉନ୍ନତ ଶରୀର ମହର୍ଷିଙ୍କ ଚକ୍ଷୁକୋଟର ମଧ୍ୟରୁ ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହେଉଥାଏ । ସେ ବିଦ୍ୟାଧର ସମ୍ରାଟତ୍ୱ ଲାଭ କରିବା ନିମିତ୍ତ ସମସ୍ତ ରତ୍ନର ଆଶ୍ରୟସ୍ଥଳ ଏବଂ ଦୀର୍ଘ ଜଟାଜୂଟ ଓ ଶ୍ମଶ୍ରୁଦ୍ୱାରା ଶୋଭିତ ହୋଇଥିବା ଯୋଗୁଁ ସାକ୍ଷାତ୍ ହିମାଚଳ ପରି ମନେହେଉଥାନ୍ତି । ରାଜାଙ୍କୁ ଯଥାଯୋଗ୍ୟ ଆତିଥ୍ୟ ପ୍ରଦାନ

କରି ଧୀର ଓ ପ୍ରଶାନ୍ତ ସ୍ୱରରେ ଆରମ୍ଭ କଲେ, 'ପୂର୍ବେ ଶିବଙ୍କ ତୃତୀୟ ନେତ୍ର ନିର୍ଗତ ଅଗ୍ନିଶିଖାରେ କାମଦେବ ଭସ୍ମୀଭୂତ ହୋଇଯାଇଥିଲେ । କନ୍ଦର୍ପ ପତ୍ନୀ ରତିଙ୍କ କାତର ପ୍ରାର୍ଥନାରେ ଭଗବାନ୍ କୈଳାସପତି ବିଦ୍ୟାଧର ଚକ୍ରବର୍ତ୍ତୀ ରୂପେ କନ୍ଦର୍ପଙ୍କୁ ପୁନର୍ବାର ସୃଷ୍ଟି କରିଛନ୍ତି । ଆପଣ ହିଁ ସେହି କନ୍ଦର୍ପାବତାର ରାଜପୁରୁଷ । ମୋର ଆଶ୍ରମସ୍ଥିତ ଏହି ଗୁହା ମଧ୍ୟରେ ବହୁ ରତ୍ନ ଗଚ୍ଛିତ ଅଛି । କିନ୍ତୁ ରତ୍ନଥିବା ସ୍ଥାନଟି ବହୁ ଦୁର୍ଗମ । ମୁଁ ସେଠାକୁ ଯିବା ପାଇଁ ମାର୍ଗ ବତାଇ ଦେଉଛି । ଆପଣ ନିଜେ ସେହି ରତ୍ନଗୁଡ଼ିକୁ ସିଦ୍ଧ କରିବାପାଇଁ ସାଧନ କରନ୍ତୁ । ଏହାଦ୍ୱାରା ମନ୍ଦରଦେବଙ୍କୁ ଜୟ କରିବା ସମ୍ଭବ ହେବ । ମୁଁ ଭଗବାନ ଶଙ୍କରଙ୍କ ନିର୍ଦ୍ଦେଶରେ ଆପଣଙ୍କୁ ଡକାଇ ଆଣିଛି ।' ଏହା କହି ମହର୍ଷି ସାଧନାର ବିଧି ସବୁ ବତାଇ ଦେଲେ ।

ମଙ୍ଗଳମୟ ପାର୍ବତୀପତିଙ୍କ କୃପା ଏବଂ ମହର୍ଷିଙ୍କ ଆଶୀର୍ବାଦ ଧରି ନରବାହନଦତ୍ତ ପ୍ରହୃଷ୍ଟ ଚିତ୍ତରେ ସେହି ଗୁହାମଧ୍ୟରେ ପ୍ରବେଶ କଲେ । ପ୍ରଥମେ ବହୁ ବିଘ୍ନ ଦେଖାଦେଲା । ସେସବୁକୁ ଅତିକ୍ରମ କରି ସେ ଆଗକୁ ଯିବାବେଳେ ଗୋଟିଏ ବିଶାଳ ହସ୍ତୀ ଗୁହାର ସଂକୀର୍ଣ୍ଣ ପଥ ଦେଇ ସମ୍ମୁଖ ଦିଗରୁ ତାଙ୍କ ଆଡ଼କୁ ଦୌଡ଼ି ଆସୁଥିବା ଦେଖାଗଲା । ତା'ର ଭୟଙ୍କର ଗର୍ଜନରେ ଗୁହାଟି କମ୍ପି ଉଠୁଥାଏ । ନରବାହନଦତ୍ତ ନିର୍ଭୟ ଚିତ୍ତରେ ତା'ର ଶୁଣ୍ଢ ଉପରେ କରାଘାତ କରି ଦୁଇଟି ଦୀର୍ଘ ଓ ତୀକ୍ଷ୍ଣ ଦନ୍ତ ଉପରକୁ ଚଢ଼ିଗଲେ । ଏ ସମୟରେ ଗୁହା ମଧ୍ୟରୁ ଶୁଣାଗଲା 'ନରବାହନଦତ୍ତ ! ତୁମର ସାହସ ଅପୂର୍ବ ! ତୁମେ ଧନ୍ୟ ! ଏହି ମହାଗଜରୂପକ ରତ୍ନ ତୁମର ସିଦ୍ଧ ହେଲା ।'

ଏ ସମୟରେ ଭୟାନକ ସର୍ପ ରୂପରେ ଏକ ଖଡ଼୍‌ଗ ତାଙ୍କ ସମ୍ମୁଖରେ ଆସି ପଡ଼ିଲା । ନରବାହନଦତ୍ତ ସାମ୍ରାଜ୍ୟ-ଲକ୍ଷ୍ମୀଙ୍କ କେଶପାଶ ପରି ତାକୁ ଧରିନେଲେ । ଗୁହା ମଧ୍ୟରୁ ପୁଣି ଶୂନ୍ୟବାଣୀ ଶୁଭିଲା, 'ଧନ୍ୟ ଚକ୍ରବର୍ତ୍ତି ! ତୁମେ ଧନ୍ୟ । ଏହି ଜୈତ୍ର ଖଡ଼୍‌ଗ ରୂପକ ରତ୍ନ ବର୍ତ୍ତମାନ ତୁମର ସିଦ୍ଧ ହେଲା ।'

ଏହାପରେ ସେ ଚନ୍ଦ୍ରିକା ରତ୍ନ, କାମିନୀ ରତ୍ନ ଏବଂ ବିଧ୍ୱଂସିନୀ ବିଦ୍ୟାରତ୍ନ ମଧ ସିଦ୍ଧି ରୂପରେ ପ୍ରାପ୍ତ ହେଲେ । ପୂର୍ବରୁ ସରୋବର ରତ୍ନ ଓ ଚନ୍ଦନ ରତ୍ନ ତାଙ୍କର ସିଦ୍ଧ ହୋଇଥିଲା । ଏହି ସପ୍ତରତ୍ନ ସିଦ୍ଧି ତାଙ୍କ ମନୋରଥ ପୂରଣପାଇଁ ଥିଲା ଅତ୍ୟନ୍ତ ଉପାଦେୟ । ଏସବୁ ରତ୍ନ ସିଦ୍ଧ କରି ସମ୍ରାଟ ନରବାହନଦତ୍ତ ଗୁହା ମଧ୍ୟରୁ ନିର୍ଗତ ହେଲେ ।

ମହର୍ଷିଙ୍କ ନିକଟରେ ନିଜର ଅପୂର୍ବ ଅନୁଭୂତି ବର୍ଣ୍ଣନା କରନ୍ତେ ସେ ବାତ୍ସଲ୍ୟ ସ୍ନେହ ପ୍ରକାଶ ପୂର୍ବକ କହିଲେ, 'ବର୍ତ୍ତମାନ ମହାଚକ୍ରବର୍ତ୍ତୀ ହେବାପାଇଁ ଆବଶ୍ୟକୀୟ

ସମସ୍ତ ରତ୍ନ ଆପଣଙ୍କର ସିଦ୍ଧ ହୋଇଗଲା । ଏବେ ଆପଣ ଯାଆନ୍ତୁ । କୈଳାସର ଉତ୍ତର ଭାଗରେ ଥିବା ମନ୍ଦରଦେବଙ୍କୁ ପରାଜିତ କରି ଉଭୟ ଭାଗର ପ୍ରଭାବଶାଳିନୀ ସାମ୍ରାଜ୍ୟଲକ୍ଷ୍ମୀ ଉପଭୋଗ କରନ୍ତୁ ।'

ଚକ୍ରବର୍ତ୍ତୀ ନରବାହନଦତ୍ତ ଅଯାଚିତ ଭାବେ ତାଙ୍କ ସିଦ୍ଧିରେ ସହାୟକ ହୋଇଥିବା ମହର୍ଷି ବାମଦେବଙ୍କ ଚରଣରେ ପ୍ରଣାମ ଜଣାଇ ଅମୃତପ୍ରଭଙ୍କ ସହିତ ଆକାଶ ମାର୍ଗରେ ପ୍ରତ୍ୟାବର୍ତ୍ତନ କଲେ । ମୁହୂର୍ତ୍ତକ ମଧ୍ୟରେ ସର୍ବବିଦ୍ୟାର ଆଧାରଭୂତା ଶ୍ୱଶ୍ରୁ ଧନବତୀଙ୍କ ଦ୍ୱାରା ଚତୁର୍ଦ୍ଦିଗରୁ ସୁରକ୍ଷିତ ଗୋବିନ୍ଦକୂଟ ପର୍ବତରେ ଆସି ଅବତରଣ କଲେ । ସେଠାରେ ରାଣୀ, ସଚିବ ଓ ବନ୍ଧୁରାଜାମାନେ ତାଙ୍କୁ ଉତ୍କଣ୍ଠାର ସହିତ ଅପେକ୍ଷା କରିଥାନ୍ତି । ସମ୍ରାଟଙ୍କୁ ଦେଖି ସମସ୍ତେ ଆଶ୍ୱସ୍ତ ହେଲେ । ବାମଦେବ ଋଷିଙ୍କ ନିକଟରେ ପହଞ୍ଚିବାଠାରୁ ପଞ୍ଚରତ୍ନ ସିଦ୍ଧ କରିବା ପର୍ଯ୍ୟନ୍ତ ସମସ୍ତ ଘଟଣା ବର୍ଣ୍ଣନା କରନ୍ତେ ସଭାସ୍ଥଳୀ ଆନନ୍ଦ କୋଳାହଳରେ ମୁଖରିତ ହୋଇଉଠିଲା । ଉପସ୍ଥିତ ସମସ୍ତେ ତାଙ୍କ ସାହସ ଏବଂ ବୀରତ୍ୱକୁ ଧନ୍ୟ ଧନ୍ୟ କଲେ । ଗୋବିନ୍ଦକୂଟ ଆନୋନ୍ଦତ୍ସବରେ ଫାଟିପଡ଼ିଲା । ଅଦ୍ଭୁତ, ଅଲୌକିକ ବାଦ୍ୟନାଦରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ମଦିରାପାନରେ ସମସ୍ତେ ଉନ୍ମତ୍ତ ହୋଇଉଠିଲେ । ବିଦ୍ୟାଧରୀମାନଙ୍କ ନୃତ୍ୟ ଉତ୍ସବର ମାଦକତା ବୃଦ୍ଧି କଲା ।

ପରଦିନ ଜୈତ୍ର ଯାତ୍ରାପାଇଁ ନରବାହନଦତ୍ତ ଆଦେଶ ଦେଲେ । ଏପରି ଏକ ଶୁଭଲଗ୍ନ ନିର୍ଣ୍ଣୀତ ହେଲା ଯାହାଦ୍ୱାରା ବହୁକଲ୍ୟାଣ ସାଧିତ ହୋଇପାରିବ । ସେତେବେଳେ ପ୍ରତିକୂଳ ଗ୍ରହମାନେ ଶତ୍ରୁ ସ୍ଥାନରେ ଥିଲେ । ଅନୁକୂଳ ଗ୍ରହମାନେ କଣ୍ଟକ ସ୍ଥାନକୁ ଆକ୍ରାନ୍ତ କରୁଥିଲେ । ତାରା, ବାର, ତିଥି ମଙ୍ଗଳମୟ ଥିଲା । ଏପରି ଏକ ଶୁଭ ମୁହୂର୍ତ୍ତରେ ବିଜୟାଭିଳାଷୀ ନରବାହନଦତ୍ତ ସମସ୍ତ ଶୁଭ ଅନୁଷ୍ଠାନ ଶେଷକରି ଭଗବାନ ଶଙ୍କରଙ୍କଦ୍ୱାରା ପ୍ରଦତ୍ତ ବ୍ରହ୍ମ ନିର୍ମିତ ମହାପଦ୍ମବିମାନ ଉପରେ ଆସୀନ ହେଲେ । ରାଣୀ, ମହାରାଣୀ ଓ ପରିଜନମାନଙ୍କ ସହିତ ବିମାନ ମନ୍ଦରଦେବର ଦୁର୍ଗ ଅଭିମୁଖରେ ଅଗ୍ରସର ହେଲା ।

ମହାମହାରଥୀ ଓ ବିଶ୍ୱସ୍ତ ଅନୁଚର ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କୁ ପରିବେଷ୍ଟନ କରି ରହିଥାନ୍ତି । ନିର୍ଭୀକ ଓ ବିଶ୍ୱସ୍ତ ସେନାପତି ହରିଶିଖଙ୍କ ଇଙ୍ଗିତ କ୍ରମେ ସମସ୍ତ ଗନ୍ଧର୍ବ ଓ ବିଦ୍ୟାଧର ଅଧିପତି, ବୀର ପିଙ୍ଗଳଗାନ୍ଧାର, ପରାକ୍ରମୀ ବାୟୁପଥ, ବିଦ୍ୟୁତ୍‌ପୁଞ୍ଜ, ଅମିତଗତି, କାଳକୂଟ ପର୍ବତାଧିପତି, ମନ୍ଦର, ମହାଦଂଷ୍ଟ୍ର, ମିତ୍ର ଅମୃତପ୍ରଭ, ସାଗରଦତ୍ତଙ୍କ ସହିତ ବୀର ଚିତ୍ରାଙ୍ଗଦ ଏବଂ ଗୌରୀମୁଣ୍ଡଙ୍କ ଆଶ୍ରିତ ରାଜନ୍ୟ ବୃନ୍ଦ ନିଜନିଜ

ସେନାବାହିନୀ ସହିତ ଏହି ବିଜୟ ଯାତ୍ରାରେ ଚକ୍ରବର୍ତ୍ତୀଙ୍କୁ ଅନୁସରଣ କଲେ । ପୁତ୍ର ଚଣ୍ଡସିଂହ ସହିତ ମହାପ୍ରଭାବଶାଳିନୀ ଧନବତୀ ମଧ୍ୟ ଜାମାତାଙ୍କ ସହିତ ରହିଥାନ୍ତି । ନରବାହନଦତ୍ତଙ୍କ ଅମିତ ତେଜୋରାଶିରେ ଭଗବାନ୍ ଛାୟାପତି କାଳେ ଲଜ୍ଜିତ ଓ କ୍ରୋଧାନ୍ୱିତ ହେବେ ବୋଲି ସେନାବାହିନୀ ଆକାଶ ମଣ୍ଡଳକୁ ଆଚ୍ଛନ୍ନ କରି ରଖିଥାନ୍ତି ।

ପ୍ରଥମେ ସମୁଦାୟ ସେନାବାହିନୀ ଦେବର୍ଷିମାନଙ୍କ ଦ୍ୱାରା ସେବିତ ମାନସ ସରୋବରକୁ ଲଙ୍ଘନ କଲେ । ଏହାପରେ ଦିବ୍ୟାଙ୍ଗନାମାନଙ୍କ କ୍ରୀଡ଼ା ପର୍ବତ ଗଣ୍ଡଶୈଳ ଅତିକ୍ରମ କରି ସେମାନେ କୈଳାସ ପର୍ବତର ପାଦଦେଶରେ ଆସି ଉପସ୍ଥିତ ହେଲେ । ସ୍ଫଟିକ ତୁଲ୍ୟ ଶୁଭ୍ର କୈଳାସ ସତେ ଯେପରି ନିଜର ଯଶୋରାଶିଦ୍ୱାରା ଧବଳ ଦେଖାଯାଉଥିଲା । ସେଠାରେ ପ୍ରବାହିତ ମନ୍ଦାକିନୀ ତୀରରେ ସେମାନେ ଅବତରଣ କଲେ । ରଣନୀତି ନିପୁଣ ବିଦ୍ୟାଧର ରାଜ ମନ୍ଦର ଜାମାତା ନରବାହନଦତ୍ତଙ୍କୁ ନିବେଦନ କଲେ, 'ଦେବ ! ଆଜି ଏହି ମନ୍ଦାକିନୀ ତୀରରେ ଆମର ପ୍ରଥମ ଶିବିର ସ୍ଥାପିତ ହେଉ । ଏହି ସ୍ୱର୍ଗଙ୍ଗାଙ୍କୁ ଉଲ୍ଲଙ୍ଘନ କରି ଆଗରେ ଥିବା କୈଳାସ ପର୍ବତ ପ୍ରତି ଅଗ୍ରସର ହେବା ଉଚିତ ହେବନାହିଁ । ଏହା ଦେବଦେବ ମହାଦେବଙ୍କ ନିବାସ ସ୍ଥାନ । ଏହାକୁ ଲଂଘନ କଲେ ସମସ୍ତ ବିଦ୍ୟା ନଷ୍ଟ ହୋଇଯାନ୍ତି । ତେଣୁ ପର୍ବତର ଉତ୍ତରଭାଗରେ ଥିବା ତ୍ରିଶୀର୍ଷ ନାମକ ଗୁହା ମଧ୍ୟ ଦେଇ ହିଁ ଆମକୁ ଯିବାକୁ ପଡ଼ିବ । ରାଜା ଦେବମାୟଙ୍କଦ୍ୱାରା ଗୁହାଟି ସୁରକ୍ଷିତ । ସେ ଅତ୍ୟନ୍ତ ପରାକ୍ରମଶାଳୀ । ତାଙ୍କୁ ପରାସ୍ତ ନକରି ଗୁହା ଅତିକ୍ରମ କରିବା ସମ୍ଭବ ନୁହେଁ ।'

ଧନବତୀ ମଧ୍ୟ ମନ୍ଦରଦେବଙ୍କ କଥା ସମର୍ଥନ କଲେ । ତେଣୁ ସମ୍ରାଟଙ୍କ ସହିତ ସେନାବାହିନୀ ଦିନଟିଏପାଇଁ ସେଠାରେ ବିଶ୍ରାମ ନେଲେ । ସେଠାରୁ ସଚିବମାନଙ୍କ ମନ୍ତ୍ରଣା କ୍ରମେ ଦେବମାୟଙ୍କ ନିକଟକୁ ଶାନ୍ତି ପ୍ରସ୍ତାବ ରଖି ଜଣେ ଦୂତ ପଠାଗଲା । କିନ୍ତୁ ଦେବମାୟା ଏହାକୁ ପ୍ରତ୍ୟାଖ୍ୟାନ କଲେ ।

ପରଦିନ ସଶସ୍ତ୍ର ସେନାବାହିନୀ ପ୍ରତିପକ୍ଷ ଦେବମାୟଙ୍କୁ ଆକ୍ରମଣ କରିବାପାଇଁ ଅଗ୍ରସର ହେଲା । ଦେବମାୟ ମଧ୍ୟ ଏହା ଜାଣିପାରି ବରାହ, ବଜ୍ରମୁଷ୍ଟି ପ୍ରଭୃତି ବହୁ ବନ୍ଧୁରାଜାଙ୍କ ସହିତ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଆସିଲେ । କୈଳାସ ପର୍ବତ ଉପରେ ଯୁଦ୍ଧ ଆରମ୍ଭ ହେଲା । ଦେବତାମାନେ ଏହି ଯୁଦ୍ଧଦର୍ଶନ କରିବା ଉତ୍କଣ୍ଠାରୁ ନିଜ ନିଜ ବିମାନଦ୍ୱାରା ଆକାଶକୁ ଆଚ୍ଛାଦନ କଲେ । ମନେହେଲା ଅକାଳରେ ଭୟଙ୍କର ବର୍ଷାଋତୁ ଯେପରି ଆରମ୍ଭ ହୋଇଛି । କର୍ତ୍ତିତ ମସ୍ତକଗୁଡ଼ିକ କରକା (କୁଆପଥର)ପରି ପଡୁଥାନ୍ତି । ବୀର ଯୋଦ୍ଧାମାନଙ୍କର ରଣହୁଙ୍କାର ବଜ୍ରନାଦପରି ମନେହେଉଥାଏ ।

ଏହି ଯୁଦ୍ଧରେ ଚଣ୍ଡସିଂହ ଦେବମାୟର ସେନାପତି ବରାହଙ୍କୁ ନିହତ କରିବା କିଛି ଆଶ୍ଚର୍ଯ୍ୟଜନକ ଘଟଣା ନଥିଲା । କିନ୍ତୁ ସବୁଠାରୁ ବଡ଼ ଆଶ୍ଚର୍ଯ୍ୟକର ଘଟଣା ଥିଲା, ମାନବ ନରବାହନଦତ୍ତଙ୍କ ଖଡ଼ଗ୍ ପ୍ରହାରରେ ମୂର୍ଚ୍ଛିତ ହୋଇ ବିଦ୍ୟାଧର ଅଧିପତି ଦେବମାୟ, ମାୟାବୀ ହୋଇ ସୁଦ୍ଧା, ବନ୍ଦୀ ହେଲା । ତାର ଏ ଅବସ୍ଥା ଦେଖି ବଜ୍ରମୁଷ୍ଟି, ମହାବାହୁ, ତୀକ୍ଷ୍ଣଦ୍ରଂଷ୍ଟ୍ର ପ୍ରଭୃତି ମହାରଥୀମାନେ ନିଜନିଜ ସେନାବାହିନୀ ସହିତ ଛତ୍ରଭଙ୍ଗ ଦେଲେ । ଦେବତାମାନେ ନରବାହନଦତ୍ତଙ୍କୁ ସାଧୁବାଦ ଦେବାକୁ ଲାଗିଲେ ।

ନରବାହନଦତ୍ତ ନିଜେ ବନ୍ଦୀ କରି ଆଣିଥିବା ଦେବମାୟଙ୍କୁ ହତ୍ୟା କଲେ ନାହିଁ । ସେ ଏପରି ଜଣେ ନିର୍ଭୀକ ବୀରଙ୍କୁ ବନ୍ଦୀ କରିଥିବା ଯୋଗୁଁ ପ୍ରସନ୍ନ ଚିତ୍ତରେ ତାଙ୍କୁ କ୍ଷମାଦେଲେ ଏବଂ ମୁକ୍ତ କରିଦେଲେ । ଦେବମାୟ ମଧ୍ୟ ନରବାହନଦତ୍ତଙ୍କ ବାହୁବଳରେ ପରାଜିତ ହୋଇ ବଜ୍ରମୁଷ୍ଟି ପ୍ରଭୃତି ସ୍ୱପକ୍ଷୀୟ ରାଜାମାନଙ୍କ ସହିତ ତାଙ୍କ ଅଧୀନତା ସ୍ୱୀକାର କଲେ ।

ଯୁଦ୍ଧ ସମାପ୍ତ ହେଲା । ସେହିଦିନଟି ସମସ୍ତେ ସେଠାରେ ବିଶ୍ରାମ ନେଲେ । ପରଦିନ ସେହି ଅଦ୍ଭୁତ ଗୁହା ମଧ୍ୟରେ ପ୍ରବେଶ କରିବା କଥା । ପ୍ରଭାତରୁ ନରବାହନଦତ୍ତ ମନ୍ତ୍ରଣା ସଭାରେ ଯାଇ ଉପସ୍ଥିତ ହେଲେ । ନିଜର ସଚିବ ଓ ସେନାପତିମାନଙ୍କ ସହିତ ଦେବମାୟ ମଧ୍ୟ ସେଠାରେ ଉପସ୍ଥିତ ଥାନ୍ତି । ଗୁହାର ଇତିହାସ ଜାଣିବା ପାଇଁ ନରବାହନଦତ୍ତ ଦେବମାୟଙ୍କୁ ପ୍ରଶ୍ନ କଲେ । ଉତ୍ତରରେ ଦେବମାୟ ଜଣାଇଲେ–

## ତ୍ରିଶୀର୍ଷ ଗୁହାର ଇତିବୃତ୍ତ

'ଦେବ ! ପୂର୍ବେ ବିଶିଷ୍ଟ ବିଦ୍ୟାଧରମାନଙ୍କ ନିବାସଭୂମି ଏହି କୈଳାସ ପର୍ବତ ଦୁଇଭାଗରେ ବିଭକ୍ତ ଥିଲା–ଉତ୍ତରଭାଗ ଓ ଦକ୍ଷିଣଭାଗ । ସେତେବେଳେ ପ୍ରତ୍ୟେକ ଭାଗ ଭିନ୍ନ ଭିନ୍ନ ସାମ୍ରାଜ୍ୟ ରୂପେ ବିବେଚିତ ହେଉଥିଲା ଏବଂ ଦୁଇଜଣ ଚକ୍ରବର୍ତ୍ତୀ ସମ୍ରାଟ ଏ ଉଭୟର ଶାସନ ଦାୟିତ୍ୱରେ ଥିଲେ । ପରେ ଋଷଭ ନାମକ ଜଣେ ବ୍ୟକ୍ତି ଭଗବାନ ଶଙ୍କରଙ୍କୁ ତପସ୍ୟାରେ ସନ୍ତୁଷ୍ଟ କରିବା ଯୋଗୁଁ ମହାଦେବ ଉଭୟ ଭାଗକୁ ଏକତ୍ର କରି ଏକମାତ୍ର ଚକ୍ରବର୍ତ୍ତୀଙ୍କ ଅଧୀନକୁ ନେଇଆସିଲେ । ଋଷଭ ଉଭୟର ଏକାଙ୍ଗ ଚକ୍ରବର୍ତ୍ତୀ ହେଲେ ।

ସେତେବେଳେ ଉତ୍ତରଭାଗକୁ ଯିବାକୁ ହେଲେ କୈଳାସ ପର୍ବତ ଲଙ୍ଘନ କରିବାକୁ ପଡୁଥିଲା । ଥରେ ଋଷଭ କୈଳାସ ଲଙ୍ଘନ କରୁଥିବା ବେଳେ ନିମ୍ନରୁ ଭଗବାନ ଶଙ୍କର

ତାଙ୍କୁ ଦେଖି କ୍ରୋଧାନ୍ୱିତ ହେଲେ । ଶିବ-କୋପରୁ ତାଙ୍କର ସମସ୍ତ ବିଦ୍ୟା ନଷ୍ଟ ହେଲା । ସେ ସ୍ୱର୍ଗରାଜ୍ୟରୁ ବିଚ୍ୟୁତ ହେଲେ । ଏଥିରେ ଦୁଃଖିତ ହୋଇ ରୁଷଭ ପୁଣି ଘୋର ତପସ୍ୟାରେ କୈଳାସପତିଙ୍କୁ ସନ୍ତୁଷ୍ଟ କଲେ ଏବଂ ଉଭୟ ଭାଗର ଚକ୍ରବର୍ତ୍ତୀତ୍ୱ ପୁଣି ଫେରିପାଇଲେ । ସେତେବେଳେ ସେ ଭଗବାନଙ୍କୁ ଜଣାଇଲେ ଯେ ଯଦି ସେ କୈଳାସ ଉଲ୍ଲଙ୍ଘନ ନ କରନ୍ତି ତା'ହେଲେ ଉଭୟ ଦିଗରେ ଥିବା ବିଦ୍ୟାଧର ସାମ୍ରାଜ୍ୟ ଶାସନ କରିବା କିପରି ସମ୍ଭବ ହେବ ? କୈଳାସ ଉଲ୍ଲଙ୍ଘନ ବିନା ଦକ୍ଷିଣରୁ ଉତ୍ତରକୁ ଯିବାପାଇଁ ଅନ୍ୟ କୌଣସି ମାର୍ଗ ନାହିଁ । ପିନାକପାଣି ଶିବ ତାଙ୍କ କଥାର ସତ୍ୟତା ଉପଲବ୍ଧି କରି ଏହି ବିଶାଳଗୁହା ପ୍ରସ୍ତୁତ କଲେ । ନିଜ ମଧ୍ୟରେ ଏପରି ଏକ ବିରାଟ ପଥ ପ୍ରସ୍ତୁତ ହେବାରୁ କୈଳାସ କ୍ଷୁଣ୍ଣ ହୋଇ ଭଗବାନଙ୍କୁ ନିବେଦନ କଲେ, 'ଭଗବନ୍ ! ମୋର ଉତ୍ତର ଦିଗ ଆଜି ପର୍ଯ୍ୟନ୍ତ ମନୁଷ୍ୟମାନଙ୍କପାଇଁ ଅଗମ୍ୟ ଥିଲା, କିନ୍ତୁ ଏହି ଗୁହା ପଥଟି ସୃଷ୍ଟି ହେବା ଫଳରେ ମନୁଷ୍ୟମାନେ ବର୍ତ୍ତମାନ ଅନାୟାସରେ ଉତ୍ତରଭାଗକୁ ଯାଇପାରିବେ । ତେଣୁ ହେ ମଙ୍ଗଳମୟ ! ଆପଣ ଏପରି କିଛି ବ୍ୟବସ୍ଥା କରନ୍ତୁ ଯେଉଁଥିରେ ମୋର ଗୌରବ ନଷ୍ଟ ହେବ ନାହିଁ ।' କୈଳାସର ନିବେଦନ ବ୍ୟର୍ଥ ହେଲା ନାହିଁ । ଭଗବାନ ତାର ଯଥାର୍ଥତା ଉପଲବ୍ଧି କରି ଗୁହାଟିର ସୁରକ୍ଷା ନିମିତ୍ତ ଦିଗ୍ଗଜ, ଦୃକ୍‌ବିଷ (ଶତ୍ରୁକୁ ଦେଖିବା ମାତ୍ରେ ଯେଉଁମାନଙ୍କର ଚକ୍ଷୁରୁ ବିଷଜ୍ୱାଳା ନିର୍ଗତ ହେବ) ସର୍ପରାଜ ଏବଂ ଗୁହ୍ୟକମାନଙ୍କୁ ନିଯୁକ୍ତ କଲେ । ଏହାର ଦକ୍ଷିଣଦ୍ୱାର ବିଦ୍ୟାଧରାଧିପତି ମହାମାୟ ଏବଂ ଉତ୍ତରଦ୍ୱାର କାଳରାତ୍ରି, ଚଣ୍ଡିକା ଏବଂ ଅପରାଜିତାଙ୍କ ଦ୍ୱାରା ସୁରକ୍ଷିତ ରହିଛି ।

ଏହିପରି ଭଗବାନ ଗୁହାଟିକୁ ସୁରକ୍ଷିତ କରି ମହାରତ୍ନଗୁଡ଼ିକୁ ସୃଷ୍ଟି କଲେ । ତାଙ୍କ ନିର୍ଦ୍ଦେଶ ହେଲା, 'ଯେଉଁ ବ୍ୟକ୍ତି ଏହି ରତ୍ନଗୁଡ଼ିକୁ ସିଦ୍ଧ କରିବ ସେ କେବଳ ନିଜର ପତ୍ନୀ, ଦୂତ ଏବଂ ପରିଜନମାନଙ୍କ ସହିତ ବିଦ୍ୟାଧର ଚକ୍ରବର୍ତ୍ତୀତ୍ୱ ଲାଭ କରି ଏହି ଉଭୟ ଦ୍ୱାରଯୁକ୍ତ ଗୁହାକୁ ଅତିକ୍ରମ କରିପାରିବ । ଚକ୍ରବର୍ତ୍ତୀଙ୍କ ଅନୁମତି କ୍ରମେ ଅନ୍ୟ ରାଜା ବା ବ୍ୟକ୍ତି ଏହି ପଥ ଦେଇ ଗତାଗତ କରିପାରିବେ କିନ୍ତୁ ଅନ୍ୟ କେହି ଏହା ମଧ୍ୟରେ ପ୍ରବେଶ କରିବା ସମ୍ଭବ ନୁହେଁ ।'

ଭଗବାନ ତ୍ରିଲୋଚନଙ୍କ ଏ ପ୍ରକାର ବ୍ୟବସ୍ଥାରେ ରୁଷଭ କେବଳ ଗର୍ବିତ ନୁହେଁ ଉଦ୍ଧତ ମଧ୍ୟ ହୋଇପଡ଼ିଲେ । ସେ ଦେବଲୋକକୁ ନିଜର ଅଧୀନସ୍ଥ କରିବାପାଇଁ ଦେବତାମାନଙ୍କୁ ଆକ୍ରମଣ କଲେ । ସେହି ସଂଗ୍ରାମରେ ଇନ୍ଦ୍ରଙ୍କ ବଜ୍ରଦ୍ୱାରା ତାଙ୍କର ମୃତ୍ୟୁ ଘଟିଲା ।

'ରାଜନ୍ ! ଏହାହିଁ ଏହି ତ୍ରିଶୀର୍ଷ ଗୁହାର ଇତିହାସ । ଆପଣଙ୍କ ବ୍ୟତୀତ ଅନ୍ୟମାନଙ୍କପାଇଁ ଏହା ଅଗମ୍ୟ । କୈଳାସପତିଙ୍କଦ୍ୱାରା ଦକ୍ଷିଣଦ୍ୱାରର ଦ୍ୱାରପାଳ ରୂପେ ନିଯୁକ୍ତ ମହାମାୟଙ୍କ ବଂଶରେ ମୋର ଜନ୍ମ । ମୁଁ ଜନ୍ମ ହେବା ବେଳେ ଶୂନ୍ୟବାଣୀ ହୋଇଥିଲା ଯେ ବିଦ୍ୟାଧରମାନଙ୍କ ସଂଗ୍ରାମରେ ମୁଁ ପରାଜିତ ହେବିନାହିଁ । ଯିଏ ମୋତେ ପରାସ୍ତ କରିବ ସେ ଚକ୍ରବର୍ତ୍ତୀ ହେବ ଏବଂ ମୋର ସ୍ୱାମୀ ହେବ । ତେଣୁ ବର୍ତ୍ତମାନ ଆପଣ ମୋର ସ୍ୱାମୀ ଏବଂ ମୁଁ ଆପଣଙ୍କ ଆଜ୍ଞାବହ ସେବକ । ଆପଣ ରତ୍ନସିଦ୍ଧ, ପ୍ରଭାବଶାଳୀ ଏବଂ କୈଳାସର ଉଭୟ ଭାଗର ଚକ୍ରବର୍ତ୍ତୀ; ତେଣୁ ଆମ ସମସ୍ତଙ୍କ ପ୍ରଭୁ । ବର୍ତ୍ତମାନ ଏହି ତ୍ରିଶୀର୍ଷ ଗୁହା ଅତିକ୍ରମ କରି ଅପରାପର ଶତ୍ରୁମାନଙ୍କୁ ପରାଜିତ କରନ୍ତୁ ।'

ଦେବମାୟଙ୍କଠାରୁ ଗୁହାର ଇତିହାସ ଏବଂ ତାକୁ ଅତିକ୍ରମ କରିବାର ଉପାୟ ଅବଗତ ହୋଇ ସେହିଦିନ ତ୍ରିଶୀର୍ଷର ଦକ୍ଷିଣଦ୍ୱାରରେ ଶିବିକା ସ୍ଥାପନ ନିମିତ୍ତ ଯୋଜନା କରାଗଲା । ଚକ୍ରବର୍ତ୍ତୀ ମହାରାଜାଙ୍କ ନିର୍ଦ୍ଦେଶ କ୍ରମେ ସୈନ୍ୟବାହିନୀ ସେହି ରାତ୍ରିଟିପାଇଁ ସେଠାରେ ବିଶ୍ରାମ ନେଲେ ।

ନରବାହନଦତ୍ତ ଗୁହାର ଦ୍ୱାରଦେଶରୁ ତା' ମଧ୍ୟକୁ ଦୃଷ୍ଟିପାତ କଲେ । ଗୁହାଟିର ଅଭ୍ୟନ୍ତର ଯେପରି ବିସ୍ତୃତ ସେହିପରି ଗଭୀର ଥିଲା । ଗୁହା ମଧ୍ୟସ୍ଥ ନିରନ୍ଧ୍ର ଅନ୍ଧକାର ମହାପ୍ରଳୟକାଳୀନ ସୂର୍ଯ୍ୟଚନ୍ଦ୍ରହୀନ ତମିସ୍ରା ପରି ମନେହେଉଥିଲା । ପରଦିନ ପ୍ରଭାତରୁ ନରବାହନଦତ୍ତ ଯଥାବିଧି ଗୁହାଟିର ପୂଜା କଲେ । ଭଗବାନ ଶଙ୍କରଙ୍କୁ ଧ୍ୟାନ କରି ସେ ସମସ୍ତ ପୂର୍ବସିଦ୍ଧ ରତ୍ନ ଏବଂ ସପରିବାର ବିମାନ ପୃଷ୍ଠରେ ସେହି ଅନ୍ଧକାରାଚ୍ଛନ୍ନ ଗୁହା ମଧ୍ୟରେ ପ୍ରବେଶ କଲେ । ଅନ୍ଧକାରକୁ ଚନ୍ଦ୍ରିକା ରତ୍ନଦ୍ୱାରା, ସର୍ପର ବିଷାକ୍ତ ଚକ୍ଷୁକୁ ଚନ୍ଦନ ରତ୍ନ ଦ୍ୱାରା, ଦିଗ୍ଗଜମାନଙ୍କୁ ହସ୍ତୀ ରତ୍ନ, ଗୁହ୍ୟକମାନଙ୍କୁ ଖଡ୍ଗ ରତ୍ନ ଏବଂ ଅନ୍ୟାନ୍ୟ ପ୍ରତିବନ୍ଧକଗୁଡ଼ିକୁ ଅବଶିଷ୍ଟ ରତ୍ନଦ୍ୱାରା ଦୂରୀଭୂତ କରି ସେ ଅନାୟାସରେ ସସୈନ୍ୟ ଗୁହାଟିକୁ ଅତିକ୍ରମ କଲେ ।

ଗୁହାର ଉତ୍ତର ମୁଖରୁ ନିଷ୍କ୍ରାନ୍ତ ହୋଇ କୈଳାସର ଉତ୍ତର ଦିଗରେ ପହଞ୍ଚିବାରୁ ସେ ବିନା ପୁନର୍ଜନ୍ମରେ ଅନ୍ୟ ଏକ ଜୀବଲୋକରେ ପହଞ୍ଚିଗଲେ । ଶୂନ୍ୟରୁ ଧନ୍ୟ ଧନ୍ୟ ବାଣୀ ଶୁଣାଗଲା । ଦେବତାମାନେ ତାଙ୍କ ସିଦ୍ଧି ଓ ପରାକ୍ରମର ଭୂରିଭୂରି ପ୍ରଶଂସା କଲେ ।

ଏ ସମୟରେ ଧନବତୀ ଓ ଦେବମାୟ ନରବାହନଦତ୍ତଙ୍କୁ କହିଲେ, 'ରାଜନ୍ ! ଏହି ଦ୍ୱାରରେ ସ୍ୱୟଂ କାଳରାତ୍ରି ସର୍ବଦା ଜାଗ୍ରତ ଅଛନ୍ତି । ଏହି ଦେବୀ ଭଗବାନ

ବିଷ୍ଣୁଙ୍କଦ୍ୱାରା ସୃଷ୍ଟ । ସମୁଦ୍ର ମନ୍ଥନ ବେଳେ ଅମୃତ ସବୁକୁ ଅପହରଣ କରିନେବାପାଇଁ ଉଦ୍ୟମ କରୁଥିବା ଅସୁରମାନଙ୍କୁ ଦମନ କରିବା ନିମିତ୍ତ ଏହାଙ୍କର ଜନ୍ମ । ସେ କୈଳାସପତିଙ୍କର ଆଦେଶରେ ଗୁହାର ଏହି ଦ୍ୱାରକୁ ରକ୍ଷା କରୁଛନ୍ତି । ଆପଣଙ୍କ ପରି ଚକ୍ରବର୍ତ୍ତୀମାନଙ୍କ ବ୍ୟତୀତ ଅନ୍ୟକେହି ତାଙ୍କ ଅଜ୍ଞାତରେ ଗୁହା ମଧ୍ୟରୁ ନିଷ୍କ୍ରାନ୍ତ ହେବା ସମ୍ଭବ ନୁହେଁ । ଆପଣ ଚକ୍ରବର୍ତ୍ତୀ, ସମସ୍ତ ରତ୍ନକୁ ସିଦ୍ଧ କରିପାରିଛନ୍ତି, ତେଣୁ ଏହି ଗୁହାକୁ ଅତିକ୍ରମ କରିଆସିଛନ୍ତି । ବର୍ତ୍ତମାନ ଶତ୍ରୁକୁ ଜୟ କରିବାର ସମୟ । ଏଣୁ ବିଜୟ ପ୍ରାପ୍ତିପାଇଁ କାଳରାତ୍ରିଙ୍କୁ ଯଥାବିଧି ଆରାଧନା କରିବା ଉଚିତ ।'

ଧନବତୀ ଓ ଦେବମାୟ ଏପରି ପରାମର୍ଶ ଦେଉଥିବା ବେଳେ ସୂର୍ଯ୍ୟ ଅସ୍ତାଚଳଗାମୀ ହେଲେ । କୈଳାସର ଉତ୍ତରଶିଖର ସଂଧ୍ୟାକାଳୀନ ରକ୍ତିମାରେ ରଞ୍ଜିତ ହେଲା । ଏହା ସତେ ଯେପରି ଆଗାମୀ ସଂଗ୍ରାମରେ ପ୍ରବଳ ରକ୍ତପାତର ସୂଚନା ଦେଉଥିଲା । ଧୀରେଧୀରେ ଚତୁର୍ଦ୍ଦିଗ ଘୋର ଅନ୍ଧକାରରେ ଆଚ୍ଛନ୍ନ ହେଲା । ପରାଜିତ ହୋଇଥିବା ଯୋଗୁଁ ମନେହେଉଥିଲା ଗୁହା ମଧ୍ୟସ୍ଥିତ ଅନ୍ଧକାର ରାଶି ସେମାନଙ୍କୁ ଆକ୍ରାନ୍ତ କରୁଛି । ସୈନ୍ୟବାହିନୀ ସହ ନରବାହନଦତ୍ତ ସମଗ୍ର ଶିଖରକୁ ଚତୁର୍ଦ୍ଦିଗରୁ ପରିବେଷ୍ଟନ କଲେ । ଭୂତ, ବେତାଳ, ଡାକିନୀ ଓ ଶୃଗାଳମାନଙ୍କ ଚିତ୍କାରରେ ଚତୁର୍ଦ୍ଦିଗ ଅଧିକ ଭୟଙ୍କର ହୋଇଉଠିଲା । କାଳରାତ୍ରୀ ନରବାହନଦତ୍ତଙ୍କୁ ତାଙ୍କ ଉପାସନାରେ ଅବହେଳା କରିଥିବା ଯୋଗୁଁ ସତେଯେପରି ପ୍ରତିଶୋଧ ନେବାକୁ ଚାହୁଁଛନ୍ତି । ଦେଖୁଦେଖୁ ନରବାହନଦତ୍ତଙ୍କ ପତ୍ନୀ, ସଚିବ ଏବଂ ସମଗ୍ର ସେନା ମୂର୍ଚ୍ଛିତ ହୋଇପଡ଼ିଲେ । ଏକମାତ୍ର ନରବାହନଦତ୍ତ ହିଁ ଜାଗ୍ରତ ଥାନ୍ତି । ଏସବୁକୁ ଦେବୀଙ୍କ ଅସନ୍ତୋଷର ପ୍ରଭାବ ମନେକରି ସେ ସ୍ତୁତି ରୂପକ ପୁଷ୍ପଦ୍ୱାରା କାଳରାତ୍ରିଙ୍କ ମାନସପୂଜା ଆରମ୍ଭ କଲେ ।

'ଆଶୀରଣ୍ଟକ୍ରସଞ୍ଚାରଚତୁରା ପ୍ରଣବାକୃତିଃ
ତ୍ୱଂ ପ୍ରାଣଶକ୍ତିର୍ଜନ୍ତୂନାଂ ଜୀବନୀ ତ୍ୱାଂ ନମାମ୍ୟହମ୍ ।
ସ୍ରବନ୍ମହିଷକଣ୍ଠାସ୍ରଧାରାଭିସ୍ତ୍ରିଶିଖାଶ୍ରିଭିଃ
ଆଶ୍ୱାସିତତ୍ରିଭୁବନେ ଦୁର୍ଗାରୂପେ ନମୋଽସ୍ତୁ ତେ ।
ରୁରୁରକ୍ତଭୃତଭ୍ରାନ୍ତକରଘିତକପାଳୟା
ନୃତ୍ୟନ୍ତ୍ୟା ତ୍ରିଜଗଦ୍ରକ୍ଷାପାତ୍ରଯେବ ଜିତଂ ତ୍ୱୟା ।
ଉର୍ଦ୍ଧ୍ୱାକ୍ଷିଦୀପ୍ତିଦୀପାଗ୍ର୍ୟକପାଳା କାଳରାତ୍ର୍ୟପି
କପାଳହସ୍ତା ସାର୍କେନ୍ଦୁରିବ ଭାସି ଭବପ୍ରିୟେ ।'

ଅର୍ଥାତ୍ ଭଗବତି କାଳରାତ୍ରି ! ଆପଣ ସହସ୍ରାର ଚକ୍ରପର୍ଯ୍ୟନ୍ତ ପରିବ୍ୟାପ୍ତ । ଆପଣ ଓଁକାର ରୂପିଣୀ, ସମସ୍ତ ଜୀବଜଗତର ପ୍ରାଣ ଶକ୍ତି ସ୍ୱରୂପିଣୀ । ମୁଁ ନରବାହନଦତ୍ତ ଆପଣଙ୍କୁ ପ୍ରଣାମ କରୁଛି । ଆପଣ ମହିଷାସୁରମର୍ଦ୍ଦିନୀ । ଆପଣଙ୍କ ତ୍ରିଶୂଳ ସେହି ଦୁଷ୍ଟ ରାକ୍ଷସର ରକ୍ତଧାରାରେ ରଞ୍ଜିତ । ଆପଣ ତିନିଲୋକର ଅଭୟଦାତ୍ରୀ । ମୁଁ ଆପଣଙ୍କୁ ନମସ୍କାର କରୁଅଛି । ମୃଗ ରକ୍ତରେ ପରିପୂର୍ଣ୍ଣ ନରକପାଳ ଧାରଣ କରି ଯେଉଁ ଉଦ୍ଦଣ୍ଡ ନୃତ୍ୟ କରୁଛନ୍ତି, ତାହା ତିନିଲୋକକୁ ରକ୍ଷା କରିବାପାଇଁ ଆପଣଙ୍କ ଶୁଭଙ୍କର ଉଦ୍ୟମ ବୋଲି ପ୍ରତୀତ ହେଉଛି । ଆପଣଙ୍କର ଜୟ ହେଉ । ହେ ମହାଦେବପ୍ରିୟା ! ଆପଣ ତ୍ରିନୟନୀ, ତୃତୀୟ ନେତ୍ରର ଉଜ୍ଜ୍ୱଳ ଜ୍ୟୋତିରେ ତ୍ରିଭୁବନ ଉଦ୍ଭାସିତ । ଗୋଟିଏ ହସ୍ତରେ ଆପଣ ନରକପାଳ ଧାରଣ କରିଛନ୍ତି । ଆପଣ କାଳରାତ୍ରୀ ହେଲେ ସୁଦ୍ଧା ସୂର୍ଯ୍ୟ ଏବଂ ଚନ୍ଦ୍ର ଆପଣଙ୍କ ନୟନଯୁଗଳରେ ବିଦ୍ୟମାନ । ଆପଣଙ୍କ ହସ୍ତସ୍ଥିତ ଅର୍ଦ୍ଧକପାଳ ବିଶ୍ୱବ୍ରହ୍ମାଣ୍ଡର ପ୍ରତୀକ, ମୁଁ ନରବାହନଦତ୍ତ ଆପଣଙ୍କୁ ସହସ୍ରବାର ପ୍ରଣାମ କରୁଅଛି ।

ନରବାହନଦତ୍ତଙ୍କ ସ୍ତୁତିରେ କାଳରାତ୍ରୀ ସନ୍ତୁଷ୍ଟା ହେଲାପରି ମନେହେଲେ ନାହିଁ । ଏଥିରେ ବ୍ୟଥିତ ହୋଇ ସେ ନିଜର ମସ୍ତକ ଉପହାର ପୂର୍ବକ ଦେବୀଙ୍କ ଆରାଧନା କରିବାପାଇଁ ପ୍ରସ୍ତୁତ ହେଲେ । ଆତ୍ମବଳି ପ୍ରଦାନପାଇଁ ସେ ଯେତେବେଳେ ଖଡ୍‌ଗ୍ ଉଠାଇଲେ ସେତେବେଳେ ଦେବୀ ସେଠାରେ ଆବିର୍ଭୂତା ହୋଇ କହିଲେ, 'ପୁତ୍ର ! ଏପରି ଦୁଃସାହସ କରନାହିଁ । ମୁଁ ବର୍ତ୍ତମାନ ତୁମର ସିଦ୍ଧ । ତୁମର ଏହି ସେନାବାହିନୀ ପୁଣି ଜାଗ୍ରତ ହୋଇଉଠିବେ । ତୁମେ ବିଜୟ ଲାଭ କର ।'

ଚାହୁଁଚାହୁଁ ସମଗ୍ର ସେନାବାହିନୀ ନିଦ୍ରାରୁ ଉଠିବା ପରି ଜାଗ୍ରତ ହେଲେ । ପତ୍ନୀ, ସଚିବ ଓ ବନ୍ଧୁରାଜାମାନେ ଚକ୍ରବର୍ତ୍ତୀ ସମ୍ରାଟଙ୍କ ଅପୂର୍ବ ପ୍ରଭାବ ଦେଖି ଧନ୍ୟଧନ୍ୟ କରିବାକୁ ଲାଗିଲେ । ସେଠାରେ ତିନିଦିନ ବିତିଗଲା । ପାନଭୋଜନରେ ଆପ୍ୟାୟିତ ଥିଲେ ସୁଦ୍ଧା ନରବାହନଦତ୍ତଙ୍କୁ ପ୍ରତିଟି ମୁହୂର୍ତ୍ତ ଅତ୍ୟନ୍ତ ଦୀର୍ଘ ମନେହେଉଥାଏ ।

ଚତୁର୍ଥ ଦିନ ପ୍ରଭାତରୁ କାଳରାତ୍ରୀଙ୍କ ବିଧିବଦ୍ଧ ଉପାସନା କରି ନରବାହନଦତ୍ତ ମନ୍ଦରବେଗର ସେନାପତି ଧୂମଶିଖଙ୍କୁ ଆକ୍ରମଣ କରିବାପାଇଁ ସେନାବାହିନୀକୁ ନିର୍ଦ୍ଦେଶ ଦେଲେ । ଧୂମଶିଖଙ୍କ ବିଦ୍ୟାଧର ସେନା ପ୍ରତିରୋଧ କରିବାଯୋଗୁଁ ଉଭୟଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ଆକାଶ ଖଡ୍‌ଗମୟ ହୋଇଉଠିଲା । ପୃଥିବୀ ପୃଷ୍ଠ ଛିନ୍ନ ମସ୍ତକରେ ଆଚ୍ଛାଦିତ ହୋଇପଡ଼ିଲା । ଚତୁର୍ଦ୍ଦିଗରେ କେବଳ 'ମାର, ମାର' ଧ୍ୱନି ଶୁଣାଯାଉଥାଏ । ଏହି ଯୁଦ୍ଧରେ ଧୂମଶିଖ ବନ୍ଦୀ ହେଲେ । ତାଙ୍କୁ ଆଣି ନରବାହନଦତ୍ତଙ୍କ ସମ୍ମୁଖରେ

ଉପସ୍ଥାପନ କରାଗଲା । ସେ ଚକ୍ରବର୍ତ୍ତୀ ସମ୍ରାଟଙ୍କଠାରୁ ଉପଯୁକ୍ତ ସମ୍ମାନ ଲାଭ କରି ତାଙ୍କ ଅଧୀନତା ସ୍ୱୀକାର କଲା । ସେନାବାହିନୀ ଧୂମଶିଖର ନଗରୀ ମଧ୍ୟରେ ଶିବିର ସ୍ଥାପନ କଲେ । ଧୂମଶିଖର ଗର୍ବରୂପକ ଅଗ୍ନିଶିଖା ନିର୍ବାପିତ ହେଲା ।

ପରଦିନ ଗୁପ୍ତଚରମାନେ ସମ୍ବାଦ ଦେଲେ ଯେ ଧୂମଶିଖର ପରାଜୟ ବାର୍ତ୍ତାଶୁଣି ମନ୍ଦରଦେବ ଆକ୍ରମଣପାଇଁ ସେମାନଙ୍କ ଆଡ଼କୁ ଆସୁଅଛି । ଏଥିରେ ନରବାହନଦତ୍ତ ଆନନ୍ଦିତ ହେଲେ । ତାଙ୍କ ବିଜୟ ନିଶ୍ଚିତ ଜାଣି ସେ ମଧ୍ୟ ହିତାକାଂକ୍ଷୀ ବନ୍ଧୁରାଜା ଏବଂ ସୈନ୍ୟବାହିନୀ ସହିତ ତା'ର ସମ୍ମୁଖୀନ ହେବାପାଇଁ ପ୍ରୟାଣ କଲେ ।

ଅଳ୍ପ ଦୂରରେ ହିଁ ଉଭୟଙ୍କ ସାକ୍ଷାତ ହେଲା । ମନ୍ଦରଦେବ ବ୍ୟୂହ ରଚନା କରି ସୈନ୍ୟ ଚାଳନା କରୁଥାଏ । ନରବାହନଦତ୍ତ ମଧ୍ୟ ତା'କୁ ପ୍ରତିରୋଧ କରିବାପାଇଁ ଉପଯୁକ୍ତ ବ୍ୟୂହ ରଚନା କଲେ । ଶତ୍ରୁସେନା ପ୍ରସ୍ତୁତ ହେବା ପୂର୍ବରୁ ଆକ୍ରମଣ ଆରମ୍ଭ ହେଲା । ଉଭୟ ସେନାବାହିନୀ ପ୍ରଳୟକାଳୀନ ସମୁଦ୍ରତରଙ୍ଗ ପରି ଉନ୍ମତ୍ତ ହୋଇଉଠିଲେ । ଚଣ୍ଡସିଂହ ପ୍ରଭୃତି ମହାରଥୀ ଶତ୍ରୁପକ୍ଷର କାଞ୍ଚନଦଂଷ୍ଟ୍ର ପ୍ରଭୃତି ବୀର ରାଜନ୍ୟବୃନ୍ଦଙ୍କ ସହିତ ଯୁଦ୍ଧ କରୁଥାନ୍ତି । ମହାପ୍ରଳୟ କାଳୀନ ବାତ୍ୟାପରି ଏହି ମହାସଂଗ୍ରାମ ତିନିପୁରକୁ ପ୍ରକମ୍ପିତ କଲା । ହିମାଳୟ ପ୍ରଭୃତି କୁଳାଚଳଗୁଡ଼ିକ ଦୋଦୁଲ୍ୟମାନ ହେବାକୁ ଲାଗିଲେ । କୈଳାସ ପର୍ବତର ଗୋଟିଏ ଦିଗ ରକ୍ତରଞ୍ଜିତ ହୋଇ ଲାଲ୍ ଦେଖାଯିବା ବେଳେ ଅନ୍ୟ ତୁଷାରାବୃତ ଦିଗଟି ଭସ୍ମ ଆଚ୍ଛାଦିତ ମନେହେଉଥାଏ । ଏଣୁ ସେତେବେଳେ ଗିରିରାଜ କୈଳାସ ଅର୍ଦ୍ଧନାରୀଶ୍ୱର ଶିବଙ୍କ ପରି ମନେହେଉଥାଏ । ପ୍ରକୃତରେ ଏହି ମହାଯୁଦ୍ଧ ମହାବୀରମାନଙ୍କପାଇଁ ପ୍ରଳୟ କାଳ ହିଁ ଥିଲା । ଖଡ଼୍‌ଗଗୁଡ଼ିକର ଉଜ୍ଜ୍ୱଳତା ସହସ୍ର ସୂର୍ଯ୍ୟର ଭ୍ରମ ସୃଷ୍ଟି କରୁଥାଏ । ସେଗୁଡ଼ିକର ତୀବ୍ର ତେଜରେ ଚତୁର୍ଦ୍ଦିଗ ସନ୍ତପ୍ତ ହେଲାପରି ଜଣାଯାଉଥାଏ । ପୂର୍ବରୁ ଦେବାସୁର ସଂଗ୍ରାମ ଦେଖିଥିବା ନାରଦ ପ୍ରଭୃତି ମହର୍ଷିବୃନ୍ଦ ମଧ୍ୟ ଏହି ଯୁଦ୍ଧ ଦେଖିବାପାଇଁ ଆକାଶ ମାର୍ଗରେ ରୁଣ୍ଡୀଭୂତ ହୋଇଥାନ୍ତି ।

ଏହି ଭୟଙ୍କର ଯୁଦ୍ଧରେ କାଞ୍ଚନଦଂଷ୍ଟ୍ର ପ୍ରବଳବେଗରେ ଆସି ଚଣ୍ଡସିଂହଙ୍କ ମସ୍ତକରେ ପ୍ରଚଣ୍ଡ ଗଦାଘାତ କଲେ । ଧନବତୀ ପୁତ୍ରକୁ ରଣଭୂମିରେ ମୂର୍ଚ୍ଛିତ ହୋଇ ପଡ଼ିଯିବା ଦେଖି ନିଜର ବିଦ୍ୟା ପ୍ରଭାବରେ ଉଭୟ ସେନାବାହିନୀକୁ ଅଚେତ କରିଦେଲେ । କେବଳ ନରବାହନଦତ୍ତ ଓ ମନ୍ଦରଦେବହିଁ ଜାଗ୍ରତ ଥାନ୍ତି । ଧନବତୀଙ୍କ ସଂସାର ସଂହାରକାରୀ ପ୍ରବଳ କ୍ରୋଧ ଦେଖି ଆକାଶ ମାର୍ଗରୁ ଦେବଗଣ ମଧ୍ୟ ଇତସ୍ତତଃ ପଳାୟନ କଲେ ।

ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କୁ ଏକାକୀ ଦେଖି ମନ୍ଦରଦେବ ପ୍ରଚଣ୍ଡବେଗରେ ଆକ୍ରମଣ କଲା । ନରବାହନଦତ୍ତ ନିଜ ବିମାନରୁ ଅବତରଣ କରି ସିଦ୍ଧ ଖଡ୍‌ଗଦ୍ୱାରା ପ୍ରତିଆକ୍ରମଣ କଲେ । ମନ୍ଦରଦେବ ବିଜୟପ୍ରାପ୍ତିପାଇଁ ନିଜର ବିଦ୍ୟାଧରୀ ମାୟା ବିସ୍ତାର କଲା । ନରବାହନଦତ୍ତ ନିଜର ଶତ୍ରୁ ପରିବର୍ତ୍ତେ ଏକ ବିଶାଳକାୟ ଉନ୍ମତ୍ତ ହସ୍ତୀ ଦେଖିବାକୁ ପାଇଲେ । ସେ ମଧ୍ୟ ନିଜର ବିଦ୍ୟାବଳରେ ଏକ ହିଂସ୍ର ସିଂହର ରୂପ ଧାରଣ କଲେ । ଉଭୟେ ରଣକୌଶଳରେ ନିପୁଣ । ଭୂମି ଉପରେ ସେମାନଙ୍କ ଗତି, ଲମ୍ଫ, ଚକ୍ରାକାର ଘୂର୍ଣ୍ଣନ ଇତ୍ୟାଦି ଦେଖିଲେ ଉଭୟେ ନୃତ୍ୟ କରୁଥିବା ପରି ମନେହେଉଥାଏ । ନରବାହନଦତ୍ତ ନିଜର କୁଶଳ ହସ୍ତରେ ମନ୍ଦରଦେବର ଖଡ୍‌ଗଟିକୁ ଆୟତ୍ତ କରିନେଲେ । କିନ୍ତୁ ସଙ୍ଗେସଙ୍ଗେ ସେ ନିଜର ଛୁରିକା କୋଷମୁକ୍ତ କଲା କିନ୍ତୁ ନରବାହନଦତ୍ତ ତାହା ସମ୍ପୂର୍ଣ୍ଣ ମୁକ୍ତ ହେବା ପୂର୍ବରୁ ଅଚାନକ ଭାବେ ତାକୁ ନିଜର କରାୟତ୍ତ କଲେ । ସତେ ଯେପରି ଶତ୍ରୁର ବିଜୟଲକ୍ଷ୍ମୀ ସମ୍ରାଟଙ୍କ ହସ୍ତଗତ ହେଲା ।

ଅସ୍ତ୍ର ରହିତ ମନ୍ଦରଦେବ ତଥାପି ପରାଜୟ ସ୍ୱୀକାର ନକରି ବାହୁଯୁଦ୍ଧପାଇଁ ଆହ୍ୱାନ କଲା । କିନ୍ତୁ ସେ ସେଥିରେ ମଧ୍ୟ ଦୀର୍ଘ ସମୟ ନରବାହନଦତ୍ତଙ୍କୁ ପ୍ରତିରୋଧ କରିପାରିଲା ନାହିଁ । ନରବାହନଦତ୍ତ ତା'ର ଉଭୟ ଜଂଘକୁ ଧରି ଭୂମି ଉପରେ କଚାଡ଼ି ଦେଲେ । ତା'ର ବକ୍ଷସ୍ଥଳରେ ପାଦରଖି ଶିରଚ୍ଛେଦ କରିବାପାଇଁ ଉଦ୍ୟତ ହେଉଥିବା ବେଳେ ସେଠାରେ ଜଣେ କୁମାରୀ କନ୍ୟା ଆସି ଉପସ୍ଥିତ ହେଲା । ସେ ମନ୍ଦରଦେବଙ୍କ ଭଗିନୀ ମନ୍ଦରଦେବୀ । ନରବାହନଦତ୍ତଙ୍କୁ ତାଙ୍କ ଉଦ୍ୟମରୁ ନିବୃତ୍ତ କରି ସେ ବିନମ୍ରଭାବେ କହିଲା, 'ମହାରାଜ ! ମୁଁ ତପୋବନ ମଧ୍ୟରେ ଦେଖିବାଠାରୁ ହିଁ ଆପଣଙ୍କୁ ପତିପଦରେ ବରଣ କରିନେଇଛି । ତେଣୁ ମୋର ଏଇ ଭାଇ ଆପଣଙ୍କ ଶାଳକ; ତାକୁ ହତ୍ୟା କରନ୍ତୁ ନାହିଁ ।' ମୃଗନୟନୀ କୁମାରୀଟିର ମଧୁର ଅନୁରୋଧ ନରବାହନଦତ୍ତଙ୍କ କ୍ରୋଧ ଶାନ୍ତ କଲା । ପରାଜିତ ଓ ଲଜ୍ଜିତ ମନ୍ଦରଦେବକୁ ମୁକ୍ତ କରି ସେ କହିଲେ, 'ବିଦ୍ୟାଧରାଧିପତି ! ମୁଁ ତୁମକୁ ମୁକ୍ତ କଲି । ଏଥିପାଇଁ ତୁମେ ଲଜ୍ଜିତ ହେବାର କୌଣସି କାରଣ ନାହିଁ । ସଂଗ୍ରାମରେ ଜୟ ଓ ପରାଜୟ ବୀରମାନଙ୍କ ପାଇଁ ଅନିଶ୍ଚିତ । ଆମ ଉଭୟଙ୍କ ଭିତରୁ ଜଣେ ପରାଜିତ ହେବା ସ୍ୱାଭାବିକ ।'

ଭଗିନୀପତିଙ୍କ ସ୍ନେହସିକ୍ତ କଥାଶୁଣି ମନ୍ଦରଦେବ କହିଲା, 'ଯୁଦ୍ଧରେ ପରାଜିତ ହେବା ବଡକଥା ନୁହେଁ, କିନ୍ତୁ ଜଣେ ନାରୀ ପାଇଁ ମୁଁ ଯେ ଜୀବନଲାଭ କଲି ଏହାହିଁ ମୋ ପାଇଁ ଅତ୍ୟନ୍ତ ଦୁଃଖପ୍ରଦ । ଏହି ଅଧମ ଜୀବନରେ ମୋର ଆଉ କି ପ୍ରୟୋଜନ ? ଅବଶ୍ୟ

ମୁଁ ଆତ୍ମଘାତୀ ହେବି ନାହିଁ । ମୋର ପିତା ଅରଣ୍ୟ ମଧ୍ୟରେ ତପସ୍ୟା କରୁଛନ୍ତି । ମୁଁ ତାଙ୍କ ନିକଟକୁ ଚାଲିଯାଇ ତପଶ୍ଚରଣ କରିବି । ମୋର ଯେ ଏ ପ୍ରକାର ପରିଣତି ହେବ, ପିତୃଦେବ ମୋତେ ପୂର୍ବରୁ ସୂଚନା ଦେଇଥିଲେ । ଆପଣ ବର୍ତ୍ତମାନ ଉଭୟ ବିଦ୍ୟାଧର କ୍ଷେତ୍ରର ଅଧିପତି ହୋଇ ନିଷ୍କଣ୍ଟକ ରାଜ୍ୟ ଭୋଗ କରନ୍ତୁ ।' ଏହା କହି ମନ୍ଦରଦେବ ନିଜ ପିତାଙ୍କ ତପୋବନ ମଧ୍ୟକୁ ଚାଲିଗଲେ ।

ଆକାଶ ମାର୍ଗରେ ରହି ଏହି ମହାସଂଗ୍ରାମ ଦେଖୁଥିବା ମୁନି, ଋଷି ଓ ଦେବତାମାନେ ନରବାହନଦତ୍ତଙ୍କୁ ଧନ୍ୟ ଧନ୍ୟ କଲେ । ତାଙ୍କୁ ମହାଚକ୍ରବର୍ତ୍ତୀ ନରବାହନଦତ୍ତ ବୋଲି ସମ୍ବୋଧନ କରି ପୁଷ୍ପ ବୃଷ୍ଟି କଲେ ।

ମନ୍ଦରଦେବ ଚାଲିଯିବା ପରେ ଧନବତୀ ପୁତ୍ର ଚଣ୍ଡସିଂହ ଏବଂ ଉଭୟ ପକ୍ଷର ସେନାବାହିନୀକୁ ନିଜ ବିଦ୍ୟା ପ୍ରଭାବରେ ଜାଗ୍ରତ କଲେ । ଚେତନା ଫେରିପାଇବା ପରେ ସେମାନେ ଯେ ଜୟଲାଭ କରିଛନ୍ତି ଜାଣି ନରବାହନଦତ୍ତଙ୍କୁ ଅଭିନନ୍ଦନ ଜଣାଇଲେ । ସେହିପରି ମନ୍ଦରଦେବଙ୍କ ପକ୍ଷରେ ଥିବା କାଞ୍ଚନଦଂଷ୍ଟ୍ର, ଅଶୋକକ, ରକ୍ତାକ୍ଷ, କାଳଜିହ୍ୱ ପ୍ରଭୃତି ଚକ୍ରବର୍ତ୍ତୀ ସମ୍ରାଟଙ୍କ ଅଧୀନତା ସ୍ୱୀକାର କଲେ ।

କାଞ୍ଚନଦଂଷ୍ଟ୍ରଙ୍କୁ ଦେଖିବା ମାତ୍ରେ ଚଣ୍ଡସିଂହଙ୍କ ପୂର୍ବସ୍ମୃତି ଜାଗ୍ରତ ହେଲା । ସେ ତାଙ୍କ ଉପରେ ଗଦାପ୍ରହାର କରିଥିଲେ । ଏଣୁ କ୍ରୁଦ୍ଧ ଚଣ୍ଡସିଂହ ନିଜ ତରବାରିକୁ କୋଷମୁକ୍ତ କଲେ । ଏହା ଦେଖି ଧନବତୀ ପୁତ୍ରକୁ ଶାନ୍ତ କରି କହିଲେ, 'ପୁତ୍ର ! ବର୍ତ୍ତମାନ ପୁଣି ଯୁଦ୍ଧ କରିବା ବୃଥା । ସମ୍ମୁଖ ଯୁଦ୍ଧରେ ତୋତେ କିଏ ବା ପରାସ୍ତ କରିବ । ତୋର ପରାଜୟ ମୋର ଏକପ୍ରକାର ମାୟାଥିଲା । ମୁଁ ଛଦ୍ମ କ୍ରୋଧ ପ୍ରକାଶ ନକରି ଉଭୟ ପକ୍ଷର ସେନାବାହିନୀକୁ ଅଚେତ କରିନଥିଲେ ଯୁଦ୍ଧରେ ବହୁ ବୀର ପୁରୁଷ ଓ ନିରୀହ ସୈନିକ ମୃତାହତ ହୋଇଥାନ୍ତେ ।' ଏଥିରେ ଚଣ୍ଡସିଂହଙ୍କ କ୍ରୋଧ ଶାନ୍ତ ହେଲା । ସ୍ୱୟଂ ସମ୍ରାଟ ଓ ସେନାବାହିନୀ ତାଙ୍କ ବାତ୍ସଲ୍ୟମମତାରେ ବିମୁଗ୍ଧ ହେଲେ ।

ବିଜୟ ପ୍ରାପ୍ତି ଯୋଗୁଁ ମହୋତ୍ସବ ପାଳିତ ହେଲା । ବିଦ୍ୟାଧର କୁମାରୀମାନେ ନୃତ୍ୟ କରିବାକୁ ଲାଗିଲେ । ବାଦ୍ୟନାଦରେ ଗଗନପବନ ମୁଖରିତ ହୋଇଉଠିଲା । ଚକ୍ରବର୍ତ୍ତୀ ନରବାହନଦତ୍ତ ନିଜର ବାଲ୍ୟବନ୍ଧୁ ଓ ସଚିବ, ହିତାକାଂକ୍ଷୀ ଓ ବନ୍ଧୁରାଜା, ମଦନମଞ୍ଚୁକା ଓ ଅନ୍ୟାନ୍ୟ ରାଣୀମାନଙ୍କ ସହିତ ମଦିରାପାନରେ ଉକ୍ତ ଦିନଟି ବିତାଇଦେଲେ । ସେ ଏତେ ପରିମାଣରେ ମଦିରାପାନ କରୁଥାନ୍ତି ଯେ ମନେହେଉଥାଏ ଶତ୍ରୁମାନଙ୍କ ପ୍ରବଳ ପ୍ରତାପକୁ ପାନକରି ସେ ତୃପ୍ତ ହୋଇପାରୁ ନାହାଁନ୍ତି ।

## ଦ୍ୱିତୀୟ ତରଙ୍ଗ

ପରଦିନ ପ୍ରଭାତ ହେଲା । ସୂର୍ଯ୍ୟଦେବ ଆକାଶ ମାର୍ଗରେ ଦେଖାଦେଲେ । ସେନାବାହିନୀ ଜାଗ୍ରତ ହୋଇଉଠିଲା । କାଞ୍ଚନଦଂଷ୍ଟ୍ର ନରବାହନଦତ୍ତଙ୍କୁ ମନ୍ଦରଦେବଙ୍କ ରାଜଧାନୀ ବିମଳପୁର ଯିବାପାଇଁ ପ୍ରସ୍ତାବ ଦେଲେ । ସମସ୍ତେ କିଛି ସମୟ ମଧ୍ୟରେ ଯାଇ ବିମଳପୁର ନଗରରେ ପ୍ରବେଶ କଲେ । ନଗରଟି ସ୍ୱର୍ଣ୍ଣମୟ ପ୍ରାଚୀର ଦ୍ୱାରା ପରିବେଷ୍ଟିତ ଥିଲା । ମନେହେଉଥିଲା କୈଳାସ ପର୍ବତକୁ ଅଳଂକୃତ କରିବାପାଇଁ ସ୍ୱୟଂ ସୁମେରୁ ପର୍ବତ ସେଠାରେ ଉପସ୍ଥିତ ଅଛି । ନଗରୀଟି ସର୍ବଦା ଲକ୍ଷ୍ମୀଙ୍କ ସମାଗମ ଦ୍ୱାରା ଅଚ୍ୟୁତ (ନାରାୟଣ) ଏବଂ ବହୁବିଧ ରତ୍ନର ଆକର ଥିବା ଯୋଗୁଁ ଜଳହୀନ ସମୁଦ୍ର ପରି ମନେହେଉଥିଲା ।

ନଗର ମଧ୍ୟରେ ସମ୍ରାଟ ନରବାହନଦତ୍ତ ସଭାଭବନ ମଧ୍ୟରେ ଯାଇ ପ୍ରବେଶ କଲେ । ମନ୍ଦରଦେବଙ୍କ ଅନ୍ତଃପୁରରେ ଥିବା ବୃଦ୍ଧ ପରିଚାରକମାନେ ଆସି ଜଣାଇଲେ ଯେ ମନ୍ଦରଦେବ ପରାଜିତ ହୋଇ ତପୋବନ ଚାଲିଯିବା ପରେ ତାଙ୍କ ରାଣୀମାନେ ସହଗମନ କରିବାପାଇଁ ଚିତାଗ୍ନି ପ୍ରସ୍ତୁତ କରୁଛନ୍ତି । ଏହା ସେମାନଙ୍କ ପକ୍ଷେ ଅବଶ୍ୟ ଉଚିତ ନୁହେଁ । ଆପଣ ସେମାନଙ୍କ ପ୍ରତି ଉଚିତ ବ୍ୟବହାର କରନ୍ତୁ । ପରିଜନମାନଙ୍କ ଠାରୁ ଏହା ଶୁଣିବାମାତ୍ରେ ସମ୍ରାଟ ନରବାହନଦତ୍ତ ଯଥାଶୀଘ୍ର ଯାଇ ସେମାନଙ୍କୁ ମୃତ୍ୟୁ ମୁଖରୁ ରକ୍ଷା କଲେ । ଭଗିନୀ ବୋଲି ସମ୍ବୋଧନ କରି ମନ୍ଦରଦେବଙ୍କ ବାସଭବନର କିଛି ଅଂଶ ସେମାନଙ୍କ ମଧ୍ୟରେ ବାଣ୍ଟିଦେଲେ । ତାଙ୍କର ଏହି ଉଦାରତାପୂର୍ଣ୍ଣ ମହାପୁରୁଷୋଚିତ ବ୍ୟବହାର ସମସ୍ତ ବିପକ୍ଷ ବିଦ୍ୟାଧର ରାଜାମାନଙ୍କୁ ତାଙ୍କ ସହିତ ଅନୁରାଗ ରଜ୍ଜୁରେ ବାନ୍ଧିଦେଲା ।

ପୂର୍ବରୁ ଅମିତଗତିଙ୍କୁ ବିଦ୍ୟାଧର ବେଦୀର ଏହି ଭାଗଟି ପ୍ରଦାନ କରିବାପାଇଁ ନରବାହନଦତ୍ତ ମନେମନେ ସ୍ଥିର କରିଥିଲେ । ବର୍ତ୍ତମାନ ସେ ମନ୍ଦରଦେବଙ୍କ ରାଜସିଂହାସନ ଉପରେ ତାଙ୍କୁ ଅଭିଷିକ୍ତ କରିଦେଲେ । କେବଳ ସେତିକି ନୁହେଁ, ମନ୍ଦରଦେବଙ୍କ ଅନୁଗତ କାଞ୍ଚନଦଂଷ୍ଟ୍ର ପ୍ରଭୃତି ବିଦ୍ୟାଧର ରାଜାମାନଙ୍କୁ ମଧ୍ୟ ସେ କୃତଜ୍ଞ ଅମିତଗତିଙ୍କ ହସ୍ତରେ ସମର୍ପଣ କଲେ ।

କୈଳାସର ଉତ୍ତରଦିଗ ବର୍ତ୍ତମାନ ନବପରିଣିତା ରାଜଲକ୍ଷ୍ମୀ ତୁଲ୍ୟ ଶୋଭା ପାଇବାକୁ ଲାଗିଲା । ତାକୁ ଆଲିଙ୍ଗନ କରି ଗୋଟିଏ ସପ୍ତାହ ପର୍ଯ୍ୟନ୍ତ ନରବାହନଦତ୍ତ କୈଳାସ ଶିଖରୀରେ ବିହାର କରିବାକୁ ଲାଗିଲେ ।

ଉଭୟ ବିଦ୍ୟାଧର ବେଦୀର ଏକଛତ୍ର ଚକ୍ରବର୍ତ୍ତୀ ସମ୍ରାଟ ହେବାପରେ ମଧ୍ୟ ନରବାହନଦତ୍ତ ସନ୍ତୁଷ୍ଟ ହେଲେ ନାହିଁ । ଅଧିକ କିଛି ପାଇବାର ଲାଳସା ତାଙ୍କ ମନରେ ଜାଗ୍ରତ ହେଲା । ମନ୍ତ୍ରୀମାନେ ତାଙ୍କୁ ଏଥିରୁ ନିବୃତ୍ତ କରିବାପାଇଁ ଚେଷ୍ଟାକଲେ । କିନ୍ତୁ ସେ ସେମାନଙ୍କ ପ୍ରତିରୋଧରେ କର୍ଣ୍ଣପାତ ନକରି ସେହି ଦିଗରେ ଥିବା ଦେବତାମାନଙ୍କର ବାସସ୍ଥଳୀ ଅଲଂଘ୍ୟ ମେରୁପ୍ରଦେଶକୁ ଜୟ କରିବାନିମିତ୍ତ ଉଦ୍ୟତ ହେଲେ । ପ୍ରକୃତରେ ପ୍ରଜ୍ୱଳିତ ଦାବାନଳ ପରି ତେଜସ୍ୱୀ ପୁରୁଷମାନେ ଅତ୍ୟନ୍ତ ସମୃଦ୍ଧ ହେଲେ ସୁଦ୍ଧା ପୁଣି ଅଧିକ ସମୃଦ୍ଧିପ୍ରାପ୍ତିପାଇଁ ଅଭିଳାଷ ପୋଷଣ ନକରି ରହିପାରନ୍ତି ନାହିଁ ।

**'ଅତ୍ୟର୍ଥୋପଚିତାଃ କାମଂ ବିଶେଷାସାଦନଂ ବିନା**
**ତେଜୋସ୍ୱିନୋ ନ ତିଷ୍ଠନ୍ତି ଦୀପ୍ତା ଦାବାନଳା ଇବ ।'**

ଏହି ପରିସ୍ଥିତିରେ ମହର୍ଷି ନାରଦ ସେଠାରେ ଆସି ପହଞ୍ଚିଲେ । ନରବାହନଦତ୍ତଙ୍କ ଦ୍ୱାରା ଯଥୋଚିତ ଭାବେ ସତ୍‌କୃତ ହୋଇ ସେ ଉପଦେଶ ଛଳରେ କହିଲେ, 'ରାଜନ୍ ! ଆପଣ ନୀତିଜ୍ଞ । ତଥାପି ମେରୁ ବିଜୟ ରୂପ ଅନୁଚିତ କାର୍ଯ୍ୟପାଇଁ କିପରି ଉନ୍ମୁଖ ହେଉଛନ୍ତି ? ସ୍ୱାଭାବିକତାବଶତଃ ଅସାଧ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେଲେ ପରାଭବ ହିଁ ସାର ହୋଇଥାଏ । କୈଳାସ ପର୍ବତକୁ ଉତ୍ପାଟନ କରିବାକୁ ଯାଇ ଗର୍ବୋଦ୍ଧତ ରାବଣ ଏହିପରି ହିଁ ପରାଭବ ଲାଭ କରିଥିଲା ।

**'ପ୍ରବର୍ତ୍ତମାନୋ ହ୍ୟସ୍ଥେକାଦସାଧ୍ୟେ ପରିଭୂୟତେ,**
**ଦଶାସ୍ୟ ଇବ ଦର୍ପେଣ କୈଳାସୋନ୍ମୂଳନୋଦ୍ୟତଃ' ।**

ମେରୁ ପର୍ବତ ସୂର୍ଯ୍ୟ ଓ ଚନ୍ଦ୍ରଙ୍କପାଇଁ ମଧ୍ୟ ଦୁର୍ଲଂଘ୍ୟ । ଦେବଦେବ ମହାଦେବ ଆପଣଙ୍କୁ ବିଦ୍ୟାଧରମାନଙ୍କ ଚକ୍ରବର୍ତ୍ତୀ ହେବାପାଇଁ ଆଦେଶ ଦେଇଛନ୍ତି, କିନ୍ତୁ ଦେବତାମାନଙ୍କର ନୁହେଁ, ବିଦ୍ୟାଧର ଭୂମି ହିମାଳୟକୁ ଆପଣ ଜୟ କରିଛନ୍ତି । ତେଣୁ ଦେବତାମାନଙ୍କର ଦେବଭୂମି ମେରୁପର୍ବତରେ ଆପଣଙ୍କ ଲାଭ କଣ ? ତେଣୁ ଏପରି ଦୁରାଗ୍ରହ ପରିତ୍ୟାଗ କରନ୍ତୁ । ମନ୍ଦରଦେବଙ୍କ ପିତା ଅକଂପନ ତପୋବନ ମଧ୍ୟରେ ରହୁଅଛନ୍ତି । ତାଙ୍କୁ ଯାଇ ଦର୍ଶନ କଲେ ଆପଣଙ୍କର ମଙ୍ଗଳ ହେବ । ମେରୁ ବିଜୟ ଆଶା ତ୍ୟାଗ କରି ଆପଣ ତାଙ୍କ ନିକଟକୁ ଯା'ନ୍ତୁ ।'

ମହର୍ଷି ନାରଦ ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କୁ ତାଙ୍କ ଅନୁଚିତ କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ଉପଦେଶ ପ୍ରଦାନ କରି ସେଠାରୁ ବିଦାୟ ନେଲେ ।

ନରବାହନଦତ୍ତଙ୍କ ଚୈତନ୍ୟ ଉଦୟ ହେଲା । ସେ ଦେବମାୟଙ୍କ ମୁଖରୁ ଶୁଣିଥିବା ଋଷଭଙ୍କ ପରାଭବ କଥା ସ୍ମରଣ କଲେ । ପ୍ରକୃତରେ ନାରଦ କହିବା ପରି ସେ ନିଜର ବିନାଶକୁ ହିଁ ନିମନ୍ତ୍ରଣ କରିଆଣୁଛନ୍ତି ବୋଲି ତାଙ୍କର ହୃଦ୍‌ବୋଧ ହେଲା । ନୀତିନିପୁଣ ନରବାହନଦତ୍ତ ସେଥିରୁ କ୍ଷାନ୍ତ ହେଲେ ।

## ନରବାହନଦତ୍ତଙ୍କ ପଞ୍ଚକନ୍ୟା ପ୍ରାପ୍ତି

ପରଦିନ ନାରଦଙ୍କ ନିର୍ଦ୍ଦେଶ କ୍ରମେ ସେ ରାଜର୍ଷି ଅକଂପନଙ୍କୁ ଯାଇ ସାକ୍ଷାତ କଲେ । ତପୋବନ ମଧ୍ୟରେ ବହୁ ଋଷି ଓ ସାଧକ ପଦ୍ମାସନରେ ବସି ଯୋଗସାଧନ କରୁଥାନ୍ତି । ଏହି ପବିତ୍ର ସ୍ଥାନଟି ବ୍ରହ୍ମଲୋକ ପରି ମନେହେଉଥାଏ । ଅକଂପନ ବଲ୍‌କଳ ପରିଧାନ କରି ବସିଥାନ୍ତି, ମସ୍ତକରେ ତାଙ୍କର ଜଟାଭାର । ଚାରିପାଖରେ ବହୁ ମୁନି ଓ ସାଧକ ତାଙ୍କୁ ପରିବେଷ୍ଟନ କରି ରହିଥାନ୍ତି । ବୃଦ୍ଧ ଅକଂପନକୁ ଦେଖିଲେ ମନେହେଉଥାଏ ସେ ଯେପରି ଏକ ମହାବୃକ୍ଷ ।

ଚକ୍ରବର୍ତ୍ତୀ ନରବାହନଦତ୍ତ ଅକଂପନଙ୍କ ନିକଟକୁ ଯାଇ ଚରଣ ବନ୍ଦନା କଲେ । ରାଜର୍ଷି ସମ୍ରାଟଙ୍କ ଯଥୋଚିତ ଆତିଥ୍ୟ କରି କହିଲେ, ‘ଆପଣ ଏହି ଆଶ୍ରମକୁ ଆସି ଅତି ଉତ୍ତମ କାର୍ଯ୍ୟ କରିଛନ୍ତି । ଏହାକୁ ଅତିକ୍ରମ କରି ଚାଲିଯାଇଥିଲେ ମହର୍ଷିମାନେ ଆପଣଙ୍କୁ ଅଭିଶାପ ଦେଇଥାନ୍ତେ ।’

ଏ ସମୟରେ ମୁନିବ୍ରତ ଧାରଣ କରି ତପୋବନ ମଧ୍ୟରେ ରହୁଥିବା ମନ୍ଦରଦେବ ଭଗିନୀ ମନ୍ଦରଦେବୀଙ୍କ ସହିତ ଆସି ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ନରବାହନଦତ୍ତ ମନ୍ଦରଦେବଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି ନିଜର ଅକପଟ ସ୍ନେହ ପ୍ରକଟ କଲେ । ଶତ୍ରୁ ପରାଜିତ ହୋଇ ଶାନ୍ତ ହେଲେ ବୁଦ୍ଧିମାନ ବ୍ୟକ୍ତିମାନେ ତା’ ପ୍ରତି ପ୍ରୀତିପୂର୍ଣ୍ଣ ବ୍ୟବହାର ହିଁ କରିଥାନ୍ତି ।

‘ଜିତଶାନ୍ତେଷୁ ଧୀରାଣାଂ ସ୍ନେହ ଏବୋଚିତୋଽରିଷୁ’

ଭ୍ରାତା ସହିତ ଆସିଥିବା କନ୍ୟା ମନ୍ଦରଦେବୀଙ୍କୁ ଦେଖି ରାଜର୍ଷି ଅକଂପନ ସମ୍ରାଟ ନରବାହନଦତ୍ତଙ୍କୁ କହିଲେ, ‘ଏହି ମନ୍ଦରଦେବୀ ମୋର ଏକମାତ୍ର କନ୍ୟା । ଏହା ସମ୍ପର୍କରେ ମୁଁ ଦିବ୍ୟବାଣୀ ଶୁଣିଥିଲି ଯେ ସେ କୌଣସି ଚକ୍ରବର୍ତ୍ତୀଙ୍କ ମହିଷୀ ହେବ ।

ତେଣୁ ହେ ଚକ୍ରବର୍ତ୍ତି, ମୁଁ ଏ କନ୍ୟାଟିକୁ ଆପଣଙ୍କ ହସ୍ତରେ ସମର୍ପଣ କରୁଛି । ଆପଣ ଏହାକୁ ବିବାହ କରନ୍ତୁ ।' ପିତାଙ୍କ କଥା ଶୁଣି ମନ୍ଦରଦେବୀ କହିଲେ—

'ମୋର ଚାରିଜଣ ବିଶିଷ୍ଟ ସଖୀ ଅଛନ୍ତି । ସେଥି ମଧ୍ୟରୁ ଜଣେ କାଞ୍ଚନଦଂଷ୍ଟ୍ରଙ୍କ କନ୍ୟା କନକବତୀ । ଦ୍ୱିତୀୟ କାଳଜିହ୍ୱଙ୍କ ଦୁହିତା କଳାବତୀ, ତୃତୀୟା ଦୀର୍ଘଦଂଷ୍ଟ୍ରଙ୍କ ପୁତ୍ରୀ ଶ୍ରୁତା, ଚତୁର୍ଥୀ ପୋତ୍ରରାଜଙ୍କ କନ୍ୟା । ତାର ନାମ ଅମରପ୍ରଭା । ଏହି ବିଦ୍ୟାଧର ରାଜାଙ୍କ ଔରସରୁ ଜାତ ମୁଁ ହେଉଛି ପଞ୍ଚମ କନ୍ୟା । ଆମେ ପାଞ୍ଚଜଣ ତପୋବନ ମଧ୍ୟରେ ଭ୍ରମଣ କରୁଥିବା ବେଳେ ଏହି ରାଜକୁମାରଙ୍କୁ ଦେଖି ତାଙ୍କ ପ୍ରତି ଆସକ୍ତ ହୋଇପଡ଼ିଥିଲୁ । ଆମେ ପ୍ରତିଜ୍ଞା କରିଥିଲୁ ଯେ ପାଞ୍ଚଜଣଯାକ ଏକ ସଙ୍ଗରେ ନରବାହନଦତ୍ତଙ୍କୁ ବିବାହ କରିବୁ । ଯଦି କୌଣସି କାରଣରୁ ଜଣେ ଏକାକିନୀ ତାଙ୍କ ସହିତ ବିବାହ କରେ ତେବେ ଅନ୍ୟ ଚାରିଜଣ ବିଳମ୍ବ ନକରି ଅଗ୍ନି ମଧ୍ୟରେ ଆତ୍ମବିସର୍ଜନ କରିବେ । ସେମାନଙ୍କ ମୃତ୍ୟୁ ପାଇଁ ବିବାହ କରିଥିବା ସଖୀ ପାପଭାଗିନୀ ହେବ । ଏଥିପାଇଁ ସଖୀମାନଙ୍କୁ ଛାଡ଼ି ମୁଁ ଏକାକୀ ବିବାହ କରିପାରିବି ନାହିଁ । ମୋ ପରି କନ୍ୟା ପ୍ରତିଜ୍ଞା ଲଙ୍ଘନ କରିବାପାଇଁ କିପରି ସାହସ କରିବ ?'

ନିଜର ପ୍ରୌଢ଼ା କନ୍ୟା ମନ୍ଦରଦେବୀଠାରୁ ଏହା ଶୁଣି ରାଜର୍ଷି ଅକଂପନ ଅନ୍ୟ କନ୍ୟା ପିତାମାନଙ୍କୁ ସ୍ମରଣ କଲେ । ସେମାନେ ଆସି ଉପସ୍ଥିତ ହୁଅନ୍ତେ ଅକଂପନ ତାଙ୍କୁ ସେମାନଙ୍କ କନ୍ୟାମାନଙ୍କ ପ୍ରତିଜ୍ଞା ସମ୍ପର୍କରେ ଅବଗତ କରାଇଲେ । ଏ ପ୍ରସ୍ତାବରେ କେଉଁ କନ୍ୟାପିତା ବା ଅସମ୍ମତ ହେବ ! ସେମାନେ ନିଜ ନିଜ କନ୍ୟାମାନଙ୍କୁ ଡକାଇ ଆଣି ନରବାହନଦତ୍ତଙ୍କ ହସ୍ତରେ ସମର୍ପଣ କଲେ । ପାଣିଗ୍ରହଣ ଉତ୍ସବ ଯଥାରୀତି ସମାପ୍ତ ହେଲା । ନବଦମ୍ପତି ତ୍ରିସନ୍ଧ୍ୟାରେ ମହର୍ଷିଗଣଙ୍କ ଚରଣ ବନ୍ଦନା କରି ସେହି ତପୋବନ ଆଶ୍ରମରେ ବହୁଦିନ ପର୍ଯ୍ୟନ୍ତ ବାସ କରିବାକୁ ଲାଗିଲେ ।

ଦିନେ ରାଜର୍ଷି ଅକଂପନ ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କୁ କହିଲେ, 'ବର୍ତ୍ତମାନ ଆପଣ ମହାଭିଷେକପାଇଁ ଋଷଭ ପର୍ବତକୁ ପ୍ରସ୍ଥାନ କରନ୍ତୁ ।' ତାଙ୍କ ପ୍ରସ୍ତାବକୁ ସମର୍ଥନ କରି ଦେବମାୟ ମଧ୍ୟ ଜଣାଇଲେ, 'ଦେବ ! ଏପରି କରିବା ହିଁ ଉଚିତ ହେବ । ଋଷଭ ପ୍ରଭୃତି ପୂର୍ବ ବିଦ୍ୟାଧର ଚକ୍ରବର୍ତ୍ତୀମାନଙ୍କ ରାଜ୍ୟାଭିଷେକ ଉତ୍ସବ ଏହି ପର୍ବତ ଉପରେ ହିଁ ହୋଇଥିଲା ।' ଏ ସମ୍ପର୍କରେ ସେନାପତି ହରିଶିଖ ଅନ୍ୟ ଏକ ପ୍ରସ୍ତାବ ଆଗତ କଲେ । ତାଙ୍କ ମତରେ ନିକଟବର୍ତ୍ତୀ ଓ ପ୍ରଶସ୍ତ ମନ୍ଦରପର୍ବତ ଅଭିଷେକ ଉତ୍ସବପାଇଁ ଅଧିକ ଉପଯୁକ୍ତ ଥିଲା । ଏ ସମୟରେ ଦିବ୍ୟବାଣୀ ଶୁଣାଗଲା, 'ସମସ୍ତ ପୂର୍ବବର୍ତ୍ତୀ ସମ୍ରାଟଙ୍କର ଅଭିଷେକ

ଋଷଭ ପର୍ବତ ଉପରେ ହିଁ ହୋଇଥିଲା । ତେଣୁ ତୁମେ ସବୁ ସେହି ସିଦ୍ଧ ପର୍ବତ ଉପରକୁ ପ୍ରସ୍ଥାନ କର ।'

ବର୍ତ୍ତମାନ ଆଉ ଚିନ୍ତାର ଅବକାଶ ନଥିଲା । ଶୁଭଦିନ ଓ ମୁହୂର୍ତ୍ତ ଦେଖି ନରବାହନଦତ୍ତ ସମସ୍ତ ମହର୍ଷିଙ୍କୁ ବିନମ୍ର ପ୍ରଣାମ ଜଣାଇ ତପୋବନରୁ ବିଦାୟ ନେଲେ । ଧୀରେ ଧୀରେ ସେମାନେ ତ୍ରିଶୀର୍ଷ ଗୁହାର ଉତ୍ତର ଦ୍ୱାରରେ ଆସି ଉପସ୍ଥିତ ହେଲେ । ସେଠାରେ ଦେବୀ କାଳରାତ୍ରିଙ୍କୁ ପୂଜା କରି ସମ୍ରାଟ ନରବାହନଦତ୍ତ ମହାରାଣୀ, ସଚିବ, ପରିଜନ ଓ ସମସ୍ତ ମିତ୍ର ରାଜାମାନଙ୍କ ସହିତ ଗୁହା ମଧ୍ୟରେ ପ୍ରବେଶ କରି ଦକ୍ଷିଣ ଦ୍ୱାରରେ ନିର୍ଗତ ହେଲେ । ଏହା ଦେବମାୟଙ୍କ ନିବାସସ୍ଥଳୀ । ତାଙ୍କ ଆଗ୍ରହରୁ ସେନାବାହିନୀ ସହିତ ସମ୍ରାଟ ସପରିବାର କିଛିଦିନ ସେଠାରେ କଟାଇଦେଲେ । ଦେବମାୟଙ୍କ ସତ୍କାର ସେମାନଙ୍କୁ ପ୍ରୀତ କରୁଥିଲା ।

ଦେବମାୟଙ୍କ ବାସଭବନରେ ରହୁଥିବା ବେଳେ ଦିନେ ନରବାହନଦତ୍ତଙ୍କ ମନରେ ଭଗବାନ ଶଙ୍କରଙ୍କୁ ଦର୍ଶନ କରିବାର ଅଭିଳାଷ ଜାଗ୍ରତ ହେଲା । କୈଳାସ ପର୍ବତ ଶିବଙ୍କ ବାସସ୍ଥଳୀ । ତାହା ପୁଣି ଅତ୍ୟନ୍ତ ନିକଟବର୍ତ୍ତୀ । ନରବାହନଦତ୍ତ ସ୍ୱେଚ୍ଛା ପୂର୍ବକ କେବଳ ଗୋମୁଖଙ୍କ ସହିତ କୈଳାସ ଆରୋହଣ କଲେ ।

ପ୍ରଥମେ ସେମାନେ ଯାଇ ଗୋମାତା ସୁରଭୀ ଏବଂ ବୃଷଭଙ୍କୁ ଦର୍ଶନକରି ପ୍ରଣାମ କଲେ । ପରେ ଦ୍ୱାର ନିକଟରେ ଉପସ୍ଥିତ ହୋଇ ନନ୍ଦୀଙ୍କୁ ପ୍ରଦକ୍ଷିଣ କଲେ । ନନ୍ଦୀ ତାଙ୍କୁ ପ୍ରକୃତ ଶିବଭକ୍ତ ଜାଣି ଅନୁମତି ପ୍ରଦାନ କରିବାରୁ ଉଭୟେ ଶିବାଳୟ ମଧ୍ୟରେ ପ୍ରବେଶ କଲେ । ଶିବ ଏବଂ ପାର୍ବତୀ ସେଠାରେ ଅକ୍ଷକ୍ରୀଡ଼ା କରୁଥାନ୍ତି । ତାଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ରକୁ ଦେଖି ମନେହେଉଥାଏ ପାର୍ବତୀଙ୍କ ମୁଖମଣ୍ଡଳର ସୌନ୍ଦର୍ଯ୍ୟରେ ଲଜ୍ଜିତ ହୋଇ ଚନ୍ଦ୍ର ଇତସ୍ତତଃ ହେଉଥିବା ବେଳେ ପ୍ରଣୟିନୀଙ୍କ ସନ୍ତୋଷ ବିଧାନପାଇଁ ଶଙ୍କର ତାଙ୍କୁ ନିଜର ଜଟା ମଧ୍ୟରେ ଧରି ରଖିଛନ୍ତି । ଅକ୍ଷ ଗୁଟିକାଗୁଡ଼ିକ ଚଞ୍ଚଳାକ୍ଷୀଙ୍କ କଟାକ୍ଷ ପରି ସ୍ୱତନ୍ତ୍ରଭାବେ ଏଣେତେଣେ ଗତି କରୁଥାନ୍ତି । ନରବାହନଦତ୍ତ ଶୈଳ ସୁତାଙ୍କ ସହିତ ବରଦାତା ଶିବଙ୍କ ଚରଣରେ ପ୍ରଣିପାତ କରି ସେମାନଙ୍କୁ ଦୁଇଥର ପ୍ରଦକ୍ଷିଣ କଲେ । ଭଗବାନ ସ୍ନେହସିକ୍ତ କଣ୍ଠରେ କହିଲେ, 'ବତ୍ସ ! ତୁମେ ଏଠାକୁ ଆସି ଉଚିତ କାର୍ଯ୍ୟ କରିଛ । ତା' ନ ହୋଇଥିଲେ ତୁମେ ପାପଭାଗୀ ହୋଇଥାନ୍ତ ଏବଂ ତୁମର ସମସ୍ତ ବିଦ୍ୟା ଲୁପ୍ତ ହୋଇଥାନ୍ତା । ବର୍ତ୍ତମାନ ତୁମର ବିଦ୍ୟାଗୁଡ଼ିକ ଅକ୍ଷୟ ହେଲେ । ତୁମେ ବର୍ତ୍ତମାନ ଋଷଭ ପର୍ବତକୁ ଯାଅ । ତାହା ଏକ ସିଦ୍ଧ କ୍ଷେତ୍ର । ଶୁଭ ମୁହୂର୍ତ୍ତରେ ସେଠାରେ ତୁମର ମହାଭିଷେକ ହେବ ।'

ଭଗବାନ ଶଙ୍କରଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ନରବାହନଦତ୍ତ ସେମାନଙ୍କୁ ପ୍ରଣାମ ଜଣାଇ ଦେବମାୟଙ୍କ ବାସଭବନକୁ ଫେରିଆସିଲେ ।

ତାଙ୍କୁ ଦେଖିବାମାତ୍ରେ ମହାରାଣୀ ମଦନମଞ୍ଜୁକା ସ୍ମିତହାସ୍ୟ ପ୍ରକାଶ କରି ପଚାରିଲେ, 'ଆର୍ଯ୍ୟପୁତ୍ର ! କାହାକୁ କିଛି ନକହି କୁଆଡ଼େ ଚାଲିଯାଇଥିଲେ ? ଆପଣ ତ ବଡ଼ ପ୍ରସନ୍ନ ଦେଖାଯାଉଛନ୍ତି । କୋଉଠି ଆଉ ପାଞ୍ଚଟି କନ୍ୟା ମିଳିଗଲେ କି ?' ପରିହାସ କରୁଥିବା ମଦନମଞ୍ଜୁକାଙ୍କୁ ସମସ୍ତ ଘଟଣା ଜଣାଇ ନରବାହନଦତ୍ତ ତାଙ୍କୁ ଆନନ୍ଦିତ କଲେ ।

ପରଦିନ ବିଦ୍ୟାଧର ଚକ୍ରବର୍ତ୍ତୀ ନିଜର ସେନାବାହିନୀ, ମନ୍ତ୍ରୀ ଓ ପରିବାର ସହିତ ଅପୂର୍ବ ମହାପଦ୍ମ ବିମାନ ଆରୋହଣ କରି ଦିବ୍ୟଋଷଭ ପର୍ବତରେ ଯାଇ ପହଞ୍ଚିଲେ । ଋଷଭ ତାପସରୂପୀ ବୃକ୍ଷଗୁଡ଼ିକରୁ ପୁଷ୍ପ ବୃଷ୍ଟି କରି ତାଙ୍କର ସ୍ୱାଗତ କଲା । ବିଦ୍ୟାଧର ରାଜାମାନେ ନିଜନିଜ ବିଦ୍ୟା ବଳରେ ରାଜୋଚିତ ମହାଭିଷେକ ସାମଗ୍ରୀ ସଂଗ୍ରହ କରିଆଣିଲେ । ଏହି ଅଭିଷେକ ଉତ୍ସବରେ ଯୋଗଦେବାପାଇଁ ବିଭିନ୍ନ ଉପହାର ହସ୍ତରେ ତାଙ୍କର ଭକ୍ତ, ତାଙ୍କଦ୍ୱାରା ପରାଜିତ, ତାଙ୍କ ପ୍ରତି ଅନୁରକ୍ତ, ତାଙ୍କୁ ଭୟ କରୁଥିବା ଏବଂ ତାଙ୍କ ଆଦରର ପାତ୍ର ସମସ୍ତ ବିଦ୍ୟାଧର ଧୀରେଧୀରେ ଆସି ରୁଣ୍ଡ ହେବାକୁ ଲାଗିଲେ ।

ବର୍ତ୍ତମାନ ପ୍ରଶ୍ନ ଉଠିଲା ଅଭିଷେକ ବେଳେ ଚକ୍ରବର୍ତ୍ତୀଙ୍କ ଅର୍ଦ୍ଧାସନରେ କେଉଁ ମହିଷୀ ପଟ୍ଟମହିଷୀ ରୂପେ ଆସନ ଗ୍ରହଣ କରିବେ । ସମସ୍ତେ ଜିଜ୍ଞାସୁ ନେତ୍ରରେ ନରବାହନଦତ୍ତଙ୍କୁ ଚାହିଁ ରହିଲେ । 'ମଦନମଞ୍ଜୁକା ହିଁ ଏହି ଆସନର ଅଧିକାରିଣୀ'— ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କଠାରୁ ଏହା ଶୁଣି ବିଦ୍ୟାଧରମାନଙ୍କ ମଧ୍ୟରେ ହଠାତ୍ ନୀରବତା ଛାଇଗଲା । ଜଣେ ମାନବୀ ପଟ୍ଟମହିଷୀ ରୂପେ କିପରି ଅଭିଷିକ୍ତ ହେବେ, ଏହାହିଁ ଥିଲା ସେମାନଙ୍କ ଚିନ୍ତାର ବିଷୟ । ଏ ସମୟରେ ଶୂନ୍ୟରୁ ଶୁଣାଗଲା, 'ବିଦ୍ୟାଧର ବୃନ୍ଦ ! ତୁମେମାନେ ଚିନ୍ତିତ ହେବା ଅନାବଶ୍ୟକ । ମଦନମଞ୍ଜୁକା ମାନବୀ ନୁହଁନ୍ତି । ତୁମମାନଙ୍କ ଚକ୍ରବର୍ତ୍ତୀ ସମ୍ରାଟ କାମଦେବଙ୍କ ଅବତାର । ତାଙ୍କ ପତ୍ନୀ ସ୍ୱୟଂ ରତୀ ଦେବୀ ମଦନମଞ୍ଜୁକା ରୂପେ ଅବତୀର୍ଣ୍ଣା ହୋଇଛନ୍ତି । ସେ ପୁଣି, ବିଦ୍ୟାଧର ମଦନବେଗଙ୍କ ଔରସରୁ କଳିଙ୍ଗସେନାଙ୍କ ଗର୍ଭରୁ ଜନ୍ମିତା । ସେ ଅଯୋନିଜା ମଧ୍ୟ । କଳିଙ୍ଗ ସେନା ସନ୍ତାନଟିଏ ଜନ୍ମଦେବା ମାତ୍ରେ ଦେବତାମାନେ ମଦନମଞ୍ଜୁକାଙ୍କୁ ସେଠାରେ ରଖି ଜନ୍ମିତ ଶିଶୁଟିକୁ ହରଣ କରିନେଇଥିଲେ । ସ୍ୱୟଂ ମହାଦେବ ଏହି ଶିଶୁଟିକୁ ମଦନବେଗଙ୍କ ହସ୍ତରେ ସମର୍ପଣ କରିଛନ୍ତି । ବର୍ତ୍ତମାନର ଇତ୍ୟକ ହେଉଛନ୍ତି ସେହି ଶିଶୁ । ଏ ଦୃଷ୍ଟିରୁ, ମଦନମଞ୍ଜୁକା

ପତି ନରବାହନଦତ୍ତଙ୍କ ଅର୍ଦ୍ଧାସନରେ ବସିବାପାଇଁ ଯୋଗ୍ୟା । ପୂର୍ବେ ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ ଗୌରୀପତି ତାଙ୍କୁ ଏପରି ବର ପ୍ରଦାନ କରିଥିଲେ ।'

ଶୂନ୍ୟବାଣୀ ଶୁଣି ବିଦ୍ୟାଧରମାନେ ସନ୍ତୁଷ୍ଟ ହେଲେ । ସେମାନଙ୍କ ମୁଖରୁ ଦେବୀ ମଦନମଞ୍ଜୁକାଙ୍କ ପ୍ରଶଂସା ଶୁଣାଗଲା ।

ମହାଭିଷେକର ଶୁଭ ମୁହୂର୍ତ୍ତ ଉପସ୍ଥିତ ହେଲା । ପୁରୋହିତ ଶାନ୍ତିସୋମ ବ୍ୟଗ୍ର ହୋଇଉଠିଲେ । ମଙ୍ଗଳବାଦ୍ୟର ମଧୁର ନିନାଦ, ବିଦ୍ୟାଧରମାନଙ୍କ ଲଳିତ ସଙ୍ଗୀତ ଏବଂ ବ୍ରାହ୍ମଣମାନଙ୍କ ବେଦ ଧ୍ୱନିରେ ଦଶଦିଗ ପ୍ରତିଧ୍ୱନିତ ହୋଇଉଠିଲା । ନରବାହନଦତ୍ତ ସିଂହାସନ ଉପରେ ଆସି ଉପବେଶନ କଲେ । ତାଙ୍କ ବାମପାର୍ଶ୍ୱରେ ମଦନମଞ୍ଜୁକା ଅର୍ଦ୍ଧାସନ ଗ୍ରହଣ କଲେ । ବିଭିନ୍ନ ତୀର୍ଥରୁ ଅଣାଯାଇଥିବା ଜଳପୂର୍ଣ୍ଣ ସ୍ୱର୍ଣ୍ଣକୁମ୍ଭରେ ଉଭୟଙ୍କୁ ସ୍ନାନ କରାଗଲା । ମନ୍ତ୍ରପୂତ ପବିତ୍ର ଜଳ ନରବାହନଦତ୍ତଙ୍କ ମସ୍ତକରେ ଢଳାଯାଉଥାଏ କିନ୍ତୁ ଆଶ୍ଚର୍ଯ୍ୟର କଥା, ଏହା ତାଙ୍କ ଶତ୍ରୁମାନଙ୍କ ମନରେ ଥିବା ବୈରଭାବକୁ ଧୌତ କରୁଥାନ୍ତି । ସାମୁଦ୍ରିକ ଜଳଧାରାର ଅନୁସରଣରେ ତାଙ୍କୁ ନିଜର ବନ୍ଧୁ ଓ ଭ୍ରାତା ମନେକରି ସ୍ୱୟଂ ମହାଲକ୍ଷ୍ମୀ ତାଙ୍କ ଶରୀର ମଧ୍ୟରେ ପ୍ରବେଶ କରିଗଲେ । ଦିବ୍ୟାଙ୍ଗନାମାନଙ୍କ ହସ୍ତରୁ ଖସି ଆସୁଥିବା ପୁଷ୍ପମାଳାଗୁଡ଼ିକ ସ୍ୱର୍ଗବାହିନୀ ଗଙ୍ଗାର ଜଳଧାରା ପରି ତାଙ୍କ ମସ୍ତକରେ ଆସି ପଡୁଥାନ୍ତି । ନିଜ ପ୍ରତାପ ତୁଲ୍ୟ ରକ୍ତିମ ଅଙ୍ଗରାଗଦ୍ୱାରା ବିଭୂଷିତ ହୋଇ ସମୁଦ୍ର ଜଳରେ ସ୍ନାନ କରୁଥିବା ନରବାହନଦତ୍ତ ଉଦୟକାଳୀନ ସୂର୍ଯ୍ୟଙ୍କ ଶୋଭା ଧାରଣ କରିଥାନ୍ତି । ପାରିଜାତ ପୁଷ୍ପର ମାଳା, ବହୁମୂଲ୍ୟ ବସ୍ତ୍ର ଏବଂ ଉଜ୍ଜ୍ୱଳ ମଣିମୁକ୍ତା ଖଚିତ ଦିବ୍ୟ ମୁକୁଟ ତାଙ୍କୁ ଦେବରାଜ ଇନ୍ଦ୍ରତୁଲ୍ୟ ଉଦ୍ଭାସିତ କରୁଥାଏ । ଦିବ୍ୟ ଅଳଙ୍କାର ବିଭୂଷିତା ମଦନମଞ୍ଜୁକା ଇନ୍ଦ୍ରପତ୍ନୀ ଶଚିଙ୍କ ତୁଲ୍ୟ ବାମ ପାର୍ଶ୍ୱରେ ଶୋଭା ପାଉଥାନ୍ତି । ଦୁନ୍ଦୁଭି ସବୁ ମେଘତୁଲ୍ୟ ଗର୍ଜନ କରୁଥାନ୍ତି । ଆକାଶ ପୁଷ୍ପ ବୃଷ୍ଟି କରୁଥାଏ । ଅପ୍‌ସରାମାନେ ବିଜୁଳି ତୁଲ୍ୟ ଆକାଶ ମାର୍ଗକୁ ଆଲୋକିତ କରୁଥାନ୍ତି । ଏହି ଉତ୍ସବମୟ ଦିବସଟି ଦୁର୍ଦ୍ଦିନ ବା ବର୍ଷାକାଳୀନ ଦିବସ ପରି ମନେହେବାରୁ ସମସ୍ତଙ୍କ ମନରେ ବିସ୍ମୟ ସୃଷ୍ଟି ହେଉଥାଏ । ହିମାଳୟ ଉପରେ କେବଳ ବିଦ୍ୟାଧର ସୁନ୍ଦରୀମାନେ ନୁହଁନ୍ତି ପୁଷ୍ପିତ ଲତାପୁଞ୍ଜ ମଧ୍ୟ ନୃତ୍ୟ କରୁଥାନ୍ତି । ଚାରଣମାନଙ୍କ ମୃଦଙ୍ଗ ଧ୍ୱନି ହିମାଳୟର କନ୍ଦରାମାନଙ୍କରେ ପ୍ରତିଧ୍ୱନିତ ହେଉଥାଏ । ସ୍ୱର୍ଗୀୟମଦିରା ପାନ କରି ଅସ୍ଥିର ପଦରେ ବିଚରଣ କରୁଥିବା ବିଦ୍ୟାଧରମାନଙ୍କଦ୍ୱାରା ପରିବ୍ୟାପ୍ତ ଥିବାରୁ ହିମାଳୟ ମଧ୍ୟ ମଦ୍ୟପାନ କରି ଉନ୍ମତ୍ତ ଅବସ୍ଥାରେ ଥିବା ମନେହେଲା । ଅଭିଷେକ ଉତ୍ସବର ଶୋଭା ଅବର୍ଣ୍ଣନୀୟ ଥିଲା । ସ୍ୱୟଂ

ଦେବରାଜ ଇନ୍ଦ୍ର ମଧ୍ୟ ତାଙ୍କ ଅଭିଷେକ ଉତ୍ସବ ସ୍ମରଣ କରି ଲଜ୍ଜିତ ହୋଇଉଠୁଥିଲେ । ଏହିପରି ନୃତ୍ୟ, ଗୀତ, ବାଦିତ୍ର ଧ୍ୱନି, ପୁଷ୍ପବୃଷ୍ଟି, ତୀର୍ଥବାରି ସ୍ନାନ ପ୍ରଭୃତିଦ୍ୱାରା ମହାଭିଷେକ ସମ୍ପନ୍ନ ହେଲା ।

ନିଜର ଅଭିଳାଷ ସମ୍ପୂର୍ଣ୍ଣତଃ ସିଦ୍ଧ ହେବା ପରେ ନରବାହନଦତ୍ତ ଉତ୍ସୁକତାର ସହିତ ପିତା ଉଦୟନଙ୍କୁ ସ୍ମରଣ କଲେ । ତାଙ୍କର ଉତ୍କଣ୍ଠା ଦେଖି ଗୋମୁଖ ପ୍ରଭୃତି ସଚିବ ବୃନ୍ଦ ବିଚାରବିମର୍ଶ ପୂର୍ବକ ରାଜା ବାୟୁପଥଙ୍କୁ ଡାକି ଅନୁରୋଧ କଲେ ଯେ ସେ ଯାଇ ବତ୍ସରାଜ ଉଦୟନଙ୍କୁ ପୁତ୍ରଙ୍କ ସମଗ୍ର ବୃତ୍ତାନ୍ତ ଜଣାନ୍ତୁ । ସମ୍ରାଟ ନରବାହନଦତ୍ତ ତାଙ୍କୁ ଦେଖିବାପାଇଁ ଅତ୍ୟନ୍ତ ବ୍ୟାକୁଳ ବୋଲି କହି ଏଠାକୁ ସଙ୍ଗରେ ନେଇ ଆସନ୍ତୁ । ରାଣୀ ଓ ମନ୍ତ୍ରୀମାନେ ମଧ୍ୟ ତାଙ୍କ ସହିତ ଯେପରି ଆସନ୍ତି, ସେହିପରି ବ୍ୟବସ୍ଥା କରନ୍ତୁ । ବାୟୁପଥ 'ଯଥା ଆଦେଶ' କହି ଆକାଶ ମାର୍ଗରେ ପ୍ରସ୍ଥାନ କଲେ ।

ସାତକୋଟି ବିଦ୍ୟାଧରଙ୍କ ସହିତ ସେ ଯେତେବେଳେ କୌଶାମ୍ବୀରେ ଯାଇ ଅବତରଣ କଲେ ସେତେବେଳେ ନାଗରିକମାନେ ଭୀତ ଓ ବିସ୍ମିତ ହୋଇପଡ଼ିଲେ । କିନ୍ତୁ ସେମାନଙ୍କର ଏପରି ଚିନ୍ତା ଓ ବ୍ୟାକୁଳତାକୁ ଦୂର କରି ବାୟୁପଥ ସଙ୍ଗେସଙ୍ଗେ ଯାଇ ମନ୍ତ୍ରୀ ଓ ରାଣୀମାନଙ୍କ ସହିତ ବତ୍ସରାଜ ଉଦୟନଙ୍କୁ ସାକ୍ଷାତ କଲେ । ତାଙ୍କ ପରିଚୟ ଲାଭ କରି ସମସ୍ତେ ଆଦରର ସହିତ ତାଙ୍କର ଯଥାଯୋଗ୍ୟ ସତ୍କାର କଲେ । ସେ ଆଶ୍ୱସ୍ତ ହୋଇ ରାଜାଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଆସନ ଗ୍ରହଣ କରିବାରେ ସମସ୍ତେ ତାଙ୍କୁ ଉତ୍କଣ୍ଠା ଓ କୌତୂହଳର ସହିତ ଚାହିଁ ରହିଥାନ୍ତି । ସେ ବତ୍ସରାଜଙ୍କ କୁଶଳ ଜିଜ୍ଞାସା କରି ନିବେଦନ କଲେ, 'ମହାରାଜ ! ଆପଣଙ୍କ ପୁତ୍ର ନରବାହନଦତ୍ତ ଦେବଦେବ ମହାଦେବଙ୍କୁ ଆରାଧନା କରି ତାଙ୍କ ଦର୍ଶନଲାଭ କରିଛନ୍ତି । ତାଙ୍କ ଆଶୀର୍ବାଦରୁ ସେ ସମସ୍ତ ଅଜେୟ ବିଦ୍ୟାର ଅଧିକାରୀ । ହିମାଳୟର ଦକ୍ଷିଣଭାଗରେ ରାଜତ୍ୱ କରୁଥିବା ବିଦ୍ୟାଧର ଅଧିପତି ମାନସବେଗ ଓ ଗୌରୀମୁଣ୍ଡଙ୍କୁ ନିହତ କରି ଉତ୍ତରଭାଗ ସ୍ଥିତ ମନ୍ଦରଦେବଙ୍କୁ ପରାସ୍ତ କରିଛନ୍ତି । ସେ ବର୍ତ୍ତମାନ ଉଭୟ ବିଦ୍ୟାଧର ବେଦୀର ଏକଚ୍ଛତ୍ର ଚକ୍ରବର୍ତ୍ତୀ ସମ୍ରାଟ । ଭଗବାନଙ୍କ ନିର୍ଦ୍ଦେଶ କ୍ରମେ ଋଷଭ ପର୍ବତ ଉପରେ ତାଙ୍କର ମହାଭିଷେକ ସମ୍ପନ୍ନ ହୋଇଛି । ବର୍ତ୍ତମାନ ଅତ୍ୟନ୍ତ ଉତ୍କଣ୍ଠାର ସହିତ ସେ ମାତା ଓ ମନ୍ତ୍ରୀମାନଙ୍କ ସହିତ ଆପଣଙ୍କୁ ସ୍ମରଣ କରୁଛନ୍ତି । ସେଥିପାଇଁ ମୁଁ ଏଠାକୁ ଆସିଅଛି । ଚାଲନ୍ତୁ, ଯଥାଶୀଘ୍ର ସେଠାକୁ ଯାଇ ନରବାହନଦତ୍ତଙ୍କ ଦର୍ଶନ କରିବା । ଉତ୍ତମବଂଶର କୃତୀ ସନ୍ତାନଙ୍କୁ ଦର୍ଶନ କରିବା ମଧ୍ୟ ପରମ ସୌଭାଗ୍ୟ ।'

ପୁତ୍ରର ଅପୂର୍ବ କୃତିତ୍ୱ ଶୁଣି ଉତ୍କଣ୍ଠିତ ବତ୍ସରାଜ ମେଘ ଦର୍ଶନରେ ମୟୂରପରି ହର୍ଷିତ ହୋଇଉଠିଲେ । ସଙ୍ଗେସଙ୍ଗେ ପ୍ରସ୍ଥାନର ଆୟୋଜନ କରାଗଲା । ବାସବଦତ୍ତା, ପଦ୍ମାବତୀ, ମନ୍ତ୍ରୀବୃନ୍ଦ ଏବଂ କଳିଙ୍ଗସେନାଙ୍କ ସହିତ ସେ ଶିବିକା ଆରୋହଣ କଲେ । ବାୟୁପଥ ସ୍ୱୀୟ ବିଦ୍ୟା ପ୍ରଭାବରେ ସେମାନଙ୍କୁ କ୍ଷଣକ ମଧ୍ୟରେ ଆକାଶ ପଥରେ ନେଇ ଦିବ୍ୟ ମହାପର୍ବତ ଋଷଭ ଶିଖରରେ ପହଞ୍ଚାଇଦେଲେ । ଦିବ୍ୟ ସିଂହାସନ ଉପରେ ବହୁପତ୍ନୀ ପରିବେଷ୍ଟିତ ହୋଇ ବସିଥିବା ପୁତ୍ରକୁ ଦେଖି ବତ୍ସରାଜଙ୍କ ହୃଦୟ ଆନନ୍ଦରେ ନାଚିଉଠିଲା । ସେ ବିଦ୍ୟାଧର ରାଜାମାନଙ୍କଦ୍ୱାରା ପରିବେଷ୍ଟିତ ହୋଇ ଉଦୟ ପର୍ବତର ଶିଖର ଦେଶରେ ଗ୍ରହ ଓ ତାରାଗଣ ପରିବେଷ୍ଟିତ ପୂର୍ଣ୍ଣଚନ୍ଦ୍ରପରି ଶୋଭାପାଉଥାନ୍ତି । ବତ୍ସରାଜଙ୍କ ସମଗ୍ର ଶରୀର ପୁତ୍ର ଦର୍ଶନ ରୂପ ଅମୃତ ସ୍ପର୍ଶରେ ରୋମାଞ୍ଚିତ ହୋଇଉଠିଲା । ସେ ଚନ୍ଦ୍ରୋଦୟ କାଳୀନ ସମୁଦ୍ରର ଶୋଭା ଧାରଣ କଲେ । ପୁତ୍ର ଦୀର୍ଘକାଳ ପରେ ପିତାଙ୍କୁ ଦେଖି ସିଂହାସନ ପରିତ୍ୟାଗ ପୂର୍ବକ ସପରିବାର ତାଙ୍କ ନିକଟକୁ ଦୌଡ଼ି ଆସିଲେ । ସେ ପିତାଙ୍କ ପାଦସ୍ପର୍ଶ କରି ପ୍ରଣାମ କରିବା ପୂର୍ବରୁ ପିତା ପୁତ୍ରକୁ କୋଳାଗ୍ରତ କରି ଆନନ୍ଦାଶ୍ରୁରେ ତାଙ୍କର ପୁନରାଭିଷେକ କରିଦେଲେ । ରାଣୀ ବାସବଦତ୍ତା ମଧ୍ୟ ପୁତ୍ରକୁ ଛାତିରେ ଧରି ଶିହରିତ ହୋଇଉଠିଲେ । ତାଙ୍କ ହୃଦୟରେ ଅପୂର୍ବ ବାତ୍ସଲ୍ୟଭାବ ଜାଗ୍ରତ ହେଲା । ସ୍ତନଯୁଗଳରୁ ଦୁଗ୍ଧ ସ୍ରବିତ ହେବାକୁ ଲାଗିଲା । ସେ ପୁତ୍ରର କ୍ଷୀରାଭିଷେକ କରି ଅତୀତକୁ ଫେରିଗଲେ ।

ପଦ୍ମାବତୀଙ୍କର ମଧ୍ୟ ଅନୁରୂପ ଅବସ୍ଥା । ମନ୍ତ୍ରୀ ଯୌଗନ୍ଧରାୟଣ ଏବଂ ମାମୁ ଗୋପାଳକ ତୃଷିତ ନୟନରେ ନରବାହନଦତ୍ତଙ୍କୁ ଚକୋର ଦୃଷ୍ଟିରେ ଚାହିଁ ରହିଲେ । ସେମାନେ ସତେ ଯେପରି ତାଙ୍କ ଶରୀରରୁ ଅମୃତ ପାନ କରୁଛନ୍ତି । କଳିଙ୍ଗସେନା ଜାମାତା ଓ କନ୍ୟାର ସମୃଦ୍ଧି ଦେଖି ଏତେ ଆନନ୍ଦିତ ହୋଇପଡ଼ିଲେ ଯେ ତାଙ୍କୁ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଦେଖାଗଲା ନାହିଁ । ଯୌଗନ୍ଧରାୟଣ ପ୍ରଭୃତି ସଚିବ ନିଜ ନିଜ ପୁତ୍ରମାନଙ୍କୁ ନରବାହନଦତ୍ତଙ୍କ ସଂସ୍ପର୍ଶରେ ଆସି ବିଦ୍ୟାଧରତ୍ୱ ଲାଭ କରିଥିବା ଦେଖି ନିଜକୁ ଧନ୍ୟ ମନେକଲେ । ନରବାହନଦତ୍ତ ଜଣ ଜଣ କରି ପ୍ରତ୍ୟେକଙ୍କୁ ଉପଯୁକ୍ତ ଅଭିବାଦନ ଜଣାଉଥାନ୍ତି ।

ଅଲୌକିକ ରୂପସମ୍ପନ୍ନା ଏବଂ ଦିବ୍ୟ ଅଳଙ୍କାରଦ୍ୱାରା ବିଭୂଷିତା ପଟ୍ଟମହିଷୀ ମଦନମଞ୍ଚୁକାଙ୍କ ସହିତ ରତ୍ନପ୍ରଭା, ଅଳଙ୍କାରବତୀ, ଲଳିତଲୋଚନା, କର୍ପୂରିକା, ଶକ୍ତିଯଶା, ଭଗୀରଥଯଶା, ରୁଚିରଦେବଙ୍କ ଭଗିନୀ ବେଗବତୀ, ଅଜିନାବତୀ,

ଗନ୍ଧର୍ବଦତ୍ତା, ପ୍ରଭାବତୀ, ଆତ୍ମନିକା, ବାୟୁବେଗଯଶା ଏବଂ ତାଙ୍କ ସଖୀ କଳିକା, ବିଦ୍ୟୁତ୍‌ପୁଞ୍ଜା, ମତଙ୍ଗିନୀ ଏବଂ ପଦ୍ମପ୍ରଭା ତଥା ମାନ୍ଦରଦେବୀ ଏବଂ ତାଙ୍କର ଚାରିସଖୀ କନକବତୀ, କଳାବତୀ, ଶ୍ରୁତା ଏବଂ ଅମ୍ବରପ୍ରଭା ଶ୍ୱଶୁର ବତ୍ସରାଜ ଉଦୟନଙ୍କୁ ଆସି ପାଦସ୍ପର୍ଶ ପୂର୍ବକ ପ୍ରଣାମ କଲେ । ବାସବଦତ୍ତା ଓ ପଦ୍ମାବତୀ ପଦସ୍ପର୍ଶ କରି ପ୍ରଣାମ କରୁଥିବା ପୁତ୍ରବଧୂମାନଙ୍କୁ ସହର୍ଷ ଚିତ୍ତରେ ଆଶୀର୍ବାଦ ପୂର୍ବକ କୋଳାଗ୍ରତ କଲେ ।

ମିଳନପର୍ବ ଶେଷ ହେଲା । ପିତା ଉଦୟନ ଓ ମାତା ବାସବଦତ୍ତା ଓ ପଦ୍ମାବତୀ ସହିତ ସମସ୍ତେ ନିଜନିଜ ଆସନ ଗ୍ରହଣ କରନ୍ତେ ନରବାହନଦତ୍ତ ସିଂହାସନ ଆରୋହଣ କରି ସମସ୍ତଙ୍କୁ ଆନନ୍ଦିତ କଲେ । ଦେବୀ ବାସବଦତ୍ତା ଜଣ ଜଣ କରି ପ୍ରତ୍ୟେକ ପୁତ୍ରବଧୂଙ୍କ ନାମ, କୁଳ, ଗୋତ୍ର ଇତ୍ୟାଦି ପଚାରୁଥାନ୍ତି । ସେମାନଙ୍କ ପରିଚୟ ଲାଭ କରି ଉଭୟ ବାସବଦତ୍ତା ଓ ପଦ୍ମାବତୀଙ୍କ ଛାତି ଫୁଲିଉଠୁଥାଏ । ନରବାହନଦତ୍ତଙ୍କ ସମଗ୍ର ପରିବାରକୁ ଦେଖି ଉପସ୍ଥିତ ବିଦ୍ୟାଧରମାନେ ସେମାନଙ୍କ ଚକ୍ଷୁ ସଫଳ ହେଲା ମନେକଲେ ।

ଏହିପରି ମିଳନ ଉତ୍ସବ ଚାଲିଥିବା ବେଳେ ରୁଚିଦେବ ନାମକ ପ୍ରତିହାର ଆସି ଜଣାଇଲା, 'ମହାରାଜ ! ମଧୁପାନ ଗୃହ ପ୍ରସ୍ତୁତ । ଚାଲନ୍ତୁ, ବର୍ତ୍ତମାନ ସେଠାକୁ ଯିବା ।' ସମସ୍ତେ ସେଠାରୁ ଯାଇ ମଧୁପାନ ଗୃହରେ ପହଞ୍ଚିଲେ । ବିଭିନ୍ନ ରଙ୍ଗର ମଦ୍ୟପାତ୍ର ପ୍ରସ୍ଫୁଟିତ କମଳ ପରି ସେଠାରେ ସଜ୍ଜିତ ହୋଇ ରହିଥାଏ । ପ୍ରକୋଷ୍ଠଟି ଦର୍ଶକ ମନରେ ଉପବନର ଭ୍ରମ ସୃଷ୍ଟି କରୁଥାଏ । ଆସବ ପୂର୍ଣ୍ଣ ସୁନ୍ଦର ପାତ୍ର ସବୁକୁ ଧରି ବିଦ୍ୟାଧରୀ-ମାନେ ବିଭିନ୍ନ ସ୍ଥାନରେ ଉପସ୍ଥିତ ଥା'ନ୍ତି । ଆସବ ଅନ୍ତଃପୁର ଲଳନାମାନଙ୍କର ଲଜ୍ଜାରୂପକ ବନ୍ଧନକୁ ଦୂର କରିବାପାଇଁ ମନ୍ତ୍ରୌଷଧି ସ୍ୱରୂପ, କାମଦେବଙ୍କ ଜୀବନ ସର୍ବସ୍ୱ ଏବଂ ବିଳାସର ମନ୍ତ୍ରଣାଦାତା । ମଦ୍ୟପାନ ଫଳରେ ପ୍ରତ୍ୟେକଙ୍କର ମୁଖ ରକ୍ତିମଆଭା ଧାରଣ କଲା । ସେମାନଙ୍କ ପ୍ରଫୁଲ୍ଲିତ ମୁଖମଣ୍ଡଳ ଉଦୟକାଳୀନ ସୂର୍ଯ୍ୟକିରଣରେ ବିକଶିତ କମଳ ସରୋବରର ଶୋଭା ଧାରଣ କରିଥାଏ । ପଦ୍ମରାଗ ନିର୍ମିତ ମଧୁପାତ୍ରଗୁଡ଼ିକ ରାଣୀମାନଙ୍କ ଅଧରପଲ୍ଲବଦ୍ୱାରା ପରାଜିତ ହୋଇପଡୁଥିଲେ । ପାନୀୟ ଓ ପାନପାତ୍ର ମଧ୍ୟରେ ପାର୍ଥକ୍ୟ ବାରି ହେଉନଥିଲା । ମଦମତ୍ତ ରାଣୀମାନେ ଅତ୍ୟନ୍ତ ପ୍ରଫୁଲ୍ଲ ଥିଲେ ସୁଦ୍ଧା ସେମାନଙ୍କ କଟାକ୍ଷ ଏବଂ ନୟନଗୁଡ଼ିକ ରୋଷ କଷାୟିତ ମନେହେଉଥିଲା ।

ପାନକ୍ରୀଡ଼ା ଶେଷ ହେବାପରେ ସମସ୍ତେ ଯାଇ ଭୋଜନ ପ୍ରକୋଷ୍ଠରେ ପହଞ୍ଚିଲେ । ବିଦ୍ୟାଧରମାନଙ୍କ ଅଲୌକିକ ବିଦ୍ୟା ପ୍ରଭାବରେ ବହୁବିଧ ସୁମିଷ୍ଟ ଓ ସ୍ୱର୍ଗୀୟ ଖାଦ୍ୟ ପଦାର୍ଥ ସବୁ ସେଠାରେ ସଜ୍ଜିତ ହୋଇ ରହିଥାଏ । ଭୋଜନ ପ୍ରକୋଷ୍ଠର ଚତୁର୍ଦ୍ଦିଗରେ

ପରଦା ଓ ତୋରଣ ଲଗାଯାଇଥାଏ । ପାତ୍ରଗୁଡ଼ିକ ସୁସଜ୍ଜିତ ଥା'ନ୍ତି । ବିଭିନ୍ନ ସ୍ଥାନରେ ପରଦା ସବୁ ଝୁଲୁଥାଏ । ପରିବେଷିତ ହେବାପାଇଁ ରସାଳ ଆସ୍ୱାଦ୍ୟ ପଦାର୍ଥ ସବୁ ଅତିଥିମାନଙ୍କୁ ଆକୃଷ୍ଟ କରୁଥାଏ । ଏଣୁ ଭୋଜନଶାଳାକୁ ନାଟ୍ୟ ମନ୍ଦିର ସହିତ ତୁଳନା କରିବା ଅଯଥାର୍ଥ ହେବନାହିଁ ।

ଭୋଜନପର୍ବ ଶେଷହେଲା । ସୂର୍ଯ୍ୟ ଅସ୍ତାଚଳଗାମୀ ହେଲେ । ରାତ୍ରି ପ୍ରବେଶ କରିବାରୁ ସମସ୍ତେ ନିଜନିଜର ଶୟନକକ୍ଷରେ ପ୍ରବେଶ କଲେ । ନରବାହନଦତ୍ତ ବିଦ୍ୟାବଳରେ ନିଜ ଶରୀରକୁ ବିଭିନ୍ନ ଅଂଶରେ ବିଭକ୍ତ କରି ସମସ୍ତ ରାଣୀଙ୍କ ଶୟନ କକ୍ଷରେ ଉପସ୍ଥିତ ଥାନ୍ତି । କିନ୍ତୁ କେବଳ ଚନ୍ଦ୍ରମୁଖୀ, ଚଞ୍ଚଳନୟନା ଏବଂ କେଳୀକୁଶଳା ରାତ୍ରିରୂପିଣୀ ମଦନମଞ୍ଚୁକାଙ୍କ ସହିତ ହିଁ ସେ ସ୍ୱାଭାବିକ ରୂପରେ ରହିଥାନ୍ତି ।

ବତ୍ସରାଜ ଉଦୟନ ରାଣୀ ଓ ମନ୍ତ୍ରୀମାନଙ୍କ ସହିତ ଅତ୍ୟନ୍ତ ଆନନ୍ଦରେ ରାତ୍ରିଟି କଟାଇଦେଲେ । ଏହି ଶରୀରରେ ହିଁ ପରବର୍ତ୍ତୀ ଜନ୍ମରେ ପହଞ୍ଚିଯାଇଛନ୍ତି ବୋଲି ସେମାନଙ୍କର ମନେହେଲା । ପ୍ରଭାତରୁ ସେମାନେ ଚତୁର୍ଦ୍ଦିଗରେ ଉଦ୍ୟାନ, ଭବନ ପ୍ରଭୃତି ବହୁ ଉପଭୋଗ୍ୟ ଉପକରଣ ଦେଖିବାକୁ ପାଇଲେ । ବିଦ୍ୟାଧରମାନଙ୍କ ବିଦ୍ୟା ସେମାନଙ୍କ ସମସ୍ତ ମନୋବାଞ୍ଛିତ ଭାବନାକୁ ତତ୍‌କ୍ଷଣାତ୍ ପୂର୍ଣ୍ଣ କରୁଥାନ୍ତି । ଏହିପରି ଭୋଗବିଳାସରେ ବହୁଦିନ ବିତିଗଲା ।

ଦିନେ ବତ୍ସରାଜ ଉଦୟନ ନିଜ ରାଜଧାନୀ କୌଶାମ୍ବୀକୁ ଫେରିଯିବା ପାଇଁ ପ୍ରସ୍ତୁତ ହେଲେ । ସେ ସମସ୍ତ ଯକ୍ଷ, ଗନ୍ଧର୍ବ, ବିଦ୍ୟାଧରମାନଙ୍କ ଏକଛତ୍ର ସମ୍ରାଟ ପୁତ୍ର ନରବାହନଦତ୍ତ ନିକଟକୁ ଯାଇ ସ୍ନେହପୂର୍ବକ କହିଲେ, 'ପୁତ୍ର ! ଏ ପ୍ରକାର ଅଲୌକିକ ଦିବ୍ୟ ଭୋଗ କାହାପାଇଁ ବା ରୁଚିକର ନୁହେଁ ? କିନ୍ତୁ ଜନ୍ମଭୂମିର ଆକର୍ଷଣକୁ ଏଡ଼ାଇ ଦେଇହେବ ନାହିଁ । ତେଣୁ ଆମେ କୌଶାମ୍ବୀ ଫେରିଯିବାପାଇଁ ଚାହୁଁଛୁ । ତୁମେ ଏହି ବିଦ୍ୟାଧର ସାମ୍ରାଜ୍ୟଲକ୍ଷ୍ମୀ ଭୋଗକର । ବର୍ତ୍ତମାନ ତୁମେ ଦିବ୍ୟପୁରୁଷରେ ପରିଣତ ହୋଇଯାଇଛ । ଏଥିପାଇଁ ହିମାଳୟ ହିଁ ତୁମର ଯୋଗ୍ୟ ଆବାସଭୂମି । ପୁତ୍ର, ଏଥିପାଇଁ ଚିନ୍ତିତ ହେବା ଅନାବଶ୍ୟକ । ଅବସର ମାତ୍ରେ ତୁମ ନିମନ୍ତ୍ରଣ କ୍ରମେ ଆମେ ଆସି ଏଠାରେ ପହଞ୍ଚିବୁ । ତୁମର ଅମୃତମୟ ମୁଖମଣ୍ଡଳକୁ ଦର୍ଶନ କରି ଦିବ୍ୟାନନ୍ଦ ଲାଭ କରିବା ବ୍ୟତୀତ ଆମର ଆଉ କି ଅଭିଳାଷ ବା ଥାଇପାରେ ?'

ନରବାହନଦତ୍ତ ପିତାଙ୍କ ପ୍ରସ୍ତାବର ଯଥାର୍ଥତା ଉପଲବ୍ଧି କଲେ । ତାଙ୍କ ଚକ୍ଷୁରୁ ଶୋକ ଓ ଆନନ୍ଦାଶ୍ରୁ ନିର୍ଗତ ହେଲା । ରାଜା ଦେବମାୟଙ୍କୁ ଡାକି ନିର୍ଦ୍ଦେଶ ଦେଲେ,

'ମାତାମାନଙ୍କ ସହିତ ପିତା କୌଶାମ୍ବୀ ଫେରିଯିବାପାଇଁ ଚାହୁଁଛନ୍ତି । ଏଣୁ ସେମାନଙ୍କ ଆଗେ ଆଗେ ଏକ ସହସ୍ର ବିଦ୍ୟାଧର ଯେପରି ଏକ ସହସ୍ର ଭାର ସୁବର୍ଣ୍ଣ ଏବଂ ଏକ ସହସ୍ରଭାର ମଣିମୁକ୍ତା ଧରିଯାନ୍ତି ତାର ବ୍ୟବସ୍ଥା କର ।' ସମ୍ରାଟ ତଥା ପ୍ରଭୁଙ୍କ ଏହି ସ୍ନେହପୂର୍ଣ୍ଣ ଆଦେଶ ପାଇ ଦେବମାୟ ବିନୟ ପୂର୍ବକ କହିଲେ, 'ପ୍ରଭୁ ! ଏଥିପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ । ଅନୁଚରମାନଙ୍କ ସହିତ ମୁଁ ନିଜେ କୌଶାମ୍ବୀ ପର୍ଯ୍ୟନ୍ତ ଯାଇ ବଳାଇ ଦେଇ ଆସିବି ।'

ଯିବା ମୁହୂର୍ତ୍ତ ଆସି ପହଞ୍ଚିଲା । ଚକ୍ରବର୍ତ୍ତୀ ନରବାହନଦତ୍ତ ବସ୍ତ୍ର ଓ ଅଳଙ୍କାରଦ୍ୱାରା ପିତାଙ୍କର ପୂଜା କଲେ । ଦେବମାୟ ତଥା ବାୟୁପଥ ଅନୁଚରମାନଙ୍କ ସହିତ ପିତାଙ୍କ ଅନୁଯାତ୍ରିକ ରୂପେ ପ୍ରେରିତ ହେଲେ । ସପରିବାର ବତ୍ସରାଜ ବିମାନ ଆରୋହଣ କରି ଋଷଭ ପର୍ବତରୁ ଯାତ୍ରା ଆରମ୍ଭ କଲେ । ପୁତ୍ର ବହୁଦୂର ପର୍ଯ୍ୟନ୍ତ ତାଙ୍କ ସହିତ ଯାଉଥାନ୍ତି । ଦେବୀ ବାସବଦତ୍ତା ଭାବି ବିରହରେ ଶୋକାଭିଭୂତା ହୋଇ କୌଣସିମତେ ପୁତ୍ରକୁ ପଥ ମଧ୍ୟରୁ ଫେରାଇଲେ । ପିତା, ମାତା ଓ ପୁତ୍ର ସମସ୍ତଙ୍କ ଚକ୍ଷୁ ଅଶ୍ରୁପୂର୍ଣ୍ଣ ଏବଂ କଣ୍ଠ ବାଷ୍ପାକୁଳ । ବାରମ୍ବାର ପଛକୁ ଫେରିଚାହିଁ ଚକ୍ରବର୍ତ୍ତୀ ନରବାହନଦତ୍ତ କଷ୍ଟକଷ୍ଟରେ ଅର୍ଦ୍ଧପଥରୁ ଋଷଭ ପର୍ବତକୁ ଫେରିଆସିଲେ ।

ବାଲ୍ୟମିତ୍ର ଗୋମୁଖ, ହରିଶିଖ ପ୍ରଭୃତି ସଚିବ, ଗନ୍ଧର୍ବ ଓ ବିଦ୍ୟାଧର ରାଜନ୍ୟ ବୃନ୍ଦ, ଅନ୍ତଃପୁରରେ ରାଣୀ ଓ ମଦନମଞ୍ଚୁକା ସମସ୍ତଙ୍କ ସହିତ ନରବାହନଦତ୍ତଙ୍କ ଦିନଗୁଡ଼ିକ ଆନନ୍ଦରେ ବିତିଯାଉଥାଏ । ତଥାପି ସେ ଅତୃପ୍ତ ବୋଲି ମନେହେଉଥାନ୍ତି ।





ପାତୁ ବସ୍ତାଣ୍ଡବୋବ୍‌ଢ଼ୀନଗଣ୍ଡସିନ୍ଦୂରମଣ୍ଡନଃ ।
ବାନ୍ତାଭିପୀତପ୍ରତ୍ୟୂହପ୍ରତାପ ଇବ ବିଘ୍ନଜିତ୍ ।।



## ପ୍ରଥମ ତରଙ୍ଗ

ଚକ୍ରବର୍ତ୍ତୀ ନରବାହନଦତ୍ତ ମହତୀ ବିଦ୍ୟାଧର ସାମ୍ରାଜ୍ୟ ଲକ୍ଷ୍ମୀ ଲାଭକରି ଋଷଭ ପର୍ବତ ଉପରେ ରହୁଥାନ୍ତି । ରାଣୀ ଓ ମନ୍ତ୍ରୀମାନଙ୍କ ସହ ତାଙ୍କର ଦିନଗୁଡ଼ିକ ଭୋଗବିଳାସରେ କଟୁଥାଏ । ସମୟକ୍ରମେ ଋଷଭପର୍ବତ ବସନ୍ତ ଋତୁର ଆଗମନରେ ପ୍ରଫୁଲ୍ଲିତ ହୋଇଉଠିଲା । ଦୀର୍ଘଦିନ ପରେ ଆକାଶରେ ନିର୍ମଳ ଚନ୍ଦ୍ର ମଣ୍ଡଳ ଜ୍ୟୋତ୍ସ୍ନା ବିକୀରଣ କଲା । ନବ ଅଙ୍କୁରିତ ଦୂର୍ବାଦଳ ଗୁଡ଼ିକ ଧରଣୀରାଣୀଙ୍କୁ ସ୍ୱେଦସିକ୍ତ କଲାପରି ମନେହେଲେ । ମଳୟାନିଳର ସ୍ପର୍ଶରେ ବନଦେବୀ ବେପଥୁ ଓ ରୋମାଞ୍ଚଯୁକ୍ତ ହୋଇ ରସବତୀ ନାରୀର ଶୋଭା ଧାରଣ କଲା । କୁସୁମଚାପ କାମଦେବଙ୍କ ପ୍ରତିହାର କୋକିଳବୃନ୍ଦ ଆମ୍ରଶାଖା ରୂପକ ବେତ୍ର ପ୍ରଦର୍ଶନ ପୂର୍ବକ କୁହୁତାନରେ ମାନିନୀମାନଙ୍କୁ ଅଭିମାନ ତ୍ୟାଗ କରିବାପାଇଁ ନିର୍ଦ୍ଦେଶ ଦେବାକୁ ଲାଗିଲେ । ପୁଷ୍ପିତ ଲତାକୁଞ୍ଜରେ ଭ୍ରମରମାନଙ୍କର ଗୁଞ୍ଜନ ଏବଂ ପରିକ୍ରମା କନ୍ଦର୍ପଙ୍କ ପୁଷ୍ପଧନୁ ନିର୍ଗତ କୁସୁମଶର ପରି ମନେହେଉଥାଏ ।

ବାସନ୍ତିକ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ଗୋମୁଖ ପ୍ରଭୃତି ମନ୍ତ୍ରୀମାନେ ନରବାହନଦତ୍ତଙ୍କୁ ନିବେଦନ କଲେ, 'ପ୍ରଭୁ ! ଦେଖନ୍ତୁ ପୁଷ୍ପିତ ଲତାପୁଞ୍ଜ ଏବଂ ନବପଲ୍ଲବିତ ବୃକ୍ଷ ଶାଖାଗୁଡ଼ିକ ଋଷଭ ପର୍ବତକୁ ଏକ ସ୍ୱତନ୍ତ୍ର ରୂପ ପ୍ରଦାନ କରିଛନ୍ତି । ଲତାଗୁଡ଼ିକ ମନ୍ଦମଳୟାନିଳର ହିଲ୍ଲୋଳରେ ପରସ୍ପରକୁ ସ୍ପର୍ଶକରି ନୂପୁର ନିକ୍ୱଣ ସୃଷ୍ଟି କରୁଛନ୍ତି, ଭ୍ରମରମାନଙ୍କ ମଧୁର ଗୁଞ୍ଜରଣ ସଙ୍ଗୀତର ସ୍ୱର ପ୍ରକାଶ କରୁଛି ଏବଂ ଧୀର ସମୀର ସେମାନଙ୍କୁ ମଧୁର ଲାସ୍ୟ ନୃତ୍ୟରେ ପ୍ରବୃତ୍ତ କରାଉଛି । ପୁଷ୍ପରେଣୁଗୁଡ଼ିକ ଚତୁର୍ଦ୍ଦିଗରେ ବିଚ୍ଛୁରିତ ହୋଇ ବନଭୂମିକୁ କାମଦେବଙ୍କ ବସନ୍ତ ସଜ୍ଜିତ ରଙ୍ଗଭୂମିରେ ପରିଣତ କରିଛି । ଆଉ ଏହି ଚୂତମଞ୍ଜରୀ ! ମନେହେଉଛି ସମଗ୍ର ସଂସାରକୁ କବଳିତ କରି କନ୍ଦର୍ପ ନିଜର ଧନୁର୍ବାଣକୁ ଏଠାରେ ରଖି ବିଶ୍ରାମ ନେଉଛି । ଏହି ଭ୍ରମର ପଂକ୍ତି ଧନୁର୍ମୁକ୍ତ ଗୁଣପରି ଦେଖାଯାଉଛନ୍ତି । ଚାଲନ୍ତୁ, ଆମେ ମନ୍ଦାକିନୀ ତଟସ୍ଥିତ ରମଣୀୟ ଉଦ୍ୟାନ ମଧ୍ୟରେ ବସନ୍ତ ଉତ୍ସବ ପାଳନ କରିବା ।'

ମନ୍ତ୍ରୀମାନଙ୍କ ଆଗ୍ରହ କ୍ରମେ ନରବାହନଦତ୍ତ ସେମାନଙ୍କ ସହିତ ଯାଇ ଉଦ୍ୟାନ ମଧ୍ୟରେ ପ୍ରବେଶ କଲେ । ଉପବନଟି ବିଭିନ୍ନ ପକ୍ଷୀମାନଙ୍କ କାକଳିରେ ମୁଖରିତ ଥିଲା । ଏଳା, ଲବଙ୍ଗ, ଅଶୋକ, ବକୁଳ ଓ ମନ୍ଦାରପୁଷ୍ପରେ ଏହା ଥିଲା ସୁଶୋଭିତ । ଚନ୍ଦ୍ରକାନ୍ତ ଶିଳା ଉପରେ ଉପବେଶନ କରି ନରବାହନଦତ୍ତ ପଟ୍ଟମହିଷୀ ମଦନମଞ୍ଜୁକାଙ୍କୁ ନିଜର ବାମପାର୍ଶ୍ୱରେ ବସାଇଲେ । ଅନ୍ୟ ରାଣୀମାନେ ତାଙ୍କ ନିକଟରେ ଆସନ ଗ୍ରହଣ କଲାପରେ ଗୋମୁଖ ପ୍ରଭୃତି ମନ୍ତ୍ରୀ ପରିଷଦ ଏବଂ ଚଣ୍ଡସିଂହ, ଅମିତଗତି ପ୍ରମୁଖ ବିଦ୍ୟାଧର ଅଧିପତିମାନେ ସେମାନଙ୍କୁ ପରିବେଷ୍ଟନ କରି ତିନିଦିଗରେ ନିଜ ନିଜର ଆସନ ଗ୍ରହଣ କଲେ । ଦିବ୍ୟ ମଦିରା ଏବଂ ଭୋଜନ ସାମଗ୍ରୀ ସେମାନଙ୍କୁ ଆପ୍ୟାୟିତ କରିବାକୁ ଲାଗିଲା । ସମସ୍ତେ ବିଶ୍ରମ୍ଭାଳାପରେ ମଜ୍ଜିଗଲେ ।

ବସନ୍ତର ବିମଳ ସୌନ୍ଦର୍ଯ୍ୟରେ ଅଭିଭୂତ ହୋଇ ସମ୍ରାଟ ନରବାହନଦତ୍ତ କହିଲେ, 'ଦେଖ, ଦକ୍ଷିଣ ଦିଗରୁ ପ୍ରବାହିତ ଏହି ମଳୟାନିଳର ସ୍ପର୍ଶ କେଡ଼େ କୋମଳ ଓ ମଧୁର, ଦଶଦିଗ କିପରି ନିର୍ମଳ ଓ ମନୋହର, ଚତୁର୍ଦ୍ଦିଗ ବନପୁଷ୍ପର ସୁଗନ୍ଧିରେ ମହକିତ, କୋକିଳର କୁହୁତାନ କେଡ଼େ ମଧୁର ଏବଂ ତା' ସହିତ ଆମମାନଙ୍କର ଏହି ମଧୁପାନ ଲୀଳା ସର୍ବାପେକ୍ଷା ଆନନ୍ଦପ୍ରଦ । ବସନ୍ତଋତୁରେ କେଉଁ ପଦାର୍ଥ ବା ସୁଖକର ନୁହେଁ । କେବଳ ପ୍ରିୟା ବିରହ ହିଁ ଏହି ସମୟରେ ଅସହ୍ୟ କଷ୍ଟଦାୟକ । ଅନ୍ୟମାନଙ୍କ କଥା ଛାଡ଼ନ୍ତୁ, ପକ୍ଷୀମାନେ ମଧ୍ୟ ଏହି ଋତୁରେ ବିରହ ବେଦନା ସହ୍ୟ କରିପାରନ୍ତି ନାହିଁ । ଦେଖ, କୋଇଲିଟି ବିରହ ଦୁଃଖରେ କିପରି କ୍ଷୀଣ ହୋଇପଡ଼ିଛି । କୁହୁକୁହୁ ସ୍ୱରରେ ଦୂରସ୍ଥିତ ପ୍ରିୟତମକୁ ଡାକିଡାକି ତାର କଣ୍ଠ ଶୁଷ୍କ ହୋଇପଡୁଛି । କ୍ଳାନ୍ତପକ୍ଷୀଟି ଶେଷରେ କିପରି ଚୂତବଲ୍ଲରୀର ଶାଖାରେ ନିଃଶବ୍ଦଭାବରେ ବିଶ୍ରାମ କରୁଛି ଲକ୍ଷ୍ୟକର ।'

ସମ୍ରାଟଙ୍କ କଥାକୁ ସମର୍ଥନ କଲେ ଗୋମୁଖ । 'ପ୍ରକୃତରେ ବସନ୍ତ ଋତୁରେ ପ୍ରତ୍ୟେକ ପ୍ରାଣୀପାଇଁ ବିରହ ଦୁଃଖଦାୟକ । ଶ୍ରୀବସ୍ତୀ ନଗରୀରେ ଯେଉଁ ଘଟଣା ଘଟିଥିଲା, ମୁଁ ସେ ସମ୍ପର୍କରେ ଆପଣଙ୍କୁ ଶୁଣାଉଛି, ଦୟା କରି ଶୁଣନ୍ତୁ–

## ଶୂରସେନ ଓ ସୁଷେଣା କଥା

ଏହି ନଗରୀରେ ଜଣେ ରାଜସେବକ କ୍ଷତ୍ରିୟ ସନ୍ତାନ ରହୁଥାଏ । ସେ ରାଜପ୍ରଦତ୍ତ ଗୋଟିଏ ବିଶାଳ ଗ୍ରାମର ଅଧିକାରୀ ଥିଲା । ତାର ନାମ ଥିଲା ଶୂରସେନ । ସୁଷେଣା ତା'ର ଅନୁରୂପା ପତ୍ନୀ । ମାଳବ ତା'ର ପିତୃଗୃହ । ସେ ଥିଲା ପତିଙ୍କର ଜୀବନଠାରୁ ଅଧିକ ପ୍ରିୟ ।

ଦିନେ ରାଜାଙ୍କ ଆହ୍ୱାନରେ ଶୂରସେନ ସେନାବାହିନୀରେ ଯୋଗଦେବାପାଇଁ ଉଦ୍ୟତ ହେଲା । ସୁଷେଣା ଏଥିରେ ବ୍ୟଥିତା ହୋଇ ଗମନୋଦ୍ୟତ ପତିଙ୍କୁ ଲକ୍ଷ୍ୟ କରି କହିଲା, 'ଆର୍ଯ୍ୟପୁତ୍ର ! ମୋତେ ଏପରି ଏକାକିନୀ ପରିତ୍ୟାଗ କରି ଚାଲିଯିବା ଆପଣଙ୍କ ପାଇଁ ଉଚିତ ହେଉ ନାହିଁ । କାରଣ ଆପଣଙ୍କ ବିନା ମୁଁ ଏଠାରେ ମୁହୂର୍ତ୍ତେ ମାତ୍ର ବଞ୍ଚିପାରିବି ନାହିଁ ।' ପ୍ରିୟତମା ପତ୍ନୀର କଥାରେ ବାଧାଦେଇ ଶୂରସେନ କହିଲା, 'ପ୍ରିୟେ ! ରାଜାଙ୍କ ଆହ୍ୱାନ ମୁଁ କିପରି ବା ଟାଳିପାରିବି ? ତୁମେ ଟିକିଏ ବୁଝିବାପାଇଁ ଚେଷ୍ଟା କର । ମୁଁ ରାଜପୁତ୍ର, ପୁଣି ପରାଧୀନ । ରାଜାଙ୍କ ସେବା କରିବା ମୋର ପ୍ରଧାନ କର୍ତ୍ତବ୍ୟ ।' ପ୍ରାଣପ୍ରିୟ ପତିର ଅସହାୟତା ଲକ୍ଷ୍ୟକରି ସୁଷେଣା ଅଶ୍ରୁପୂର୍ଣ୍ଣ ନୟନରେ ତାକୁ କେବଳ ଚାହିଁ ରହିଲା । ଶେଷରେ କହିଲା, 'ଯଦି ଆପଣଙ୍କ ଯିବା ଅନିବାର୍ଯ୍ୟ, ତେବେ କିଛିଦିନର ବିରହ ଦୁଃଖ ମୁଁ ସହ୍ୟ କରିଯିବି, କିନ୍ତୁ ମୋର ଗୋଟିଏ ସର୍ତ୍ତ ଅଛି । ବସନ୍ତ ଋତୁର ଗୋଟିଏ ବି ଦିନ ଆପଣ ସେଠାରେ ନ ରହି ଫେରିଆସିବେ ।'

ଶୂରସେନ ପ୍ରିୟତମା ପତ୍ନୀର ଅନୁରୋଧକୁ ପ୍ରତ୍ୟାଖ୍ୟାନ କରିପାରିଲା ନାହିଁ । କହିଲା, 'ପ୍ରିୟେ ! ଯଦି ଆବଶ୍ୟକ ହୁଏ ରାଜସେବା ପରିତ୍ୟାଗ କରି ମୁଁ ଚୈତ୍ରର ପ୍ରଥମ ଦିନରେ ନିଶ୍ଚିତ ଭାବେ ଆସି ପହଞ୍ଚିବି ।'

ଏହା କହି ଶୂରସେନ ପତ୍ନୀକୁ ଆଶ୍ୱାସନା ପ୍ରଦାନ ପୂର୍ବକ ତା'ଠାରୁ ଅତି କଷ୍ଟରେ ବିଦାୟ ଗ୍ରହଣ କରି ରାଜାଙ୍କ ସେନାବାହିନୀ ମଧ୍ୟରେ ଯାଇ ପ୍ରବେଶ କଲା ।

ଏଣେ ସୁଷେଣା ପତିର ଆଗମନପାଇଁ ଅପେକ୍ଷା କରିଥାଏ । ବସନ୍ତର ପ୍ରଥମଦିନ ଆସିବାପାଇଁ ଆଉ କେତେଦିନ ରହିଲା, ତା'ର ଗଣନା ନିମିତ୍ତ ସେ ଦ୍ୱାରଦେଶରେ ରେଖାଟାଣି ଚାଲିଥାଏ । ଶେଷରେ ବସନ୍ତୋତ୍ସବର ଦିନ ଆସି ପହଞ୍ଚିଲା । କୋକିଳର କୁହୁତାନରେ କନ୍ଦର୍ପର ଆବାହନ ମନ୍ତ୍ର ଶୁଣାଗଲା । ଭ୍ରମରମାନଙ୍କ ଗୁଞ୍ଜରଣ କନ୍ଦର୍ପର ପୁଷ୍ପଧନୁଷ୍ଟଙ୍କାରର ଭ୍ରାନ୍ତି ସୃଷ୍ଟିକଲା । ସୁଷେଣା ପତି ଶୂରସେନର ପ୍ରତିଶ୍ରୁତି ସ୍ମରଣ କରି ରୋମାଞ୍ଚିତ ହୋଇଉଠିଲା । ପ୍ରଭାତରୁ ସ୍ନାନ, ଶୃଙ୍ଗାର ଶେଷ କରି ସେ ପତିଙ୍କ ଆଗମନ ପଥକୁ ଚାହିଁ ରହିଥାଏ ।

ଧୀରେ ଧୀରେ ବସନ୍ତ ଉତ୍ସବର ପ୍ରଥମ ଦିନଟି ଶେଷ ହୋଇଆସିଲା । ସୂର୍ଯ୍ୟ ଅସ୍ତାଚଳ ଶିଖରକୁ ଫେରିଗଲେ । କିନ୍ତୁ ଶୂରସେନ ଫେରିଆସିଲା ନାହିଁ । ରାତ୍ରିର ଶେଷ ପ୍ରହରରେ ବିରହ ବ୍ୟାକୁଳା ସୁଷେଣା ମନେମନେ ଚିନ୍ତା କଲା ଯେ ବସନ୍ତର ଏହି ପ୍ରଥମ ଦିନ ହିଁ ତା'ପାଇଁ ମୃତ୍ୟୁର ଅବଧାରିତ ଦିବସ । ବସନ୍ତ ତ ଆସିଗଲା କିନ୍ତୁ ସ୍ୱାମୀ ଫେରିଲେ

ନାହିଁ । ଅନ୍ୟର ସେବାରେ ନିଯୁକ୍ତ ବ୍ୟକ୍ତିପାଇଁ ନିଜ ଲୋକଙ୍କୁ ସ୍ନେହ କରିବାର ଅବକାଶ କାହିଁ ।

'ପରସେବୈକସକ୍ତାନାଂ କୋ ହି ସ୍ନେହୋ ନିଜେ ଜନେ'

ଏହିପରି ଚିନ୍ତା କରୁଥିବା ବେଳେ କନ୍ଦର୍ପ ପୀଡ଼ା ରୂପକ ଦାବାନଳ ତାକୁ ଦଗ୍ଧୀଭୂତ କଲା । ସେ ପ୍ରିୟତମ ପତିକୁ ସ୍ମରଣ କରି ଶେଷ ନିଃଶ୍ୱାସ ତ୍ୟାଗ କଲା ।

ଏଣେ ଶୂରସେନ ନିଜର ପ୍ରତିଶ୍ରୁତି ରକ୍ଷା କରିବାପାଇଁ ରାଜାଙ୍କଠାରୁ ଅନୁମତି ନେଇ ଗୃହ ଅଭିମୁଖରେ ବାହାରିଲା । ଗୋଟିଏ ବେଗଗାମୀ ଓଟ ଆରୋହଣ କରି ସେ ଆସୁଥାଏ । କିନ୍ତୁ ଦିବସ ମଧ୍ୟରେ ଏତେ ଦୂର ପଥ ଅତିକ୍ରମ କରିବା ତା' ପକ୍ଷରେ ସମ୍ଭବ ହେଲା ନାହିଁ। ରାତ୍ରି ଶେଷରେ ସେ ଆସି ନିଜ ଗୃହ ଦ୍ୱାରରେ ଉପସ୍ଥିତ ହେଲା । କିନ୍ତୁ ସେତେବେଳକୁ ପତ୍ନୀ ସୁଷେଣାର ପ୍ରାଣବାୟୁ ଉଡ଼ିଯାଇଥାଏ । ବହୁମୂଲ୍ୟ ବେଶଭୂଷାରେ ବିଭୂଷିତା ସୁଷେଣାର ଜଡ଼ପିଣ୍ଡ ଦେଖି ସେ ସବୁକଥା ବୁଝିପାରିଲା । ପତ୍ନୀର ମୃତ ଶରୀରକୁ କୋଳରେ ଧରି ବିଳାପ କରୁଥିବା ସମୟରେ ତା'ର ମଧ୍ୟ ପ୍ରାଣବାୟୁ ଉଡ଼ିଗଲା ।

କିନ୍ତୁ ଶୂରସେନ ଓ ସୁଷେଣାର ଏକନିଷ୍ଠ ପ୍ରେମ କେବଳ ନଗରବାସୀଙ୍କୁ ନୁହେଁ ତାଙ୍କ କୁଳଦେବତା ଭଗବତୀ ଚଣ୍ଡିକାଙ୍କୁ ମଧ୍ୟ ତରଳାଇ ଦେଲା । ସେ ଉଭୟଙ୍କ ମୃତପିଣ୍ଡ ଉପରେ କୃପାବାରି ସିଞ୍ଚନ କଲେ । ଫଳରେ ଉଭୟ ପତିପତ୍ନୀ ପୁଣି ଜୀବନ ଲାଭ କରି ଉଠିବସିଲେ । ସେହିଦିନଠାରୁ ଉଭୟଙ୍କର ମୁହୂର୍ତ୍ତେମାତ୍ର ବିଚ୍ଛେଦ ଆଉ ଘଟିନାହିଁ ।

ତେଣୁ ଦେବ ! ବସନ୍ତ ଋତୁ ଏହିପରି ମଳୟ ପବନ ଦ୍ୱାରା ବିରହାଗ୍ନିକୁ ପ୍ରଜ୍ୱଳିତ କରିଥାଏ । ଏହାର ଜ୍ୱାଳାରୁ ନିବର୍ତ୍ତିଯିବା କୌଣସି ପ୍ରାଣୀ ପକ୍ଷରେ ସମ୍ଭବ ନୁହେଁ ।'

ଗୋମୁଖ ଏପରି କହୁଥିବା ବେଳେ ଘଟଣାଟି କଥା ଚିନ୍ତା କରି ନରବାହନଦତ୍ତ ହଠାତ୍ ଉଦ୍‌ବିଗ୍ନ ହୋଇପଡ଼ିଲେ । ମାନସିକ ଅସ୍ଥିରତା ତାଙ୍କୁ ବ୍ୟାକୁଳ କଲା । ମହାପୁରୁଷମାନଙ୍କର ଅନ୍ତରାତ୍ମା ଯଦି ବିନା କାରଣରେ ସୁଖ କିମ୍ବା ଦୁଃଖରେ ଅଧୀର ହୋଇଉଠେ, ତାହା ସାଧାରଣତଃ ଶୁଭ କିମ୍ବା ଅଶୁଭ ଭବିତବ୍ୟର ସୂଚନା ଦେଇଥାଏ ।

'ମହାତ୍ମନାଂ ବିନା ହେତୋର୍ଦୁଃସ୍ଥିତଃ ସୁସ୍ଥିତୋଽପି ବା
ସୂଚୟତ୍ୟନ୍ତରାତ୍ମା ହି ପୁରୋ ଭାବି ଶୁଭାଶୁଭମ୍'

# ବତ୍ସରାଜ ଉଦୟନଙ୍କ ସ୍ୱର୍ଗାରୋହଣ

ଏହିପରି ଅସ୍ଥିରତାରେ ଦିନଟି ବିତିଗଲା । ନରବାହନଦତ୍ତ ସଂଧ୍ୟା ବନ୍ଦନା ଶେଷ କରି ନିଜର ଶୟନ କକ୍ଷରେ ବିଶ୍ରାମ କରିବାକୁ ଲାଗିଲେ । ରାତ୍ରିର ଶେଷ ପ୍ରହରରେ ଗୋଟିଏ ଦୁଃସ୍ୱପ୍ନ ଦେଖି ତାଙ୍କର ନିଦ୍ରାଭଙ୍ଗ ହେଲା । କୌଣସି ଜଣେ କୃଷ୍ଣବର୍ଣ୍ଣା ରମଣୀ ତାଙ୍କ ପିତା ବତ୍ସରାଜ ଉଦୟନଙ୍କୁ ଦକ୍ଷିଣଦିଗକୁ ଟାଣି ନେଉଥିବା ସ୍ୱପ୍ନ ତାଙ୍କୁ ଅଧିକ ବିଚଳିତ କଲା । ପିତାଙ୍କର ଅମଙ୍ଗଳ ଆଶଙ୍କା କରି ସେ ନିଜେ ସିଦ୍ଧ କରିଥିବା ପ୍ରଜ୍ଞପ୍ତି ନାମକ ବିଦ୍ୟାକୁ ସ୍ମରଣ କଲେ । ବିଦ୍ୟା ତତ୍‌କ୍ଷଣାତ୍ ଆସି ଉପସ୍ଥିତ ହୁଅନ୍ତେ ସେ ସ୍ୱପ୍ନ ସମାଚାର ଶୁଣାଇ ପିତାଙ୍କ ତାତ୍କାଳିକ ସ୍ଥିତି ଜାଣିବାପାଇଁ ତାର ସାହାଯ୍ୟ ପ୍ରାର୍ଥନା କଲେ । ପ୍ରଜ୍ଞପ୍ତି ପ୍ରତ୍ୟକ୍ଷ ରୂପ ଧାରଣ କରି ଜଣାଇଲା, 'ରାଜନ୍ ! ଆପଣ ପିତାଙ୍କ ସମାଚାର ଶ୍ରବଣ କରନ୍ତୁ । ସେ କୌଶାମ୍ବୀରେ ଅବସ୍ଥାନ କରୁଥିବା ବେଳେ ହଠାତ୍ ଉଜ୍ଜୟିନୀରୁ ଜଣେ ଦୂତ ଆସି ସମ୍ବାଦ ଦେଲା ଯେ ଚଣ୍ଡମହାସେନଙ୍କ ଦେହାନ୍ତ ହୋଇଯାଇଛି । ସେହି ଦୁଃଖରେ ମହାରାଣୀ ଅଙ୍ଗାରବତୀ ମଧ୍ୟ ପ୍ରାଣ ବିସର୍ଜନ କରିଛନ୍ତି । ଏହା ଶୁଣିବା ମାତ୍ରେ ବତ୍ସରାଜ ମୂର୍ଚ୍ଛିତ ହୋଇ ଭୂମି ଉପରେ ପଡ଼ିଗଲେ । ଚେତନା ପ୍ରାପ୍ତି ପରେ ସେ ମହାରାଣୀ ବାସବଦତ୍ତା ଏବଂ ପରିଜନମାନଙ୍କ ସହିତ ବହୁ ସମୟ ଧରି ସ୍ୱର୍ଗତ ଶାଶୁ ଓ ଶ୍ୱଶୁରଙ୍କ ପାଇଁ ଶୋକ ପ୍ରକାଶ କରୁଥାନ୍ତି । ତାଙ୍କୁ ଆଶ୍ୱାସନା ଦେବାପାଇଁ ମନ୍ତ୍ରୀମାନେ କହୁଥାନ୍ତି ଯେ ଆପଣଙ୍କ ପରି ବିଜ୍ଞ ବ୍ୟକ୍ତିମାନେ ଶୋକରେ ଏପରି ଭାଙ୍ଗି ପଡ଼ିବା ଉଚିତ ନୁହେଁ । ଏହି କ୍ଷଣଭଙ୍ଗୁର ସଂସାରରେ କିଏ ବା ଅମର ହୋଇ ରହିପାରେ ? ପୁଣି ଚଣ୍ଡମହାସେନଙ୍କ ପରି ଭାଗ୍ୟବାନ୍ ମହାରାଜାଙ୍କପାଇଁ କାହିଁକି ବା ଶୋକ କରିବେ ? ଆପଣଙ୍କ ପରି ଜାମାତା, ଗୋପାଳକଙ୍କ ପରି ପୁତ୍ର ଏବଂ ନରବାହନଦତ୍ତଙ୍କ ପରି ଦୌହିତ୍ର ଲାଭ କରି ସେ ଭାଗ୍ୟବାନ୍ । ବାର୍ଦ୍ଧକ୍ୟ ମଧ୍ୟ ତାଙ୍କୁ ଧୀରେ ଧୀରେ ଗ୍ରାସ କରୁଥିଲା । ଏଣୁ ଆପଣ ଶୋକ ତ୍ୟାଗ କରି ଶାଶୁ ଶ୍ୱଶୁରଙ୍କୁ ବିଧିପୂର୍ବକ ଜଳାଞ୍ଜଳି ପ୍ରଦାନ କରନ୍ତୁ ।'

ମନ୍ତ୍ରୀମାନଙ୍କ ଆଶ୍ୱାସନା ବାଣୀ ବତ୍ସରାଜ ଉଦୟନଙ୍କ ଗଭୀର ଶୋକକୁ କିଛି ପରିମାଣରେ ଲାଘବ କଲା । ସେ ଉଠି ସ୍ନାନ ପୂର୍ବକ ଶାଶୁ ଓ ଶ୍ୱଶୁରଙ୍କ ଉଦ୍ଦେଶ୍ୟରେ ଜଳାଞ୍ଜଳି ଅର୍ପଣ କଲେ । ଶୋକାକୁଳ ଶାଳକ ଗୋପାଳକଙ୍କୁ ଆଦରର ସହିତ ନିକଟରେ ବସାଇ ଆଶ୍ୱାସନା ପୂର୍ବକ ବାଷ୍ପାକୁଳ କଣ୍ଠରେ କହିଲେ, 'ଗୋପାଳକ ! ଉଠ, ବର୍ତ୍ତମାନ ତୁମପାଇଁ ଏହା ଶୋକର ଅବସର ନୁହେଁ । ପିତାଙ୍କ ଦେହାନ୍ତ ପରେ ପ୍ରଜାମାନେ ତୁମକୁ

ଅପେକ୍ଷା କରିଥିବା କଥା ଦୂତଠାରୁ ଶୁଣିଲ । ବର୍ତ୍ତମାନ ଉଜ୍ଜୟିନୀ ଯାଇ ପିତାଙ୍କ ରାଜ୍ୟ ପରିପାଳନା କର ।'

ବତ୍ସରାଜଙ୍କ କଥାରେ ଗୋପାଳକଙ୍କ ଶୋକ ଆହୁରି ବଢ଼ିଗଲା । ସେ କେବଳ ବିଳାପ କରିବାକୁ ଲାଗିଲେ । ଶେଷରେ କହିଲେ, 'ଦେବ ! ମୁଁ, ଆପଣ ଏବଂ ଭଗିନୀ ବାସବଦତ୍ତାଙ୍କୁ ଛାଡ଼ି ଅନ୍ୟତ୍ର ଯାଇପାରିବି ନାହିଁ । ପିତାଙ୍କ ବିଚ୍ଛେଦରେ ଉଜ୍ଜୟିନୀ ରାଜଲକ୍ଷ୍ମୀର ବୈଧବ୍ୟ ରୂପ ଦେଖିବା ମଧ୍ୟ ମୋ ପକ୍ଷରେ ସମ୍ଭବ ନୁହେଁ । ମୋର ସମ୍ମତିକ୍ରମେ କନିଷ୍ଠ ଭ୍ରାତା ପାଳକ ଉଜ୍ଜୟିନୀ ରାଜସିଂହାସନ ଆରୋହଣ କରୁ ।' ଗୋପାଳକଙ୍କ ନିଷ୍ପତ୍ତି ଶୁଣି ଆପଣଙ୍କ ପିତା ଉଦୟନ ନିଜର ବିଶ୍ୱସ୍ତ ସେନାପତି ରୁମଣ୍ୱାନ୍‌ଙ୍କୁ ଉଜ୍ଜୟିନୀ ପ୍ରେରଣ କଲେ । ସେ ସେଠାରେ ଉପସ୍ଥିତ ରହି ଜ୍ୟେଷ୍ଠ ଭ୍ରାତା ଗୋପାଳକଙ୍କ ନିଷ୍ପତ୍ତି ଶୁଣାଇବା ସହିତ ପାଳକଙ୍କ ରାଜ୍ୟାଭିଷେକ ଅନୁଷ୍ଠାନ କରାଇଛନ୍ତି । ଉଜ୍ଜୟିନୀ ରାଜଲକ୍ଷ୍ମୀ ବର୍ତ୍ତମାନ ସୁସ୍ଥିର ।

ରୁମଣ୍ୱାନ୍ ଫେରିଆସିବା ପରେ ବତ୍ସରାଜ ଉଦୟନଙ୍କପାଇଁ ସଂସାରର ପ୍ରତ୍ୟେକ ବସ୍ତୁ ଅନିତ୍ୟ ମନେହେଲା । ସେ ଯୌଗନ୍ଧରାୟଣ ପ୍ରଭୃତି ମନ୍ତ୍ରୀ ଓ ମିତ୍ରମାନଙ୍କୁ ଡାକି ଜଣାଇଲେ, 'ଏହି ଅସାରସଂସାରର ପ୍ରତ୍ୟେକଟି ବିଷୟ ପରିଣାମରେ କେବଳ ଦୁଃଖଦାୟକ । ଆମ୍ଭେମାନେ ରାଜତ୍ୱ କଲେ, ସାଂସାରିକ ଭୋଗ ଉପଭୋଗ କଲେ । ଶତ୍ରୁମାନଙ୍କୁ ଜୟ ମଧ୍ୟ କଲେ । ପୁତ୍ର ନରବାହନଦତ୍ତ ବିଦ୍ୟାଧର ଚକ୍ରବର୍ତ୍ତୀ ହେବା ମଧ୍ୟ ଦେଖିଲି । ବନ୍ଧୁ ସ୍ୱଜନମାନଙ୍କ ମେଳରେ ମୋର ଜୀବନକାଳ ବିତିଗଲା । ବର୍ତ୍ତମାନ ଏହି ଶରୀରକୁ ଯମରାଜଙ୍କ ନିକଟରେ ଅର୍ପଣ କରିଦେବାପାଇଁ ବାର୍ଦ୍ଧକ୍ୟ ଆସି କେଶ ଧାରଣ କଲାଣି । ବଳହୀନ ରାଜାର ରାଜ୍ୟପରି ଶରୀରର ପ୍ରତ୍ୟେକ ଅଙ୍ଗ ବଳିପଳିତ ହୋଇଉଠିଲାଣି । ତେଣୁ ମୁଁ ବର୍ତ୍ତମାନ ଏହି ଅନିତ୍ୟ ଶରୀରକୁ ତ୍ୟାଗ କରିବାପାଇଁ କାଳଞ୍ଜର ପର୍ବତକୁ ଯାଇ ଭଗବାନ୍ ଭବାନୀପତିଙ୍କ ନିକଟରେ ତପଶ୍ଚରଣ କରିବି ।'

ବତ୍ସରାଜଙ୍କ ନିଷ୍ପତ୍ତି ଶୁଣି ମନ୍ତ୍ରୀ ଓ ରାଣୀ ବାସବଦତ୍ତା ମଧ୍ୟ ପରସ୍ପର ମଧ୍ୟରେ ବିଚାରବିମର୍ଶ କରି ଜଣାଇଲେ, 'ମହାରାଜ୍ ! ଆପଣ ଯେପରି ଚାହୁଁଛନ୍ତି ସେହିପରି ହିଁ କରନ୍ତୁ । ଆପଣଙ୍କ ପ୍ରସାଦରୁ ଆମେ ମଧ୍ୟ ପରଲୋକରେ ଉତ୍ତମ ଗତି ଲାଭ କରିବୁ ।' ମନ୍ତ୍ରୀ ଓ ବାସବଦତ୍ତାଙ୍କ ସମର୍ଥନ ବତ୍ସରାଜ ଉଦୟନଙ୍କୁ ନିଜ କର୍ତ୍ତବ୍ୟ ପଥରେ ଅଗ୍ରସର ହେବାପାଇଁ ଅଧିକ ପ୍ରୋତ୍ସାହିତ କଲା । ସେ ସାମର୍ଥ୍ୟସମ୍ପନ୍ନ ଶାଳକ ଗୋପାଳକଙ୍କୁ ନିକଟକୁ ଡାକି କହିଲେ, 'ଦେଖ, ନରବାହନଦତ୍ତ ଓ ତୁମେ ଉଭୟ ସମାନଭାବେ ମୋର

ପୁତ୍ର । ତେଣୁ ବର୍ତ୍ତମାନ ତୁମେ କୌଶାମ୍ବୀକୁ ରକ୍ଷାକର । ମୁଁ ତାକୁ ତୁମ ହସ୍ତରେ ଅର୍ପଣ କଲି ।' ଗୋପାଳକ କିନ୍ତୁ ଏଥିରେ ନିଜର ଅସମ୍ମତି ପ୍ରକାଶକରି ଜଣାଇଲେ, 'ଆପଣମାନଙ୍କର ଯେଉଁ ଗତି ହେବ ମୋର ମଧ୍ୟ ସେହି ଗତି ହିଁ ହେବ । ଆପଣମାନଙ୍କୁ ପରିତ୍ୟାଗ କରି ରହିବାର ସାହସ ମୋର ନାହିଁ ।' ଭଗିନୀବତ୍ସଳ ଗୋପାଳକଙ୍କଠାରୁ ଏହା ଶୁଣି ବତ୍ସରାଜ କୃତ୍ରିମ କ୍ରୋଧ ପ୍ରକାଶ ପୂର୍ବକ କହିଲେ, 'ଆଜି ପର୍ଯ୍ୟନ୍ତ ତାହାହେଲେ ତୁମେ ମୋର ବଶବର୍ତ୍ତୀ ବୋଲି ଯାହା କହୁଥିଲ ତାହା କେବଳ ଛଳନା ଥିଲା । ଆଜି ମୋ କଥାରୁ ତୁମେ ବାହାରି ଯାଉଛ । ନିଜ ପଦରୁ ଅବସର ନେବା ବ୍ୟକ୍ତିର ଆଦେଶକୁ କିଏ ବା ପାଳନ କରେ ?'

'ସ୍ୱପଦାଚ୍ୟବମାନସ୍ୟ କସ୍ୟାଜ୍ଞାଂକୋ ହି ମନ୍ୟତେ'

ରାଜା ଉଦୟନଙ୍କ ଏ ପ୍ରକାର ରୁକ୍ଷ ବଚନ ଶୁଣି ଗୋପାଳକ ଅବନତ ମସ୍ତକରେ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ତାଙ୍କ ବନଗମନ ନିଷ୍ପତ୍ତି ପରିବର୍ତ୍ତିତ ହେଲା ।

ଗୋପାଳକଙ୍କ ହସ୍ତରେ ରାଜ୍ୟଭାର ସମର୍ପଣ କରି ବତ୍ସରାଜ ଉଦୟନ ରାଣୀ ପଦ୍ମାବତୀ ଓ ବାସବଦତ୍ତାଙ୍କ ସହିତ ହସ୍ତୀ ଆରୋହଣ କଲେ । ମନ୍ତ୍ରୀମାନଙ୍କ ସହିତ ଧୀରେ ଧୀରେ ଅନାସକ୍ତ ବତ୍ସରାଜ କୌଶାମ୍ବୀଠାରୁ ବିଦାୟ ନେଲେ । ନଗରବାସୀ ଆବାଳବୃଦ୍ଧବନିତା ହାହାକାର କରି ବାଷ୍ପାକୁଳ ନେତ୍ରରେ ତାଙ୍କୁ ଅନୁସରଣ କରୁଥାନ୍ତି । କିଛି ଦୂର ଯିବାପରେ ସେମାନଙ୍କୁ ଆଶ୍ୱାସନା ପ୍ରଦାନ ପୂର୍ବକ ଆପଣଙ୍କ ପିତା କାଳଞ୍ଜର ପର୍ବତରେ ଯାଇ ଉପସ୍ଥିତ ହେଲେ । ସେଠାରେ ବୃଷଧ୍ୱଜ ମହାଶିବଙ୍କୁ ଭୂମିଷ୍ଠ ପ୍ରଣିପାତ କରି ନିଜର ଆଜୀବନ ପ୍ରିୟ ଘୋଷବତୀ ବୀଣାଟିକୁ ହସ୍ତରେ ଧାରଣ କଲେ ଏବଂ ଉଭୟ ରାଣୀଙ୍କୁ ଦୁଇ ବାହୁରେ ଭିଡ଼ିଧରି ମନ୍ତ୍ରୀମାନଙ୍କ ସହିତ କାଳଞ୍ଜର ପର୍ବତରୁ ପ୍ରବହମାନ ଜଳପ୍ରପାତ ମଧ୍ୟକୁ ଲମ୍ଫ ପ୍ରଦାନ କଲେ । ସେମାନେ ପର୍ବତ ପୃଷ୍ଠରୁ ତଳକୁ ପଡ଼ିବା ମାତ୍ରେ ଏକ ଉଜ୍ଜ୍ୱଳ ବିମାନ ଆସି ଉପସ୍ଥିତ ହେଲା । ତାହା ପରିବାର ଓ ପରିଜନ ସହିତ ଆପଣଙ୍କ ପିତାଙ୍କୁ ଧରି ଦିବ୍ୟ ଆଲୋକ ଉଦ୍ଭାସିତ ସ୍ୱର୍ଗରାଜ୍ୟ ଅଭିମୁଖରେ ଉଡ଼ିଗଲା ।'

ପ୍ରଜ୍ଞପ୍ତି ବିଦ୍ୟା ମୁଖରୁ ଏହା ଶୁଣିବା ମାତ୍ରେ ନରବାହନଦତ୍ତ 'ହା ପିତା'କହି ମୂର୍ଚ୍ଛିତ ହୋଇପଡ଼ିଲେ । କିଛି ସମୟ ପରେ ଚେତନା ଫେରି ଆସନ୍ତେ ସେ ବନ୍ଧୁ ଓ ମନ୍ତ୍ରୀମାନଙ୍କ ସହିତ ଶୋକ ପାଳନ କଲେ । ଗୋମୁଖ, ହରିଶିଖ ପ୍ରଭୃତି ମନ୍ତ୍ରୀମାନଙ୍କର ପିତାମାତା ମଧ୍ୟ ସ୍ୱାମୀ ବତ୍ସରାଜ ଉଦୟନଙ୍କ ସହିତ ଦେହତ୍ୟାଗ କରିଥିବା ଯୋଗୁଁ ସେମାନଙ୍କ ଶୋକ ମଧ୍ୟ କମ୍ ନଥିଲା । ଏହି ଶୋକାକୁଳ ପରିବେଶ ମଧ୍ୟରେ ବିଦ୍ୟାଧର

ଅଧିପତିମାନେ ଏବଂ ଧନବତୀ ସେମାନଙ୍କୁ ଆଶ୍ୱାସନା ଦେଉଥାନ୍ତି । 'ଦେବ ! ଆପଣ ଜାଣନ୍ତି ଏହି ସଂସାର ଇନ୍ଦ୍ରଜାଲତୁଲ୍ୟ, କ୍ଷଣକ ମଧ୍ୟରେ ବିନାଶଶୀଳା ଏହି ଅନିତ୍ୟ ସଂସାର ପ୍ରତି ବୁଦ୍ଧିମାନ ବ୍ୟକ୍ତିମାନେ ମୋହାସକ୍ତ ହୁଅନ୍ତି ନାହିଁ । ଆପଣଙ୍କ ପିତାମାତା ସେମାନଙ୍କ କର୍ତ୍ତବ୍ୟ ଶେଷ କରିସାରିଥିଲେ । ତେଣୁ ସେମାନଙ୍କପାଇଁ ଶୋକ କରିବା ଅନାବଶ୍ୟକ । ଯେଉଁମାନେ ଆପଣଙ୍କ ପରି ବିଦ୍ୟାଧର ଚକ୍ରବର୍ତ୍ତୀ ପୁତ୍ରର ଜନକ ଓ ଜନନୀ ସେମାନେ ଅନୁଶୋଚନାର ଯୋଗ୍ୟ ନୁହଁନ୍ତି ।'

ବିଦ୍ୟାଧର ରାଜା ଓ ଧନବତୀଙ୍କ ଦ୍ୱାରା କିଛି ପରିମାଣରେ ଆଶ୍ୱାସିତ ହୋଇ ନରବାହନଦତ୍ତ ଏବଂ ମନ୍ତ୍ରୀମାନେ ସେମାନଙ୍କ ସ୍ୱର୍ଗତ ପିତାମାତାଙ୍କ ପ୍ରତି ଯଥାବିଧି ଜଳାଞ୍ଜଳି ଅର୍ପଣ କଲେ । ଗୋପାଳକଙ୍କ ସମ୍ପର୍କରେ ଜାଣିବାପାଇଁ ଇଚ୍ଛାପ୍ରକାଶ କରନ୍ତେ ବିଦ୍ୟା ପ୍ରଜ୍ଞପ୍ତି ପୁଣି କହିବା ଆରମ୍ଭ କଲା—

'ବତ୍ସରାଜ ଉଦୟନ କାଳଞ୍ଜର ପର୍ବତ ଅଭିମୁଖରେ ମହାଯାତ୍ରା କରିବା ପରେ ଗୋପାଳକ ଅତ୍ୟଧିକ ଶୋକାକୁଳ ହୋଇପଡ଼ିଲେ । ସଂସାରର ପ୍ରତ୍ୟେକ ବସ୍ତୁ ଯେ କ୍ଷଣଭଙ୍ଗୁର, ଏହା ଉପଲବ୍ଧି କରି ସେ ନଗରୀ ମଧ୍ୟରେ ପ୍ରବେଶ କରିବା ପରିବର୍ତ୍ତେ ବାହାରେ ହିଁ କୁଟୀର ସ୍ଥାପନ କରି ରହିବାକୁ ଲାଗିଲେ । କିଛିଦିନ ମଧ୍ୟରେ ଉଜ୍ଜୟିନୀରୁ ନିଜର କନିଷ୍ଠଭ୍ରାତା ପାଳକଙ୍କୁ ଡକାଇ ଆଣି ସେ ତାଙ୍କ ହସ୍ତରେ କୌଶାମ୍ବୀ ରାଜ୍ୟ ମଧ୍ୟ ସମର୍ପଣ କରିଦେଲେ । ପାଳକ ଉଜ୍ଜୟିନୀ ଓ କୌଶାମ୍ବୀ ଉଭୟ ରାଜ୍ୟର ରାଜପଦ ଗ୍ରହଣ କରିବା ପରେ ଗୋପାଳକ ସଂସାର ପ୍ରତି ବିରକ୍ତ ହୋଇ ଅସିତ ପର୍ବତସ୍ଥ ତପସ୍ୱୀ କଶ୍ୟପଙ୍କ ଆଶ୍ରମକୁ ଚାଲିଗଲେ । ବର୍ତ୍ତମାନ ସେହି ପର୍ବତ ଉପରେ ବଲ୍‌କଳ ଧାରଣ ପୂର୍ବକ ଆପଣଙ୍କ ମାମୁ ଗୋପାଳକ ମୁନିଋଷିମାନଙ୍କ ମଧ୍ୟରେ ତପଶ୍ଚରଣ କରୁଛନ୍ତି ।'

ବିଦ୍ୟାଠାରୁ ଏହା ଶୁଣି ନରବାହନଦତ୍ତ ମାମୁଙ୍କୁ ଦେଖିବା ପାଇଁ ଉତ୍କଣ୍ଠିତ ହୋଇଉଠିଲେ । ସ୍ମରଣ ମାତ୍ରେ ମହାପଦ୍ମ ବିମାନ ତାଙ୍କୁ ସପରିବାର ନେଇ ଅସିତ ପର୍ବତ ଅଭିମୁଖରେ ଯାତ୍ରା କଲା । ବିଦ୍ୟାଧର ଅଧିପତିମାନଙ୍କଦ୍ୱାରା ପରିବେଷ୍ଟିତ ନରବାହନଦତ୍ତ ଅସିତ ପର୍ବତର ପାଦଦେଶରେ ବିମାନରୁ ଅବତରଣ କଲେ । ମହର୍ଷି କଶ୍ୟପଙ୍କ ଆଶ୍ରମର ଶୋଭା ତାଙ୍କୁ ମୁଗ୍ଧ କଲା । ତପୋବନ କୃଷ୍ଣସାର ମୃଗମାନଙ୍କ ଉଲ୍ଲମ୍ଫନ ଓ ପକ୍ଷୀମାନଙ୍କ କାକଳିରେ ସେମାନଙ୍କ ସ୍ୱାଗତ କଲା । ଋଷିମାନଙ୍କ ହବନକୁଣ୍ଡରୁ ଉଠୁଥିବା ଧୂମରାଶି ସତେ ଯେପରି ତପସ୍ୱୀମାନଙ୍କୁ ସ୍ୱର୍ଗାରୋହଣର ମାର୍ଗ ନିର୍ଦ୍ଦେଶ କରୁଥିଲା । ବହୁ ଭୂଧର (ସର୍ପ ଓ ପର୍ବତ), ନାଗେନ୍ଦ୍ର (ପବର୍ତଶ୍ରେଷ୍ଠ ଓ ସର୍ପରାଜ) ଦ୍ୱାରା ଶୋଭିତ, କପିଳ

(ମହର୍ଷି ଓ ବାନର)ମାନଙ୍କ ଦ୍ୱାରା ଆଶ୍ରିତ, ସମୁଚ୍ଚ ସ୍ଥାନରେ ଅବସ୍ଥିତ ଏବଂ ଦିବ୍ୟ ଆଲୋକରେ ଉଦ୍ଭାସିତ ସେହି ପର୍ବତ ପାତାଳ ଅପେକ୍ଷା ମଧ୍ୟ ଅଧିକ ଅଦ୍ଭୁତ ମନେହେଉଥିଲା । ନରବାହନଦତ୍ତ ସେହି ତପୋବନ ମଧ୍ୟରେ ମାମୁଁ ଗୋପାଳକଙ୍କ ଦର୍ଶନ ଲାଭ କଲେ । ସେ ଜଟାଧାରଣ କରିଥାନ୍ତି । ବଲ୍‌କଳ ତାଙ୍କର ପରିଧେୟ । ବହୁ ମୁନିଋଷିଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେ ମୂର୍ତ୍ତିମାନ ତପସ୍ୟା ପରି ପ୍ରତୀତ ହେଉଥାନ୍ତି । ଗୋପାଳକ ଭାଗୀନେୟ ନରବାହନଦତ୍ତଙ୍କୁ ଆସୁଥିବା ଦେଖି ନିଜ ଆସନରୁ ଉଠି ତାଙ୍କୁ କୋଳାଗ୍ରତ କଲେ । ଅଶ୍ରୁପୂର୍ଣ୍ଣ ନୟନରେ ପରସ୍ପର ପରସ୍ପରଙ୍କୁ ଦେଖି ସେମାନଙ୍କର ଶୋକରାଶି ପୁନଃ ଉଦ୍‌ବେଳିତ ହେଲା । ଉଭୟେ ସେମାନଙ୍କ ସମ୍ପର୍କୀୟମାନଙ୍କପାଇଁ ପୁଣି ଶୋକ କରିବାକୁ ଲାଗିଲେ । ଆତ୍ମୀୟ ସ୍ୱଜନ ଦର୍ଶନରୂପୀ ବାୟୁ ଦ୍ୱାରା ଉଦ୍ଦୀପିତ ଶୋକାଗ୍ନି କାହାକୁ ବା ସନ୍ତାପିତ କରେନାହିଁ ?

'ସ୍ୱଜନାଲୋକବାତେଦ୍ଧୋ ଦୁଃଖାଗ୍ନିଃ କଂ ନ ତାପୟେତ୍'

ସେମାନଙ୍କର ଶୋକରେ ପଶୁପକ୍ଷୀମାନେ ମଧ୍ୟ ଦୁଃଖିତ ହୋଇଉଠିଲେ । ନରବାହନଦତ୍ତଙ୍କ ଆଗମନ ବାର୍ତ୍ତା ଶୁଣି ମହର୍ଷି କଶ୍ୟପ ଶିଷ୍ୟ ପରିବେଷ୍ଟିତ ହୋଇ ସେଠାରେ ଆସି ପହଞ୍ଚିଲେ । ମହର୍ଷିଙ୍କ ଦର୍ଶନ ଓ ଆଶ୍ୱାସନା ବାଣୀରେ ସମସ୍ତଙ୍କ ଶୋକ ପ୍ରଶମିତ ହେଲା ।

ପରଦିନ ପ୍ରଭାତରୁ ନରବାହନଦତ୍ତ ଗୋପାଳକଙ୍କୁ ତାଙ୍କ ବିଦ୍ୟାଧର ସାମ୍ରାଜ୍ୟରେ ଯାଇ ବାସ କରିବା ନିମିତ୍ତ ପ୍ରାର୍ଥନା କଲେ । କିନ୍ତୁ ଗୋପାଳକ ଉତ୍ତରରେ କହିଲେ, 'ବତ୍ସ ! ତୁମର ଦର୍ଶନ ହିଁ ମୋ ପାଇଁ କଣ ଯଥେଷ୍ଟ ନୁହେଁ ? ଯଦି ମୋ ପ୍ରତି ସ୍ନେହ ଥାଏ ତେବେ ଆଗାମୀ ବର୍ଷାଋତୁ ପର୍ଯ୍ୟନ୍ତ ବନ୍ଧୁସ୍ୱଜନ ସହ ଏହି ଆଶ୍ରମରେ ବିଶ୍ରାମ କର ।'

ମାତୁଳଙ୍କ ଏହି ସସ୍ନେହ ଅନୁରୋଧ ସମ୍ରାଟ ନରବାହନଦତ୍ତ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ । ମହର୍ଷି କଶ୍ୟପଙ୍କ ପବିତ୍ର ଆଶ୍ରମରେ ସେ ସପରିବାର କିଛିଦିନ ପାଇଁ ବିଶ୍ରାମ ନେଲେ ।

## ଦ୍ୱିତୀୟ ତରଙ୍ଗ

ଅସିତ ପର୍ବତ ଉପରେ ରହୁଥିବା ବେଳେ ରାଜକାର୍ଯ୍ୟ ପରିଚାଳନାପାଇଁ ନରବାହନଦତ୍ତ ବିଭିନ୍ନ ସମୟରେ ତାଙ୍କ ମିତ୍ର ଓ ସଚିବମାନଙ୍କ ସହିତ ମନ୍ତ୍ରଣା ସଭା କରୁଥାନ୍ତି । ଦିନେ ସେ ସଭାକକ୍ଷରେ ବସିଥିବା ବେଳେ ତାଙ୍କ ସେନାପତି ହରିଶିଖ ଆସି ନିବେଦନ କଲେ—

## ସୁରତମଞ୍ଜରୀ କଥା

''ଦେବ ! ଆଜି ମୁଁ ଆଶ୍ରମସ୍ଥିତ ଏକ ଉଚ୍ଚସ୍ଥାନରୁ ନିଜ ସେନାବାହିନୀର ଦେଖାଶୁଣା କରୁଥିବା ବେଳେ ଦେଖିଲି, କୌଣସି ଦିବ୍ୟପୁରୁଷ ରାତିରେ ଜଣେ ସ୍ତ୍ରୀକୁ ଅପହରଣ କରି ଆକାଶ ମାର୍ଗରେ ନେଇଯାଉଥିଲା । ମନେହେଉଥିଲା ନାରୀଟି ଚନ୍ଦ୍ରଙ୍କର ସମସ୍ତ ସୁଷମା ଓ କାନ୍ତି ହରଣ କରିନେଇଥିବା ଯୋଗୁଁ ସେ ତାକୁ ଧରି ଆଣିବାପାଇଁ ତାଙ୍କ ଅନୁଚରକୁ ପଠାଇଥିଲେ । ସ୍ତ୍ରୀଟି 'ହା ଆର୍ଯ୍ୟପୁତ୍ର, ହା ଆର୍ଯ୍ୟପୁତ୍ର' ବୋଲି ବିକଳ ସ୍ୱରରେ କ୍ରନ୍ଦନ କରୁଥାଏ । ଅପହରଣକାରୀର ଏହି ଦୁଃଷ୍କର୍ମ ଦେଖି ମୁଁ ଚିତ୍କାର କଲି, 'ରେ ପାପିଷ୍ଠ ! ପର ଦାରା ହରଣ କରି ତୁ ଯିବୁ କୁଆଡ଼େ ? ସମ୍ରାଟ ନରବାହନଦତ୍ତଙ୍କ ଷାଠିଏ ସହସ୍ର ଯୋଜନ ବିସ୍ତୃତ ଏହି ବିଦ୍ୟାଧର ରାଜ୍ୟରେ କୌଣସି ପ୍ରାଣୀ ଅସୁରକ୍ଷିତ ନୁହଁନ୍ତି । ଏହି ବିଦ୍ୟାଧର ଭୂମିରେ ପଶୁପକ୍ଷୀମାନେ ସୁଦ୍ଧା ଅଧର୍ମାଚରଣ କରନ୍ତି ନାହିଁ, ଅନ୍ୟମାନଙ୍କ କଥା ବା କଣ କୁହାଯିବ !'

ତାକୁ ଏହିପରି ଚେତାବନୀ ଦେଇ ମୁଁ ନିଜେ ଅନୁଚରମାନଙ୍କ ସହିତ ତା'ର ପଶ୍ଚାଦ୍‌ଧାବନ କଲି । ପୁରୁଷଟି ମୋର କବଳିତ ହେଲା । ନାରୀଟି ସହିତ ମୁଁ ତାକୁ ଆକାଶ ମାର୍ଗରୁ ଧରି ଆଣିଲି । କିନ୍ତୁ ପ୍ରଭୁ, ମୋତେ କ୍ଷମା କରିବେ, ଭୂମି ଉପରେ ଅବତରଣ କରି ଦେଖିଲି ଯେ ସେହି ପୁରୁଷଟି ମହାରାଣୀ ମଦନମଞ୍ଜୁକାଙ୍କ ଭ୍ରାତା, ଆପଣଙ୍କ ଶାଳକ ଇତ୍ୟକ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ମୁଁ ତାଙ୍କୁ ସ୍ତ୍ରୀଟିର ପରିଚୟ ଏବଂ ତାକୁ ଧରିନେବାର କାରଣ ଜିଜ୍ଞାସା କରନ୍ତେ କଳିଙ୍ଗସେନାଙ୍କ ଗର୍ଭଜାତ ମଦନବେଗଙ୍କ ପୁତ୍ର ଇତ୍ୟକ କହିଲେ, 'ଏ ହେଉଛି ବିଦ୍ୟାଧରରାଜ ମତଙ୍ଗଦେବଙ୍କ ରାଣୀ

ଅଶୋକମଞ୍ଜରୀଙ୍କ ଗର୍ଭ ସମ୍ଭୂତା ପୁତ୍ରୀ ସୁରତମଞ୍ଜରୀ । କନ୍ୟାଟିକୁ ପ୍ରଦାନ କରିବେ ବୋଲି ଏହାର ମାତା ପୂର୍ବେ ମୋତେ ବାକ୍‌ଦାନ କରିଥିଲେ । କିନ୍ତୁ ବର୍ତ୍ତମାନ ଏହାଙ୍କୁ ତା'ର ପିତା ଅନ୍ୟ ପୁରୁଷକୁ ପ୍ରଦାନ କରିଛନ୍ତି । ତେଣୁ ଆଜି ନିଜର ଏହି ପତ୍ନୀକୁ ଦେଖି ମୁଁ ଯଦି ତାକୁ ହରଣ କରି ନେଇଆସିଲି, ସେଥିରେ ମୋର ଅପରାଧ କଣ ?' ଏହା କହି ଇତ୍ୟକ ନୀରବ ରହିଲେ ।

ଇତ୍ୟକଙ୍କଠାରୁ ରମଣୀଙ୍କ ପରିଚୟ ପାଇ ମୁଁ ତାଙ୍କୁ ନମ୍ରତାର ସହିତ ପଚାରିଲି 'ଆର୍ଯ୍ୟେ, ତୁମେ କାହା ସହିତ ବିବାହ କରିଛ ? ଆଉ ଏହି ଇତ୍ୟକଙ୍କ ସହିତ ତୁମର କିପରି ସାକ୍ଷାତ ହେଲା ?' ସୁରତମଞ୍ଜରୀ ଉତ୍ତର ଦେଲେ, 'ଉଜ୍ଜୟିନୀରେ ଶ୍ରୀମାନ୍ ପାଳକ ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ଅବନ୍ତୀ ବର୍ଦ୍ଧନ ତାଙ୍କର ଜ୍ୟେଷ୍ଠ ପୁତ୍ର । ସେହି ରାଜକୁମାରଙ୍କ ସହିତ ମୋର ବିବାହ ସମ୍ପନ୍ନ ହୋ଼ଇଛି । ଆମେ ଉଭୟେ ଆମ ରାଜଭବନର ଶୀର୍ଷରେ ଶୟନ କରିଥିବା ବେଳେ ପତିଙ୍କୁ ନିଦ୍ରିତ ଦେଖି ଏହି ପାପିଷ୍ଠ ମୋତେ ବଳାତ୍କାରରେ ଉଠାଇ ଆଣିଛି ।'

ନାରୀଟିର ବକ୍ତବ୍ୟ ଶୁଣିବା ପରେ ମୁଁ ତାଙ୍କ ସହିତ ଇତ୍ୟକଙ୍କୁ ଆପଣଙ୍କ ସମ୍ମୁଖକୁ ନେଇଆସିଛି । ବର୍ତ୍ତମାନ ଆପଣ ଯାହା ଉଚିତ ମନେକରୁଛନ୍ତି ତାହା କରନ୍ତୁ ।'

ସେନାପତି ହରିଶିଖଙ୍କ ମୁଖରୁ ସମସ୍ତ ଘଟଣା ଶୁଣି ସମ୍ରାଟ ନରବାହନଦତ୍ତ ଦ୍ୱନ୍ଦ୍ୱରେ ପଡ଼ିଗଲେ । ସେ ମାତୁଳ ଗୋପାଳକଙ୍କ ନିକଟକୁ ଯାଇ ଏ ସମସ୍ତ ବୃତ୍ତାନ୍ତ କହି ଶୁଣାଇବାରୁ ସେ କହିଲେ, 'ବତ୍ସ ! ମୁଁ ତ ଏ କଥା ଜାଣିନାହିଁ । ଏହି ରାଜକନ୍ୟା ପାଳକଙ୍କ ପୁତ୍ର ଅବନ୍ତୀବର୍ଦ୍ଧନ ସହିତ ବିବାହ କରିଥିବା କଥା ହିଁ ବର୍ତ୍ତମାନ ମୁଁ ଜାଣେ । ତେଣୁ ମନ୍ତ୍ରୀ ଭରତରୋହଙ୍କ ସହିତ ରାଜକୁମାର ଅବନ୍ତୀବର୍ଦ୍ଧନଙ୍କୁ ଏଠାକୁ ଆଣିବାପାଇଁ ପ୍ରଯତ୍ନ କର । ତା'ହେଲେ ଆମେ ଘଟଣାର ସତ୍ୟାସତ୍ୟ ଯଥାର୍ଥଭାବେ ଜାଣିପାରିବା ।'

ଜ୍ୟେଷ୍ଠ ମାତୁଳ ଗୋପାଳକଙ୍କଠାରୁ ଏହି ପରାମର୍ଶ ଲାଭ କରି ସମ୍ରାଟ ଧୂମଶିଖଙ୍କୁ ଦୂତରୂପେ ନିଜ କନିଷ୍ଠ ମାତୁଳ ପାଳକଙ୍କ ନିକଟକୁ ପ୍ରେରଣ କଲେ । ନିଜ ବିଦ୍ୟା ପ୍ରଭାବରେ ଧୂମଶିଖ ଆକାଶ ମାର୍ଗରେ ଯାଇ ପାଳକଙ୍କ ଅନୁମତି କ୍ରମେ ଉଭୟ ମନ୍ତ୍ରୀ ଓ ରାଜକୁମାରଙ୍କୁ କିଛି ସମୟ ମଧ୍ୟରେ ଆଣି ମହର୍ଷି କଶ୍ୟପଙ୍କ ଆଶ୍ରମରେ ଉପସ୍ଥିତ କରାଇଲେ । ଉଭୟେ ଗୋପାଳକ ଏବଂ ନରବାହନଦତ୍ତଙ୍କୁ ସସମ୍ମାନ ପ୍ରଣାମ କଲେ । ସେମାନେ ମଧ୍ୟ ବାତ୍ସଲ୍ୟ ମମତା ଓ ଆଦର ପ୍ରଦର୍ଶନ ପୂର୍ବକ ପୂର୍ବୋକ୍ତ ଘଟଣାଟି ସେମାନଙ୍କ ନିକଟରେ ବ୍ୟକ୍ତ କଲେ । ଘଟଣାଟିର ସତ୍ୟାସତ୍ୟ ସମ୍ପର୍କରେ ଜାଣିବାପାଇଁ

ଚାହିଁବାରୁ ମନ୍ତ୍ରୀ ଭରତରୋହକ ଅବନ୍ତୀବର୍ଦ୍ଧନ, ସୁରତମଞ୍ଜରୀ, ତାଙ୍କ ପିତା ମତଙ୍ଗଦେବ, ଇତ୍ୟକ, ମହର୍ଷି କଶ୍ୟପ, ବାୟୁପଥ ପ୍ରଭୃତି ବିଦ୍ୟାଧରାଧିପତି ଏବଂ ଅନ୍ୟାନ୍ୟମାନଙ୍କ ସମ୍ମୁଖରେ କହିବା ଆରମ୍ଭ କଲେ—

## ଜଳାଞ୍ଜଳି ଦାନ ଦିବସ ପାଳନର ରହସ୍ୟ

'ଦେବ ! ମୁଁ ମୂଳରୁ ସମସ୍ତ ଘଟଣା ଆପଣମାନଙ୍କୁ ଶୁଣାଇବାପାଇଁ ଚେଷ୍ଟା କରୁଛି । ଶୁଣନ୍ତୁ । ମହାରାଜ ପାଳକ ଉଜ୍ଜୟିନୀର ରାଜତ୍ୱଭାର ଗ୍ରହଣ କରିଥାନ୍ତି । କିଛିଦିନ ପରେ ଉଜ୍ଜୟିନୀର ନାଗରିକମାନେ ଆସି ରାଜାଙ୍କୁ ନିବେଦନ କଲେ 'ପ୍ରଭୁ ! ଉଜ୍ଜୟିନୀ ନଗରରେ ଆଜିର ଦିନଟିକୁ ଜଳାଞ୍ଜଳି ଦାନ ଦିବସ ରୂପେ ପାଳନ କରାଯାଏ । ଏହି ଉତ୍ସବ ପାଳିତ ହେବାର କାରଣ ହେଉଛି ଯେ ପୂର୍ବେ ଆପଣଙ୍କ ପିତା ଚଣ୍ଡମହାସେନ ଅଜେୟ ଖଡ୍‌ଗ ଓ ଗୁଣବତୀ ପତ୍ନୀ ଲାଭ କରିବା ଅଭିଳାଷରେ ତପସ୍ୟା ଆଚରଣ କରି ଦେବୀ ଚଣ୍ଡିକାଙ୍କୁ ପ୍ରସନ୍ନ କରିଥିଲେ । ଦେବୀ ନିଜର ଖଡ୍‌ଗଟିକୁ ତାଙ୍କ ହସ୍ତରେ ପ୍ରଦାନ କରି ପତ୍ନୀପ୍ରାପ୍ତି ସମ୍ପର୍କରେ କହିଲେ ଯେ ସେ ଅଙ୍ଗାରକ ନାମକ ରାକ୍ଷସକୁ ବଧ କରି ତା'ର ଅପୂର୍ବ ରୂପବତୀ ଓ ଗୁଣଶାଳିନୀ କନ୍ୟା ଅଙ୍ଗାରବତୀଙ୍କୁ ବିବାହ କରିବେ । ଏହିପରି ବରଲାଭ କରି ମହାରାଜ ଚଣ୍ଡମହାସେନ ସମୟର ପ୍ରତୀକ୍ଷା କରୁଥାନ୍ତି ।

ଏ ସମୟରେ ଉଜ୍ଜୟିନୀରେ ଏକ ଅଦ୍ଭୁତ ଉତ୍ପାତ ଦେଖାଦେଲା । ରାଜା ଯାହାକୁ ନଗରୀର ମୁଖ୍ୟ ଅଧିକାରୀ ରୂପେ ନିଯୁକ୍ତ କରୁଥିଲେ କୌଣସି ଅଦ୍ଭୁତ ପ୍ରାଣୀ ତା'କୁ ରାତିରେ ଖାଇଯାଉଥିଲା । ଏହାର ରହସ୍ୟ ଉଦ୍‌ଘାଟନ କରିବାପାଇଁ ନିଜେ ଚଣ୍ଡମହାସେନ ରାତ୍ରିର ଗାଢ଼ ଅନ୍ଧକାର ମଧ୍ୟରେ ନଗର ପରିକ୍ରମା କରୁଥାନ୍ତି । ଏ ସମୟରେ ଜଣେ ପରଦାର ଲମ୍ପଟୀ ପୁରୁଷ ତାଙ୍କର କବଳିତ ହେଲା । ସେ ତରବାରି ସାହାଯ୍ୟରେ ତା'ର ଶିରଚ୍ଛେଦ କଲେ । ତାଙ୍କୁ ଆଶ୍ଚର୍ଯ୍ୟଚକିତ କରି ଗୋଟିଏ ଭୀଷଣାକୃତି ରାକ୍ଷସ ମୁହୂର୍ତ୍ତକ ମଧ୍ୟରେ ସେହି କର୍ତ୍ତିତ ମସ୍ତକଟିକୁ ଉଠାଇନେଲା । ତାକୁ ହିଁ ନଗର ରକ୍ଷକମାନଙ୍କର ପ୍ରକୃତ ହତ୍ୟାକାରୀ ମନେକରି ରାଜା ବଳପୂର୍ବକ ତାକୁ ଧରିନେଲେ । ହତ୍ୟା କରିବାପାଇଁ ତରବାରି ଉଠାଇବା ମାତ୍ରେ ସେ ବିକଳ ଭାବେ କହିଲା, 'ମହାରାଜ ! ବିନା କାରଣରେ ମୋତେ ମାରନ୍ତୁ ନାହିଁ । ମୁଁ ଆପଣ ଖୋଜୁଥିବା ଅପରାଧୀ ନୁହେଁ । ଅନ୍ୟ କୌଣସି ରାକ୍ଷସ ନଗର-ମୁଖ୍ୟମାନଙ୍କୁ ଭକ୍ଷଣ କରୁଛି ।'

ରାଜାଙ୍କ ଜିଜ୍ଞାସାକ୍ରମେ ସେ ତାର ପରିଚୟ ଦେବାକୁ ଯାଇ କହିଲା 'ପାତାଳପୁରରେ ଅଙ୍ଗାରକ ନାମକ ଏକ ରାକ୍ଷସ ରହେ । ସେ ହିଁ ଆପଣଙ୍କ ନଗର-

ମୁଖ୍ୟମାନଙ୍କୁ ରାତିରେ ଆସି ଭକ୍ଷଣ କରେ । କେବଳ ସେତିକି ନୁହେଁ ବିଭିନ୍ନ ରାଜ ଅନ୍ତଃପୁରରୁ ରାଜକନ୍ୟାମାନଙ୍କୁ ଅପହରଣ କରିନେବା ମଧ୍ୟ ତାର ଅଭ୍ୟାସ । ସେମାନଙ୍କୁ ନେଇ ସେ ନିଜର ଅପୂର୍ବ ରୂପବତୀ ଓ ଗୁଣବତୀ କନ୍ୟା ଅଙ୍ଗାରବତୀର ସହଚରୀ ରୂପେ ରଖେ । ଅରଣ୍ୟ ମଧ୍ୟରେ ବିଚରଣ କରୁଥିବା ଏହି ରାକ୍ଷସକୁ ହତ୍ୟା କରି ଆପଣ ନିଜର ମନୋରଥ ପୂର୍ଣ୍ଣ କରନ୍ତୁ ।'

ରାକ୍ଷସଠାରୁ ଏହାଶୁଣି ମହାରାଜ ଚଣ୍ଡମହାସେନ ତାକୁ ମୁକ୍ତିଦେଲେ ଏବଂ ନିଜ ପ୍ରାସାଦକୁ ଫେରିଗଲେ ।

## ରାଜା ଚଣ୍ଡମହାସେନ ଓ ଅଙ୍ଗାରବତୀ ବିବାହ କଥା

କିଛିଦିନ ପରେ ରାଜା ମୃଗୟା ନିମିତ୍ତ ଅରଣ୍ୟକୁ ଯାଇଥାନ୍ତି । ସେଠାରେ ଏକ ବିଶାଳାକୃତି ବରାହ ତାଙ୍କର ଦୃଷ୍ଟିଗୋଚର ହେଲା । ବରାହଟିର ଚକ୍ଷୁ ଦୁଇଟି ଜ୍ୱଳନ୍ତ ଅଗ୍ନିପିଣ୍ଡ ପରି ଦେଖାଯାଉଥାଏ । ଭୀଷଣ ଗିରିଗୁହାଯୁକ୍ତ ଅଞ୍ଜନାଦ୍ରି ତୁଲ୍ୟ ବରାହଟିକୁ ଦେଖି ରାଜା ବିସ୍ମିତ ହେଲେ । ଏହା ପ୍ରକୃତରେ ଏକ ବରାହ ବୋଲି ତାଙ୍କର ବିଶ୍ୱାସ ହେଲାନାହିଁ । ତାକୁ ଅଙ୍ଗାରକର ମାୟାବୀ ରୂପ ମନେକରି ମହାରାଜ ଚଣ୍ଡମହାସେନ ତା' ଉପରକୁ ଶର ନିକ୍ଷେପ କଲେ । କିନ୍ତୁ ତା'ପ୍ରତି ଭ୍ରୂକ୍ଷେପ ନକରି ବରାହଟି ରାଜାଙ୍କ ରଥଟିକୁ ଚୂର୍ଣ୍ଣବିଚୂର୍ଣ୍ଣ କରିଦେଲା, ଏବଂ ଚାହୁଁଚାହୁଁ ଏକ ବିସ୍ତୃତ ସୁଡ଼ଙ୍ଗ ମଧ୍ୟରେ ପ୍ରବେଶ କରି ଅନ୍ତର୍ହିତ ହେଲା । ବୀର ଓ ସାହସୀ ଚଣ୍ଡମହାସେନ ମଧ୍ୟ ସୁଡ଼ଙ୍ଗ ମଧ୍ୟରେ ତା'ର ଅନୁଧାବନ କରିବାକୁ ଲାଗିଲେ । କିନ୍ତୁ ବରାହ ପରିବର୍ତ୍ତେ ଏକ ସୁରମ୍ୟ ନଗରୀ ତାଙ୍କର ଦୃଷ୍ଟିପଥାରୂଢ଼ ହେଲା । ନଗରୀର ଗୋଟିଏ ପାର୍ଶ୍ୱରେ ଏକ ବିଶାଳ ସରୋବର ଶୋଭା ପାଉଥାଏ । ତା'ର ତଟଦେଶରେ ଜଣେ ଅପୂର୍ବ ସୁନ୍ଦରୀ କନ୍ୟାକୁ ପରିବେଷ୍ଟନ କରି ପ୍ରାୟ ଏକଶତ ସହଚରୀ ବସିଥାନ୍ତି । କନ୍ୟାଟିର ରୂପ କୌଣସି ଗୁଣରେ କନ୍ଦର୍ପ ପତ୍ନୀ ରତିଙ୍କଠାରୁ କମ୍ ନଥିଲା । ରାଜାଙ୍କୁ ଦେଖିବା ମାତ୍ରେ କନ୍ୟାଟି ତାଙ୍କ ନିକଟକୁ ଉଠି ଆସିଲା । ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ଅଶ୍ରୁ ବିସର୍ଜନ କରି କନ୍ୟାଟି କହିଲା, 'ହେ ଭାଗ୍ୟବାନ ! ଆପଣ ଏହା ମଧ୍ୟକୁ କୁଆଡୁ ପଶିଆସିଲେ ? ଆପଣ ଦେଖିଥିବା ବରାହଟି ପ୍ରକୃତ ବରାହ ନୁହେଁ, ସେ ପ୍ରକୃତରେ ଅଙ୍ଗାରକ ନାମକ ବଳିଷ୍ଠ ରାକ୍ଷସ । ତାର ଶରୀର ବଜ୍ରଠାରୁ ମଧ୍ୟ ଅଧିକ କଠିନ । ସେ ବର୍ତ୍ତମାନ ବରାହ ରୂପ ତ୍ୟାଗ କରି ଭିତରେ ଶୋଇଯାଇଛନ୍ତି । ଭୋଜନର ସମୟ ହେଲେ ସେ ଜାଗ୍ରତ ହେବେ । ସେତେବେଳେ ସେ ହୁଏତ ଆପଣଙ୍କର ଅମଙ୍ଗଳ କରିପାରନ୍ତି । ସୌମ୍ୟ ! ମୁଁ ସେହି

ଅଙ୍ଗାରକ କନ୍ୟା ଅଙ୍ଗାରବତୀ । ଆପଣଙ୍କ ଅମଙ୍ଗଳ ଆଶଙ୍କା କରି ମୋର ପ୍ରାଣ କଣ୍ଠାଗ୍ରତ ହୋଇ ଶରୀର ମଧ୍ୟରୁ ଚାଲିଯିବା ପାଇଁ ବସିଛି ।'

କନ୍ୟାଟିର କଥା ଶୁଣି ରାଜା ଚଣ୍ଡମହାସେନ ଦେବୀ ଚଣ୍ଡିକାଙ୍କ ଆଶୀର୍ବାଦ କଥା ସ୍ମରଣ କଲେ । ଦେବୀଙ୍କ ବର ଫଳପ୍ରସୂ ହେବାର ସମୟ ଉପଗତ ବୋଲି ତାଙ୍କର ବିଶ୍ୱାସ ହେଲା । କନ୍ୟାଟିର ମନୋଭାବ ଜ୍ଞାତ ହୋଇ ସେ ପ୍ରଣୟସିକ୍ତ କଣ୍ଠରେ କହିଲେ, 'ହେ ସୁନୟନି ! ଯଦି ମୋ ପ୍ରତି ତୁମର ପ୍ରେମ ଥାଏ ତେବେ ମୁଁ ଯାହା କହୁଛି ତାହା ପାଳନ କର । ତୁମ ପିତାଙ୍କର ନିଦ୍ରାଭଙ୍ଗ ପରେ ତୁମେ ତାଙ୍କ ନିକଟକୁ ଯାଇ କାନ୍ଦିବା ଆରମ୍ଭ କରିଦିଅ । ସେ ଯଦି ଏହାର କାରଣ ଜାଣିବାପାଇଁ ଚାହାଁନ୍ତି, ସେ ନିଶ୍ଚୟ ଚାହିଁବେ, ତେବେ ତୁମେ କହିବ, ଆପଣଙ୍କ ଏପରି ନିଦ୍ରା ବା ଅସାବଧନତାର ସୁଯୋଗ ନେଇ ଯଦି କୌଣସି ଶତ୍ରୁ କିଛି ଅନିଷ୍ଟ କରେ ତେବେ ମୋର ଗତି କଣ ହେବ ?' ଏହିପରି କଲେ ଆମ ଉଭୟଙ୍କର ନିଶ୍ଚୟ କଲ୍ୟାଣ ହେବ । ମହାରାଜଙ୍କ ପ୍ରତି କାମମୋହିତ ରାକ୍ଷସକନ୍ୟା ଅନୁରୂପ ଭାବେ ନିଦ୍ରାରୁ ଉଠି ବସିଥିବା ରାକ୍ଷସ ନିକଟକୁ ଯାଇ ବିଳାପ କରିବାକୁ ଲାଗିଲା । ରାକ୍ଷସର ଜିଜ୍ଞାସାକ୍ରମେ ସେ ଜଣାଇଲା ଯେ ତାଙ୍କରି ମୃତ୍ୟୁ ଆଶଙ୍କା ହିଁ ଏପରି ବିଳାପର କାରଣ ।

ରାକ୍ଷସ ଅଙ୍ଗାରକ କନ୍ୟା ଅଙ୍ଗାରବତୀ ପ୍ରତି ବାତ୍ସଲ୍ୟଭାବ ପ୍ରଦର୍ଶନ କରି କହିଲା, 'ମୋ ଶରୀର ବଜ୍ର ଅପେକ୍ଷା ଆହୁରି କଠୋର । ମୋତେ ବା କିଏ ମାରିବ ? ମୋର ବାମହସ୍ତର ମର୍ମସ୍ଥଳରେ ଏକ କୋମଳ ସ୍ଥାନ ଅଛି । ସେଠାରେ ଯଦି କେହି ଆଘାତ କରେ ତେବେ ଯାଇ ମୋର ମୃତ୍ୟୁ ହେବ । କିନ୍ତୁ ସେହି ସ୍ଥାନଟିକୁ ସର୍ବଦା ମୋର ଏହି ଧନୁ ଆଚ୍ଛାଦନ କରି ରଖିଥାଏ ।'

ରାଜା ଚଣ୍ଡମହାସେନ ଗୁପ୍ତ ଭାବରେ ରହି ରାକ୍ଷସର ଏହି ମୃତ୍ୟୁଭେଦ ଶୁଣୁଥାନ୍ତି । ରାକ୍ଷସ ଶଯ୍ୟା ତ୍ୟାଗକରି ସ୍ନାନ ପୂର୍ବକ ଈଶ୍ୱରଙ୍କ ପୂଜାରେ ବସିଲା । ଏ ସମୟରେ ରାଜା ଗୁପ୍ତ ସ୍ଥାନରୁ ବାହାରି ଧନୁର୍ବାଣ ଧାରଣ ପୂର୍ବକ ରାକ୍ଷସକୁ ଯୁଦ୍ଧପାଇଁ ଆହ୍ୱାନ କଲେ । ରାକ୍ଷସ ପୂଜାରେ ବସିଥିବା ଯୋଗୁଁ ମୌନବ୍ରତ ଧାରଣ କରିଥାଏ । ଦକ୍ଷିଣ ହସ୍ତରେ ପୂଜା କରୁଥିବା ଯୋଗୁଁ ରାକ୍ଷସ ବାମହସ୍ତ ଉତ୍ତୋଳନ କରି କିଛି ସମୟ ଅପେକ୍ଷା କରିବା ନିମନ୍ତେ ରାଜାଙ୍କୁ ଇଙ୍ଗିତ ଦେଲା । ସେହି ମୁହୂର୍ତ୍ତରେ ରାଜା ଅବ୍ୟର୍ଥ ଲକ୍ଷ୍ୟ ନେଇ ରାକ୍ଷସର ମର୍ମସ୍ଥଳକୁ ଶରଭେଦ କଲେ । ରାକ୍ଷସ ଆହତ ହୋଇ ଭୂମି ଉପରେ ପଡ଼ିଗଲା । ତାର ମୃତ୍ୟୁ ସନ୍ନିକଟ ଜାଣି ସେ ଚଣ୍ଡମହାସେନଙ୍କୁ କହିଲା, 'ମୁଁ ପୂଜା କରୁଥିବା ଅବସ୍ଥାରେ

ତୃଷାର୍ତ୍ତ ଥିଲି । ଏ ସମୟରେ ମୋତେ ଯିଏ ହତ୍ୟା କରୁଛନ୍ତି ସେ ଯଦି ପ୍ରତିବର୍ଷ ଜଳାଞ୍ଜଳି ଦ୍ଵାରା ମୋର ତର୍ପଣ ନକରନ୍ତି ତେବେ ତାଙ୍କର ପାଞ୍ଚଜଣ ମନ୍ତ୍ରୀ ମୃତ୍ୟୁମୁଖରେ ପଡ଼ିବେ ।' ଏହା କହୁଥିବା ବେଳେ ରାକ୍ଷସର ପ୍ରାଣବାୟୁ ଉଡ଼ିଗଲା । ରାଜା ଚଣ୍ଡମହାସେନ ତା'ର କନ୍ୟା ଅଙ୍ଗାରବତୀକୁ ଧରି ଉଜ୍ଜୟିନୀ ଫେରିଗଲେ ।

ଉଜ୍ଜୟିନୀରେ ଦେବୀ ଅଙ୍ଗାରବତୀଙ୍କ ସହିତ ରାଜା ଚଣ୍ଡମହାସେନଙ୍କ ବିବାହ ମହାସମାରୋହରେ ସମ୍ପନ୍ନ ହେଲା । ଆପଣଙ୍କ ପିତା ସେହିଦିନଠାରୁ ପ୍ରତିବର୍ଷ ଏହି ନିର୍ଦ୍ଦିଷ୍ଟ ଦିବସରେ ଅଙ୍ଗାରକକୁ ଜଳାଞ୍ଜଳି ଦାନ କରି ଆସୁଥିଲେ । ନଗରବାସୀମାନେ ଏହି ଦିବସଟିକୁ ଜଳାଞ୍ଜଳି ଦାନ ଉତ୍ସବ ରୂପେ ପାଳନ କରିଥାନ୍ତି । ତେଣୁ, ଦେବ ! ଆପଣଙ୍କ ପିତା ଯାହା କରୁଥିଲେ ଆପଣ ତାହାହିଁ କରନ୍ତୁ ।' ପ୍ରଜାମାନଙ୍କ ଅନୁରୋଧ କ୍ରମେ ରାଜା ପାଳକ ରାଜ୍ୟରେ ଜଳାଞ୍ଜଳି ଦାନ ଉତ୍ସବର ଆୟୋଜନ କରାଇଲେ ।

ଉତ୍ସବ ଆରମ୍ଭ ହେଲା । ନାଗରିକମାନେ କୋଳାହଳ ପୂର୍ବକ ଉତ୍ସବରେ ନିମଜ୍ଜିତ ରହିଲେ । ଏ ସମୟରେ ଗୋଟିଏ ମଦୋନ୍ମତ୍ତ ହସ୍ତୀ ଶୃଙ୍ଖଳ ଛିନ୍ନ କରି ରାଜରାସ୍ତା ଉପରକୁ ଆସିଗଲା । ମାହୁନ୍ତର ଅଙ୍କୁଶାଘାତ ତାକୁ ନିୟନ୍ତ୍ରଣ କରିପାରୁ ନଥାଏ । କିଛି ସମୟ ମଧ୍ୟରେ ସେ ତା'କୁ ତଳେ କଚାଡ଼ି ଦେଇ ବହୁଲୋକଙ୍କୁ ପଦଦଳିତ କଲା । ହସ୍ତୀଟିର ଗତିରୋଧ କରିନପାରି ହସ୍ତୀପାଳକ ଓ ଅନ୍ୟାନ୍ୟ ନାଗରିକ ଇତସ୍ତତଃ ଦୌଡ଼ିବାକୁ ଲାଗିଲେ । ଉନ୍ମତ୍ତ ହସ୍ତୀଟିକୁ ଆୟତ୍ତ କରିବା କାହାରି ପକ୍ଷରେ ସମ୍ଭବ ହେଲାନାହିଁ ।

ହସ୍ତୀ ଏହିପରି ବହୁ ଘରଦ୍ୱାର, ମଣ୍ଡପ ତୋରଣ ଇତ୍ୟାଦି ଭଙ୍ଗାରୁଜା କରି ନିକଟସ୍ଥ ଏକ ଚଣ୍ଡାଳ ବସ୍ତି ମଧ୍ୟରେ ଯାଇ ପ୍ରବେଶ କଲା । ହାତୀଟିର ଗର୍ଜନ ଏବଂ ବସ୍ତିବାସୀଙ୍କ ଆର୍ତ୍ତଚିତ୍କାର ଶୁଣି ତା' ମଧ୍ୟରୁ ଏକ ଚାଣ୍ଡାଳ କନ୍ୟା ତା'ର ସମ୍ମୁଖୀନ ହେଲା । କନ୍ୟାଟିର ମୁଖମଣ୍ଡଳର ଶୋଭା ଚନ୍ଦ୍ରକୁ ପରାସ୍ତ କରୁଥାଏ । ଶତ୍ରୁକୁ (ଚନ୍ଦ୍ରକୁ) ପରାସ୍ତ କରିଥିବା ଯୋଗୁଁ କମଳିନୀ ତା'ର ପଦଯୁଗଳକୁ ଆଶ୍ରୟ କରିଥାଏ । ତା'ର ପଦପାତରେ, ସେଥିପାଇଁ ପଦ୍ମର ଶୋଭା ଉକୁଟି ଉଠୁଥାଏ । ତା'ର ସୌନ୍ଦର୍ଯ୍ୟ ନିଦ୍ରାତୁଲ୍ୟ ଦର୍ଶକମାନଙ୍କୁ ଅଚେତନ କରିଦେଉଥାଏ । ଫଳରେ ନିର୍ନିମେଷ ନୟନରେ ତାକୁ ଚାହିଁରହୁଥିବା ଦର୍ଶକମାନେ କିଛି ସମୟନିମିତ୍ତ ନିଜ ନିଜର ଦର୍ଶନେନ୍ଦ୍ରିୟକୁ ବିଶ୍ରାମ ଦେଉଥାନ୍ତି ।

ଚାଣ୍ଡାଳ କନ୍ୟା ହସ୍ତୀ ନିକଟକୁ ଆସି ତା'ର ଶୁଣ୍ଢରେ କରାଘାତ କଲା, ଏବଂ ନିଜର ବକ୍ର କଟାକ୍ଷଦ୍ୱାରା ତାକୁ ଆହତ କରିବାକୁ ଲାଗିଲା । କନ୍ୟାଟିର କୋମଳ ହସ୍ତର

ସ୍ପର୍ଶରେ ମୋହିତ ହୋଇ ହସ୍ତୀଟି ମସ୍ତକ ଅବନତ କଲା ଏବଂ ତାର କଟାକ୍ଷଦ୍ୱାରା ଆହତ ହୋଇ ଆଉ ଗୋଟିଏ ବି ପାଦ ଆଗକୁ ଅଗ୍ରସର ହେଲାନାହିଁ । ଏହାପରେ ସେହି ଚାଣ୍ଡାଳ କନ୍ୟା ନିଜ ଉତ୍ତରୀୟଟି ବାହାର କରି ହସ୍ତୀର ଉଭୟ ଦନ୍ତରେ ବନ୍ଧନ କଲା ଏବଂ ତା' ଉପରେ ବସି ଦୋଳି ଖେଳିବାକୁ ଲାଗିଲା । ହାତୀଟି ମଧ୍ୟ ସୂର୍ଯ୍ୟଙ୍କ ପ୍ରଖର ତାପରୁ ରକ୍ଷା କରିବାପାଇଁ କନ୍ୟାଟିକୁ ଧରି ନିକଟସ୍ଥ ବୃକ୍ଷ ଛାୟାରେ ଯାଇ ଠିଆହେଲା । ଏହି ଆଶ୍ଚର୍ଯ୍ୟଜନକ ବ୍ୟାପାର ଦେଖି ଦର୍ଶକମାନେ ହତଚକିତ ହୋଇପଡ଼ିଲେ । ସମସ୍ତଙ୍କ ମୁହଁରେ ଗୋଟିଏ କଥା, କନ୍ୟାଟି ନିଶ୍ଚୟ କୌଣସି ଦେବୀଙ୍କ ଅଂଶରୁ ଜାତ । ତା' ନହେଲେ ସେ ନିଜର ସୌନ୍ଦର୍ଯ୍ୟର ପ୍ରଭାବରେ ପଶୁପକ୍ଷୀମାନଙ୍କୁ ମଧ୍ୟ ଆୟତ୍ତ କରିବା ସମ୍ଭବ ହୋଇନଥାନ୍ତା ।

ଚାହୁଁଚାହୁଁ ଏହି ଚାଞ୍ଚଲ୍ୟକର ସମ୍ବାଦ ନଗର ମଧ୍ୟରେ ଖେଳିଗଲା । ରାଜକୁମାର ଅବନ୍ତୀବର୍ଦ୍ଧନ ମଧ୍ୟ କୌତୂହଳ ଦମନ କରିନପାରି ସେଠାରେ ଆସି ପହଞ୍ଚିଲେ । ଚାଣ୍ଡାଳ କନ୍ୟାଟିକୁ ଦେଖିବା ମାତ୍ରେ ତାଙ୍କର ମାନସ ମୃଗ କନ୍ୟାଟି ପ୍ରତି ଧାବିତ ହେଲା ଏବଂ କନ୍ଦର୍ପ ବ୍ୟାଧର ଜାଲ ମଧ୍ୟରେ ଆବଦ୍ଧ ହୋଇପଡ଼ିଲା । ଚାଣ୍ଡାଳକନ୍ୟା ମଧ୍ୟ ରାଜକୁମାରଙ୍କୁ ଦେଖିବାମାତ୍ରେ ପ୍ରଣୟଭାବନାରେ ବିମୁଗ୍ଧ ହୋଇଉଠିଲା । ସେ ଯଥାଶୀଘ୍ର ହସ୍ତୀର ଉଭୟ ଦନ୍ତରୁ ଉତ୍ତରୀୟଟି ଆଣି ନିଜ ଶରୀରକୁ ଆବୃତ କଲା । ଲଜ୍ଜାରେ ତାର ଶରୀର ସଂକୁଚିତ ହୋଇଉଠିଲା । ହସ୍ତୀଟି ସ୍ଥିର ହେବାରୁ ମାହୁନ୍ତ ତାକୁ ଧରି ହସ୍ତୀଶାଳାକୁ ଫେରିଗଲା । ଚାଣ୍ଡାଳ କନ୍ୟା ମଧ୍ୟ ରାଜକୁମାରଙ୍କ ପ୍ରତି ଲଜ୍ଜା ଓ ପ୍ରେମଭରା କଟାକ୍ଷପାତ କରି ସ୍ୱଗୃହରେ ପ୍ରବେଶ କଲା । ଅବନ୍ତୀବର୍ଦ୍ଧନ ହସ୍ତୀଜନିତ କୋଳାହଳ ଶାନ୍ତ ହେବାରୁ କନ୍ୟାଠାରେ ନିଜର ଚିତ୍ତବୃତ୍ତି ସମର୍ପଣ କରିଦେଇ ଶୂନ୍ୟ ହୃଦୟରେ ରାଜଭବନକୁ ଫେରିଲେ ।

ଜଳାଞ୍ଜଳି ଦାନ ଉତ୍ସବରେ ରାଜକୁମାରଙ୍କ ଆଉ ଆଗ୍ରହ ରହିଲା ନାହିଁ । ସେ ବିରହ ଜ୍ୱାଳାରେ ସନ୍ତପ୍ତ ହେବାକୁ ଲାଗିଲେ । ମିତ୍ରମାନଙ୍କଠାରୁ କନ୍ୟାଟିର ନାମ ଓ ପରିଚୟ ଜାଣିବାପାଇଁ ଚାହିଁବାରୁ ସେମାନେ ରାଜକୁମାରଙ୍କୁ କହିଲେ, 'ଚାଣ୍ଡାଳପଲ୍ଲୀରେ ଉତ୍ପଳହସ୍ତ ନାମରେ ଏକ ମାତଙ୍ଗ ରହୁଛି । ଆପଣ ଦେଖିଥିବା ବାଳିକାଟି ତା'ର କନ୍ୟା । ତା'ର ନାମ ସୁରତମଞ୍ଜରୀ । କନ୍ୟାଟିକୁ ଚିତ୍ରପଟ ପରି ଦର୍ଶକମାନେ କେବଳ ଦର୍ଶନ କରି ଆନନ୍ଦ ଅନୁଭବ କରିଥାନ୍ତି । କାରଣ କନ୍ୟାଟି ନୀଚକୁଳ ସମ୍ଭୂତା ହୋଇଥିବା ଯୋଗୁଁ କୁଳୀନ ପୁରୁଷମାନଙ୍କ ବିବାହଯୋଗ୍ୟା ନୁହେଁ ।'

ମିତ୍ରମାନଙ୍କଠାରୁ ଏହା ଶୁଣି ଅବନ୍ତୀବର୍ଦ୍ଧନ ଦୃଢ଼ ସ୍ୱରରେ କହିଲେ, 'କନ୍ୟାଟି ନିଶ୍ଚିତରୂପେ ମାତଙ୍ଗର ପୁତ୍ରୀ ନୁହେଁ । ସେ ଯେକୌଣସି ଦିବ୍ୟଅଂଶ ସମ୍ଭୂତା, ଏଥିରେ

ସନ୍ଦେହ ନାହିଁ । ଚାଣ୍ଡାଳ କନ୍ୟା ଏପରି ଅଲୌକିକ ରୂପବତୀ ହେବା ଅସମ୍ଭବ । ଏପରି ରୂପବତୀ କନ୍ୟା ଯଦି ମୋର ପତ୍ନୀ ନହୁଏ, ତା'ହେଲେ ମୋର ଜୀବନଧାରଣ ବୃଥା ।' ରାଜକୁମାରଙ୍କ ଦୃଢ଼ୋକ୍ତିରେ ମିତ୍ରମାନେ ପ୍ରତିବାଦ କରିବାପାଇଁ ସାହସ କଲେ ନାହିଁ । ରାଜକୁମାରଙ୍କ ହୃଦୟରେ ବିରହାଗ୍ନି ଅଧିକରୁ ଅଧିକଭାବେ ପ୍ରଜ୍ୱଳିତ ହେବାକୁ ଲାଗିଲା ।

କିଛି ସମୟ ମଧ୍ୟରେ ମାତା ଅବନ୍ତିବତୀ ଏବଂ ପିତା ପାଳକ ଏହି ସମ୍ବାଦ ଲାଭ କରି ଦୁଃଖିତ ହେଲେ । 'କ୍ଷତ୍ରିୟ ବଂଶରେ ଜାତ ହୋଇ ଆମ୍ଭମାନଙ୍କର ପୁତ୍ର ଏହି ଅନ୍ତ୍ୟଜ କନ୍ୟାପ୍ରତି କିପରି ଆକୃଷ୍ଟ ହୋଇପଡୁଛି, ତାହା ବୁଝାଯାଉନାହିଁ ।' ରାଣୀଙ୍କ ଠାରୁ ଏହା ଶୁଣି ରାଜା ପାଳକ ତାଙ୍କ ଆଶଙ୍କା ଦୂର କରିବାପାଇଁ ଯାଇ କହିଲେ, 'ଆମମାନଙ୍କ ପରି କୁଳୀନ କ୍ଷତ୍ରିୟଠାରୁ ଜନ୍ମଗ୍ରହଣ କରିଥିବା ପୁତ୍ର କନ୍ୟାଟି ପ୍ରତି ଆକୃଷ୍ଟ ହୋଇପଡ଼ିଥିବା ଯୋଗୁଁ ମୁଁ ଭାବୁଛି କନ୍ୟାଟି ନିଶ୍ଚିତ ଭାବେ ମାତଙ୍ଗ ଗୃହରେ ଜନ୍ମଗ୍ରହଣ କରିନାହିଁ । ସେ ଅନ୍ୟତ୍ର ଜନ୍ମଗ୍ରହଣ କରି କୌଣସି କାରଣରୁ ଚାଣ୍ଡାଳପଲ୍ଲୀରେ ରହିବାପାଇଁ ବାଧ ହୋଇଛି । ସତ୍‌ପୁରୁଷମାନଙ୍କ ମନ ଅନୁରକ୍ତ ବା ବିରକ୍ତ ହୋଇ କର୍ତ୍ତବ୍ୟାକର୍ତ୍ତବ୍ୟର ସୂଚନା ଦେଇଥାଏ ।'

'ବକ୍ତି ରଜ୍ୟଦରଜ୍ୟଦ୍‌ବା କାର୍ଯ୍ୟାକାର୍ଯ୍ୟେ ସତାଂ ମନଃ'

ଦେବି ! ଏ ବିଷୟରେ ମୋର ଗୋଟିଏ କଥା ସ୍ମରଣ ହେଉଛି । ତୁମେ ଯଦି ପୂର୍ବରୁ ଶୁଣିନାହଁ, ତେବେ ଶୁଣ ।

## ରାଜକୁମାରୀ କୁରଙ୍ଗୀ ଓ ଚାଣ୍ଡାଳପୁତ୍ର କଥା

ସୁପ୍ରତିଷ୍ଠିତ ନାମରେ ଏକ ରାଜ୍ୟ ଅଛି । ସେଠାରେ ପ୍ରାଚୀନ କାଳରେ ପ୍ରସେନଜିତ୍ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ଏକ ଅତି ରୂପବତୀ କନ୍ୟା ଥିଲା । ରାଜା ତା'ର ନାମକରଣ କରିଥିଲେ କୁରଙ୍ଗୀ । ଦିନେ କୁରଙ୍ଗୀ ସବାରିରେ ବସି ଉଦ୍ୟାନ ଭ୍ରମଣ ପାଇଁ ଯାଉଥାଏ । ଏ ସମୟରେ ବନ୍ଧନ ଛିନ୍ନ କରି ଗୋଟିଏ ମତ୍ତହସ୍ତୀ ତା' ଆଡ଼କୁ ଦୌଡ଼ିଯାଇ ସବାରିଟିକୁ ଭାଙ୍ଗିଦେଲା ଏବଂ କନ୍ୟାଟିକୁ ଉଠାଇନେଇ ନିଜର ଦନ୍ତ ଉପରେ ଧାରଣ କଲା । ଏଥିରେ ବିବ୍ରତ ହୋଇ ବାହକ ଓ ସେବକମାନେ ଇତସ୍ତତଃ ପଳାୟନ କଲେ । କନ୍ୟାଟିର ବିପଦ ଦେଖି ଜଣେ ଚାଣ୍ଡାଳ ଯୁବକ ଖଡ୍‌ଗ ଧାରଣ ପୂର୍ବକ ହାତୀଟିର ସମ୍ମୁଖୀନ ହେଲା । ତା'ର ପ୍ରଚଣ୍ଡ ଆଘାତ ସହ୍ୟ କରିନପାରି ହସ୍ତୀଟି ମୃତ୍ୟୁମୁଖରେ ପଡ଼ିଲା ଏବଂ ରାଜକୁମାରୀ ବଞ୍ଚିଗଲା ।

ନୂତନ ଜୀବନ ଲାଭ କରି କୁରଙ୍ଗୀ ସେବକମାନଙ୍କ ସହିତ ରାଜଭବନକୁ ଫେରିଗଲେ ମଧ୍ୟ ଯୁବକଟିର ଶୌର୍ଯ୍ୟ ଓ ବୀର୍ଯ୍ୟ ଭୁଲିପାରିଲା ନାହିଁ । ତା'କୁ ପତି ରୂପରେ ପାଇବା କିମ୍ବା ମୃତ୍ୟୁବରଣ କରିବା—ଏହି ଚିନ୍ତାରେ ତା'ର ମନ ବ୍ୟାକୁଳ ହୋଇଉଠୁଥାଏ ।

ସେହି ଚାଣ୍ଡାଳ କୁମାର ମଧ୍ୟ ରାଜକୁମାରୀଙ୍କ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ତାଙ୍କ ପ୍ରତି ଆସକ୍ତ ହୋଇପଡ଼ିଥାଏ । ତାକୁ ଚତୁର୍ଦ୍ଦିଗ ରାଜକୁମାରୀମୟ ଦେଖାଯାଉଥାଏ । କିନ୍ତୁ ସେ ଚିନ୍ତା କରୁଥାଏ 'କାହିଁ ରାଜକୁମାରୀ, ଏବଂ କାହିଁ ମୋ ପରି ଚାଣ୍ଡାଳ କୁମାର । କାଉ ସହିତ ରାଜହଂସର ମିଳନ କେବେ କଣ ସମ୍ଭବ ହୋଇପାରେ ? ମୁଁ ରାଜକୁମାରୀଙ୍କ ପ୍ରତି ଆସକ୍ତ ବୋଲି କହିବାଦ୍ୱାରା ଉପହାସର ପାତ୍ର ହିଁ ହେବି । କିନ୍ତୁ ଏହା କହି ହେଉ ନାହିଁ କି ସହି ହେଉ ନାହିଁ । ତେଣୁ ଏ ଅବସ୍ଥାରେ ମୃତ୍ୟୁ ହିଁ ମୋର ଏକମାତ୍ର ଆଶ୍ରୟଦାତା ।'

ଏହିପରି ଚିନ୍ତାକରି ସେହି ଚାଣ୍ଡାଳ କୁମାର ରାତିରେ ଯାଇ ଶ୍ମଶାନ ମଧ୍ୟରେ ପହଞ୍ଚିଲା । ସେଠାରେ ସ୍ନାନସାରି ଚିତାଗ୍ନି ପ୍ରଜ୍ୱଳିତ କଲା । ଅଗ୍ନି ସମ୍ମୁଖରେ ଦଣ୍ଡାୟମାନ ହୋଇ କହିଲା, 'ହେ ଅଗ୍ନି ଦେବତା ! ମୁଁ ନିଜକୁ ଆପଣଙ୍କ ନିକଟରେ ଏଥିପାଇଁ ଆହୁତି ଦେବାକୁ ଚାହୁଁଛି ଯେ ଏହି ରାଜକୁମାରୀ ଅନ୍ତତଃ ପରଜନ୍ମରେ ମୋର ଭାର୍ଯ୍ୟା ହେଉ ।' ଏହା କହି ସେହି ଚାଣ୍ଡାଳ କୁମାର ନିଜକୁ ଅଗ୍ନି ମଧ୍ୟରେ ଝାସ ଦେବାପାଇଁ ଉଦ୍ୟତ ହେଲାବେଳେ ସ୍ୱୟଂ ଭଗବାନ ଅଗ୍ନି ପ୍ରତ୍ୟକ୍ଷ ଭାବେ ସେଠାରେ ଆବିର୍ଭୂତ ହୋଇ କହିଲେ, 'ଆତ୍ମାହୁତି ଦେବାର ଦୁଃସାହସ କରନାହିଁ । ସେହି ରାଜକୁମାରୀ ନିଶ୍ଚିତଭାବେ ତୋର ସ୍ତ୍ରୀ ହେବ । ତୁ ଜନ୍ମରୁ ଚଣ୍ଡାଳ ନୁହଁ । ତୋର ପ୍ରକୃତ ପରିଚୟ ମୋଠାରୁ ଶୁଣ ।'

'ଏହି ନଗରରେ କପିଳଶର୍ମା ନାମରେ ଜଣେ କୁଳୀନ ବ୍ରାହ୍ମଣ ବାସ କରନ୍ତି । ମୁଁ ତାଙ୍କର ଅଗ୍ନି ଗୃହରେ ପ୍ରତ୍ୟକ୍ଷ ଶରୀର ଧାରଣ କରି ଅବସ୍ଥାନ କରେ । ଦିନେ ତାଙ୍କ କନ୍ୟା ଆସି ମୋ ନିକଟରେ ଉପସ୍ଥିତ ହେଲା । ମୁଁ ତାର ରୂପରେ ପ୍ରଲୁବ୍ଧ ହେଲି । ବରଦାନ ଦ୍ୱାରା ତାର ସମସ୍ତ ମାନବୀୟ ଦୂଷଣକୁ ଦୂରୀଭୂତ କରି ମୁଁ ସେହି ଅବୋଧ ବାଳିକାଟିକୁ ନିଜର ପତ୍ନୀ ରୂପେ ସ୍ୱୀକାର କଲି । ମୋର ସହବାସରୁ ସେହି କନ୍ୟାଟି ଗୋଟିଏ ପୁତ୍ର ସନ୍ତାନ ପ୍ରସବ କଲା । କିନ୍ତୁ ସାମାଜିକ ଲଜ୍ଜାବଶତଃ ସେ ସନ୍ତାନଟିକୁ ନେଇ ରାସ୍ତାକଡ଼ରେ ଶୁଆଇ ଦେଲା । ବାଳକଟିର କ୍ରନ୍ଦନରେ ଆକୃଷ୍ଟ ହୋଇ କୌଣସି ଚାଣ୍ଡାଳ ତାକୁ ଉଠାଇନେଇ ଛାଗଳ ଦୁଗ୍ଧଦ୍ୱାରା ତାର ପରିପାଳନ କଲା । ତୁ ହିଁ ସେହି ବାଳକ । ଚାଣ୍ଡାଳ ନୁହେଁ ବ୍ରାହ୍ମଣ ରମଣୀ ହିଁ ତୋର ମାତା । ମୋର ବୀର୍ଯ୍ୟରୁ ଉତ୍ପନ୍ନ ହୋଇଥିବା ଯୋଗୁଁ ତୋତେ କୌଣସି ଅପବିତ୍ରତା ସ୍ପର୍ଶ କରିବ ନାହିଁ । ତୁ ସେହି ରାଜକୁମାରୀ କୁରଙ୍ଗୀକୁ ଏହି ଜନ୍ମରେ ହିଁ ପତ୍ନୀ ରୂପରେ ପାଇବୁ ।'

ଅଗ୍ନିଦେବ ଏହା କହି ସେଠାରୁ ଅନ୍ତର୍ହିତ ହୋଇଗଲେ । ମନରେ ଆଶାର ସଞ୍ଚାର ହେବାରୁ ଚାଣ୍ଡାଳ ପାଳିତ ସେହି ବ୍ରାହ୍ମଣକୁମାର ସ୍ୱଗୃହକୁ ଫେରିଆସିଲା । ସେହି ରାତ୍ରିରେ ପ୍ରସେନଜିତ୍ ଅଗ୍ନିଦେବଙ୍କର ସ୍ୱପ୍ନାଦେଶ ଲାଭ କଲେ । ପରଦିନ ସେ ଘଟଣାର ସତ୍ୟାସତ୍ୟ ପରୀକ୍ଷା କରି ଉଭୟଙ୍କ ବିବାହ ସମ୍ପର୍କରେ ଆୟୋଜନ କରିବା ଆରମ୍ଭ କଲେ ।

ତେଣୁ ଦେବି ! ଦିବ୍ୟପୁରୁଷମାନେ ବିଭିନ୍ନ ସମୟରେ ଛଦ୍ମରୂପ ଧାରଣ କରି ଏହି ପୃଥିବୀ ପୃଷ୍ଠରେ ଜନ୍ମଗ୍ରହଣ କରିଥାନ୍ତି । ଏହି ସୁରତମଞ୍ଜରୀ ମଧ୍ୟ କୌଣସି ଦିବ୍ୟ କନ୍ୟା ହେବା ସମ୍ଭବ, କିନ୍ତୁ ମାତଙ୍ଗ କନ୍ୟା ନୁହେଁ । ଏହି କନ୍ୟାରତ୍ନଟି ନିଶ୍ଚିତଭାବେ ଆମ ପୁତ୍ରର ପୂର୍ବଜନ୍ମର ପତ୍ନୀ । ତା'ନହେଲେ ପ୍ରଥମ ଦୃଷ୍ଟିପାତରେ ହିଁ ଉଭୟେ ଉଭୟଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ି ନଥାନ୍ତେ ।

ଆମ୍ଭମାନଙ୍କ ଉପସ୍ଥିତିରେ ରାଜା ପାଳକ ଏହି କଥାଟି ଶୁଣାଇବା ପରେ ମୁଁ ମଧ୍ୟ ଏ ସମ୍ପର୍କରେ ଅନ୍ୟ ଏକ କାହାଣୀ କହି ଶୁଣାଇଲି ।

## କୈବର୍ତ୍ତ ପୁତ୍ର ସୁପ୍ରହାର ଓ ରାଜକନ୍ୟା ମାୟାବତୀ କଥା

ପ୍ରାଚୀନ କାଳରେ ରାଜଗୃହ ରାଜ୍ୟକୁ ମଳୟସିଂହ ରାଜତ୍ୱ କରୁଥିଲେ । ତାଙ୍କର ଅପ୍ରତିମ ରୂପବତୀ କନ୍ୟା ମାୟାବତୀ । ସେ ଦିନେ ବସନ୍ତ ଋତୁରେ ଉଦ୍ୟାନ ମଧ୍ୟରେ ଖେଳୁଥିବା ବେଳେ ତାଙ୍କ ରୂପଯୌବନ ଦେଖି କୈବର୍ତ୍ତ ଜାତିର ଜଣେ ଯୁବକ କାମାସକ୍ତ ହୋଇପଡ଼ିଲା । ଭବିତବ୍ୟତା ସାଧ୍ୟ ବା ଅସାଧ୍ୟର ବିଚାର କରେନାହିଁ ।

'ସାଧ୍ୟାସାଧ୍ୟ ବିଚାରଂ ହି ନେକ୍ଷତେ ଭବିତବ୍ୟତା'

କୈବର୍ତ୍ତ ଯୁବକ ସୁପ୍ରହାର ଘରକୁ ଫେରିଆସିଲା । ମାଛଧରା ଜାଲରେ ତା'ର ଆଉ ମନ ଲାଗିଲା ନାହିଁ । ଖାଇବା ପିଇବା ମଧ୍ୟ ଏକପ୍ରକାର ଛାଡ଼ିଦେଲା । କେବଳ ରାଜକୁମାରୀଙ୍କୁ ସ୍ମରଣ କରି ବିଛଣାରେ ପଡ଼ିଥାଏ । ତା'ର ଏ ପ୍ରକାର ଅବସ୍ଥା ଦେଖି ମାତା ରକ୍ଷିତିକା ଆଗ୍ରହ ପୂର୍ବକ ପଚାରିବାରୁ ସେ ନିଜର ଅଭିପ୍ରାୟ ଜଣାଇଲା । ରକ୍ଷିତିକା ତାକୁ ସାନ୍ତ୍ୱନା ଦେଇ କହିଲା, 'ପୁତ୍ର ତୁ ଚିନ୍ତା କରନାହିଁ । ଖାଇପିଇ ସୁସ୍ଥ ହୁଅ । ମୁଁ ମୋ ବାଟରେ ତୋର କାମନା ସିଦ୍ଧ କରିବି ।' ସୁପ୍ରହାର ମା'ଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ଶୁଣି ଆଶ୍ୱସ୍ତ ହେଲା ।

ପରଦିନ କେଉଟୁଣୀ ରକ୍ଷିତିକା ଭଲଭଲ ମାଛଧରି ରାଜକୁମାରୀଙ୍କ ବାସଭବନକୁ ଗଲା । ଦାସୀମାନଙ୍କଦ୍ୱାରା ରାଜକୁମାରୀଙ୍କ ସେବାପାଇଁ ଆସିଥିବା ଜଣାଇ ସେ ଅନ୍ତଃପୁରରେ ଯାଇ ପ୍ରବେଶ କଲା । ରାଜକୁମାରୀଙ୍କୁ ଭଲଭଲ ମାଛ ସବୁ ଉପହାର ଦେବାରୁ ସେ ପ୍ରୀତ ହେଲେ । ଏହିପରି ପ୍ରତିଦିନ ରକ୍ଷିତିକା ମାଛ ଉପହାର ନେଇ ରାଜକୁମାରୀଙ୍କ ନିକଟକୁ ଯାଉଥାଏ । କ୍ରମେ କ୍ରମେ ସେ ତାଙ୍କର ନିକଟତର ହେଲା । କିଛିଦିନ ବିତିଯିବା ପରେ ରାଜକନ୍ୟା କେଉଟୁଣୀ ପ୍ରତି ପ୍ରସନ୍ନ ହୋଇ କହିଲେ, 'ତୁ ପ୍ରତିଦିନ ମୋତେ ଏତେ ଏତେ ମାଛ ଦେଉଛୁ । ତୋର ଉପହାରରେ ମୁଁ ଅତ୍ୟନ୍ତ ଖୁସି । ବର୍ତ୍ତମାନ କହ, ତୋର କଣ ଆବଶ୍ୟକ ? ଯେତେ ଦୁଷ୍କର ହେଲେ ସୁଦ୍ଧା ମୁଁ ତାହା କରିବି ।'

ରାଜକୁମାରୀଙ୍କୁ ପ୍ରସନ୍ନ ଦେଖି ରକ୍ଷିତିକା ଏକାନ୍ତରେ ଅଭୟ ପ୍ରାର୍ଥନା କରି ଜଣାଇଲା, 'ଆପଣଙ୍କୁ ଉଦ୍ୟାନ ମଧ୍ୟରେ ଦେଖିବାଠାରୁ ମୋର ପୁତ୍ର ସୁପ୍ରହାର ଆପଣଙ୍କ ବିରହରେ ସନ୍ତପ୍ତ ହେଉଛି । ମୁଁ ତାକୁ ଆଶା ଓ ବିଶ୍ୱାସ ଦେଇ ମୃତ୍ୟୁମୁଖରୁ ବଞ୍ଚାଇ ଆସୁଛି । ଯଦି ଆପଣ ମୋ ପ୍ରତି ପ୍ରସନ୍ନ ତେବେ ଦୟାକରି ଆପଣଙ୍କର ସ୍ପର୍ଶଦ୍ୱାରା ମୋ ପୁତ୍ରର ଜୀବନ ରକ୍ଷା କରନ୍ତୁ ।'

ରାଜକୁମାରୀ ଦ୍ୱନ୍ଦ୍ୱରେ ପଡ଼ିଗଲେ । ଏକ ଦିଗରେ ଲଜ୍ଜା ଏବଂ ଅନ୍ୟ ଦିଗରେ ନିଜର ପ୍ରତିଶ୍ରୁତି ତାଙ୍କୁ ଦ୍ୱିଧାଗ୍ରସ୍ତ କଲା । କିଛି ସମୟ ଚିନ୍ତାକରି ସେ କହିଲେ, 'ଠିକ୍ ଅଛି, ତୋର ସେହି ପୁତ୍ରକୁ ରାତିରେ ଅତି ଗୁପ୍ତଭାବେ ମୋ ନିକଟକୁ ନେଇଆ ।' ଏହା ଶୁଣିବା ମାତ୍ରେ କେଉଟୁଣୀର ଆନନ୍ଦର ସୀମା ରହିଲା ନାହିଁ । ସେ ଅଣନିଃଶ୍ୱାସୀ ହୋଇ ପୁତ୍ର ନିକଟରେ ଯାଇ ଏହା ପ୍ରକାଶ କଲା ।

ରାତ୍ରି ହେବାମାତ୍ରେ ରକ୍ଷିତିକା ପୁତ୍ର ସୁପ୍ରହାରକୁ ଉତ୍ତମ ବେଶଭୂଷାରେ ଭୂଷିତ କରି ରାଜକୁମାରୀର ଅନ୍ତଃପୁରରେ ଯାଇ ଉପସ୍ଥିତ ହେଲା । ଦୀର୍ଘକାଳ ଧରି ଉତ୍କଣ୍ଠିତ ସୁପ୍ରହାରକୁ ରାଜକୁମାରୀ ନିଜ ଶଯ୍ୟାରେ ନେଇ ବସାଇଲେ ଏବଂ ତା'ର ବିରହତପ୍ତ ଶରୀରକୁ ଶ୍ରୀଖଣ୍ଡଚନ୍ଦନ ପରି ଶୀତଳ ଓ କୋମଳ ହସ୍ତରେ ଧୀରେ ଧୀରେ ଦବାଇବାକୁ ଲାଗିଲେ । କିଛି ସମୟ ମଧ୍ୟରେ ଦିବ୍ୟସୁଖ ଲାଭ କରି ସୁପ୍ରହାର ନିଦ୍ରାରେ ଅଭିଭୂତ ହୋଇପଡ଼ିଲା । ସେ ଶୋଇଯିବା ପରେ ରାଜକୁମାରୀ ଯାଇ ଅନ୍ୟତ୍ର ଶୟନ କଲେ । ଏହିପରି କୌଶଳରେ ସେ କୈବର୍ତ୍ତ ଯୁବକକୁ ଆଶ୍ୱସ୍ତ କରିବା ସହିତ ନିଜର ଧର୍ମ ମଧ୍ୟ ରକ୍ଷା କରିପାରିଥିଲେ ।

ରାଜକୁମାରୀଙ୍କ ହସ୍ତର ସ୍ପର୍ଶ ନପାଇ ସୁପ୍ରହାରର ନିଦ୍ରାଭଙ୍ଗ ହେଲା । ସେ ପ୍ରିୟତମା ରାଜକୁମାରୀଙ୍କୁ ସେଠାରେ ନଦେଖି, ଦରିଦ୍ର ପାଇଥିବା ଧନଭଣ୍ଡାର ହଜାଇବା ପରି ଗଭୀର ଦୁଃଖରେ ଅଭିଭୂତ ହୋଇପଡ଼ିଲା । ନିରାଶାର ଧକ୍କା ସହ୍ୟ କରିନପାରି ତା'ର ପ୍ରାଣବାୟୁ ଉଡ଼ିଗଲା ।

ପ୍ରଭାତରୁ ରାଜକୁମାରୀ ଏ ସମ୍ବାଦ ପାଇ ସେଠାରେ ଆସି ପହଞ୍ଚିଲେ । ତାଙ୍କ ପାଇଁ କେବଳ ଯୁବକଟି ମୃତ୍ୟୁମୁଖରେ ପଡ଼ିଥିବା ଯୋଗୁଁ ସେ ମଧ ଗଭୀର ଦୁଃଖ ଲାଭ କଲେ ଏବଂ ଯୁବକ ସହିତ ଚିତାଗ୍ନି ଆରୋହଣ କରିବାପାଇଁ ନିଶ୍ଚୟ କଲେ । ପିତା କନ୍ୟାର ସଂକଳ୍ପ ଶୁଣି ବେତ୍ରାହତ ପରି ସେଠାକୁ ଦୌଡ଼ି ଆସିଲେ । କନ୍ୟାକୁ ତାର ପ୍ରତିଜ୍ଞାରୁ ନିବୃତ୍ତ କରିବାପାଇଁ ତାଙ୍କର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହେଲା । ଶେଷରେ ସେ ଆଚମନ ପୂର୍ବକ ଶୂନ୍ୟକୁ ଚାହିଁ କହିଲେ, 'ହେ ଦଶଦିଗପାଳ ! ମୁଁ ଯଦି ଦେବଦେବ ମହାଦେବଙ୍କ ପ୍ରକୃତ ଭକ୍ତ ହୋଇଥାଏ, ତେବେ ମୋର କର୍ତ୍ତବ୍ୟାକର୍ତ୍ତବ୍ୟ ସମ୍ପର୍କରେ ଆପଣମାନେ ପରାମର୍ଶ ଦିଅନ୍ତୁ ।'

## କୈବର୍ତ୍ତକୁମାରର ପୂର୍ବଜନ୍ମ କଥା

ରାଜାଙ୍କ ପ୍ରାର୍ଥନାରେ ଆକାଶରୁ ଶୁଣାଗଲା, 'ରାଜନ୍ ! ଆପଣଙ୍କ କନ୍ୟା ପୂର୍ବ ଜନ୍ମରେ ଏହି କୈବର୍ତ୍ତ ଯୁବକର ପତ୍ନୀ ଥିଲା । ପ୍ରାଚୀନ କାଳରେ ନାଗସ୍ଥଳ ନାମକ ଏକ ଗ୍ରାମରେ ମହୀଧର ବୋଲି ଜଣେ ବ୍ରାହ୍ମଣ ବାସ କରୁଥିଲେ । ବଳଧର ନାମରେ ତାଙ୍କର ଏକ ଅତ୍ୟନ୍ତ ଗୁଣବାନ୍ ପୁତ୍ର ଥିଲା । ପିତାଙ୍କ ମୃତ୍ୟୁ ପରେ ସ୍ୱଜନମାନେ ତା'ର ସମସ୍ତ ଧନସମ୍ପତ୍ତି ଛଡ଼ାଇନେଲେ । ଏଥିରେ ସେ ସଂସାର ପ୍ରତି ବିରକ୍ତ ହୋଇ ନିଜର ପତ୍ନୀ ସହିତ ଗଙ୍ଗାକୂଳକୁ ଚାଲିଗଲା । ସେଠାରେ ଶରୀର ତ୍ୟାଗ କରିବାପାଇଁ ସେ ନିରାହାର ରହି ତପସ୍ୟା କରୁଥାଏ । ଦିନେ କେତେଜଣ କୈବର୍ତ୍ତ ଅଦୂରରେ ମାଛସବୁ ପୋଡ଼ି ଖାଉଥିବା ଦେଖି ବଳଧର ମନରେ ମାଛ ଖାଇବାର ଲୋଭ ଜାତ ହେଲା । ଫଳରେ ସେ ତପୋଭ୍ରଷ୍ଟ ହୋଇପଡ଼ିଲା । ଉପବାସ ରହି କିଛିଦିନ ମଧ୍ୟରେ ମୃତ୍ୟୁ ହେବାରୁ ତା'ର ପତ୍ନୀ ପତିର ସହଗମନ କଲା । ସେ କିନ୍ତୁ ଥିଲା ପବିତ୍ର ପତିପରାୟଣା ଓ ଅଖଣ୍ଡ ତପଃଶୀଳା । ବ୍ରାହ୍ମଣ ଯୁବକ ନିଜର କୁଅଭିଳାଷ ଯୋଗୁଁ କୈବର୍ତ୍ତ ଯୋନିରେ ଜନ୍ମଗ୍ରହଣ କଲା ଏବଂ ତା'ର ପତିବ୍ରତା ପତ୍ନୀ ହେଉଛି ଆପଣଙ୍କର ଏହି କନ୍ୟା । ତେଣୁ ରାଜନ୍ ! ଆପଣଙ୍କ ଏହି ନିଷ୍କଳଙ୍କିନୀ କନ୍ୟା ନିଜର ପୂର୍ବଜନ୍ମ ସ୍ୱାମୀକୁ ତା'ର ଆୟୁଷର ଅର୍ଦ୍ଧେକ ଦେଇ ଜୀବିତ କରୁ । ପତ୍ନୀର ତପଃ ପ୍ରଭାବରୁ ଏବଂ ଗଙ୍ଗାତଟରେ ପ୍ରାଣତ୍ୟାଗ କରିଥିବା ଯୋଗୁଁ ଏହି କୈବର୍ତ୍ତ ଯୁବକ ଆପଣଙ୍କ ଜାମାତା ରୂପେ ରାଜ୍ୟ ଭୋଗ କରିବ ।'

ଶୂନ୍ୟବାଣୀ ଶୁଣି ରାଜକୁମାରୀ ନିଜର ଅର୍ଦ୍ଧେକ ଆୟୁଷ କୈବର୍ତ୍ତ ଯୁବକକୁ ପ୍ରଦାନ କଲେ । ସେ ଜୀବନଲାଭ କରି ଉଠିବସିଲା । ରାଜା ତା' ହସ୍ତରେ ନିଜ କନ୍ୟାକୁ ସମର୍ପଣ କଲେ । ରାଜାଙ୍କଦ୍ୱାରା ପ୍ରଦତ୍ତ ଭୂମି, ହସ୍ତୀ, ଅଶ୍ୱ ଏବଂ ବହୁମୂଲ୍ୟ ରତ୍ନ ସହିତ ରାଜକୁମାରୀଙ୍କୁ ପତ୍ନୀ ରୂପେ ଲାଭ କରି ସୁପ୍ରହାର ରାଜଭୋଗରେ ଜୀବନଯାପନ କରିବାକୁ ଲାଗିଲା । ଏହିପରି ପୂର୍ବଜନ୍ମର ସମ୍ପର୍କ ଏ ଜନ୍ମରେ ପ୍ରଣୟର କାରଣ ହୋଇଥାଏ । ଏ ପ୍ରସଙ୍ଗରେ ଏକ ଚୋରର କଥା ମଧ୍ୟ ଶୁଣିପାରନ୍ତି । ଏପରି କହି ଭରତରୋହକ ପୁଣି ଆରମ୍ଭ କଲେ ।

## ବଣିକ-କନ୍ୟା ବାମଦତ୍ତା ଓ ଚୋର କଥା

ଅଯୋଧ୍ୟା ନଗରୀରେ ବୀରବାହୁ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ପ୍ରଜାମାନଙ୍କୁ ସେ ପୁତ୍ର ପରି ପରିପାଳନ କରୁଥାନ୍ତି । ଏକଦା ନଗରବାସୀମାନେ ଆସି ରାଜାଙ୍କୁ ନିବେଦନ କଲେ ଯେ ପ୍ରତିଦିନ ରାତିରେ ଚୋରମାନେ ଆସି ନଗର ମଧ୍ୟରେ ଚୋରି କରୁଛନ୍ତି । ସେମାନେ ଜାଗ୍ରତ ରହି ସୁଦ୍ଧା ଚୋରମାନଙ୍କ ସନ୍ଧାନ ପାଇବା ସମ୍ଭବ ହେଉନାହିଁ । ରାଜା ଚୋରମାନଙ୍କୁ ଧରିବାପାଇଁ ଗୁପ୍ତଚରମାନଙ୍କୁ ନିଯୁକ୍ତ କଲେ, କିନ୍ତୁ ସେମାନଙ୍କ ଶ୍ରମ ମଧ୍ୟ ବ୍ୟର୍ଥ ହେଲା । ଚୋରମାନଙ୍କ ଉପଦ୍ରବ ଶାନ୍ତ ହେଲା ନାହିଁ । ଦିନେ ରାଜା ନିଜେ ଚୋରମାନଙ୍କୁ ଧରିବାପାଇଁ ମୁକ୍ତ ତରବାରି ହସ୍ତରେ ଏକାକୀ ନଗର ମଧ୍ୟରେ ବିଚରଣ କରୁଥାନ୍ତି । କୌଣସି ଗୃହର ପ୍ରାଚୀର ଉପରେ ଜଣେ ପୁରୁଷ ତାଙ୍କର ଦୃଷ୍ଟିରେ ପଡ଼ିଲା । ପୁରୁଷଟି ଡରିଡରି ମନ୍ଥର ଗତିରେ ଯାଉଥାଏ । ତା'ର ଚକ୍ଷୁ ଯୁଗଳ କାଉର ଆଖି ପରି ଚଞ୍ଚଳ ଦେଖାଯାଉଥାଏ । ସେ ଚାଲୁଥିଲା ବେଳେ ସିଂହ ପରି ବାରମ୍ବାର ପଛକୁ ଚାହୁଁଥାଏ । ତା' ହାତରେ ଥିବା ଖନ୍‌ଜର ଚମକରେ ଶରୀରର କିଛି ଅଂଶ ଆଲୋକିତ ହେଉଥାଏ । ରାଜା ତାକୁ ଦେଖି, ସେ ହିଁ ଯେ ଚୋର ଏବଂ ପ୍ରତିଦିନ ରାତ୍ରିରେ ସେ ହିଁ ଯେ ଅଯୋଧ୍ୟା ନଗରୀରେ ଚୋରି କରି ଚାଲିଛି, ସେ ସମ୍ପର୍କରେ ନିଶ୍ଚିତ ହେଲେ । ଚତୁର ଓ ବୁଦ୍ଧିମାନ ରାଜା ଆକ୍ରମଣ କରିବା ପରିବର୍ତ୍ତେ ସତର୍କ ପଦକ୍ଷେପରେ ତା' ନିକଟରେ ଯାଇ ପହଞ୍ଚିଲେ । ଚୋରଟି ରାଜାଙ୍କୁ ଦେଖି ସଶଙ୍କମନରେ ତାଙ୍କ ପରିଚୟ ପଚାରିବାରୁ ରାଜା କହିଲେ, 'ମୁଁ ଅତ୍ୟନ୍ତ କଷ୍ଟ ସହ୍ୟ କରିପାରୁଥିବା ଜଣେ ସାହସୀ ଚୋର । ଏବେ କହ, ତମେ କିଏ ?'

ଚୋର ନିଜର ପରିଚୟ ଦେଇ କହିଲା ଯେ ସେ ଜଣେ ଅତି ଧନଶାଳୀ ଚୋର । ସେ ଏକାକୀ ହିଁ ଚୋରି କରେ । ଏହା କହି ସେ ରାଜାଙ୍କୁ ତା' ଗୃହକୁ ନିମନ୍ତ୍ରଣ କଲା ଏବଂ ତାଙ୍କୁ ଯଥେଷ୍ଟ ଧନସମ୍ପତ୍ତି ଦେଇ କଷ୍ଟ ଦୂର କରିବାର ପ୍ରତିଶ୍ରୁତି ଦେଲା ।

ରାଜା ତା' କଥାରେ ସହମତ ହୋଇ ଅରଣ୍ୟ ମଧ୍ୟସ୍ଥିତ ତା' ଗୃହରେ ଯାଇ ପହଞ୍ଚିଲେ । ଚୋରଟି ଭୂଗର୍ଭରେ ତାର ବାସସ୍ଥାନ ନିର୍ମାଣ କରିଥାଏ । ସେଠାରେ ବହୁ ସୁନ୍ଦରୀ ବିଚରଣ କରୁଥାନ୍ତି । ବହୁମୂଲ୍ୟ ରତ୍ନରାଶିଦ୍ୱାରା ଗୃହଟି ଆଲୋକିତ ହୋଇଥାଏ । ସେଠାରେ ପ୍ରବେଶ କରି ରାଜାଙ୍କ ମନରେ ନାଗଲୋକର ଭ୍ରମ ସୃଷ୍ଟି ହେଲା ।

ରାଜାଙ୍କୁ ଗୋଟିଏ ବେଦିକା ନିକଟରେ ଛାଡ଼ିଦେଇ ସେହି ଚୋର ଗର୍ଭଗୃହ ମଧ୍ୟରେ ପ୍ରବେଶ କଲା । ଏ ସମୟରେ ରାଜାଙ୍କୁ ଏକାକୀ ଠିଆ ହୋଇଥିବା ଦେଖି ଏକ ଦୟାବତୀ ପରିଚାରିକା ନିକଟକୁ ଆସି କହିଲା, 'ତୁମେ କୁଆଡୁ ଆସି ଏହି ପାତାଳ ଗୃହ ମଧ୍ୟରେ ପ୍ରବେଶ କଲ ? ଏଠାରୁ ଶୀଘ୍ର ଚାଲିଯାଅ । ତୁମେ ଯେଉଁ ଚୋର ସହିତ ଏଠାକୁ ଆସିଲ ସେ ଏକାକୀ ହିଁ ନିଜର କାର୍ଯ୍ୟ ସମ୍ପନ୍ନ କରିଥାଏ । ତାର ରହସ୍ୟ ପଦାରେ ପଡ଼ିଯିବା ଭୟରେ ସେ ଏକାନ୍ତ ବିଶ୍ୱସ୍ତ ଅନୁଚରମାନଙ୍କୁ ମଧ୍ୟ ହତ୍ୟା ନକରି ଛାଡ଼େ ନାହିଁ । ତୁମକୁ ମଧ୍ୟ ସେ ଏଠାରେ ହତ୍ୟା କରିବ ।' ଏହା ଶୁଣି ରାଜା ଦ୍ରୁତଗତିରେ ସେଠାରୁ ପଳାୟନ କଲେ । ରାଜପ୍ରାସାଦରେ ଉପସ୍ଥିତ ହୋଇ ସେ ସୈନ୍ୟସାମନ୍ତ ସହିତ ଚୋରର ସେହି ବାସସ୍ଥାନକୁ ଆକ୍ରମଣ କଲେ । ସୈନ୍ୟମାନେ ପାତାଳ ଗୃହ ମଧ୍ୟରେ ପ୍ରବେଶ କରି ସମସ୍ତ ଧନରତ୍ନ ସହ ଚୋରଟିକୁ ବାନ୍ଧି ଆଣିଲେ ।

ପରଦିନ ରାଜା ଚୋରଟିକୁ ରାଜସଭାରେ ଉପସ୍ଥିତ କରାଇ ପ୍ରାଣଦଣ୍ଡର ଆଦେଶ ଶୁଣାଇଲେ । ସୈନ୍ୟମାନେ ତାକୁ ଧରି ବଧ୍ୟ ଭୂମିକୁ ନେଉଥାନ୍ତି । ସେ ଉନ୍ନତ ମସ୍ତକରେ ରାଜରାସ୍ତାରେ ଚାଲିଥାଏ ।

ବିଧାତାର ବିଚିତ୍ର ଗତି, ଚୋରଟିକୁ ଦେଖି ଜଣେ ବଣିକ କନ୍ୟା ତା' ପ୍ରତି ହଠାତ୍ ଆକୃଷ୍ଟ ହୋଇପଡ଼ିଲା । ସେ ତାର ପିତାଙ୍କ ନିକଟକୁ ଯାଇ କହିଲା, 'ଏହି ଯେଉଁ ପୁରୁଷଟିକୁ ବଧ୍ୟସ୍ଥଳକୁ ନିଆଯାଉଛି ସେ ଯଦି ମୋର ସ୍ୱାମୀ ନହୁଏ ତେବେ ମୁଁ ପ୍ରାଣତ୍ୟାଗ କରିବି ।' ପିତା ତାକୁ ବୁଝାଇବାପାଇଁ ବହୁତ ଚେଷ୍ଟାକଲେ, କିନ୍ତୁ କନ୍ୟାଟି ନିଜର ପ୍ରତିଜ୍ଞାରେ ଅଟଳ । ତେଣୁ ବଣିକ ବାଧ୍ୟ ହୋଇ କେତେ କୋଟି ସ୍ୱର୍ଣ୍ଣମୁଦ୍ରା ବିନିମୟରେ ଚୋରଟିକୁ ମୁକ୍ତ କରିବାପାଇଁ ରାଜାଙ୍କ ନିକଟରେ ପ୍ରାର୍ଥନା କଲେ । କିନ୍ତୁ ରାଜା ତାଙ୍କ ପ୍ରତି କର୍ଣ୍ଣପାତ ନକରି ଚୋରଟିକୁ ବିନା ବିଳମ୍ବରେ ଶୂଳି ଉପରେ ଚଢ଼ାଇଦେଲେ । ଚୋରର ମୃତ୍ୟୁ ଦେଖି ବଣିକ କନ୍ୟା ବାମଦତ୍ତା ମୃତପିଣ୍ଡ ସହିତ ଚିତାଗ୍ନିରେ ପ୍ରବେଶ କଲା ।

ଏହିପରି, ପ୍ରାଣୀ ପୂର୍ବଜନ୍ମ ସମ୍ବନ୍ଧରୁ ହଠାତ୍ କୌଣସି ବ୍ୟକ୍ତି, କୌଣସି ବସ୍ତୁ ପ୍ରତି ଆକୃଷ୍ଟ ହୋଇପଡ଼ିଥାଏ । ଭବିତବ୍ୟକୁ କିଏ ବା ଟାଳିପାରିବ ? କାହାକୁ ବା କିଏ କେଉଁଥିରୁ ବାରଣ କରିପାରିବ ?

'ଭାବି କୋ ବସ୍ତୁତିକ୍ରାମେତ୍ କୋ ବା କିଂ କସ୍ୟ ବାରୟେତ୍'

ରାଜନ୍ ! ଏଥିପାଇଁ ଏହି ସୁରତମଞ୍ଜରୀ ଆପଣଙ୍କ ପୁତ୍ର ଅବନ୍ତୀବର୍ଦ୍ଧନର ପୂର୍ବଜନ୍ମ ସମ୍ପର୍କୀୟା ହୋଇଥାଇପାରେ । ତା' ନହେଲେ ଉଚ୍ଚବଂଶରେ ଜନ୍ମଲାଭ କରିଥିବା ରାଜକୁମାର ଏହି ଚାଣ୍ଡାଳ କନ୍ୟା ପ୍ରତି କିପରି ବା ଆକୃଷ୍ଟ ହୋଇପାରିଥାନ୍ତେ । ତେଣୁ ଆପଣ ପ୍ରଥମେ ମାତଙ୍ଗ ଉତ୍ପଳହସ୍ତକୁ ଡକାଇ କନ୍ୟାଟିକୁ ଯାଚନା କରନ୍ତୁ, ଦେଖନ୍ତୁ ସେ କଣ କହୁଛି ।'

ମୋର କଥାଶୁଣି ପାଳକ ଉତ୍ପଳହସ୍ତକୁ ଡାକି ଆଣିବାପାଇଁ ଦୂତ ପ୍ରେରଣ କଲେ । ଦୂତ ଯାଇ ସେହି ଚାଣ୍ଡାଳର ଦ୍ୱାରରେ ପହଞ୍ଚିଲା । ଉତ୍ପଳହସ୍ତ ଦୂତକୁ ଜଣାଇଲା ଯେ ରାଜକୁମାରଙ୍କ ସହିତ ସୁରତମଞ୍ଜରୀର ବିବାହରେ ସେ ଅସମ୍ମତ ନୁହେଁ । କିନ୍ତୁ ଗୋଟିଏ ସର୍ତ୍ତ ହେଲା, ଯେଉଁ ବ୍ୟକ୍ତି ତା' ଗୃହରେ ଅଠର ହଜାର ବ୍ରାହ୍ମଣଙ୍କୁ ଭୋଜନ କରାଇବ ତା' ହସ୍ତରେ କେବଳ ସେ କନ୍ୟାକୁ ସମର୍ପଣ କରିବ ।

ଦୂତ ଫେରିଆସି ରାଜାଙ୍କୁ ଚାଣ୍ଡାଳ ଉତ୍ପଳହସ୍ତର ସର୍ତ୍ତ ନିବେଦନ କଲା । ରାଜା ବୁଝିପାରିଲେ ଯେ ଏହା ମଧ୍ୟରେ କୌଣସି ଏକ ଗୂଢ଼ ରହସ୍ୟ ଲୁକ୍‌କାୟିତ ଅଛି । ସେ ଉଜ୍ଜୟିନୀରେ ବାସ କରୁଥିବା ସମସ୍ତ ବ୍ରାହ୍ମଣଙ୍କୁ ଏକତ୍ର କଲେ । ନିଜ ପୁତ୍ରର ଅଭିଳାଷ ଓ ଅବସ୍ଥା ଜଣାଇ ସେ ସେମାନଙ୍କୁ ନିବେଦନ କଲେ ଯେ ଅଠର ହଜାର ବ୍ରାହ୍ମଣ ଯାଇ ଚାଣ୍ଡାଳ ଉତ୍ପଳହସ୍ତ ଘରେ ଭୋଜନ କରନ୍ତୁ । ଏହା କେବଳ ତାଙ୍କର ନିବେଦନ ନଥିଲା, ଏହା ଥିଲା ରାଜାଙ୍କ ଆଦେଶ ।

ରାଜାଙ୍କ ଆଦେଶରେ ବ୍ରାହ୍ମଣମାନେ ବିଳଚିତ ହୋଇପଡ଼ିଲେ । ଚଣ୍ଡାଳ ଗୃହରେ ଅନ୍ନ ଭୋଜନ କରିବାପାଇଁ କୁଣ୍ଠିତ ହୋଇ ସେମାନେ ଯାଇ ମହାକାଳ ଶିବଙ୍କ ଶରଣାପନ୍ନ ହେଲେ । ସେମାନଙ୍କ ଆରାଧନାରେ ସନ୍ତୁଷ୍ଟ ହୋଇ ଭଗବାନ ସ୍ୱପ୍ନରେ ନିର୍ଦ୍ଦେଶ ଦେଲେ ଯେ ସେମାନେ ନିଃଶଙ୍କ ଚିତ୍ତରେ ଯାଇ ଉତ୍ପଳହସ୍ତ ଗୃହରେ ଭୋଜନ କରନ୍ତୁ, କାରଣ ଉତ୍ପଳହସ୍ତ ମାତଙ୍ଗ ନୁହେଁ, ସପରିବାର ବିଦ୍ୟାଧର । ଏହି ସ୍ୱପ୍ନାଦେଶ ସେମାନେ ଯାଇ ରାଜାଙ୍କୁ ଜଣାଇଲେ, କିନ୍ତୁ ସେମାନେ ମଧ୍ୟ ଗୋଟିଏ ସର୍ତ୍ତ ରଖିଲେ ଯେ ଯଦି ଉତ୍ପଳହସ୍ତ ଚାଣ୍ଡାଳ ବସ୍ତିରୁ ଅନ୍ୟ ସ୍ଥାନକୁ ଯାଇ ଶୁଦ୍ଧପୂତ ଭାବରେ ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରେ, ତା'ହେଲେ ସେମାନେ ଖାଇବାପାଇଁ ପ୍ରସ୍ତୁତ ଅଛନ୍ତି ।

ରାଜା ପାଳକ ପ୍ରସନ୍ନ ଚିତ୍ତରେ ଉତ୍ପଳହସ୍ତପାଇଁ ଅନ୍ୟ ଏକ ବାସଭବନ ନିର୍ମାଣ କରାଇଲେ । ସେଠାରେ ଶୁଦ୍ଧପୂତ ବ୍ରାହ୍ମଣମାନଙ୍କଦ୍ୱାରା ଭୋଜନ ସାମଗ୍ରୀ ପ୍ରସ୍ତୁତ ହେଲା । ଉତ୍ପଳହସ୍ତ ସ୍ନାନ କରି ଶୁଦ୍ଧବସ୍ତ୍ର ପରିଧାନ ପୂର୍ବକ ସ୍ୱଗୃହରେ ଅଠରହଜାର ବ୍ରାହ୍ମଣଙ୍କୁ ଭୋଜନ କରାଇଲା । ବ୍ରାହ୍ମଣମାନେ ଭୋଜନ ଶେଷ କଲା ପରେ ଉତ୍ପଳହସ୍ତ ରାଜା ପାଳକଙ୍କ ନିକଟକୁ ଆସି ତାଙ୍କୁ ପ୍ରଣିପାତ କଲା ଏବଂ ଉପସ୍ଥିତ ବ୍ରାହ୍ମଣ ଓ ନଗରବାସୀଙ୍କ ସମକ୍ଷରେ କହିଲା–

## ଉତ୍ପଳହସ୍ତର ପୂର୍ବଜନ୍ମ ବୃତ୍ତାନ୍ତ

'ଗୌରୀମୁଣ୍ଡ ନାମରେ ବିଦ୍ୟାଧରମାନଙ୍କର ଜଣେ ପରାକ୍ରମଶାଳୀ ରାଜା ଥିଲେ । ମୁଁ ମାତଙ୍ଗଦେବ ତାଙ୍କ ଆଶ୍ରୟରେ ରହୁଥିଲି । ମୋର ଏହି କନ୍ୟା ସୁରତମଞ୍ଜରୀ ଯେତେବେଳେ ଜନ୍ମ ହେଲା, ସେତେବେଳେ ଗୌରୀମୁଣ୍ଡ ମୋତେ ଏକାନ୍ତରେ ଡାକି କହିଲେ–''ବତ୍ସରାଜ ଉଦୟନଙ୍କ ନରବାହନଦତ୍ତ ନାମରେ ଗୋଟିଏ ପୁତ୍ର ଅଛି । ଦେବତାମାନେ କହୁଛନ୍ତି ସେ ଆମ ବିଦ୍ୟାଧରମାନଙ୍କ ଚକ୍ରବର୍ତ୍ତୀ ହେବ, ତେଣୁ ଆମମାନଙ୍କପାଇଁ କଣ୍ଟକ ସ୍ୱରୂପ । ଏଥିପାଇଁ ଚକ୍ରବର୍ତ୍ତୀ ପଦଲାଭ କରିବା ପୂର୍ବରୁ ତାକୁ ଆମ ପଥରୁ ଦୂର କରିବା ଆବଶ୍ୟକ । ତେଣୁ ତୁମେ ଅବିଳମ୍ବେ ଯାଇ ତୁମ ମାତାଙ୍କ ବିଦ୍ୟା ପ୍ରଭାବରେ ତାକୁ ହତ୍ୟା କର ।' ଗୌରୀମୁଣ୍ଡଦ୍ୱାରା ପ୍ରେରିତ ହୋଇ ମୁଁ ଯେତେବେଳେ ଆକାଶ ମାର୍ଗରେ ମାତାଙ୍କ ନିକଟକୁ ଯାଉଥିଲି, ସେତେବେଳେ ଭଗବାନ ଶଙ୍କରଙ୍କ ସହିତ ସାକ୍ଷାତ ହେଲା ।

ସେ ମୋ ଉପରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ହୁଙ୍କାର କଲେ । ଅଭିଶାପ ଦେଇ କହିଲେ, 'ରେ ପାପିଷ୍ଠ ! ନରବାହନଦତ୍ତ ପରି ମହାପୁରୁଷମାନଙ୍କ କ୍ଷତି କରିବାପାଇଁ ତୁ କାହିଁକି ପ୍ରୟାସ କରୁଛୁ ? ତେଣୁ ରେ ଦୁର୍ମତି ! ତୁ ଏହି ଶରୀରରେ ହିଁ ପତ୍ନୀ ଓ ପୁତ୍ର ସହିତ ଏହି ବିଦ୍ୟାଧର ଲୋକରୁ ବିଚ୍ୟୁତ ହୋଇ ଉଜ୍ଜୟିନୀର ଚାଣ୍ଡାଳମାନଙ୍କ ମଧ୍ୟରେ ବାସ କର । ତୋର କନ୍ୟାଦାନର ମୂଲ୍ୟ ସ୍ୱରୂପ ଯଦି କୌଣସି ବ୍ୟକ୍ତି ତୋ ଗୃହରେ ଉଜ୍ଜୟିନୀବାସୀ ଅଠରହଜାର ବ୍ରାହ୍ମଣଙ୍କୁ ଭୋଜନ କରାଇବ ସେତେବେଳେ ତୁ ମୋର ଅଭିଶାପରୁ ମୁକ୍ତ ହେବୁ । ସେହି ବ୍ୟକ୍ତିଟି ହସ୍ତରେ କନ୍ୟାଟି ସମର୍ପଣ କଲେ ତୋର ପୁଣି ବିଦ୍ୟାଧର ଲୋକ ପ୍ରାପ୍ତ ହେବ ।'

ଭଗବାନ ମହାକାଳ ଏହା କହି ଅନ୍ତର୍ହିତ ହେଲେ । ମୁହୂର୍ତ୍ତକ ମଧ୍ୟରେ ମୁଁ ଆସି ଉଜ୍ଜୟିନୀର ଏହି ଚାଣ୍ଡାଳ ବସ୍ତିରେ ପଡ଼ିଲି । କିନ୍ତୁ ବସ୍ତିବାସୀ ଚଣ୍ଡାଳମାନଙ୍କ ସହିତ ମୋର

କୌଣସି ସମ୍ପର୍କ ନାହିଁ । ଆଜି ଆପଣଙ୍କ ପୁତ୍ର ଅବନ୍ତୀବର୍ଦ୍ଧନଙ୍କ ଅନୁଗ୍ରହରୁ ମୋର ଅଭିଶାପର ଅବଧି ଶେଷ ହୋଇଛି । ତେଣୁ ମୁଁ ତାଙ୍କ ହସ୍ତରେ କନ୍ୟା ସୁରତମଞ୍ଜରୀକୁ ପ୍ରଦାନ କରୁଛି । ମୁଁ ବର୍ତ୍ତମାନ ନରବାହନଦତ୍ତଙ୍କ ସେନାବାହିନୀରେ ଯୋଗଦେବାପାଇଁ ନିଜର ବିଦ୍ୟାଧର ଲୋକକୁ ପ୍ରସ୍ଥାନ କରିବି ।'

ରାଜା ପାଳକଙ୍କୁ ଏହିପରି କହି ଏବଂ ନିଜ କନ୍ୟାକୁ ତାଙ୍କ ପୁତ୍ରବଧୂ ରୂପେ ପ୍ରଦାନ କରି ମାତଙ୍ଗଦେବ ଆକାଶ ମାର୍ଗରେ ଆପଣଙ୍କ ନିକଟରେ ଆସି ଉପସ୍ଥିତ ହେଲା । ରାଜା ପାଳକ ମଧ୍ୟ ଚାଣ୍ଡାଳ କନ୍ୟା ଭାବୁଥିବା ସୁରତମଞ୍ଜରୀକୁ ବିଦ୍ୟାଧର ଗର୍ଭଜାତ ଜାଣି ଆନନ୍ଦିତ ହେଲେ । ଅବନ୍ତୀବର୍ଦ୍ଧନଙ୍କ ସହିତ ସୁରତମଞ୍ଜରୀଙ୍କ ବିବାହ ସମ୍ପନ୍ନ ହେଲା । ରାଜକୁମାର ନିଜ ଅଭିଳଷିତ ଚାଣ୍ଡାଳକନ୍ୟା ସ୍ଥାନରେ ବିଦ୍ୟାଧର କନ୍ୟାକୁ ଲାଭ କରି କୃତକୃତ୍ୟ ହେଲେ ।

କୁମାର ଅବନ୍ତୀବର୍ଦ୍ଧନ ପତ୍ନୀ ସହିତ ଦିନେ ହର୍ମ୍ୟ ଶିଖରରେ ଶୟନ କରିଥାନ୍ତି । ରାତ୍ରି ଶେଷରେ ନିଦ୍ରାଭଙ୍ଗ ହେବାରୁ ସୁରତମଞ୍ଜରୀଙ୍କୁ ସେଠାରେ ନଦେଖି ସେ ବିବ୍ରତ ହୋଇପଡ଼ିଲେ । ବହୁ ଅନୁସନ୍ଧାନ ପରେ ମଧ୍ୟ ତାଙ୍କର ଦର୍ଶନ ନମିଳିବାରୁ ସେ ଉଚ୍ଚସ୍ୱରରେ ଏପରି ବିଳାପ କରିବାକୁ ଲାଗିଲେ ଯେ ସମଗ୍ର ରାଜ ଅନ୍ତଃପୁର ଶୋକକାତର ହୋଇଉଠିଲା । ନଗରୀ ତ ଦଶଦିଗରୁ ସୁରକ୍ଷିତ । ରାତିରେ କୌଣସି ଅନ୍ୟ ବ୍ୟକ୍ତି ଏହା ମଧ୍ୟରେ ପ୍ରବେଶ କରିବା ଅସମ୍ଭବ । ତେଣୁ ନିଶ୍ଚିତଭାବେ ଏହା କୌଣସି ପାପାତ୍ମା ବିଦ୍ୟାଧରର କାର୍ଯ୍ୟ ହେବା ସମ୍ଭବ । ଭରତରୋହକ ପ୍ରଭୃତିଙ୍କ ସହିତ ଆମ୍ଭେମାନେ ଏହିପରି ମନ୍ତ୍ରଣା କରୁଥିବା ବେଳେ ଆପଣଙ୍କ ଦୂତ ବିଦ୍ୟାଧର ଧୂମଶିଖ ସେଠାରେ ଆସି ଅବତରଣ କଲେ । ସେ କୁମାର ଅବନ୍ତୀବର୍ଦ୍ଧନଙ୍କୁ ଏଠାକୁ ନେଇଆସିଲେ । ରାଜା ପାଳକଙ୍କ ନିର୍ଦ୍ଦେଶରେ ମୁଁ ମଧ୍ୟ ତାଙ୍କ ସହିତ ଏଠାରେ ଆସି ପହଞ୍ଚିଛି । ପିତାଙ୍କ ନିକଟରେ ଥିବା ଏହି ସୁରତମଞ୍ଜରୀ ହିଁ ଆମ ରାଜକୁମାରଙ୍କ ବିବାହିତା ପତ୍ନୀ ।

ଏହାହିଁ ସତ୍ୟଘଟଣା । ଏହାର ଉଚିତାନୁଚିତ ବିବେଚନା କରିବା ଆପଣଙ୍କ କାର୍ଯ୍ୟ ।'

ସମ୍ରାଟ ନରବାହନଦତ୍ତଙ୍କ ସମକ୍ଷରେ ରାଜା ପାଳକଙ୍କ ମନ୍ତ୍ରୀ ଏପରି ନିବେଦନ ପୂର୍ବକ ନୀରବରେ ଦଣ୍ଡାୟମାନ ହେବାରୁ ସଭାସ୍ଥିତ ବିଜ୍ଞ ସଭାସଦମାନେ ମାତଙ୍ଗ ଦେବଙ୍କୁ ଚାହିଁ ପ୍ରଶ୍ନ କଲେ 'ମାତଙ୍ଗଦେବ ! ବର୍ତ୍ତମାନ ତୁମେ କୁହ, ପ୍ରକୃତରେ କାହା ସହିତ ତୁମେ କନ୍ୟାଟିର ବିବାହ ଦେଇଥିଲ ?' ସେ ଅବନ୍ତୀବର୍ଦ୍ଧନଙ୍କୁ ହିଁ ତାଙ୍କର ଜାମାତା ବୋଲି ଜଣାଇଲେ ।

ଏହାପରେ ସଭାସଦମାନେ ଇତ୍ୟକଙ୍କୁ କନ୍ୟା ଅପହରଣର କାରଣ ଜିଜ୍ଞାସା କଲେ । ଇତ୍ୟକ ଦୃଢ଼ ସ୍ୱରରେ କହିଲେ ଯେ ଏହି ବିବାହର ବହୁପୂର୍ବରୁ କନ୍ୟାମାତା କନ୍ୟା ପ୍ରଦାନ କରିବାପାଇଁ ତାଙ୍କୁ ବଚନ ଦେଇଥିଲେ । ତେଣୁ ସେ ମୋର ବାଗ୍‌ଦତ୍ତା ।

ସଭାସଦମାନେ ଇତ୍ୟକଙ୍କୁ ଲକ୍ଷ୍ୟକରି କହିଲେ ''ପିତାଙ୍କ ବର୍ତ୍ତମାନରେ କନ୍ୟା ଉପରେ ମାତାଙ୍କ ଅଧିକାର କେଉଁଠି ? ପୁଣି ସେ ତୁମର ବାଗ୍‌ଦତ୍ତା ବୋଲି ଅନ୍ୟ କୌଣସି ସାକ୍ଷୀ ବି ନାହାଁନ୍ତି । ତେଣୁ ସୁରତମଞ୍ଜରୀ ତୁମପାଇଁ ପରସ୍ତ୍ରୀ । ତାଙ୍କୁ ଅପହରଣ କରି ତୁମେ ପାପର ଭାଗୀ ହୋଇଅଛ ।''

ସଭାସଦମାନଙ୍କ ନିଷ୍ପତ୍ତିରେ ଇତ୍ୟକ ନିରୁତ୍ତର ହେଲେ । ଚକ୍ରବର୍ତ୍ତୀ ନରବାହନଦତ୍ତ ଏହି ଦୁର୍ବିନୀତ ଶାଳକ ପ୍ରତି କଠୋର ଦଣ୍ଡାଦେଶ ଦେଲେ ।

ସମ୍ରାଟ ନରବାହନଦତ୍ତଙ୍କ ନିଷ୍ପତ୍ତି ସମସ୍ତଙ୍କୁ ସନ୍ତୁଷ୍ଟ କଲା । କିନ୍ତୁ ମହର୍ଷି କଶ୍ୟପ, ଏହା ଇତ୍ୟକଙ୍କ ପ୍ରଥମ ଅପରାଧ ହୋଇଥିବା ଯୋଗୁଁ ତାଙ୍କୁ କ୍ଷମା ଦେବା ନିମିତ୍ତ ଅନୁରୋଧ ଜଣାଇଲେ । ପୁଣି ଇତ୍ୟକ ମଦନମଞ୍ଜୁକାଙ୍କ ଭ୍ରାତା ଏବଂ ମାତଙ୍ଗଦେବ ମଦନବେଗଙ୍କ ପୁତ୍ର ହୋଇଥିବା ଯୋଗୁଁ ଉଭୟେ ନରବାହନଦତ୍ତଙ୍କ ଶାଳକ । ଚକ୍ରବର୍ତ୍ତୀର ଆସନରେ ଅଧିଷ୍ଠିତ ନରବାହନଦତ୍ତ ଇତ୍ୟକଙ୍କୁ ବହୁ ଭର୍ତ୍ସନା କରି ମହର୍ଷିଙ୍କ ଅନୁରୋଧ କ୍ରମେ ମୁକ୍ତି ଦେଲେ ।

ସୁରତମଞ୍ଜରୀ ଓ ଅବନ୍ତୀବର୍ଦ୍ଧନ ଏବଂ ମନ୍ତ୍ରୀ ଭରତରୋହକଙ୍କୁ ବିଦ୍ୟାଧରାଧିପତି ବାୟୁପଥଙ୍କ ସହିତ ଉଜ୍ଜୟିନୀ ପଠାଇବାପାଇଁ ବ୍ୟବସ୍ଥା କରାଗଲା ।

## ତୃତୀୟ ତରଙ୍ଗ

ଏହିପରି ଇତ୍ୟକଙ୍କ ଦ୍ୱାରା ଅପହୃତା ସତୀସାଧ୍ୱୀ ସୁରତମଞ୍ଜରୀଙ୍କୁ ସମ୍ରାଟ ନରବାହନଦତ୍ତ ଅବନ୍ତୀବର୍ଦ୍ଧନଙ୍କ ହସ୍ତରେ ସମର୍ପଣ କଲେ । ଶାଳକ ଇତ୍ୟକ ମଧ ଭର୍ତ୍ସିତ ହୋଇ ସେଠାରୁ ବିତାଡ଼ିତ ହେଲେ । ନରବାହନଦତ୍ତଙ୍କ ନିଷ୍ପତ୍ତି ସମସ୍ତଙ୍କଦ୍ୱାରା ପ୍ରଶଂସିତ ହେଲା । ମହର୍ଷି କଶ୍ୟପ ନିର୍ବିକାର ଚିତ୍ତରେ ବସିଥିବା ଚକ୍ରବର୍ତ୍ତୀ ନରବାହନଦତ୍ତଙ୍କୁ ଲକ୍ଷ୍ୟକରି କହିଲେ, 'ରାଜନ୍ ! ଆପଣଙ୍କ ପରି ବିଦ୍ୟାଧର ଚକ୍ରବର୍ତ୍ତୀ ପୂର୍ବରୁ କେବେ ଦେଖାନଥିଲେ । ଭବିଷ୍ୟତରେ ମଧ ଆଉ ଜନ୍ମ ହେବେ ବୋଲି ମନେହେଉ ନାହିଁ । ଧର୍ମାସନରେ ବସି ଆପଣଙ୍କ ସ୍ୱଜନମାନଙ୍କ ପ୍ରତି ଅପକ୍ଷପାତିତା ଦୁର୍ଲ୍ଲଭ । ଏଡ଼େ ବିଶାଳ ବିଦ୍ୟାଧର ସାମ୍ରାଜ୍ୟ ଲାଭ କରି ସୁଦ୍ଧା ଆପଣଙ୍କୁ ଲେଶ ମାତ୍ର କଳଙ୍କ ସ୍ପର୍ଶ କରିନାହିଁ । ଆପଣ ନିଷ୍କଳଙ୍କ । ଆପଣଙ୍କୁ ଦର୍ଶନ କରି ଅନ୍ୟମାନେ ମଧ ଧନ୍ୟ ହୋଇଛନ୍ତି ।

ପୂର୍ବରୁ ଋଷଭ ପ୍ରଭୃତି ଯେଉଁ ଚକ୍ରବର୍ତ୍ତୀମାନେ ଥିଲେ ସେମାନେ କୌଣସି ନା କୌଣସି ଦୋଷରେ ଦୂଷିତ ହେବା ଯୋଗୁଁ ସାମ୍ରାଜ୍ୟଲକ୍ଷ୍ମୀଙ୍କୁ ହରାଇଥିଲେ । ଋଷଭ, ସର୍ବଦମନ ଏବଂ ତୃତୀୟ ବନ୍ଧୁଜୀବକ—ଏମାନେ ସମସ୍ତେ ନିଜର ଅତିଶୟ ଅଭିମାନ ଯୋଗୁଁ ଇନ୍ଦ୍ରଙ୍କଦ୍ୱାରା ଦଣ୍ଡିତ ହୋଇଥିଲେ ।

ଭୂତପୂର୍ବ ଅନ୍ୟତମ ବିଦ୍ୟାଧର ଚକ୍ରବର୍ତ୍ତୀ ଜୀମୂତବାହନଙ୍କୁ ଦିନେ ମହର୍ଷି ନାରଦ ଆସି ପଚାରିଲେ 'ରାଜନ୍ ! ଆପଣ କେଉଁଥିପାଇଁ ଏପରି ଚକ୍ରବର୍ତ୍ତୀପଦ ଲାଭ କଲେ ?' ଉତ୍ତରରେ ଜୀମୂତବାହନ ନିଜ ଶରୀର ଏବଂ କଳ୍ପବୃକ୍ଷକୁ ଦାନ କରିଥିବା କଥା ପ୍ରକାଶ କରି ନୀଚତ୍ୱ ପ୍ରାପ୍ତ ହେଲେ । ନିଜେ କରିଥିବା ପୁଣ୍ୟ କାର୍ଯ୍ୟପାଇଁ ଗର୍ବିତ ହେବା ଉଚିତ ନୁହେଁ ।

ପୂର୍ବେ ବିଶ୍ୱାନ୍ତର ନାମରେ ଅନ୍ୟଜଣେ ଚକ୍ରବର୍ତ୍ତୀ ବିଦ୍ୟାଧର ସାମ୍ରାଜ୍ୟ ଭୋଗ କରୁଥିଲେ । ଇନ୍ଦିବରାକ୍ଷ ନାମରେ ତାଙ୍କର ଏକ ପୁତ୍ର ଥିଲା । ସେ ଚେଦୀରାଜ ବସନ୍ତତିଳକଙ୍କ ମହାରାଣୀଙ୍କ ସତୀତ୍ୱ ନଷ୍ଟ କରିଥିବା ଯୋଗୁଁ ସେହି ଅପରାଧରେ ମୃତ୍ୟୁଦଣ୍ଡ ପାଇଥିଲା । କିନ୍ତୁ କୁପୁତ୍ରର ମୃତ୍ୟୁରେ ବିଶ୍ୱାନ୍ତର ଧୈର୍ଯ୍ୟହରା ହୋଇ ନିଜେ ମୃତ୍ୟୁବରଣ କରିଥିଲେ ।

ସମ୍ରାଟ ତାରାବଲୋକ ହେଉଛନ୍ତି ଜଣେ ପୁଣ୍ୟକୀର୍ତ୍ତୀ ଭୂତପୂର୍ବ ବିଦ୍ୟାଧର ଚକ୍ରବର୍ତ୍ତୀ । ସେ ମନୁଷ୍ୟଯୋନିରେ ଜନ୍ମଗ୍ରହଣ କରି ମଧ୍ୟ ନିଜର ପବିତ୍ର କର୍ମଦ୍ୱାରା ବିଦ୍ୟାଧର ଚକ୍ରବର୍ତ୍ତୀ ପଦବୀ ଲାଭ କରିଥିଲେ । ତାଙ୍କୁ କୌଣସି କଳଙ୍କ ସ୍ପର୍ଶ କରିନଥିଲା । ତେଣୁ ସେ ବହୁଦିନ ଧରି ସାମ୍ରାଜ୍ୟ ପରିପାଳନା ପୂର୍ବକ ଶେଷରେ ନିଜ ପଦବୀ ପ୍ରତି ବିରକ୍ତ ହୋଇ ତପସ୍ୟା ନିମିତ୍ତ ବନ ମଧ୍ୟକୁ ଚାଲିଯାଇଥିଲେ ।

ଏହିପରି, ସାଧାରଣତଃ ବିଦ୍ୟାଧର ଚକ୍ରବର୍ତ୍ତୀତ୍ୱ ଲାଭ କଲାପରେ ଅଧିକାଂଶ ମୋହଗ୍ରସ୍ତ ହୋଇପଡ଼ନ୍ତି । ରାଗ, ଦ୍ୱେଷ ପ୍ରଭୃତିର ବଶବର୍ତ୍ତୀ ହେବାଯୋଗୁଁ ସେମାନଙ୍କର ଅଧୋଗତି ହୋଇଥାଏ । ଏଥିପାଇଁ ଆପଣ ସର୍ବଦା ସତର୍କ ରହିବେ । ନିଜେ ନ୍ୟାୟୋଚିତ ମାର୍ଗରୁ ବିଚଳିତ ନହୋଇ ନିଜର ବିଦ୍ୟାଧର ପ୍ରଜାପୁଞ୍ଜଙ୍କୁ ଅଧର୍ମାଚରଣରୁ ନିବୃତ୍ତ କରିବେ ।'

ମହର୍ଷି କଶ୍ୟପଙ୍କ ଉପଦେଶ ସମ୍ରାଟ ନରବାହନଦତ୍ତ ଆଦରର ସହିତ ଗ୍ରହଣ କଲେ । ନମ୍ରତାର ସହିତ ପ୍ରଶ୍ନ କଲେ 'ଭଗବନ୍ ! ପୂର୍ବେ ମର୍ତ୍ତ୍ୟଲୋକରେ ଜନ୍ମ ହୋଇ ସୁଦ୍ଧା ତାରାବଲୋକ କିପରି ବିଦ୍ୟାଧର ସାମ୍ରାଜ୍ୟ ଲାଭ କରିଥିଲେ ତାହା ଜାଣିବାପାଇଁ ମୋର କୌତୂହଳ ଜାଗ୍ରତ ହେଉଛି । ଦୟାପୂର୍ବକ ଶୁଣାଇଲେ କୃତାର୍ଥ ହେବି ।' ଚକ୍ରବର୍ତ୍ତୀ ସମ୍ରାଟଙ୍କ ଆଗ୍ରହ ଦେଖି ମହର୍ଷି କଶ୍ୟପ ଆରମ୍ଭ କଲେ–

## ତାରାବଲୋକଙ୍କ ଚକ୍ରବର୍ତ୍ତିତ୍ୱ ଲାଭ ବୃତ୍ତାନ୍ତ

ଶୁଣନ୍ତୁ, ମୁଁ ଆପଣମାନଙ୍କୁ ତାରାବଲୋକଙ୍କ ଅପୂର୍ବ ବୃତ୍ତାନ୍ତ ଶୁଣାଉଛି ।

ଶିବିଙ୍କ ବଂଶରେ ଚନ୍ଦ୍ରାବଲୋକ ବୋଲି ଜଣେ ରାଜା ଥିଲେ । ଚନ୍ଦ୍ରଲେଖା ତାଙ୍କ ପଟ୍ଟମହିଷୀ । ତାଙ୍କ ବଂଶ ଯେପରି କ୍ଷୀର ସମୁଦ୍ର ତୁଲ୍ୟ ଅକଳଙ୍କ ଥିଲା, ସେହିପରି ତାଙ୍କ ଚରିତ୍ର ମଧ୍ୟ ଗଙ୍ଗାଜଳ ପରି ପବିତ୍ର ଥିଲା । ରାଜାଙ୍କର କୁବଳୟାପୀଡ଼ ନାମରେ ଏକ ବିଶାଳ ହସ୍ତୀ ଥାଏ । ହସ୍ତୀଟି ଶତ୍ରୁମାନଙ୍କୁ ଦଳନ କରି ବିଶ୍ୱବିଶ୍ରୁତ ହୋଇପଡ଼ିଥିଲା । ତାର ପ୍ରଭାବରେ କୌଣସି ବଳବାନ ଶତ୍ରୁ ରାଜା ଏହି ଗଣତନ୍ତ୍ର ରାଜ୍ୟଟିକୁ ଜୟ କରିପାରୁ ନଥାନ୍ତି । ଯୌବନ ଅତିକ୍ରାନ୍ତ ହେବାପରେ ରାଜା ଚନ୍ଦ୍ରାବଲୋକ ଚନ୍ଦ୍ରଲେଖାଙ୍କ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ଲାଭ କରିଥିଲେ । ସେ ସମସ୍ତ କଲ୍ୟାଣକର ଲକ୍ଷଣରେ ଯୁକ୍ତ ଥିଲା । ଶୈଶବରୁ ହିଁ ଦାନ, ଧର୍ମ, ନ୍ୟାୟ, ବିବେକ ପ୍ରତି ତାର ଆଗ୍ରହ । ରାଜା ପୁତ୍ରଟିର ନାମ ରଖିଥିଲେ ତାରାବଲୋକ । ସେ ଶୈଶବରେ ସମସ୍ତ ଶାସ୍ତ୍ର ଶିକ୍ଷା କରିଥିଲା; କିନ୍ତୁ

ଯାଚକମାନଙ୍କୁ ସେମାନଙ୍କ ମନୋମତ ଦାନ ଦେବାରେ 'ନାହିଁ' ଶବ୍ଦଟି ଶିକ୍ଷା କରିପାରି ନଥିଲା ।

କ୍ରମଶଃ ସେ ଶୈଶବ ଓ କୈଶୋର ଅତିକ୍ରମ କରି ଯୌବନରେ ପଦାର୍ପଣ କଲା । ଆଚରଣରେ ବୃଦ୍ଧ, ତେଜରେ ସୂର୍ଯ୍ୟ ଏବଂ ବ୍ୟବହାରରେ ଚନ୍ଦ୍ରମାତୁଲ୍ୟ ଯୁବକ ତାରାବଲୋକ ପୂର୍ଣ୍ଣଚନ୍ଦ୍ର ପରି ଷୋଳକଳାରେ ସୁଶୋଭିତ ଥିଲେ । ତାଙ୍କର କନ୍ଦର୍ପ ତୁଲ୍ୟ କମନୀୟ ଆକୃତି ସମଗ୍ର ସଂସାରକୁ ବଶୀଭୂତ କରୁଥିଲା । ପିତାଙ୍କୁ ସେବା କରିବାରେ ସେ ଜୀମୂତବାହନଙ୍କ ପରି ଥିଲେ । ଜଣେ ମହାନ୍ ଚକ୍ରବର୍ତ୍ତୀ ହେବାର ସମସ୍ତ ଲକ୍ଷଣ ତାଙ୍କଠାରେ ସ୍ପଷ୍ଟ ଦେଖାଯାଉଥିଲା ।

ପୁତ୍ର ଯୌବନରେ ପଦାର୍ପଣ କରିବା ଦେଖି ରାଜା ଚନ୍ଦ୍ରାବଲୋକ ମଦ୍ର ଦେଶର ରାଜା ଚନ୍ଦ୍ରାଲୋକଙ୍କ କନ୍ୟା ମାଦ୍ରୀଙ୍କୁ ପୁତ୍ରବଧୂ ରୂପେ ମନୋନୀତ କଲେ । ମଦ୍ରରାଜ ମଧ୍ୟ ତାରାବଲୋକଙ୍କ କୌଳିନ୍ୟ, ଗୁଣ ଓ ଚରିତ୍ରରେ ମୁଗ୍ଧ ହୋଇ ନିଜ କନ୍ୟା ସହିତ ତାଙ୍କ ବିବାହ ଅନୁଷ୍ଠାନ କଲେ । ବିବାହ ପରେ ତାରାବଲୋକଙ୍କ ଯୌବରାଜ୍ୟ ଅଭିଷେକ ଉତ୍ସବ ଅନୁଷ୍ଠିତ ହେଲା । ଯୁବରାଜ ତାରାବଲୋକ ଅଭିଷେକ ପରେ ପରେ ପିତାଙ୍କ ଆଜ୍ଞା ପାଳନ କରି ଅନ୍ନଦାନ ପ୍ରଭୃତି ବହୁ ଯଜ୍ଞ ଅନୁଷ୍ଠାନ କଲେ । ପ୍ରଭାତରୁ ଶଯ୍ୟାତ୍ୟାଗ କରିବାମାତ୍ରେ ପ୍ରତିଦିନ କୁବଳୟାପୀଡ଼ ହସ୍ତୀପୃଷ୍ଠରେ ତାରାବଲୋକ ନିଜେ ଦାନ ଗ୍ରହଣର ଯୋଗ୍ୟ ବ୍ୟକ୍ତିମାନଙ୍କୁ ଅନ୍ୱେଷଣ କରିବାପାଇଁ ରାଜ୍ୟସାରା ଭ୍ରମଣ କରୁଥାନ୍ତି । ଯାଚକ-ମାନଙ୍କ ସମସ୍ତ ବାଞ୍ଛା ସେ ପୂରଣ କରୁଥିଲେ । ଅନ୍ୟର ଦୁଃଖ ମୋଚନପାଇଁ ନିଜ ପ୍ରାଣ ବିସର୍ଜନ କରିବା ନିମିତ୍ତ ମଧ୍ୟ ତାଙ୍କର କୁଣ୍ଠା ନଥିଲା । ସ୍ୱଳ୍ପଦିନ ମଧ୍ୟରେ ଯୁବରାଜଙ୍କ ଯଶଃ ଓ କୀର୍ତ୍ତି ବିଶ୍ୱବିଶ୍ରୁତ ହୋଇପଡ଼ିଲା ।

ସମୟକ୍ରମେ ମାଦ୍ରୀଙ୍କ ଗର୍ଭରୁ ତାରାବଲୋକ ଦୁଇଟି ଯମଜ ସନ୍ତାନ ଲାଭ କଲେ । ରାଜା ଚନ୍ଦ୍ରାବଲୋକ ଉଭୟ ପୌତ୍ରର ନାମ ରଖିଲେ ରାମ ଓ ଲକ୍ଷ୍ମଣ । ଉଭୟେ ପିତାମହ ଓ ପିତାମହୀଙ୍କ ପ୍ରାଣଠାରୁ ମଧ୍ୟ ଅଧିକ ଆଦରର ପାତ୍ର । ପିତାମାତାଙ୍କ ସ୍ନେହ ଓ ଆଦର ପାଇ ଉଭୟେ ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲେ । ଗୁଣଶାଳୀ ଓ ନମ୍ର ପୁତ୍ରଦ୍ୱୟଙ୍କୁ ଦେଖିଲେ ତାରାବଲୋକ ଓ ମାଦ୍ରୀ ଅତୃପ୍ତ ନୟନରେ ସେମାନଙ୍କୁ ଚାହୁଁଥାନ୍ତି ।

ଏହିପରି କିଛିଦିନ ବିତିଗଲା । ଶତ୍ରୁମାନେ ତାରାବଲୋକଙ୍କ ଅପୂର୍ବ ହସ୍ତୀ କୁବଳୟାପୀଡ଼, ଉଭୟ ପୁତ୍ର ରାମ ଓ ଲକ୍ଷ୍ମଣ ଏବଂ ପ୍ରଖ୍ୟାତ ଦାନବୀରତ୍ୱରେ ଈର୍ଷାନ୍ୱିତ ହୋଇଉଠିଲେ । ସେମାନେ ଦିନେ କିଛିଜଣ ବ୍ରାହ୍ମଣଙ୍କୁ ଆୟତ୍ତ କରି ତାରାବଲୋକଙ୍କ

ନିକଟକୁ ପ୍ରେରଣ କଲେ । ଉଦ୍ଦେଶ୍ୟ ଥିଲା ସେମାନେ ଯାଇ କୁବଳୟାପୀଡ଼ ହସ୍ତୀକୁ ଯାଚନା କରିବେ । ଯଦି ସେ ହସ୍ତୀଟି ଦାନ କରିଦିଅନ୍ତି ତେବେ ହସ୍ତୀରହିତ ତାରାବଲୋକଙ୍କୁ ଜୟ କରିବା ସହଜ ହେବ । ଯଦି ସେ ହସ୍ତୀଟି ଦାନ ନ କରନ୍ତି, ତେବେ ତାଙ୍କ ଦାନଶୀଳତାର ସୁଖ୍ୟାତି କଳଙ୍କିତ ହେବ ।

ବ୍ରାହ୍ମଣମାନେ ଧନଲୋଭରେ ଏଥିରେ ସମ୍ମତ ହୋଇ ଦାନବୀର ତାରାବଲୋକଙ୍କୁ କୁବଳୟାପୀଡ଼ ହସ୍ତୀଟି ଯାଚନା କଲେ । ତାରାବଲୋକ ବ୍ରାହ୍ମଣମାନଙ୍କ ଯାଚନା ଶୁଣି ମନେମନେ ଚିନ୍ତା କଲେ 'ବ୍ରାହ୍ମଣମାନଙ୍କର ହସ୍ତୀରେ କି ବା ପ୍ରୟୋଜନ ? ତେଣୁ ବୋଧହୁଏ ଶତ୍ରୁମାନଙ୍କଦ୍ୱାରା ପ୍ରେରିତ ହୋଇ ଏମାନେ ଏପରି ଯାଚନା କରୁଛନ୍ତି । ଯାହାହେଲେ ବି ମୋତେ ଏହି ଉତ୍ତମ ହସ୍ତୀଟିକୁ ଦେବାକୁ ହିଁ ହେବ । ମୋ ଶରୀରରେ ପ୍ରାଣଥିବା ପର୍ଯ୍ୟନ୍ତ କୌଣସି ଯାଚକ ନିରାଶ ହୋଇ ମୋଠାରୁ କିପରି ବା ଫେରିଯିବେ ?' ଏହିପରି ଚିନ୍ତାକରି କମ୍ପିତ ହୃଦୟରେ ତାରାବଲୋକ ବ୍ରାହ୍ମଣମାନଙ୍କୁ ନିଜର ସେହି ପ୍ରିୟ ହସ୍ତୀଟିକୁ ଦାନ କଲେ ।

ନାଗରିକମାନେ କୁବଳୟାପୀଡ଼ ସହିତ ବ୍ରାହ୍ମଣମାନଙ୍କୁ ଯାଉଥିବା ଦେଖି କ୍ରୁଦ୍ଧ ହୋଇଉଠିଲେ । ସେମାନେ ରାଜା ଚନ୍ଦ୍ରାବଲୋକଙ୍କ ନିକଟକୁ ଯାଇ ରୁକ୍ଷ ସ୍ୱରରେ କହିଲେ, 'ରାଜନ୍ ! ବର୍ତ୍ତମାନ ଆପଣଙ୍କ ପୁତ୍ର ତାରାବଲୋକ ରାଜ୍ୟ ତ୍ୟାଗ କରିଛନ୍ତି । ସନ୍ନ୍ୟାସ ଗ୍ରହଣ କରି ମୁନିମାନଙ୍କ ଧର୍ମ ଗ୍ରହଣ କରିଛନ୍ତି । ଦେଖନ୍ତୁ, ସେ ଯାଚକମାନଙ୍କ ହସ୍ତରେ କୁବଳୟାପୀଡ଼କୁ ପ୍ରଦାନ କରି ରାଜଲକ୍ଷ୍ମୀଙ୍କ ମସ୍ତକରେ ପଦାଘାତ କରିଛନ୍ତି । କୁବଳୟାପୀଡ଼ ସାମାନ୍ୟ ହସ୍ତୀ ନୁହେଁ । ତାର ସୌରଭ ଆଘ୍ରାଣ କରି ହିଁ ଶତ୍ରୁମାନଙ୍କର ହସ୍ତୀ ସମୂହ ଦୂରରୁ ପଳାୟନ କରୁଥିଲେ । ଆପଣ ଏଥିପାଇଁ ପୁତ୍ରକୁ ସନ୍ନ୍ୟାସ ବ୍ରତ ଗ୍ରହଣ କରି ଅରଣ୍ୟକୁ ଚାଲିଯିବାପାଇଁ କହନ୍ତୁ, କିମ୍ବା ବର୍ତ୍ତମାନ ଯାଇ କୁବଳୟାପୀଡ଼କୁ ଫେରାଇ ଆଣନ୍ତୁ । ତା'ନହେଲେ ଆମେ ଅନ୍ୟଜଣକୁ ରାଜସିଂହାସନରେ ଅଭିଷିକ୍ତ କରିବୁ ।'

ନାଗରିକମାନଙ୍କ ନିଷ୍ପତ୍ତି ରାଜା ଚନ୍ଦ୍ରାବଲୋକ ଦ୍ୱାରପାଳମାନଙ୍କଦ୍ୱାରା ପୁତ୍ରକୁ ଜଣାଇଦେଲେ । ତାରାବଲୋକ ଏହା ଶୁଣିବାମାତ୍ରେ ପିତାଙ୍କ ନିକଟକୁ ଯାଇ ନାଗରିକମାନଙ୍କ ସମକ୍ଷରେ ଜଣାଇଲେ 'ହଁ, ମୁଁ ହିଁ କୁବଳୟାପୀଡ଼ ହସ୍ତୀକୁ ବ୍ରାହ୍ମଣମାନଙ୍କପାଇଁ ଦାନ କରିଛି । ଯାଚକପାଇଁ ମୋର କୌଣସି ବସ୍ତୁ ଅଦେୟ ନୁହେଁ । ରାଜ୍ୟ ନେଇ ମୁଁ କ'ଣ କରିବି ? ଏହା ତ ନାଗରିକମାନଙ୍କର । ବିଜୁଳି ତୁଲ୍ୟ ଚଞ୍ଚଳ

ରାଜଲକ୍ଷ୍ମୀ ଯଦି ଅନ୍ୟର ଉପକାରରେ ନ ଆସିପାରନ୍ତି ତେବେ ତାଙ୍କୁ ଧରି ରଖିବା ବ୍ୟର୍ଥ । ତେଣୁ ନିଜର ସୁମିଷ୍ଟ ଫଳରାଶିଦ୍ୱାରା ବିଶ୍ୱବାସୀଙ୍କ ଉପକାର ସାଧନ କରୁଥିବା କୌଣସି ବୃକ୍ଷ ପୂର୍ଣ୍ଣ ଅରଣ୍ୟରେ ବାସ କରିବା ଶ୍ରେୟସ୍କର । କିନ୍ତୁ ଏହି ମନୁଷ୍ୟରୂପୀ ପଶୁମାନଙ୍କ ମଧ୍ୟରେ ରାଜଲକ୍ଷ୍ମୀ ଭୋଗ କରିବାର ଲାଳସା ମୋର ନାହିଁ ।'

ନାଗରିକମାନଙ୍କୁ ଏହିପରି କହି ତାରାବଲୋକ ନିଜ ନିକଟରେ ଥିବା ସମସ୍ତ ଧନରାଶି ଯାଚକମାନଙ୍କ ମଧ୍ୟରେ ବିତରଣ କରିଦେଲେ । ତାଙ୍କ ପରି ଅନୁରୂପ ସ୍ଥିର ସଂକଳ୍ପା ପତ୍ନୀ ମାଦ୍ରୀ ଓ ଉଭୟ ପୁତ୍ର ରାମ ଓ ଲକ୍ଷ୍ମଣ ସହିତ ସେ ବନକୁ ଯିବାପାଇଁ ପ୍ରସ୍ତୁତ ହେଲେ । ବହୁମୂଲ୍ୟ ପରିଧେୟ ପରିତ୍ୟାଗ କରି ସେମାନେ ବଲ୍‌କଳ ଧାରଣ କଲେ ଏବଂ ମାତା ପିତାଙ୍କ ପାଦରେ ପ୍ରଣାମ କରି ଅରଣ୍ୟ ଅଭିମୁଖରେ ଅଗ୍ରସର ହେଲେ । ଯୁବରାଜଙ୍କ ଏ ପ୍ରକାର ଆଚରଣ ପଶୁପକ୍ଷୀମାନଙ୍କୁ ମଧ୍ୟ ଶୋକାକୁଳ କରିଦେଲା । ବ୍ରାହ୍ମଣମାନେ ଅନୁତାପ କରି ଅଶ୍ରୁ ବିସର୍ଜନ କଲେ । କିନ୍ତୁ ନିଜ ପ୍ରତିଜ୍ଞାରେ ଅଟଳ ଯୁବରାଜ ଉଭୟ ପୁତ୍ରଙ୍କପାଇଁ କେବଳ ଗୋଟିଏ ମାତ୍ର ରଥ ସହିତ ରାଜରାସ୍ତାରେ ଯାଉଥାନ୍ତି । କିଛିଦୂର ଗଲାପରେ ଶତ୍ରୁପ୍ରେରିତ ଅନ୍ୟ କେହି ବ୍ରାହ୍ମଣ ରଥକୁ ଟାଣୁଥିବା ଅଶ୍ୱଗୁଡ଼ିକ ଯାଚନା କଲା । ସେ ତତ୍‌କ୍ଷଣାତ୍ ସେଗୁଡ଼ିକ ତାଙ୍କୁ ପ୍ରଦାନ କଲେ ଏବଂ ସେ ନିଜେ ପତ୍ନୀ ସହିତ ପୁତ୍ରମାନଙ୍କ ରଥକୁ ଟାଣିବାକୁ ଲାଗିଲେ । ଶ୍ରାନ୍ତ କ୍ଳାନ୍ତ ହୋଇ ସେମାନେ ଯେତେବେଳେ ଅରଣ୍ୟ ମଧ୍ୟରେ ଯାଇ ପ୍ରବେଶ କଲେ ସେତେବେଳେ ଅନ୍ୟ ଜଣେ ବ୍ରାହ୍ମଣ ଆସି ଅଶ୍ୱରହିତ ରଥଟିକୁ ଯାଚନା କଲା । ତାରାବଲୋକ ବିନା ଦ୍ୱିଧାରେ ରଥଟିକୁ ଦାନ କରିଦେଲେ ।

ଏହିପରି ସମସ୍ତ କିଛି ଭୋଗ୍ୟବସ୍ତୁ ଦାନରୂପେ ବ୍ରାହ୍ମଣମାନଙ୍କୁ ପ୍ରଦାନ କରି ପ୍ରଶାନ୍ତଚେତା ତାରାବଲୋକ ସ୍ତ୍ରୀ ଓ ପୁତ୍ରମାନଙ୍କ ସହିତ କୌଣସିମତେ ତପୋବନ ମଧ୍ୟରେ ଯାଇ ପହଞ୍ଚିଲେ । କୌଣସି ବୃକ୍ଷ ଛାୟାରେ ରହିବାପାଇଁ କୁଟୀର ନିର୍ମିତ ହେଲା । ମୃଗଚର୍ମ ପରିଧାନ ପୂର୍ବକ ସେମାନେ ସେଠାରେ ଫଳମୂଳ ଆହାର କରି ରହୁଥାନ୍ତି । ମାଦ୍ରୀ ପତି ଓ ପୁତ୍ରମାନଙ୍କ ପରିଚର୍ଯ୍ୟାରେ କଦାପି ଅବହେଳା କରନ୍ତି ନାହିଁ । ବନଭୂମି ଶୀତଳ ସମୀରଣରେ ହିଲ୍ଲୋଳିତ ହେଉଥିବା ପୁଷ୍ପଗୁଚ୍ଛ ରୂପକ ଚାମର, ଛାୟା ପ୍ରଦାନ କରୁଥିବା ବୃକ୍ଷଶାଖା ରୂପକ ଛତ୍ର, ପତ୍ରାଚ୍ଛାଦିତ ଶିଳାଖଣ୍ଡ ରୂପକ ଆସନ, ଭ୍ରମରୀମାନଙ୍କ ସଙ୍ଗୀତ ଏବଂ ସ୍ୱାଦିଷ୍ଟ ଫଳରସ ତୁଲ୍ୟ ମଦିରାଦ୍ୱାରା ବୈରାଗ୍ୟରୂପକ ରାଜ୍ୟର ସିଂହାସନ ଉପରେ ଅଧିଷ୍ଠିତ ବୀର ତାରାବଲୋକଙ୍କ ସେବାରେ ନିଯୁକ୍ତ ରହିଲା ।

ଦିନେ ମାଦ୍ରୀ ତପୋବନରୁ ଫଳମୂଳ ଆହରଣ କରିବାପାଇଁ କୁଟୀର ବାହାରକୁ ଯାଇଥାନ୍ତି । ଏ ସମୟରେ ଜଣେ ବୃଦ୍ଧ ବ୍ରାହ୍ମଣ ଆସି ତାରାବଲୋକଙ୍କୁ ତାଙ୍କର ଉଭୟ ପୁତ୍ର ଯାଚନା କଲା । ଦାନଶୀଳ ରାଜକୁମାର ଚିନ୍ତାକଲେ ଯେ ଏହି ଛୋଟଛୋଟ ବାଳକ ଦୁଇଟିର ବିଚ୍ଛେଦ ଦୁଃଖ ତ କୌଣସିମତେ ସହ୍ୟ କରିଯାଇହେବ କିନ୍ତୁ ଯାଚକଟି ନିରାଶ ହୋଇ ଫେରିଗଲେ ତାହା ସହ୍ୟ କରିବା ମୋ ପକ୍ଷରେ ସମ୍ଭବ ହେବନାହିଁ । ବୋଧହୁଏ ବିଧାତା ହଠ ପୂର୍ବକ ମୋର ଧୈର୍ଯ୍ୟର ସୀମା ପରୀକ୍ଷା କରୁଅଛି । ଏହିପରି ଚିନ୍ତା କରି ସେ ଉଭୟ ପୁତ୍ରଙ୍କୁ ବୃଦ୍ଧ ବ୍ରାହ୍ମଣ ହସ୍ତରେ ଟେକିଦେଲେ ।

ରାମ ଓ ଲକ୍ଷ୍ମଣ ବ୍ରାହ୍ମଣ ସହିତ ଯିବାବେଳେ ବାରମ୍ବାର ପଛକୁ ଫେରି ଚାହୁଁଥାନ୍ତି । ସେମାନଙ୍କ ଗତି ଶିଥିଳ ହେଉଥିବା ଦେଖି ବ୍ରାହ୍ମଣ ସେମାନଙ୍କ ହାତ ଦୁଇଟିକୁ ରଜ୍ଜୁରେ ବାନ୍ଧିଦେଇ ପ୍ରହାର କରିବାକୁ ଲାଗିଲା । ବିକଳ ଭାବେ ବିଳାପ କରୁଥିବା ଏବଂ ବାରମ୍ବାର ଅଶ୍ରୁପୂର୍ଣ୍ଣ ନୟନରେ ପିତାଙ୍କୁ ଚାହୁଁଥିବା ବାଳକ ଦୁଇଟିକୁ ନେଇ ବ୍ରାହ୍ମଣ ଚାଲିଗଲା ।

ବତ୍ସ ନରବାହନଦତ୍ତ ! ତାରାବଲୋକ ଏହା ଦେଖି ସୁଦ୍ଧା ଅଧୀର ହେଲେ ନାହିଁ । ବରଂ ତାଙ୍କ ଧୈର୍ଯ୍ୟ ଦେଖି ଚରାଚର ସମସ୍ତ ଜୀବ ବିସ୍ମିତ ହୋଇପଡ଼ିଲେ ।

କିଛି ସମୟ ପରେ ଅରଣ୍ୟରୁ କିଛି ଫଳମୂଳ ସଂଗ୍ରହ କରି ଦେବୀ ମାଦ୍ରୀ ଅତ୍ୟନ୍ତ ଶ୍ରାନ୍ତକ୍ଳାନ୍ତ ହୋଇ ଧୀରେ ଧୀରେ ଆଶ୍ରମକୁ ଫେରିଆସିଲେ । ଦେଖିଲେ, ସ୍ୱାମୀ ଅବନତ ମସ୍ତକରେ ବସି ରହିଛନ୍ତି; ବାଳକ ଦୁଇଟିର ଦେଖାନାହିଁ । ସେମାନଙ୍କ ଖେଳନା ସବୁ ଇତସ୍ତତଃ ବିଞ୍ଚି ହୋଇ ପଡ଼ିଛି । ବିକଳଭାବେ ଅମଙ୍ଗଳ ଆଶଙ୍କା କରି ସେ ଯେତେବେଳେ ପୁତ୍ରମାନଙ୍କ ସମ୍ପର୍କରେ ଜିଜ୍ଞାସା କଲେ, ତାରାବଲୋକ ଧୀର ଓ ଅବିଚଳିତ ସ୍ୱରରେ କହିଲେ, 'ପ୍ରିୟେ ! ଜଣେ ଦରିଦ୍ର ବ୍ରାହ୍ମଣ ଆମ ଉଭୟ ସନ୍ତାନକୁ ମାଗିବାପାଇଁ ଆସିଥିଲେ । ମୁଁ ତାଙ୍କ ହସ୍ତରେ ଉଭୟ ପୁତ୍ରକୁ ଦାନ କରିଛି ।' ସତୀସାଧ୍ୱୀ ଏବଂ ଅପୂର୍ବ ପତିପରାୟଣା ମାଦ୍ରୀ ସଙ୍ଗେସଙ୍ଗେ ପୁତ୍ରମୋହ ତ୍ୟାଗ କରି କହିଲେ, 'ଆର୍ଯ୍ୟପୁତ୍ର ! ଆପଣ ଯଥାର୍ଥ କରିଛନ୍ତି । ଯାଚକ ଏଠାରୁ ବିମୁଖ ହୋଇ ଯାଆନ୍ତା କିପରି ?'

ମାଦ୍ରୀ ଏପରି କହୁଥିବା ବେଳେ ଉଭୟ ପତିପତ୍ନୀଙ୍କ ସମାନ ସ୍ଥୈର୍ଯ୍ୟ ଓ ଧୈର୍ଯ୍ୟରେ ପୃଥିବୀ ପ୍ରକମ୍ପିତ ହେବାକୁ ଲାଗିଲା; ଇନ୍ଦ୍ରଙ୍କ ଆସନ ଟଳମଳ ହେଲା । ସେ ଧ୍ୟାନ କରି ଜାଣିପାରିଲେ ଯେ ତାରାବଲୋକ ଓ ମାଦ୍ରୀଙ୍କ ଦାନଶୀଳତା ହିଁ ତାର କାରଣ । ସେ ପରୀକ୍ଷା କରିବାପାଇଁ ଏକ ବୃଦ୍ଧ ବ୍ରାହ୍ମଣ ବେଶ ଧାରଣ ପୂର୍ବକ ତାରାବଲୋକଙ୍କ ନିକଟରେ ଯାଇ ପହଞ୍ଚିଲେ ଏବଂ ପତ୍ନୀ ମାଦ୍ରୀଙ୍କୁ ଯାଚନା କଲେ । ତାରାବଲୋକ ନିର୍ବିକଳ୍ପ ମନରେ

ବନ ମଧ୍ୟରେ ତାଙ୍କର ଏକମାତ୍ର ସହଚରୀ ନିଜର ପ୍ରିୟତମା ପତ୍ନୀ ମାଦ୍ରୀଙ୍କୁ ଦାନ ସ୍ୱରୂପ ଦେବା ପାଇଁ ହସ୍ତରେ ଜଳଧାରଣ ପୂର୍ବକ ପ୍ରସ୍ତୁତ ହେଲେ । ଏଥିରେ ବିସ୍ମିତ ହୋଇ ଛଦ୍ମବେଶୀ ଇନ୍ଦ୍ର କହିଲେ, 'ରାଜର୍ଷି ! ଏହିପରି ସତୀସାଧ୍ୱୀ ପତ୍ନୀଙ୍କୁ ଦାନ କରି ତୁମେ କି ପୁଣ୍ୟଫଳ ଲାଭ କରିବ ?' ଉତ୍ତରରେ ତାରାବଲୋକ ଜଣାଇଲେ, 'ହେ ବ୍ରାହ୍ମଣ ଦେବତା ! ମୋର କୌଣସି ଫଳର ଆକାଂକ୍ଷା ନାହିଁ । ବ୍ରାହ୍ମଣମାନଙ୍କୁ ମୋର ସର୍ବସ୍ୱ, ଏପରିକି ପ୍ରାଣ ମଧ୍ୟ ପ୍ରଦାନ କରିବାହିଁ ଏକମାତ୍ର କାମନା ।'

ଇନ୍ଦ୍ରଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ନିଜର ଛଦ୍ମବେଶ ପରିତ୍ୟାଗ କରି ତାରାବଲୋକଙ୍କୁ କହିଲେ, 'ମୁଁ କେବଳ ତୁମକୁ ପରୀକ୍ଷା କରୁଥିଲି । ମୋର ପରୀକ୍ଷାରେ ତୁମେ ଉତ୍ତୀର୍ଣ୍ଣ ହୋଇଅଛ । ପତ୍ନୀକୁ ଦାନ କରିବାର କୌଣସି ପ୍ରୟୋଜନ ନାହିଁ । ସ୍ୱଳ୍ପକାଳ ମଧ୍ୟରେ ତୁମେ ବିଦ୍ୟାଧରମାନଙ୍କ ଚକ୍ରବର୍ତ୍ତୀ ହେବ ।' ଏହା କହି ଇନ୍ଦ୍ର ଅନ୍ତର୍ହିତ ହେଲେ ।

ଏଣେ ସେହି ବୃଦ୍ଧ ବ୍ରାହ୍ମଣ ତାରାବଲୋକଙ୍କ ଉଭୟ ପୁତ୍ରଙ୍କୁ ଧରି ଅରଣ୍ୟ ମଧ୍ୟରେ ପଥଭ୍ରଷ୍ଟ ହେଲା । ଦୀର୍ଘ ସମୟ ଇତସ୍ତତଃ ଭ୍ରମଣ କରିବା ପରେ ସଂଯୋଗବଶତଃ ସେ ଆସି ରାଜା ଚନ୍ଦ୍ରାବଲୋକଙ୍କ ନଗରରେ ପହଞ୍ଚିଲା । ସେ ଉଭୟ ବାଳକଙ୍କୁ ବିକ୍ରୟ କରି କିଛି ଧନ ଉପାର୍ଜ୍ଜନ କରିବାପାଇଁ ଚାହୁଁଥାଏ । ନାଗରିକମାନେ ଉଭୟ ପୁତ୍ରଙ୍କୁ ଚିହ୍ନିପାରିଲେ । ସେମାନଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେମାନେ ରାଜାଙ୍କୁ ଏ ସମ୍ବାଦ ଜଣାଇବା ସହିତ ବ୍ରାହ୍ମଣ ଓ ରାଜକୁମାରମାନଙ୍କୁ ଧରି ତାଙ୍କ ନିକଟରେ ଉପସ୍ଥିତ କରାଇଲେ । ରାଜା ପୌତ୍ରମାନଙ୍କୁ ଦେଖି ଆନନ୍ଦରେ ଅଧୀର ହୋଇପଡ଼ିଲେ । ବ୍ରାହ୍ମଣଠାରୁ ପୁତ୍ର ଓ ପୁତ୍ରବଧୂର ସମ୍ବାଦ ଲାଭ କରି ସେ ଯୁଗପତ୍ ବିଷାଦ ଓ ହର୍ଷରେ ଅଭିଭୂତ ହୋଇପଡ଼ିଲେ । ପୁତ୍ରର ଅସାଧାରଣ ଦୃଢ଼ତା କେବଳ ତାଙ୍କୁ ନୁହେଁ ପ୍ରଜାମାନଙ୍କୁ ମଧ୍ୟ ପ୍ରଭାବିତ କଲା । ରାଜା ରାଜ୍ୟ ପ୍ରତି ତାଙ୍କର ଆଉ ଆସକ୍ତି ନଥିବା କଥା ପ୍ରଜାମାନଙ୍କୁ ଜଣାଇଦେଲେ । ଉଭୟ ପୌତ୍ରଙ୍କୁ ଧନରାଶି ବିନିମୟରେ ବ୍ରାହ୍ମଣଠାରୁ କ୍ରୟ କରି ସେ ପୁତ୍ର ତାରାବଲୋକଙ୍କ ଆଶ୍ରମରେ ଯାଇ ଉପସ୍ଥିତ ହେଲେ । ତାରାବଲୋକ ବଲ୍‌କଳ ଧାରଣ ପୂର୍ବକ ଜଟାଜୁଟ ବିମଣ୍ଡିତ ହୋଇ ଏକ ମହାଦ୍ରୁମ ପରି ଦେଖାଯାଉଥାନ୍ତି । ଯାଚକ ବ୍ରାହ୍ମଣମାନେ ତାଙ୍କର ସମସ୍ତ ସମ୍ପତ୍ତି ଦାନ ସୂତ୍ରରେ ନିଃଶେଷ କରିଥିଲେ ସୁଦ୍ଧା ମହାଦ୍ରୁମ ଅବିଚଳିତ ଭାବେ ପୁଣି ପରୋପକାର କରିବାପାଇଁ ଯେପରି ସର୍ବଦା ଜାଗ୍ରତ ଅଛି । ଦୂରରୁ ପିତାଙ୍କୁ ଆସୁଥିବା

ଦେଖି ତାରାବଲୋକ ଦ୍ରୁତ ପଦରେ ଯାଇ ତାଙ୍କ ପଦପ୍ରାନ୍ତରେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ପିତା ଅଶ୍ରୁଜଳରେ ପୁତ୍ରକୁ ଅଭିଷିକ୍ତ କରି କୋଳାଗ୍ରତ କଲେ । ଏହିଠାରେ ହିଁ ବିଦ୍ୟାଧର ସାମ୍ରାଜ୍ୟପାଇଁ ତାରାବଲୋକଙ୍କ ଅଭିଷେକ ଓ ସିଂହାସନ ଆରୋହଣ ଉତ୍ସବ ଆରମ୍ଭ ହେଲା ।

ରାଜା ଚନ୍ଦ୍ରାବଲୋକ ଉଭୟ ପୌତ୍ରଙ୍କୁ ସେମାନଙ୍କ ପିତାମାତାଙ୍କ ହସ୍ତରେ ଅର୍ପଣ କଲେ । ସମସ୍ତେ ବୃକ୍ଷଛାୟାରେ ବସି ବାର୍ତ୍ତାଳାପ କରୁଥାନ୍ତି । ଏ ସମୟରେ ଏକ ଚତୁର୍ଦ୍ଦନ୍ତୀ ହସ୍ତୀ ସହିତ ଭଗବତୀ ଲକ୍ଷ୍ମୀ ଆକାଶ ମାର୍ଗରେ ଆସି ସେଠାରେ ଅବତରଣ କଲେ । ତାଙ୍କ ସହିତ ବହୁ ବିଦ୍ୟାଧରାଧିପତି ମଧ ରହିଥାନ୍ତି । ହସ୍ତରେ ଏକ ପ୍ରସ୍ଫୁଟିତ ପଦ୍ମପୁଷ୍ପ ଧରି ମହାଲକ୍ଷ୍ମୀ ତାରାବଲୋକଙ୍କୁ କହିଲେ, 'ବତ୍ସ ! ଏହି ହସ୍ତୀ ପୃଷ୍ଠରେ ଆରୋହଣ କରି ବର୍ତ୍ତମାନ ବିଦ୍ୟାଧର ଲୋକକୁ ଚାଲିଯାଅ । ନିଜର ଦାନଶୀଳତା ଯୋଗୁଁ ଲାଭ କରିଥିବା ବିଦ୍ୟାଧରସାମ୍ରାଜ୍ୟଶ୍ରୀ ଭୋଗ କର ।'

ମହାଲକ୍ଷ୍ମୀଙ୍କ ନିର୍ଦ୍ଦେଶ କ୍ରମେ ତାରାବଲୋକ ପିତାଙ୍କ ଚରଣ ସ୍ପର୍ଶ ପୂର୍ବକ ପତ୍ନୀ ଓ ପୁତ୍ର ସହିତ ହସ୍ତୀ ପୃଷ୍ଠରେ ଆରୋହଣ କରି ଲକ୍ଷ୍ମୀଙ୍କ ସହିତ ବିଦ୍ୟାଧର ଲୋକକୁ ପ୍ରସ୍ଥାନ କଲେ । ବିଦ୍ୟାଧର ଅଧିପତିମାନେ ଆକାଶ ମାର୍ଗରେ ତାଙ୍କୁ ପରିବେଷ୍ଟନ କରି ଚାଲିଥାନ୍ତି । ଏହି ଘଟଣାରେ ତପୋବନସ୍ଥିତ ନାଗରିକମାନଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ।

ବିଦ୍ୟାଧର ଲୋକରେ ତାରାବଲୋକ ସମସ୍ତ ବିଦ୍ୟାର ଅଧିକାରୀ ହୋଇ ବହୁକାଳ ପର୍ଯ୍ୟନ୍ତ ସାମ୍ରାଜ୍ୟଶ୍ରୀ ଉପଭୋଗ କଲେ । ଶେଷରେ ଯେତେବେଳେ ତାଙ୍କ ମନରେ ବୈରାଗ୍ୟ ଜାତ ହେଲା ସେତେବେଳେ ସେ ସିଂହାସନ ପରିତ୍ୟାଗ କରି ତପୋବନ ମଧ୍ୟକୁ ଚାଲିଗଲେ ।

ଏହିପରି ମନୁଷ୍ୟଲୋକରେ ଜନ୍ମଲାଭ କରିସୁଦ୍ଧା ନିଜର ଅଖଣ୍ଡ ପୁଣ୍ୟ ପ୍ରଭାବ ଯୋଗୁଁ ତାରାବଲୋକ ବିଦ୍ୟାଧର ଚକ୍ରବର୍ତ୍ତୀ ପଦ ଲାଭ କରିଥିଲେ । କିନ୍ତୁ ଅନ୍ୟ ଚକ୍ରବର୍ତ୍ତୀମାନେ ଅଧିକାର ଓ ଐଶ୍ୱର୍ଯ୍ୟ ଲାଭପରେ ନିଜନିଜ ଦୋଷରୁ ଅଧୋଗତି ଲାଭ କରିଛନ୍ତି । ତେଣୁ ତୁମେ ନିଜ ପକ୍ଷରୁ ହେଉ କିମ୍ବା ପ୍ରଜାମାନଙ୍କ ପକ୍ଷରୁ ହେଉ ଅଧର୍ମାଚରଣର ଦୁର୍ଯୋଗ ସୃଷ୍ଟି କରନାହିଁ ।

ମହର୍ଷି କଶ୍ୟପଙ୍କ ଏହି ସତ୍ ଉପଦେଶ ଚକ୍ରବର୍ତ୍ତୀ ସମ୍ରାଟ ନରବାହନଦତ୍ତ ନତମସ୍ତକରେ ଗ୍ରହଣ କଲେ । ସେ ହିମାଳୟସ୍ଥିତ ସମଗ୍ର ବିଦ୍ୟାଧର ଲୋକରେ ଘୋଷଣା

କରିଦେଲେ ଯେ ସେହିଦିନଠାରୁ ଯେଉଁ ପ୍ରଜା ଧର୍ମବିରୋଧୀ ଆଚରଣ କରିବ ସେ କଠୋର ମୃତ୍ୟୁଦଣ୍ଡ ଲାଭକରିବ । ବିଦ୍ୟାଧରମାନେ ମଧ୍ୟ ସମ୍ରାଟଙ୍କ ଆଦେଶକୁ ସାଦରେ ସ୍ୱୀକାର କଲେ ।

ସୁରତମଞ୍ଜରୀଙ୍କୁ ନିଜର ଶାଳକ ଇତ୍ୟକଙ୍କଠାରୁ ମୁକ୍ତ କରିଥିବାରୁ ନରବାହନଦତ୍ତଙ୍କ ସୁଖ୍ୟାତି ଦିଗବିଦିଗରେ ପ୍ରଚାରିତ ହୋଇଯାଇଥାଏ । ଆଶ୍ରମ ସ୍ଥିତ ମୁନି ଓ ଋଷିମାନେ ତାଙ୍କ ନିରପେକ୍ଷତା, ସମୁଚିତ ଆଚରଣ ଓ ଧର୍ମନିଷ୍ଠତାରେ ପ୍ରୀତ ଥାନ୍ତି । ଆଶ୍ରମର ପବିତ୍ରତା ଏବଂ ପ୍ରକୃତିର ସୌନ୍ଦର୍ଯ୍ୟ ସମ୍ରାଟ ନରବାହନଦତ୍ତଙ୍କୁ ପ୍ରଭୂତ ଆନନ୍ଦ ପ୍ରଦାନ କରୁଥାଏ । ସେ ଅସିତ ପର୍ବତ ଉପରେ ମହର୍ଷି କଶ୍ୟପଙ୍କ ଆଶ୍ରମରେ ମାତୁଳ ଗୋପାଳକଙ୍କ ସହିତ ବର୍ଷାଋତୁର ଅପେକ୍ଷା କରିବାକୁ ଲାଗିଲେ ।





ଦେହାର୍ଧଧୃତକାନ୍ତୋଽପି ତପସ୍ୱୀ ନିର୍ଗୁଣୋଽପି ଯଃ ।
ଜଗତ୍ସ୍ତୁତ୍ୟୋ ନମସ୍ତସ୍ମୈ ଚିତ୍ରରୂପାୟ ଶମ୍ଭବେ ॥
ଚଲତ୍କର୍ଣ୍ଣାଗ୍ରବିକ୍ଷିପ୍ତଗଣ୍ଡୋଡ଼୍ଡୀନାଳିମଣ୍ଡଳମ୍ ।
ଧୁନ୍ୱାନଂ ବିଘ୍ନସଂଘାତମିବ ବିଘ୍ନାନ୍ତକଂ ନୁମଃ ॥



## ପ୍ରଥମ ତରଙ୍ଗ

ନରବାହନଦତ୍ତ ଅସିତ ପର୍ବତ ଉପରେ ମାତୁଳ ଗୋପାଳକଙ୍କ ସହିତ ବର୍ଷାଋତୁ କଟାଇବାପାଇଁ ରହିଥାଆନ୍ତି । ମହର୍ଷି କଶ୍ୟପଙ୍କ ଆଶ୍ରମରେ ରହି ତପଶ୍ଚରଣ କରିବାଦ୍ୱାରା ତାଙ୍କ ଚିତ୍ତବୃତ୍ତି ଅତ୍ୟନ୍ତ ପ୍ରଶାନ୍ତ ଓ ପ୍ରଫୁଲ୍ଲ ଥାଏ । ସମ୍ରାଟଙ୍କୁ ଅନୁସରଣ କରି ମନ୍ତ୍ରୀ ଓ ବିଦ୍ୟାଧର ରାଜାମାନେ ମଧ୍ୟ ଆଶ୍ରମର ସୁଖ ଅନୁଭବ କରୁଥାନ୍ତି । ପତିଙ୍କ ସହିତ ପଚିଶଜଣ ରାଣୀ ମଧ୍ୟ ତପସ୍ୱିନୀ ଜୀବନଯାପନ ପୂର୍ବକ ଆଶ୍ରମସ୍ଥିତ ମୁନିଋଷିମାନଙ୍କ ସେବା କରି ଚାତୁର୍ମାସ୍ୟା ବ୍ରତ ପାଳନ କରୁଥାଆନ୍ତି ।

ଦିନେ ସମସ୍ତେ ବସି ବାର୍ତ୍ତାଳାପ କରୁଥିବା ବେଳେ ମୁନି ଓ ମୁନିପତ୍ନୀମାନେ ନରବାହନଦତ୍ତଙ୍କୁ କୌତୂହଳବଶତଃ ପ୍ରଶ୍ନ କଲେ, 'ରାଜନ୍ ! ମାନସବେଗ ଯେତେବେଳେ ନିଜର ମାୟାବଳରେ ରାଣୀ ମଦନମଞ୍ଜୁକାଙ୍କୁ ଅପହରଣ କରିନେଲା, ସେହି ବିରହାବସ୍ଥାରେ କିଏ କିପରି ଭାବରେ ଆପଣଙ୍କୁ ସାନ୍ତ୍ୱନା ଦେଉଥିଲା ? ଅନୁଗ୍ରହ କରି ଶୁଣାଇଲେ ଆମେ କୃତାର୍ଥ ହେବୁ ।' ସେମାନଙ୍କ ଆଗ୍ରହ ଦେଖି ନରବାହନଦତ୍ତ କହିବା ଆରମ୍ଭ କଲେ–

## ନରବାହନଦତ୍ତଙ୍କ ବିରହାନୁଭୂତି

'ଦୁଷ୍ଟ ମାନସବେଗ ଯେତେବେଳେ ମଦନମଞ୍ଜୁକାଙ୍କୁ ହରଣ କରିନେଲା ସେତେବେଳେ ମୋର ସେହି ବିରହ ଦୁଃଖ ଅବର୍ଣ୍ଣନୀୟ, ତଥାପି ଯାହା ମନେପଡୁଛି ସେଥିରୁ କିଛି ଆପଣମାନଙ୍କୁ କହି ଶୁଣାଇବି । ମୁଁ ଏବଂ ମୋର ହିତାକାଂକ୍ଷୀ ମନ୍ତ୍ରୀମାନେ ପ୍ରତ୍ୟେକଟି ଗୃହ, ଉଦ୍ୟାନ ଏବଂ ନଗରୀର ଗଳିକନ୍ଦି ତନ୍ନତନ୍ନ କରି ଖୋଜିଥିଲୁ । ଏପରି କୌଣସି ସ୍ଥାନ ନଥିଲା, ଯେଉଁଠାକୁ ଆମେ ଯାଇନଥିଲୁ । ସବୁଠାରୁ ନିରସ୍ତ ହୋଇ ମୁଁ ପାଗଳଙ୍କ ପରି ଉଦ୍ୟାନସ୍ଥିତ ଗୋଟିଏ ବୃକ୍ଷ ଛାୟାରେ ବସିଥାଏ । ଅବସର ଦେଖି ଗୋମୁଖ ମୋତେ ସାନ୍ତ୍ୱନା ଦେବାପାଇଁ କହିଲେ–

'ପ୍ରଭୁ ! ଆପଣ ଏପରି ଅଧୀର ହୁଅନ୍ତୁ ନାହିଁ । ଦେବୀ ମଦନମଞ୍ଜୁକାଙ୍କ ସହିତ ଶୀଘ୍ର ହିଁ ଆପଣଙ୍କର ମିଳନ ଘଟିବ । ଦେବତାମାନେ କହିଛନ୍ତି ଯେ ଆପଣ ମହାରାଣୀ

ମଦନମଞ୍ଜୁକାଙ୍କ ସହିତ ହିଁ ବିଦ୍ୟାଧର ଚକ୍ରବର୍ତ୍ତୀ ପଦବୀ ଲାଭ କରିବେ । ଦେବତାମାନଙ୍କ ବାକ୍ୟ ମିଥ୍ୟା ହେବାର ନୁହେଁ । ଧୀରମତି ପୁରୁଷମାନେ ଅସହ୍ୟ ବିରହବେଦନା ସହ୍ୟ କରି ପୁନର୍ମିଳନର ଆନନ୍ଦ ଉପଭୋଗ କରିଥାନ୍ତି । ରାଜା ରାମଚନ୍ଦ୍ର, ରାଜା ନନ୍ଦ ଏବଂ ଆପଣଙ୍କ ପୂର୍ବପୁରୁଷମାନେ ବିରହାନଳରେ ସନ୍ତପ୍ତ ହୋଇ ସୁଦ୍ଧା ସେମାନଙ୍କ ପ୍ରିୟତମା ପତ୍ନୀମାନଙ୍କୁ କଣ ଲାଭ କରିନାହାଁନ୍ତି ? ବିଦ୍ୟାଧର ଚକ୍ରବର୍ତ୍ତୀ ରାଜା ମୁକ୍ତାଫଳକେତୁ ପଦ୍ମାବତୀଙ୍କୁ ହରାଇ ପୁଣି କଣ ତାଙ୍କୁ ଲାଭ କରିନଥିଲେ ? ଦେବ ! ମୁଁ ସେହିକଥାହିଁ ଆପଣଙ୍କୁ ଶୁଣାଉଛି ।' ଏହାକହି ଗୋମୁଖ ନିଜର କଥା ଆରମ୍ଭ କଲେ—

## ଚକ୍ରବର୍ତ୍ତୀ ମୁକ୍ତାଫଳକେତୁ ଓ ରାଣୀ ପଦ୍ମାବତୀ କଥା

ବାରାଣସୀ ନାମରେ ଏକ ବିଶ୍ୱବିଖ୍ୟାତ ନଗରୀ ଅଛି । ଏହା ସ୍ୱୟଂ ଶଙ୍କରଙ୍କ ତୁଲ୍ୟ ସ୍ରୋତସ୍ୱିନୀ ଗଙ୍ଗାଦ୍ୱାରା ସୁଶୋଭିତ ଏବଂ ମୋକ୍ଷଦାୟକ । ବହୁ ଦେବମନ୍ଦିର ଉପରେ ଉଡୁଥିବା ପତାକାଗୁଡ଼ିକ ଦିନରାତି ସର୍ବଦା ପାପୀମାନଙ୍କୁ ପାପକ୍ଷୟ ନିମିତ୍ତ ଏହି ନଗରୀ ମଧ୍ୟକୁ ଆସିବାପାଇଁ ଇଙ୍ଗିତ ଦେଉଥାନ୍ତି । ମନ୍ଦିରଟି ଶ୍ୱେତ ପ୍ରସ୍ତରରେ ନିର୍ମିତ ହୋଇ ଶିବଭକ୍ତମାନଙ୍କଦ୍ୱାରା ପରିପୂର୍ଣ୍ଣ ହୋଇଥିବାଯୋଗୁଁ କୈଳାସ ପର୍ବତ ତୁଲ୍ୟ ମନେହେଉଥାଏ ।

ଏହି ବାରାଣସୀ ନଗରୀରେ ପ୍ରାଚୀନ କାଳରେ ବ୍ରହ୍ମଦତ୍ତ ବୋଲି ଜଣେ ରାଜା ଥିଲେ । ସେ ଭଗବାନ ଶିବଙ୍କ ପରମଭକ୍ତ । ବ୍ରାହ୍ମଣମାନଙ୍କ ରକ୍ଷାକର୍ତ୍ତା, ଶୂରବୀର, ଦାନୀ ଓ କ୍ଷମାଶୀଳ ରୂପେ ତାଙ୍କର ସୁଖ୍ୟାତି ଥିଲା । ତାଙ୍କର ଆଦେଶ ଏବଂ କୀର୍ତ୍ତି ଦୁର୍ଗମ ସ୍ଥାନଗୁଡ଼ିକରେ ମଧ୍ୟ ପ୍ରଚାରିତ ଥିଲା । ସମୁଦ୍ରର ପରପାର, ପୃଥିବୀର ସମସ୍ତ ସପ୍ତଦ୍ୱୀପ ତାଙ୍କ କୀର୍ତ୍ତିରେ ଧବଳିତ ହେଉଥିଲା । ତାଙ୍କର ଆନନ୍ଦଦାୟିନୀ ପ୍ରିୟତମା ପତ୍ନୀ ସୋମପ୍ରଭା । ରାଜା ବ୍ରହ୍ମଦତ୍ତ ରାଣୀଙ୍କ ମୁଖମଣ୍ଡଳ ଦର୍ଶନ କରିବାପାଇଁ ଅନେକ ସମୟରେ ଚକୋର ବ୍ରତ ଆଚରଣ କରିଥାନ୍ତି । ବାରାଣସୀର ମନ୍ତ୍ରୀ ଥିଲେ ବ୍ରାହ୍ମଣ ଶିବଭୂତି । ସେ ବିଦ୍‌ବତ୍ତା ଓ ଶାସ୍ତ୍ରଜ୍ଞାନରେ ଦେବଗୁରୁ ବୃହସ୍ପତିଙ୍କ ସମକକ୍ଷ ।

## ରାଜା ବ୍ରହ୍ମଦତ୍ତ ଓ ହଂସ

ଦିନେ ରାଜା ନିଜ ରାଜପ୍ରାସାଦର ଶିଖରଦେଶରେ ବସିଥାନ୍ତି । ରାତ୍ରିର ଅନ୍ଧକାର ଗର୍ଭରୁ ଦୁଇଟି ଉଜ୍ଜ୍ୱଳ ସୁବର୍ଣ୍ଣକାନ୍ତିଯୁକ୍ତ ହଂସ ଆକାଶମାର୍ଗରେ ଆସି ସେଠାରେ ଅବତରଣ

କଲେ । ମନେହେଲା ଆକାଶଗଙ୍ଗା ଗର୍ଭରୁ ଦୁଇଟି ସ୍ୱର୍ଣ୍ଣକମଳ ଯେପରି ଖସିପଡ଼ିଛି । ସେମାନଙ୍କୁ ବହୁ ରାଜହଂସ ପରିବେଷ୍ଟନ କରି ରହିଥାନ୍ତି । ବିସ୍ମୟ ବିସ୍ଫାରିତ ନେତ୍ରରେ ରାଜା ହଂସଦୁଇଟିକୁ ଦେଖୁଥିବା ବେଳେ ସେ ଦୁଇଟି ହଠାତ୍ ସେଠାରୁ ଅନ୍ତର୍ହିତ ହୋଇଗଲେ । ସେମାନଙ୍କୁ ପୁଣି ଦେଖିବାପାଇଁ ରାଜାଙ୍କର ଉତ୍ସୁକତା ବଢ଼ିଗଲା । ସେ ରାତିରେ ଆଉ ଶୋଇପାରିଲେ ନାହିଁ । ପ୍ରଭାତରୁ ରାତିରେ ଦେଖିଥିବା ଘଟଣାଟି ଆଦ୍ୟପ୍ରାନ୍ତ ମନ୍ତ୍ରୀ ଶିବଭୂତିଙ୍କ ନିକଟରେ ବର୍ଣ୍ଣନା କରି କହିଲେ ଯେ ଯଦି ସେ ସେହି ସୁବର୍ଣ୍ଣ ହଂସଯୁଗଳକୁ ଆଖି ପୂରାଇ ପୁଣି ନଦେଖନ୍ତି ତେବେ ରାଜ୍ୟ କିମ୍ବା ଜୀବନରେ ତାଙ୍କର କି ପ୍ରୟୋଜନ ? ବ୍ରହ୍ମଦତ୍ତଙ୍କ ଉତ୍କଣ୍ଠା ଶିବଭୂତିଙ୍କୁ ବ୍ୟଥିତ କଲା । ସେ ସମବେଦନା ପ୍ରକାଶ କରି କହିଲେ, ''ରାଜନ୍ ! ଏହାର ଏକ ଉପାୟ ଅଛି । ସେହି ଉପାୟ କହୁଛି ଶୁଣନ୍ତୁ ।

ବିଧାତାଙ୍କ ସୃଷ୍ଟିରେ ବିଭିନ୍ନ କର୍ମଫଳ ଅନୁଯାୟୀ ବହୁ ବିଚିତ୍ର ଜୀବ ଜନ୍ମଲାଭ କରୁଛନ୍ତି । ସେମାନଙ୍କ ସଂଖ୍ୟା ଗଣନାତୀତ । ସଂସାର ମୂଳତଃ ଦୁଃଖମୟ । କିନ୍ତୁ ମୋହବଶରୁ ଜୀବ ସୁଖଲାଭ କରୁଛି ବୋଲି ମନେ କରିଥାଏ । ବସନ, ଭୋଜନ, ପାନ ଓ ଗୃହ ଆନନ୍ଦର କାରଣ ବୋଲି ତାର ମନେହୋଇଥାଏ । ବିଭିନ୍ନ ଜାତି ଓ ଗୋତ୍ରରେ ଜନ୍ମଲାଭ କରିଥିବା ଜୀବବିଶେଷପାଇଁ ବିଧାତା ବିଭିନ୍ନ ବାସସ୍ଥଳୀ, ଖାଦ୍ୟପେୟ ଓ ବସନଭୂଷଣର ବ୍ୟବସ୍ଥା କରିଛନ୍ତି । ଏଥିପାଇଁ ରାଜନ୍ ! ଆପଣ ହଂସମାନଙ୍କର ବାସଯୋଗ୍ୟ ଏକ ବିଶାଳ ସରୋବର ଖନନ କରନ୍ତୁ । ତାହା ରକ୍ଷକମାନଙ୍କଦ୍ୱାରା ସୁରକ୍ଷିତ ଏବଂ ବିଘ୍ନ ରହିତ ହେଉ । ସରୋବରଟିକୁ ପଦ୍ମପୁଷ୍ପରେ ପୂର୍ଣ୍ଣ କରନ୍ତୁ । ସରୋବର ତଟରେ ପକ୍ଷୀମାନଙ୍କପାଇଁ ଉତ୍ତମ ଆହାର ସାମଗ୍ରୀ ସହିତ ବଞ୍ଚିବାର ବ୍ୟବସ୍ଥା କଲେ ଦୂରଦୂରାନ୍ତରରୁ ବିବିଧ ଜଳଚର ପକ୍ଷୀ ଆକୃଷ୍ଟ ହୋଇ ଆସିବେ । ସେମାନଙ୍କ ମଧ୍ୟରେ ଆପଣ ଦେଖିଥିବା ସୁବର୍ଣ୍ଣ ହଂସଯୁଗଳ ମଧ୍ୟ ଅବିଳମ୍ବେ ଆସିଯିବାର ସମ୍ଭାବନା ଅଛି । ଆପଣ ସେମାନଙ୍କୁ ଦେଖି ନିଜର ଦର୍ଶନଲାଳସା ମେଣ୍ଟାଇ ପାରିବେ । ତେଣୁ ଆଉ ଦୁଃଖ କରନ୍ତୁ ନାହିଁ । ଯଥାଶୀଘ୍ର କାର୍ଯ୍ୟାନୁଷ୍ଠାନ କରିବାପାଇଁ ପ୍ରୟାସ କରନ୍ତୁ ।

ମନ୍ତ୍ରୀ ଶିବଭୂତିଙ୍କ କଥା ଶୁଣି ରାଜା ବ୍ରହ୍ମଦତ୍ତ କାଳବିଳମ୍ବ ନକରି ଏକ ବିରାଟ ସରୋବର ଖନନ କରାଇଲେ । ଧୀରେଧୀରେ ଏହା ହଂସ, ସାରସ, ଚକ୍ରବାକ ପ୍ରଭୃତି ପକ୍ଷୀ ସମୂହରେ କୋଳାହଳମୟ ହୋଇଉଠିଲା । ଦିନେ ପୂର୍ବୋକ୍ତ ସୁବର୍ଣ୍ଣ ହଂସଯୁଗଳ ମଧ୍ୟ ଆସି କମଳିନୀ ଲତାପୁଞ୍ଜ ମଧ୍ୟରେ କ୍ରୀଡ଼ା କରିବା ଆରମ୍ଭ କଲେ ।

ସରୋବରର ରକ୍ଷକମାନଙ୍କଠାରୁ ଏହି ସୁସମ୍ବାଦ ଲାଭ କରି ରାଜା ତାଙ୍କର ମନୋରଥ ସିଦ୍ଧ ହୋଇଥିବାରୁ ଉଲ୍ଲସିତ ହୋଇଉଠିଲେ । ସେ ସେହି ମୁହୂର୍ତ୍ତରେ ହିଁ ସରୋବର ତୀରରେ ଉପସ୍ଥିତ ହୋଇ ଦୂରରୁ ପକ୍ଷୀଯୁଗଳର ମାନସ ଅର୍ଚ୍ଚନା କଲେ; ସେମାନଙ୍କୁ କ୍ଷୀରପାନ ଦେଇ ଯେପରି ସେମାନଙ୍କର ଅସୁବିଧା ନହୁଏ ତା'ର ବ୍ୟବସ୍ଥା ମଧ୍ୟ କରାଗଲା ।

ହଂସଯୁଗଳର ଶରୀର ବିଶୁଦ୍ଧ ସୁବର୍ଣ୍ଣ ପରି ପ୍ରତିଭାତ ହେଉଥିଲା । ସେମାନଙ୍କର ଚକ୍ଷୁଗୁଡ଼ିକ ମୁକ୍ତା, ଚଞ୍ଚୁ ପ୍ରବାଳ, ଚରଣ ବୈଦୂର୍ଯ୍ୟ ମଣିର ଶୋଭା ଧାରଣ କରିଥିଲେ । ରାଜାଙ୍କ ବ୍ୟବହାରରେ ନିର୍ଭୟ ହୋଇ ହଂସଯୁଗଳ ଧୀରେ ଧୀରେ ତାଙ୍କ ନିକଟକୁ ଆସୁଥାନ୍ତି । ରାଜା ମଧ୍ୟ ନିଜ ଭାବନାରେ ଲୀନ ହୋଇ ସେହିଦିନଠାରୁ ସେହି ସରୋବର କୂଳରେ ହିଁ ରହୁଥାନ୍ତି ।

ଦିନେ ରାଜା ବ୍ରହ୍ମଦତ୍ତ ସରୋବରର ଚତୁଃପାର୍ଶ୍ୱରେ ପରିକ୍ରମା କରୁଥିବା ବେଳେ ଏକ ଅଦ୍ଭୁତ ଦୃଶ୍ୟ ତାଙ୍କର ଦୃଷ୍ଟିଗୋଚର ହେଲା । କେହି ଜଣେ ଅମ୍ଳାନ ପୁଷ୍ପଦ୍ୱାରା ସରୋବର ତଟର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପୂଜା କରି ଯାଇଛି । ସେ ରକ୍ଷକମାନଙ୍କୁ ପୂଜକର ପରିଚୟ ସମ୍ପର୍କରେ ଜିଜ୍ଞାସା କଲେ । ସେମାନେ ଜଣାଇଲେ ଯେ ସେହି ସୁବର୍ଣ୍ଣ ହଂସଯୁଗଳ ପ୍ରତିଦିନ ତ୍ରିସଂଧ୍ୟାରେ ସରୋବରରେ ସ୍ନାନକରି ଏଠାରେ ପୂଜା କରନ୍ତି; ଏବଂ ଦୀର୍ଘ ସମୟ ଧରି ଧ୍ୟାନରେ ନିମଗ୍ନ ରହନ୍ତି । ମହାରାଜ ! ଏପରି ଅଦ୍ଭୁତ ଘଟଣା ଆମେ କେବେ ଦେଖିବା ତ ଦୂରର କଥା ଶୁଣି ବି ନଥିଲୁ ।

ରକ୍ଷକମାନଙ୍କଠାରୁ ଏହା ଶୁଣି ରାଜା ମଧ୍ୟ ବିସ୍ମିତ ହେଲେ । ପକ୍ଷୀ ଜନ୍ମଲାଭ କରି ଏପରି ଧର୍ମାଚରଣ ତାଙ୍କୁ ଅଦ୍ଭୁତ ମନେହେଲା । ଏହା ମଧ୍ୟରେ ନିଶ୍ଚିତ ଭାବେ କିଛି ରହସ୍ୟ ଲୁକ୍‌କାୟିତ ଅଛି ବୋଲି ସେ ନିଶ୍ଚିତ ହେଲେ । ସେହି ରହସ୍ୟ ଉଦ୍‌ଘାଟନ କରିବାପାଇଁ ତାଙ୍କର ପ୍ରବଳ ଆଗ୍ରହ ଜାତ ହେଲା । ସେ ତପଶ୍ଚରଣ କରି ନିଜର ଅଭିଳାଷ ପୂର୍ଣ୍ଣ କରିବାପାଇଁ ଉଦ୍ୟତ ହେଲେ ।

ପରଦିନଠାରୁ ରାଜା ବ୍ରହ୍ମଦତ୍ତ ପତ୍ନୀ ଓ ମନ୍ତ୍ରୀମାନଙ୍କ ସହ ନିରାହାର ରହି ଭଗବାନ ଶଙ୍କରଙ୍କ ସମ୍ମୁଖରେ ତପଶ୍ଚରଣ ଆରମ୍ଭ କଲେ । ଏଗାର ଦିନ ବିତିଗଲା । ଦ୍ୱାଦଶ ଦିନ ରାତ୍ରିରେ ହଂସଯୁଗଳ ସ୍ୱପ୍ନରେ ଆସି ମନୁଷ୍ୟତୁଲ୍ୟ ସ୍ପଷ୍ଟଭାବରେ ରାଜାଙ୍କୁ କହିଲେ, 'ରାଜନ୍ ! ଉଠନ୍ତୁ । ପ୍ରଭାତରୁ ଆପଣ ବ୍ରତପାରଣା କରନ୍ତୁ । ତା'ପରେ ଆମେ ଏକାନ୍ତରେ ମନ୍ତ୍ରୀ ଓ ରାଣୀଙ୍କ ସମ୍ମୁଖରେ ଆପଣଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇବୁ ।' ଏହାକହି

ହଂସ ଦୁଇଟି ଅନ୍ତର୍ହିତ ହେଲେ । ରାଜାଙ୍କର ନିଦ୍ରାଭଙ୍ଗ ହେଲା । ପ୍ରଭାତରୁ ସେ ମନ୍ତ୍ରୀ ଓ ପତ୍ନୀମାନଙ୍କ ସହିତ ବ୍ରତପାରଣା କଲେ । ଭୋଜନ ପରେ ସମସ୍ତେ ଯାଇ ଜଳକ୍ରୀଡ଼ା ଗୃହରେ ବସିଥିବାବେଳେ ସେହି ଅଦ୍ଭୁତ ହଂସଯୁଗଳ ଆସି ସେଠାରେ ଉପସ୍ଥିତ ହେଲେ । ରାଜା ଯଥୋଚିତ ଅଭ୍ୟର୍ଥନା କରି ସେମାନଙ୍କ ସମ୍ପର୍କରେ ଜାଣିବାପାଇଁ ଉତ୍କଣ୍ଠା ପ୍ରକାଶ କରନ୍ତେ ଗୋଟିଏ ହଂସ ଆତ୍ମପରିଚୟ ଦେବା ଆରମ୍ଭ କଲା ।

## ସୁବର୍ଣ୍ଣ ହଂସର ଆତ୍ମପରିଚୟ

ଆପଣ ପର୍ବତରାଜ ମନ୍ଦରଙ୍କ କଥା ଶୁଣିଥିବେ । ଏହା ବିଶ୍ୱବିଶ୍ରୁତ । ଏହାର ରତ୍ନମୟ କାନନ ସମୂହରେ ଦେବତାମାନେ ସର୍ବଦା ବିଚରଣ କରୁଥାନ୍ତି । ସମୁଦ୍ର ମନ୍ଥନ ବେଳେ ଏହାର ଶରୀରରେ ଅମୃତ ବିନ୍ଦୁ ସବୁ ସିଞ୍ଚିତ ହୋଇଥିବାରୁ ଏହି ପର୍ବତ ଉପରେ ଜାତ ବୃକ୍ଷଲତାଗୁଡ଼ିକର ସର୍ବାଙ୍ଗ ଜୀବମାନଙ୍କର ଜରା, ମୃତ୍ୟୁ ହରଣ କରିବାରେ ସମର୍ଥ । ବିଭିନ୍ନ ବହୁମୂଲ୍ୟ ମଣିମୁକ୍ତା ଆଚ୍ଛାଦିତ ଶୃଙ୍ଗଗୁଡ଼ିକ ଉପରେ ଭଗବାନ ଶଙ୍କରଙ୍କ ବିଳାସ ଉଦ୍ୟାନ । ତେଣୁ କୈଳାସ ଅପେକ୍ଷା ଏହା ତାଙ୍କର ଅଧିକ ପ୍ରିୟ ।

ଏକଦା ଶିବ ପାର୍ବତୀଙ୍କ ସହିତ କେଳି ରଚନା କରି ଦେବତାମାନଙ୍କର କୌଣସି କାର୍ଯ୍ୟସିଦ୍ଧି ଉପଲକ୍ଷରେ ଅନ୍ୟତ୍ର ଚାଲିଯାନ୍ତି । ପାର୍ବତୀ ଦେବତାମାନଙ୍କଦ୍ୱାରା ଆଶ୍ୱାସିତ ହେଲେ ମଧ ବିରହ ବେଦନା ସହ୍ୟ କରିନପାରି ସେମାନଙ୍କ ବିଳାସସ୍ଥଳୀଗୁଡ଼ିକ ପରିକ୍ରମା କରୁଥାନ୍ତି । ସମୟକ୍ରମେ ବସନ୍ତଋତୁ ଆସି ପ୍ରବେଶ କଲା । ପାର୍ବତୀଙ୍କ ବିରହବ୍ୟାକୁଳତା ବଢ଼ିବାକୁ ଲାଗିଲା । ସେ ଶିବଙ୍କ ସ୍ମୃତିରେ ନିମଗ୍ନା ରହି କୌଣସି ବୃକ୍ଷଛାୟାରେ ଯାଇ ବସିଗଲେ । ଶିବଗଣମାନେ ପାର୍ବତୀଙ୍କର ଏହି ମନୋବେଦନା ଦୂର କରିବା ପାଇଁ ଆପ୍ରାଣ ଉଦ୍ୟମ କରୁଥାନ୍ତି ।

ଏ ସମୟରେ ପାର୍ବତୀଙ୍କ ଚାମରଧାରିଣୀ ଜୟାର କନ୍ୟା ଚନ୍ଦ୍ରଲେଖା ନିକଟରେ ଥିବା ତା'ର ଅନୁରୂପ ରୂପ ଓ ଯୌବନ ସମ୍ପନ୍ନ ମଣିପୁଷ୍ପେଶ୍ୱର ନାମକ ଜଣେ ଶ୍ରେଷ୍ଠ ଗଣପ୍ରତି ସାଭିଳାଷ ଦୃଷ୍ଟିପାତ କରନ୍ତେ ସେ ମଧ କୁମାରୀଟିକୁ କାମବାସନାପୂର୍ଣ୍ଣ ଦୃଷ୍ଟିରେ ଦେଖିବାକୁ ଲାଗିଲା । ଉଭୟଙ୍କ ଏପରି ଆଚରଣ ଦେଖି ନିକଟରେ ଠିଆ ହୋଇଥିବା ଅନ୍ୟ ଦୁଇଜଣ ଗଣ (ସେବକ) ପିଙ୍ଗେଶ୍ୱର ଓ ଗୁହେଶ୍ୱର ପରସ୍ପରକୁ ଚାହିଁ ଧୀରେ ଧୀରେ ହସିବାକୁ ଲାଗିଲେ ।

ସେମାନଙ୍କ ହାସ୍ୟ ପାର୍ବତୀଙ୍କ ଦୃଷ୍ଟି ଏଡ଼ାଇପାରିଲା ନାହିଁ । କୌଣସି ଗଣପ୍ରତି ବିନାକାରଣରେ ସେମାନେ ଏପରି ହସୁଥିବା ଭାବି ତାଙ୍କର କ୍ରୋଧ ଜାତ ହେଲା । ସେ ଏଣେତେଣେ ଦୃଷ୍ଟି ଫେରାଇଲେ । ଦେଖିଲେ ଚନ୍ଦ୍ରଲେଖା ଓ ମଣିପୁଷ୍ପେଶ୍ୱର ପରସ୍ପରକୁ ସାଭିଳାଷ ଦୃଷ୍ଟିରେ ଚାହିଁ ରହିଛନ୍ତି । ବିରହ ବେଦନାରେ ବ୍ୟାକୁଳିତା ଦେବୀପାର୍ବତୀ ରୁଷ୍ଟ ହୋଇ କହିଲେ, 'ବାଃ ଭଗବାନ ଶଙ୍କରଙ୍କ ଅନୁପସ୍ଥିତିରେ ଏମାନେ ଖୁବ୍ କନ୍ଦର୍ପ ଲୀଳା କରୁଛନ୍ତି । ଆଉ ଏ ଦୁଇଟି ତାଙ୍କୁ ଦେଖି ଖୁବ୍ ହସୁଛନ୍ତି । ତେଣୁ ଉଦ୍ଧତ ଓ କାମାନ୍ଧ ଏହି ଚନ୍ଦ୍ରଲେଖା ଓ ମଣିପୁଷ୍ପେଶ୍ୱର ମର୍ତ୍ତ୍ୟଲୋକରେ ଯାଇ ମାନବୀ ଓ ମାନବ ରୂପରେ ଜନ୍ମ ହୁଅନ୍ତୁ । ସେମାନେ ସେଠାରେ ପତିପତ୍ନୀ ରୂପେ ରହନ୍ତୁ । କିନ୍ତୁ ଏ ଦିଇଟି ହାସ୍ୟକାରୀ ପିଙ୍ଗେଶ୍ୱର ଓ ଗୁହେଶ୍ୱର ପୃଥିବୀ ପୃଷ୍ଠରେ ଜନ୍ମ ହୋଇ ଅଶେଷ ଦୁଃଖ ଭୋଗ କରିବେ । ପ୍ରଥମେ ସେମାନେ ଦୁଃଖୀ ବ୍ରାହ୍ମଣ ହେବେ, ତାପରେ ବ୍ରହ୍ମରାକ୍ଷସ, ତାପରେ ପିଶାଚ, ତାପରେ ଚାଣ୍ଡାଳ, ତାପରେ ଚୋର, ତାପରେ ଛିନ୍ନପୁଚ୍ଛ କୁକୁର ଏବଂ ଶେଷରେ ବିଭିନ୍ନ ପ୍ରକାର ପକ୍ଷୀ ରୂପେ ଜନ୍ମନେବେ । ଏମାନେ ମୋର ଦୁଃଖବେଳେ ହାସ୍ୟ ପ୍ରକାଶ କରିବାର ଅପରାଧ କରିଛନ୍ତି । ଏମାନଙ୍କର ଏ ଅଶିଷ୍ଟତା ଅଜ୍ଞାନବଶତଃ ହୋଇନାହିଁ । ସେମାନେ ଜାଣିଶୁଣି ହସିଛନ୍ତି ।' ପାର୍ବତୀଙ୍କର ଏପରି କ୍ରୋଧ ଓ ଅଭିଶାପ ଦେବା ଦେଖି ଧୂର୍ତ୍ତଟ ନାମକ ଜଣେ ଗଣ ପ୍ରତିବାଦ କରି କହିଲା, 'ଦେବି ! ଆପଣଙ୍କର ଏପରି ଅଭିଶାପ ସମୁଚିତ ହେଲାନାହିଁ । ଛୋଟିଆ ଅପରାଧଟିଏ ପାଇଁ ଉତ୍ତମ ଗଣମାନଙ୍କ ପ୍ରତି ଏପରି କଠୋର ଅଭିଶାପ ଦେବା ଯଥାର୍ଥ ହୋଇନାହିଁ ।' ଏହା ଶୁଣିବା ମାତ୍ରେ ପାର୍ବତୀଙ୍କ କ୍ରୋଧ ଆହୁରି ବଢ଼ିଗଲା । ସେ ତାକୁ ମଧ୍ୟ ମାନବଯୋନିରେ ଜନ୍ମନେବା ନିମିତ୍ତ ଅଭିଶପ୍ତ କଲେ ।

ଦେବୀ ଏହିପରି ଉତ୍କଟ ଶାପ ପ୍ରଦାନ କରୁଥିବା ଦେଖି ଚନ୍ଦ୍ରଲେଖାର ମାତା ଚାମରଧାରିଣୀ ଜୟା ତାଙ୍କ ପାଦତଳେ ଆସି ପଡ଼ିଗଲା । ସେ ଅଜ୍ଞାନବଶତଃ କରିଥିବା ଅପରାଧପାଇଁ ସେବକମାନଙ୍କୁ ଆଉ ଅଧିକ ଅଭିଶାପ ନଦେବା ନିମିତ୍ତ ବିନୀତ ପ୍ରାର୍ଥନା ଜଣାଇଲା । ଜୟାର ପ୍ରାର୍ଥନା ପାର୍ବତୀଙ୍କ କ୍ରୋଧକୁ କିଛି ପରିମାଣରେ ଶାନ୍ତ କଲା । ସେ ଶାପାନ୍ତ ଘୋଷଣା କରି କହିଲେ, 'ଏ ସମସ୍ତେ ଧୀରେ ଧୀରେ ପୂର୍ବଜନ୍ମ ସମ୍ପର୍କରେ ଜ୍ଞାନଲାଭ କରି ସିଦ୍ଧୀଶ୍ୱର ନାମକ କ୍ଷେତ୍ରରେ ମିଳିତ ହେବେ । ଏହି କ୍ଷେତ୍ରରେ ପୂର୍ବେ ବ୍ରହ୍ମା ପ୍ରଭୃତି ତପସ୍ୟା କରିଥିଲେ । ସେଠାରେ ଏମାନେ ଭଗବାନ ଶଙ୍କରଙ୍କ ଦର୍ଶନଲାଭ କରି ଶାପମୁକ୍ତ ହେବେ ଏବଂ ଆମ ସହିତ ଆସି ମିଳିତ ହେବେ । ମନୁଷ୍ୟ ଜନ୍ମରେ ଚନ୍ଦ୍ରଲେଖା, ମଣିପୁଷ୍ପେଶ୍ୱର ଏବଂ ଧୂର୍ତ୍ତଟ ସୁଖମୟ ଜୀବନଯାପନ କରିବେ । କିନ୍ତୁ ଅନ୍ୟ ଦୁଇଜଣଙ୍କ ଜୀବନ ଦୁଃଖମୟ ହିଁ ହେବ ।'

ଦେବୀ ପାର୍ବତୀ ଏହିପରି ଭାବରେ ଶାପାନ୍ତ ଘୋଷଣା କରୁଥିବା ବେଳେ ଭଗବାନ ଶଙ୍କରଙ୍କ ଅନୁପସ୍ଥିତି ଜାଣି ଅନ୍ଧକ ନାମକ ଏକ ରାକ୍ଷସ ସେଠାରେ ଆସି ଉପସ୍ଥିତ ହେଲା । ସେ ଦେବୀ ପାର୍ବତୀଙ୍କୁ ଚାହୁଁଥାଏ । କିନ୍ତୁ ଦେବୀଙ୍କ ସେବକ ଓ ପରିଚାରକମାନଙ୍କ ଦ୍ୱାରା ପରାଜିତ ହୋଇ ସେ ସେଠାରୁ ପଳାୟନ କଲା । ଭଗବାନ ଶଙ୍କର ଏକଥା ଜାଣିପାରି ଅନ୍ଧକକୁ ଯାଇ ହତ୍ୟା କଲେ । ସେତେବେଳକୁ ଦେବତାମାନଙ୍କ କାର୍ଯ୍ୟ ସିଦ୍ଧ ହୋଇଯାଇଥାଏ ।

ଶିବ ପାର୍ବତୀଙ୍କ ନିକଟକୁ ଫେରିଆସିଲେ । ପାର୍ବତୀଙ୍କଠାରୁ ରାକ୍ଷସ ଅନ୍ଧକର ଧୃଷ୍ଟତା କଥା ଶୁଣି ଶିବ କହିଲେ 'ଦେବି ! ସେ ତୁମର ଅନ୍ୟତମ ମାନସପୁତ୍ର । ମୁଁ ତ ତାକୁ ବଧ କରିଛି । ବର୍ତ୍ତମାନ ତାର ଚର୍ମ ଓ ଅସ୍ଥି ହିଁ ନିଃଶେଷ ଅଛି । ତେଣୁ ସେ ବର୍ତ୍ତମାନ ଭୃଙ୍ଗୀ ହେବ ।' ଏହା କହି ଭଗବାନ ଶଙ୍କର ପାର୍ବତୀଙ୍କୁ ସନ୍ତୁଷ୍ଟ କଲେ । ଶିବପାର୍ବତୀ ପୁଣି କେଳିବିଳାସରେ ସମୟ କଟାଉଥିବା ବେଳେ ଅଭିଶପ୍ତ ପାଞ୍ଚଜଣ ଶିବଗଣ ଯାଇ ପୃଥିବୀ ପୃଷ୍ଠରେ ଜନ୍ମଗ୍ରହଣ କରିଥାନ୍ତି ।

ରାଜନ୍ ! ଆପଣ ପ୍ରଥମେ ପିଙ୍ଗେଶ୍ୱର ଓ ଗୁହେଶ୍ୱରର କଥା ଶୁଣନ୍ତୁ । ସେମାନଙ୍କ ଜୀବନ ବୃତ୍ତାନ୍ତ ଅତ୍ୟନ୍ତ ବିସ୍ମୟକର ।

## ପିଙ୍ଗେଶ୍ୱର ଓ ଗୁହେଶ୍ୱର କଥା

ପୃଥିବୀ ପୃଷ୍ଠରେ ଯଜ୍ଞସ୍ଥଳ ନାମକ ଏକ ଅଗ୍ରହାର ଅଛି । ସେଠାରେ ଯଜ୍ଞସୋମ ନାମକ ଜଣେ ଧନଶାଳୀ ଓ ଗୁଣବାନ ବ୍ରାହ୍ମଣ ବାସ କରୁଥିଲେ । ମଧ୍ୟମ ବୟସରେ ତାଙ୍କର ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ଜ୍ୟେଷ୍ଠର ନାମ ହରିସୋମ ଏବଂ କନିଷ୍ଠର ନାମ ଦେବସୋମ । କୈଶୋର ଅବସ୍ଥାରେ ଉଭୟଙ୍କ ଉପନୟନ ସଂସ୍କାର କରାଗଲା । ଏହା ପରେପରେ ବ୍ରାହ୍ମଣ ଦୁର୍ଭାଗ୍ୟବଶତଃ ଧନସମ୍ପତ୍ତି ହରାଇ ବସିଲେ । ଶେଷରେ ପତ୍ନୀ ସହିତ ତାଙ୍କର ମୃତ୍ୟୁ ମଧ୍ୟ ହେଲା ।

ପିତାମାତାଙ୍କ ମୃତ୍ୟୁ ପରେ ପୁତ୍ର ଦୁଇଟି ନିରାଶ୍ରୟ ହୋଇପଡ଼ିଲେ । ସେମାନଙ୍କର କୌଣସି ଜୀବିକା ମଧ୍ୟ ନଥିଲା । ଯାହା ବା କିଛି ସ୍ଥାବର ସମ୍ପତ୍ତି ଥିଲା ତାହା ବନ୍ଧୁ ସ୍ୱଜନ ମାଡ଼ି ବସିଲେ । ଏପରି ପରିସ୍ଥିତିରେ ପଡ଼ି ଉଭୟେ ଚିନ୍ତା କଲେ ଯେ ବର୍ତ୍ତମାନ ସେମାନେ ନିରାଶ୍ରୟ ଓ ନିରନ୍ନ । ଭିକ୍ଷା ବ୍ୟତୀତ ସେମାନଙ୍କର ଆଉ ଅନ୍ୟ ଜୀବିକା ନାହିଁ । ସେଠାରେ ଭିକ୍ଷା ମିଳିବା ମଧ୍ୟ କଷ୍ଟକର ହେଲାଣି । ଏଣୁ, ଦୂର ହେଲେ ସୁଦ୍ଧା, ଅଜାଘରକୁ ଚାଲିଯିବା

ଉଚିତ ହେବ । ଯଦିଓ ସେମାନେ ଏତେ ନୀଚ ସ୍ତରକୁ ଆସିଯାଇଛନ୍ତି ତଥାପି ସେମାନଙ୍କର କିଛି ସ୍ୱାଭିମାନ ଅଛି । କିନ୍ତୁ ବର୍ତ୍ତମାନ ତା'ର କିଛି ମୂଲ୍ୟ ନାହିଁ । ବିନା ଡାକରାରେ ଅଜାଙ୍କ ଘରକୁ ଗଲେ ସେଠାରେ କିଏ ବା ସେମାନଙ୍କ ଆଦର କରିବ ? ତଥାପି ତ ଯିବାକୁ ପଡ଼ିବ; ତାଛଡ଼ା ଅନ୍ୟ କିଛି ଉପାୟ ନାହିଁ ।

ଏହିପରି ବିଚାର କରି ଦୁଇଭାଇ ଭିକ୍ଷାଟନ ପୂର୍ବକ ଅଜା ରହୁଥିବା ଅଗ୍ରହାରରେ ଯାଇ ପହଞ୍ଚିଲେ, କିନ୍ତୁ ଦୁର୍ଭାଗ୍ୟବଶତଃ ସେମାନେ ସେଠାରେ ପହଞ୍ଚିବା ବେଳକୁ ସେମାନଙ୍କର ଅଜା ଓ ଆଈ ପରଲୋକକୁ ଚାଲିଯାଇଥାନ୍ତି ।

ଅଜାଙ୍କ ମୃତ୍ୟୁ ସମ୍ବାଦରେ ହରିସୋମ ଓ ଦେବସୋମ ନିରାଶ ହୋଇପଡ଼ିଲେ । ଶରୀର ଧୂଳିଧୂସରିତ, ପେଟରେ କ୍ଷୁଧା । ତେଣୁ ସେମାନେ ବାଧ ହୋଇ ଉଦ୍‌ବିଗ୍ନ ଚିତ୍ତରେ ସେମାନଙ୍କର ଉଭୟ ମାତୁଳ ଯଜ୍ଞଦେବ ଓ କ୍ରତୁଦେବଙ୍କ ଗୃହରେ ଯାଇ ଉପସ୍ଥିତ ହେଲେ । ମାମୁମାନେ ଥିଲେ କୁଳୀନ ବ୍ରାହ୍ମଣ ଓ ଧନଶାଳୀ । ସେମାନେ ଭଣଜାମାନଙ୍କୁ ଖାଇବା ପିନ୍ଧିବା ଦେଇ ସ୍ୱଗୃହରେ ଆଶ୍ରୟ ଦେଲେ । ମାମୁ ଓ ମାଇଁମାନଙ୍କ ଆଦର ଯତ୍ନ ପାଇ ବାଳକଦ୍ୱୟ ସେଠାରେ ବିଦ୍ୟାଭ୍ୟାସ କରିବାକୁ ଲାଗିଲେ ।

କିନ୍ତୁ ବିଧିର ବିଡ଼ମ୍ବନା । ଏମାନେ ମାମୁଙ୍କ ଘରେ ରହିବା ଯୋଗୁଁ ତାଙ୍କର ମଧ୍ୟ ଧନରାଶି କ୍ଷୀଣ ହେବାକୁ ଲାଗିଲା । ନୌକର ଚାକରମାନେ ଅନ୍ୟତ୍ର ଚାଲିଗଲେ । ପରିସ୍ଥିତି ଦୁର୍ବିସହ ହୋଇପଡ଼ିଲା । ଦିନେ ମାମୁମାନେ ଆଦରର ସହିତ ଭଣଜାମାନଙ୍କୁ କହିଲେ ଯେ ଧନାଭାବ ଯୋଗୁଁ ପଶୁମାନଙ୍କୁ ଜଗିବାପାଇଁ ଆଉ ଜଗୁଆଳି ରଖିବା ସମ୍ଭବ ହୋଇପାରୁନାହିଁ । ତେଣୁ ସେମାନେ ପଶୁମାନଙ୍କର ରକ୍ଷଣାବେକ୍ଷଣ କରନ୍ତୁ । ହରିସୋମ ଓ ଦେବସୋମ ମାମୁମାନଙ୍କ ପରିସ୍ଥିତି ହୃଦୟଙ୍ଗମ କରି ଶୋକାକୁଳ ମନରେ ଏହା ସ୍ୱୀକାର କଲେ ।

ସେହିଦିନଠାରୁ ଉଭୟ ବାଳକ ସକାଳୁ ପଶୁମାନଙ୍କୁ ନେଇ ଅରଣ୍ୟକୁ ଚାଲିଯାନ୍ତି ଏବଂ ସଂଧ୍ୟାବେଳେ ଶ୍ରାନ୍ତକ୍ଳାନ୍ତ ହୋଇ ଘରକୁ ଫେରନ୍ତି । ଦେବୀଙ୍କ ଅଭିଶାପରୁ ସେମାନେ ଏପରି କଷ୍ଟ ଭୋଗୁଥିବା ବେଳେ ଦିନେ ଗୋଠ ମଧ୍ୟରୁ କିଛି ପଶୁ ଚୋରି ହୋଇଗଲେ ଏବଂ ଆଉ କେତୋଟିକୁ ବାଘ ଖାଇଦେଲା । ଏଥିରେ ମାମୁମାନେ ଉଦ୍‌ବିଗ୍ନ ହୋଇପଡ଼ିଲେ । ଏହାର କିଛିଦିନ ମଧ୍ୟରେ ଯଜ୍ଞାନୁଷ୍ଠାନପାଇଁ ପାଳନ କରାଯାଇଥିବା ଗୋଟିଏ ଗାଈ ଓ ଗୋଟିଏ ଛେଳି ମଧ୍ୟ ହଜିଗଲେ । ମାମୁମାନଙ୍କ ଭୟରେ ସେମାନେ ଆଉ ଗୃହକୁ ପ୍ରତ୍ୟାବର୍ତ୍ତନ ନକରି ହଜିଥିବା ପଶୁମାନଙ୍କ ସନ୍ଧାନରେ ଯାଇ ଅରଣ୍ୟ ମଧ୍ୟରେ

ପ୍ରବେଶ କଲେ । ବଣ ମଧ୍ୟରେ ଛେଳିଟିକୁ ବାଘ ଅଧାଖାଇ ଛାଡ଼ିଦେଇଥାଏ । ଏହା ଦେଖି ସେମାନଙ୍କ ଦୁଃଖର ସୀମା ରହିଲା ନାହିଁ । ଯଜ୍ଞପାଇଁ ଉଦ୍ଦିଷ୍ଟ ଛେଳିଟିକୁ ବାଘ ଖାଇଯାଇଥିବାରୁ ମାମୁମାନେ ଯେ ତାଙ୍କ ଉପରେ ଅତ୍ୟନ୍ତ କ୍ରୋଧାନ୍ୱିତ ହେବେ ଏକଥା ଚିନ୍ତାକରି ସେମାନେ ଆଉ ଘରକୁ ନ ଫେରିବା ନିମିତ୍ତ ନିଷ୍ପତ୍ତି ନେଲେ । ବାଘ ଛାଡ଼ିଯାଇଥିବା ଛେଳିର ଅବଶିଷ୍ଟ ମାଂସରେ କ୍ଷୁଧା ନିବାରଣ ପୂର୍ବକ ପୁଣି ଭିକ୍ଷାବୃତ୍ତି କରିବାପାଇଁ ଅନ୍ୟତ୍ର ଚାଲିଯିବା ସକାଶେ ସେମାନେ ନିଶ୍ଚୟ କଲେ । ସେଠାରେ ମାଂସ ସବୁ କାଟି ନିଆଁରେ ପୋଡୁଥିବା ବେଳେ ସେମାନଙ୍କୁ ଖୋଜିଖୋଜି ମାମୁମାନେ ଆସି ହଠାତ୍ ପହଞ୍ଚିଗଲେ । ବାଳକ ଦୁଇଟି ଦୂରରୁ ସେମାନଙ୍କୁ ଦେଖି ଭୟରେ ଦୌଡ଼ିବାକୁ ଲାଗିଲେ । ମାମୁମାନଙ୍କ ନିକଟରେ ପ୍ରକୃତ ଘଟଣା ପ୍ରକାଶ କରିବାପାଇଁ ଆଉ ଅବସର ନଥିଲା ।

ମାମୁମାନେ ଭଣଜାମାନଙ୍କୁ ମାଂସ ପୋଡ଼ି ଖାଉଥିବା ଦେଖି ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇଉଠିଲେ । ମାଂସର ଲାଳସାରେ ଯଜ୍ଞଛାଗକୁ ଖାଇଥିବା ଯୋଗୁଁ ସେମାନେ ଉଭୟଙ୍କୁ ମାଂସଭୋଜୀ ବ୍ରହ୍ମରାକ୍ଷସ ହେବାପାଇଁ ଅଭିଶାପ ଦେଲେ ।

ମାମୁମାନଙ୍କ ଅଭିଶାପରେ ହରିସୋମ ଓ ଦେବସୋମ ତତ୍କ୍ଷଣାତ୍ ତୀକ୍ଷ୍ଣଦନ୍ତ, ରୁକ୍ଷକେଶ ଏବଂ ବିକୃତମୁଖ ବ୍ରହ୍ମରାକ୍ଷସରେ ପରିଣତ ହେଲେ । ପ୍ରାଣୀମାନଙ୍କ ମାଂସଭକ୍ଷଣ କରି ସେମାନେ ଅରଣ୍ୟ ମଧ୍ୟରେ ଘୂରି ବୁଲୁଥାନ୍ତି । ଦିନେ କ୍ଷୁଧାତୁର ହୋଇ ସେମାନେ ଜଣେ ଯୋଗସିଦ୍ଧ ତପସ୍ୱୀଙ୍କୁ ଧରି ଖାଇବାପାଇଁ ଉଦ୍ୟତ ହେଲେ । କିନ୍ତୁ ଯୋଗୀ ଯୋଗବଳରେ ନିଜକୁ ରକ୍ଷାକରି ସେମାନଙ୍କୁ ପିଶାଚ ହେବାପାଇଁ ଅଭିଶାପ ଦେଲେ । ଫଳରେ ଉଭୟେ ପିଶାଚ ରୂପ ଧାରଣ କରି ଅରଣ୍ୟରେ ବୁଲୁଥାଆନ୍ତି ।

ଏହିପରି ପିଶାଚ ରୂପରେ ରହିଥିବା ବେଳେ ଦିନେ ସେମାନେ ଜଣେ ବ୍ରାହ୍ମଣଙ୍କ ଗାଈଟିଏ ଚୋରାଇବାପାଇଁ ଉଦ୍ୟମ କଲେ କିନ୍ତୁ ବ୍ରାହ୍ମଣ ମନ୍ତ୍ରବଳରେ ପିଶାଚମାନଙ୍କ କବଳରୁ ଗାଈଟିକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଚଣ୍ଡାଳ ରୂପ ଧାରଣ କରିବାପାଇଁ ଅଭିଶାପ ଦେଲେ । ଫଳରେ ଉଭୟ ବ୍ରାହ୍ମଣ ବାଳକ ତତ୍କ୍ଷଣାତ୍ ଚଣ୍ଡାଳରେ ପରିଣତ ହୋଇଗଲେ ।

ଚଣ୍ଡାଳ ରୂପରେ ଇତସ୍ତତଃ ବିଚରଣ କରୁଥିବା ବେଳେ କ୍ଷୁଧାନିବାରଣପାଇଁ ସେମାନେ ଧନୁର୍ବାଣ ହସ୍ତରେ ଚୋରମାନଙ୍କର ଏକ ପଲ୍ଲୀରେ ଯାଇ ପ୍ରବେଶକଲେ । ପଲ୍ଲୀର ଜଗୁଆଳମାନେ ଏମାନଙ୍କୁ ଚୋର ମନେକରି ତାଙ୍କର ନାକକାନ କାଟିଦେଲେ

ଏବଂ ଉଭୟଙ୍କୁ ବାନ୍ଧି ପ୍ରହାର କରିବାକୁ ଲାଗିଲେ । କିଛି ସମୟ ପରେ ବିକଳରେ ଚିତ୍କାର କରୁଥିବା ଚଣ୍ଡାଳଯୁବକ ଦୁଇଟିକୁ ଚୋରମାନଙ୍କ ସର୍ଦ୍ଦାରଙ୍କ ନିକଟରେ ନେଇ ପହଞ୍ଚାଇ ଦିଆଗଲା । ସର୍ଦ୍ଦାରଙ୍କ ଜିଜ୍ଞାସା କ୍ରମେ ସେମାନେ ନିଜ ଜୀବନର ଦୁଃଖଦ କାହାଣୀ ବର୍ଣ୍ଣନା କରନ୍ତେ ତା'ର ଦୟା ହେଲା । ସେ ଉଭୟଙ୍କୁ ବନ୍ଧନ ମୁକ୍ତ କରି ଖାଦ୍ୟ ପାନଦ୍ୱାରା ଆଶ୍ୱସ୍ତ କଲା । ତା'ର ନିର୍ଦ୍ଦେଶରେ ସେମାନେ ସେଠାରେ ନିର୍ଭୟ ଚିତ୍ତରେ ବାସ କରିବାକୁ ଲାଗିଲେ ।

ଦିନେ ସର୍ଦ୍ଦାର କହିଲା, 'ତୁମେ ଦୁଇଜଣ ଆଜି ଆମର ଅତିଥି ରୂପେ ରହିଛ । ଅଷ୍ଟମୀ ତିଥିରେ କାର୍ତ୍ତିକେୟଙ୍କୁ ପୂଜା କରିବା ଆମର ବିଧି । ତେଣୁ ତୁମେ ମଧ୍ୟ ଆମର ଏହି ପୂଜାରେ ଅଂଶଗ୍ରହଣ କର । ସେମାନେ ପୂଜାରେ ଯୋଗଦେଲେ । ପୂଜାଶେଷରେ ନିଜେ ଭୋଜନ କରିବା ପୂର୍ବରୁ ସର୍ଦ୍ଦାର ଅତିଥି ଦ୍ୱୟଙ୍କୁ ଭୋଜନରେ ଆପ୍ୟାୟନ କଲା । ସର୍ଦ୍ଦାରର ସ୍ନେହ ଓ ଆଶ୍ୱାସନା ପାଇ ସେମାନେ ସେଠାରେ ରହିବାକୁ ଲାଗିଲେ । ସେମାନଙ୍କ ବୀରତ୍ୱ, ବିଦ୍ୟା ଓ ପୌରୁଷ ଚୌର୍ଯ୍ୟକର୍ମରେ ବିନିଯୁକ୍ତ ହେଲା । କ୍ରମଶଃ ସେମାନେ ଚୋରଦଳର ପ୍ରମୁଖ ସେନାପତି ହେଲେ ।

ଦିନେ ସେମାନେ ଗୁପ୍ତଚରମାନଙ୍କଠାରୁ ସମ୍ବାଦ ପାଇଲେ ଯେ ଅଦୂରରେ ଥିବା ନଗରୀ ମଧ୍ୟସ୍ଥିତ ଏକ ଶିବ ମନ୍ଦିରରେ ବିଶାଳ ଧନଭଣ୍ଡାର ଗଚ୍ଛିତ ଅଛି । ରାତିରେ ଉଭୟ ସେନାପତିଙ୍କ ସହିତ ଚୋରଦଳ ସେହି ଧନଭଣ୍ଡାର ଲୁଣ୍ଠନ କରିବାପାଇଁ ବାହାରିଲେ । ପଥ ମଧ୍ୟରେ ଅପଶକୁନ ସବୁ ଦେଖାଗଲା । ତଥାପି ସେମାନେ ତା' ପ୍ରତି ଭ୍ରୂକ୍ଷେପ ନକରି ମନ୍ଦିର ସହିତ ସମଗ୍ର ନଗରୀ ଲୁଣ୍ଠନ କଲେ । ଏମାନଙ୍କ ଉପଦ୍ରବରେ ନଗରବାସୀ ଭୟଭୀତ ହୋଇ ଭଗବାନ ଶଙ୍କରଙ୍କୁ ଡାକିବାକୁ ଲାଗିଲେ । ତାଙ୍କ ବିକଳ ପ୍ରାର୍ଥନାରେ ମହାଦେବ ତତ୍କ୍ଷଣାତ୍ ଚୋରମାନଙ୍କୁ ବିକଳାଙ୍ଗ ଓ ଅନ୍ଧ କରିଦେଲେ । ଏହି ଆକସ୍ମିକ ଘଟଣା ନଗରବାସୀଙ୍କୁ ବିସ୍ମିତ କରିଦେଲା । ସେମାନେ ଏହାକୁ ଭଗବାନଙ୍କ କୃପା ବୋଲି ଜାଣି ଚୋରମାନଙ୍କୁ ପ୍ରହାର କରିବାକୁ ଲାଗିଲେ । ଶିବଗଣମାନେ ମଧ୍ୟ ଅଲକ୍ଷିତ ଭାବରେ କେତେଜଣ ଚୋରଙ୍କୁ ବହୁଦୂରକୁ ଫୋପାଡ଼ି ଦେଲେ; ଆଉ କେତେକଙ୍କୁ ପାଦରେ ଦଳି ନିପାତ କଲେ ।

ସେନାପତିମାନଙ୍କୁ ଜଣେ ମାରିବାପାଇଁ ଉଦ୍ୟତ ହୁଅନ୍ତେ ସେମାନେ ହଠାତ୍ ନିଜର ରୂପ ପରିବର୍ତ୍ତନ କରି ଦୁଇଟି ଛିନ୍ନ ପୁଚ୍ଛ କୁକୁରରେ ପରିଣତ ହୋଇଗଲେ । କୁକୁର ରୂପ ଧାରଣ କରିବା ମାତ୍ରେ ସେମାନଙ୍କ ପୂର୍ବଜନ୍ମ କଥା ସ୍ମରଣ ହେଲା । ସେମାନେ

ନିଃଶଙ୍କ ଚିତ୍ତରେ ମନ୍ଦିରସ୍ଥିତ ଶିବମୂର୍ତ୍ତି ସମ୍ମୁଖରେ ନୃତ୍ୟ କରିବାକୁ ଲାଗିଲେ । କୁକୁର ଦୁଇଟିର ଏପରି ବ୍ୟବହାର ଉପସ୍ଥିତ ନାଗରିକମାନଙ୍କୁ ବିସ୍ମିତ କଲା । ଚୋର ଭୟ ଦୂର ହୋଇଥିବା ଯୋଗୁଁ ସେମାନେ ହସିହସି ନିଜନିଜ ଘରକୁ ଫେରିଗଲେ ।

କୁକୁର ରୂପରେ ଥିବା ହରିସ୍ୱାମୀ ଓ ଦେବସ୍ୱାମୀଙ୍କ ପୂର୍ବଜନ୍ମ ସ୍ମରଣ ହୋଇଥିବା ଯୋଗୁଁ ସେମାନେ ଶାପ ଶାନ୍ତି ପାଇଁ ନିରାହାରରେ ମଙ୍ଗଳମୟ ଶିବଙ୍କ ଆରାଧନାପାଇଁ ତପଶ୍ଚରଣ କଲେ । ପରଦିନ ନାଗରିକମାନଙ୍କଦ୍ୱାରା ଶିବମନ୍ଦିରରେ ଉତ୍ସବ ପାଳିତ ହେଲା । ଏହି ଅବସରରେ ନାଗରିକମାନେ ଲକ୍ଷ୍ୟକଲେ ଯେ କୁକୁର ଦୁଇଟି ଦେଉଥିବା ଖାଦ୍ୟ ପ୍ରତି ଦୃଷ୍ଟି ନଦେଇ ଧ୍ୟାନମଗ୍ନ ରହିଛନ୍ତି । ଶିବଗଣମାନେ କୁକୁର ଦୁଇଟିକୁ ବହୁଦିନଧରି ଏପରି ଉପବାସରେ ବସି ରହିଥିବା ଦେଖି ଭଗବାନଙ୍କୁ ଜଣାଇଲେ, 'ପ୍ରଭୁ ! ଆପଣଙ୍କର ସେବକ ପିଙ୍ଗେଶ୍ୱର ଓ ଗୁହେଶ୍ୱର ଦେବୀ ପାର୍ବତୀଙ୍କ ଅଭିଶାପରୁ ବହୁଦିନ ଧରି କଷ୍ଟ ପାଉଛନ୍ତି । ଆପଣ ସେମାନଙ୍କ ପ୍ରତି ଦୟା କରନ୍ତୁ ।' ଏଥିରେ ପାର୍ବତୀପତି ସେମାନଙ୍କ ପ୍ରତି କରୁଣା ପ୍ରକାଶ କରି କହିଲେ ଯେ ସେମାନେ ବର୍ତ୍ତମାନ କୁକୁର ରୂପ ପରିତ୍ୟାଗ କରି କୁଆ ହୋଇଯାନ୍ତୁ । କୁକୁର ଦୁଇଟି ତତ୍‌କ୍ଷଣାତ୍ କୁଆରେ ପରିଣତ ହୋଇ ମନ୍ଦିର ବାହାରେ ଦିଆଯାଇଥିବା କାକବଳି ଭକ୍ଷଣ ପୂର୍ବକ ବ୍ରତପାରଣା କଲେ । ସେମାନଙ୍କ ହୃଦୟରେ ପୂର୍ବଜନ୍ମର ସ୍ମୃତି ଜାଗ୍ରତ ଥାଏ । ସେମାନେ ନିବିଷ୍ଟଚିତ୍ତରେ କରୁଣାମୟ ଭଗବାନଙ୍କ ଧ୍ୟାନ କରୁଥାନ୍ତି ।

କିଛି ଦିନ ପରେ ସେମାନଙ୍କ ଉପରେ ଶିବଙ୍କ କୃପାଦୃଷ୍ଟି ପଡ଼ିଲା । ସେ ସେମାନଙ୍କୁ ପ୍ରଥମେ ସଞ୍ଚାଣ ଓ ପରେ ମୟୂର ହେବାପାଇଁ ଆଦେଶ ଦେଲେ । ଏହିପରି କାଳକ୍ରମେ ଉଭୟ ଶିବଗଣ ହଂସରେ ପରିଣତ ହେଲେ । ଏହି ରୂପରେ ମଧ୍ୟ ସେମାନଙ୍କ ଏକନିଷ୍ଠ ଭକ୍ତିରେ ଶିଥିଳତା ଆସିନଥିଲା । ସେମାନେ ବିଭିନ୍ନ ତୀର୍ଥସ୍ଥାନରେ ସ୍ନାନ, ଉପବାସ, ପୂଜା, ଉପାସନା ଓ ଧ୍ୟାନଧାରଣା କରି ଶିବଙ୍କୁ ସନ୍ତୁଷ୍ଟ କରୁଥାନ୍ତି । ଏପରି ପୁଣ୍ୟକର୍ମ ପ୍ରଭାବରେ ସେମାନଙ୍କ ଶରୀର ସୁବର୍ଣ୍ଣମୟ ହେଲା । ସେମାନେ ଦିବ୍ୟଜ୍ଞାନ ପ୍ରାପ୍ତ ହେଲେ ।

ରାଜନ୍ ! ଆପଣ ଆମକୁ ହିଁ ସେହି ହଂସ ବୋଲି ଜାଣନ୍ତୁ । ପାର୍ବତୀଙ୍କ ଅଭିଶାପରେ ଆମେ ଏପରି ବହୁ କଷ୍ଟ ସ୍ୱୀକାର ପୂର୍ବକ ପୃଥିବୀ ପୃଷ୍ଠରେ ବିଚରଣ କରୁଛୁ ।

ଚନ୍ଦ୍ରଲେଖା ପ୍ରତି କାମବାସନା ଜଡ଼ିତ ଦୃଷ୍ଟିପାତ କରିଥିବା ମଣିପୁଷ୍ପେଶ୍ୱର ଦେବୀଙ୍କ ଅଭିଶାପରୁ ଆପଣଙ୍କ ରୂପରେ ଜନ୍ମଗ୍ରହଣ କରିଅଛି । ଚାମରଧାରିଣୀ ଜୟାର କନ୍ୟା ଚନ୍ଦ୍ରଲେଖା ଏ ଜନ୍ମରେ ଆପଣଙ୍କ ପତ୍ନୀ ସୋମପ୍ରଭା । ଧୂର୍ଜଟି ମଧ୍ୟ ଅଭିଶପ୍ତ ହୋଇ ଆପଣଙ୍କ ମନ୍ତ୍ରୀ ଶିବଭୂତି ରୂପେ ରହିଅଛି ।

ପୂର୍ବ ଜନ୍ମ ସମ୍ପର୍କରେ ଜ୍ଞାନୋଦୟ ହୋଇଥିବା ଯୋଗୁଁ ଆମେ ଉକ୍ତଦିନ ରାତ୍ରିରେ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲୁ । ଆମର କୌଶଳ ଚରିତାର୍ଥ ହେଲା । ଆଜି ଆମେ ପାଞ୍ଚଜଣ ଏଠାରେ ଏକତ୍ର ହୋଇପାରିଛେ । ବର୍ତ୍ତମାନ ଆମେ ଆପଣମାନଙ୍କ ଜ୍ଞାନୋଦୟ କରାଇବୁ । ଚାଲନ୍ତୁ, ବର୍ତ୍ତମାନ ସମସ୍ତେ ପାର୍ବତୀପତି ଭଗବାନ୍ ଶଙ୍କର ଅବସ୍ଥାନ କରୁଥିବା ସେହି ସାର୍ଥକନାମା ସିଦ୍ଧୀଶ୍ୱର କ୍ଷେତ୍ରକୁ ଯିବା । ସେଠାରେ ବିଦ୍ୟୁଦ୍‌ଧ୍ୱଜ ରାକ୍ଷସକୁ ବିନାଶ କରିବାପାଇଁ ଦେବତାମାନେ ତପସ୍ୟା କରିଥିଲେ । ଦେବଦେବ ମହାଦେବଙ୍କ କୃପାରୁ ସେମାନେ ବିଦ୍ୟାଧର ଚକ୍ରବର୍ତ୍ତୀ ମୁକ୍ତାଫଳକେତୁଙ୍କ ସହାୟତାରେ ବିଦ୍ୟୁଦ୍‌ଧ୍ୱଜ ରାକ୍ଷସର ବଧ ସାଧନ କରିପାରିଥିଲେ । ଏହି କ୍ଷେତ୍ରରେ ହିଁ ସେହି ମୁକ୍ତାଫଳକେତୁ ଭଗବାନ ଗୌରୀପତିଙ୍କ ଅନୁଗ୍ରହରୁ ଅଭିଶପ୍ତ ମର୍ତ୍ତ୍ୟ ଜୀବନକୁ ପାର କରି ପୁନଶ୍ଚ ନିଜର ପ୍ରଣୟିନୀ ପଦ୍ମାବତୀଙ୍କୁ ଲାଭ କରିବାର ସୁଖ ଉପଭୋଗ କରିଥିଲେ ।

ଆସନ୍ତୁ, ବର୍ତ୍ତମାନ ସେହି ସିଦ୍ଧୀଶ୍ୱର କ୍ଷେତ୍ରରେ ଭଗବାନ ଶଙ୍କରଙ୍କୁ ଆରାଧନା କରି ଆମେ ପୁଣି ସ୍ୱଲୋକକୁ ଫେରିଯିବା । ଦେବୀ ପାର୍ବତୀ ଏହିପରି ହିଁ ଆମମାନଙ୍କର ଶାପାନ୍ତ ଘୋଷଣା କରିଥିଲେ ।

ଦିବ୍ୟହଂସ ଯୁଗଳଠାରୁ ଏହି ବିବରଣୀ ଶ୍ରବଣ କରି ରାଜା ବ୍ରହ୍ମଦତ୍ତ ମୁକ୍ତାଫଳକେତୁ ସମ୍ପର୍କରେ ଜାଣିବାପାଇଁ ଆଗ୍ରହାନ୍ୱିତ ହୋଇଉଠିଲେ ।

## ଦ୍ୱିତୀୟ ତରଙ୍ଗ

## ମୁକ୍ତାଫଳକେତୁ କଥା

ରାଜା ବ୍ରହ୍ମଦତ୍ତ ମୁକ୍ତାଫଳକେତୁ ସମ୍ପର୍କରେ ଜାଣିବାପାଇଁ କୌତୂହଳୀ ହୋଇଉଠିଲେ । ମୁକ୍ତାଫଳକେତୁ ବିଦବ୍ଧ୍ୱଜକୁ କିପରି ବିନାଶ କଲେ ? ଅଭିଶପ୍ତ ହୋଇ ସେ ମର୍ତ୍ତ୍ୟଲୋକରେ କିପରି ଜୀବନ ବିତାଇଥିଲେ ? ପଦ୍ମାବତୀଙ୍କ ସହିତ ତାଙ୍କର କିପରି ପୁନର୍ମିଳନ ଘଟିଲା ? ଇତ୍ୟାଦି ଶୁଣିବା ପରେ ହଂସମାନଙ୍କ ସହିତ ସିଦ୍ଧୀଶ୍ୱର କ୍ଷେତ୍ରକୁ ଯିବାପାଇଁ ସେ ପ୍ରସ୍ତାବ ଦେଲେ ।

ରାଜା ବ୍ରହ୍ମଦତ୍ତଙ୍କ କୌତୂହଳ ଦମନ ପାଇଁ ପକ୍ଷୀଯୁଗଳ ମୁକ୍ତାଫଳକେତୁଙ୍କ ସମ୍ପର୍କରେ କହିବା ଆରମ୍ଭ କଲେ ।

## ବିଦ୍ୟୁଦ୍‌ଧ୍ୱଜ କଥା

ବିଦ୍ୟୁତ୍‌ପ୍ରଭ ନାମରେ ଜଣେ ଦୈତ୍ୟରାଜା ଥିଲା । ଦେବତାମାନେ ମଧ୍ୟ ତାକୁ ପରାଜିତ କରିପାରୁନଥିଲେ । ସେ ପୁତ୍ରଟିଏ କାମନାକରି ପତ୍ନୀ ସହିତ ଗଙ୍ଗାତଟରେ ବ୍ରହ୍ମାଙ୍କୁ ପ୍ରସନ୍ନ କରିବାପାଇଁ ଏକଶହ ବର୍ଷ ତପସ୍ୟା କଲା । ବ୍ରହ୍ମା ତା' ତପସ୍ୟାରେ ସନ୍ତୁଷ୍ଟ ହେଲେ । ତାଙ୍କ ବରପ୍ରଭାବରେ ବିଦ୍ୟୁତ୍‌ପ୍ରଭ ଦେବତାମାନଙ୍କଦ୍ୱାରା ମଧ୍ୟ ଅପରାଜେୟ ଏକ ପୁତ୍ର ଲାଭକଲା । ପୁତ୍ରଟିର ନାମକରଣ କରାଗଲା ବିଦ୍ୟୁଦ୍‌ଧ୍ୱଜ ।

ବାଳକ ବିଦ୍ୟୁଦ୍‌ଧ୍ୱଜ ଦେଖିଲା ଯେ ତାଙ୍କ ନଗର ବହୁସୈନିକଙ୍କ ଦ୍ୱାରା ପରିବେଷ୍ଟିତ । ସେ ଏ ସମ୍ପର୍କରେ ମିତ୍ରମାନଙ୍କୁ ପଚାରି ବୁଝିଲା ଯେ ସେହି ସୈନିକମାନେ ହେଉଛନ୍ତି ନଗରର ସୁରକ୍ଷାପାଇଁ ଜାଗ୍ରତପ୍ରହରୀ । ତା' ମନରେ କୌତୂହଳ ଜାଗ୍ରତ ହେଲା । ସେ ପୁଣି ମିତ୍ରମାନଙ୍କୁ ପଚାରି ଜାଣିଲା ଯେ ଦେବରାଜ ଇନ୍ଦ୍ର ହେଉଛନ୍ତି ସେମାନଙ୍କର ଶତ୍ରୁ । ତାଙ୍କରି ଭୟରେ ନଗରର ସୁରକ୍ଷାପାଇଁ ଏପରି ବ୍ୟବସ୍ଥା

କରାଯାଇଛି । ପ୍ରତ୍ୟେକ ପ୍ରହରରେ ପର୍ଯ୍ୟାୟ କ୍ରମେ ଦଶଲକ୍ଷ ହସ୍ତୀ, ଚଉଦଲକ୍ଷ ରଥ ଏବଂ ଦଶକୋଟି ପଦାତିକ ସିପାହୀ, ତିରିଶଲକ୍ଷ ଅଶ୍ୱ ଅନବରତ ପହରା ଦେଉଛନ୍ତି । ପ୍ରତି ସାତବର୍ଷରେ ଥରେ ପ୍ରହରୀମାନଙ୍କର ପରିବର୍ତ୍ତନ ହୁଏ ।

ମିତ୍ରମାନଙ୍କଠାରୁ ଏହାଶୁଣି ବିଦ୍ୟୁଦ୍‌ଧ୍ୱଜ କହିଲା ଯେ ତା'ହେଲେ ତ ଏପରି ରାଜ୍ୟକୁ ଧିକ୍‌କାର କରିବା କଥା । ଯେଉଁ ରାଜ୍ୟ ନିଜ ବାହୁବଳରେ ସୁରକ୍ଷିତ ନହୋଇ ଅନ୍ୟମାନଙ୍କ ସାହାଯ୍ୟ ନିଏ ସେ ରାଜ୍ୟରେ କାହିଁକି ବା ରହିବ ? ତେଣୁ ମୁଁ ଯାଇ ଏପରି ଘୋର ତପସ୍ୟା କରିବି ଯାହାଫଳରେ ସମସ୍ତ ଶତ୍ରୁ ମୋର ବାହୁବଳରେ ପରାଜିତ ହେବେ । ରାଜ୍ୟରକ୍ଷା କରିବାପାଇଁ ଆଉ ପ୍ରହରୀମାନଙ୍କର ଆବଶ୍ୟକତା ହେବନାହିଁ । ମିତ୍ରମାନେ ବାଳକ ବିଦ୍ୟୁଦ୍‌ଧ୍ୱଜକୁ ଏଥିରୁ ନିବୃତ୍ତ କରିବାପାଇଁ ଚେଷ୍ଟା କଲେ । କିନ୍ତୁ ସେ ସେମାନଙ୍କ ଅନୁରୋଧ ଓ ଉପଦେଶକୁ ପ୍ରତ୍ୟାଖ୍ୟାନ କରି ପିତାମାତାଙ୍କ ଅଜ୍ଞାତସାରରେ ତପସ୍ୟାପାଇଁ ଚାଲିଗଲା ।

ପୁତ୍ରର ଏପରି ଆଚରଣ ସମ୍ପର୍କରେ ସମ୍ବାଦ ପାଇ ପିତାମାତା ତା' ନିକଟରେ ଯାଇ ପହଞ୍ଚିଲେ । କହିଲେ, 'ପୁତ୍ର ! ତୋର ଏହି ଶିଶୁସୁଲଭ କୋମଳ ଶରୀରରେ ତପସ୍ୟା ରୂପକ କଠୋର କାର୍ଯ୍ୟ ସହଜସାଧ ନୁହେଁ । ଏପରି ଦୁଃସାହସ କରନାହିଁ । ଆମ ରାଜ୍ୟ ନିଷ୍କଣ୍ଟକ ଓ ଶତ୍ରୁରହିତ । ଏହା ଅପେକ୍ଷା ତ୍ରିଭୁବନର ତୋର ବା ଆଉ କଣ ଆବଶ୍ୟକ ? ତପସ୍ୟାଦ୍ୱାରା ନିଜେ ଅସହ୍ୟ ବେଦନା ପାଇବା ସହିତ ଆମ୍ଭମାନଙ୍କୁ ମଧ ଅଯଥା କଷ୍ଟଦେଉଛୁ ।'

ପିତାମାତାଙ୍କ କଥା ଶୁଣି ଶିଶୁ ବିଦ୍ୟୁଦ୍‌ଧ୍ୱଜ କହିଲା ଯେ ସେ ଶୈଶବରୁ ହିଁ ଦିବ୍ୟ ଅସ୍ତ୍ରଶସ୍ତ୍ରର ଅଧିକାରୀ ହେବାକୁ ଚାହେଁ । ନଗରୀକୁ ସର୍ବଦା ରକ୍ଷା କରୁଥିବା ଜାଗ୍ରତ ପ୍ରହରୀମାନଙ୍କୁ ଦେଖିଲେ ଆମ ରାଜ୍ୟ ଯେ କେତେ ସୁରକ୍ଷିତ ଏବଂ ଶତ୍ରୁରହିତ ତାହା ଜଣାଯାଉଛି । ଏହିପରି ବହୁକଥା ଶୁଣାଇ ସେ ପିତାମାତାଙ୍କୁ ସେଠାରୁ ପଠାଇଦେଲା ଏବଂ ସ୍ୱୟଂ ତପସ୍ୟା ଆରମ୍ଭ କଲା । ସେ କ୍ରମଶଃ ପ୍ରଥମ ତିନିବର୍ଷ କେବଳ ଫଳ ଆହାର କରି, ପର ତିନିବର୍ଷ କେବଳ ଜଳପାନ କରି, ତା'ପର ତିନିବର୍ଷ କେବଳ ବାୟୁ ସେବନ କରି ଏବଂ ଶେଷ ତିନିବର୍ଷ ନିରାହାର ରହି ତପସ୍ୟା କରିବାକୁ ଲାଗିଲା । ବ୍ରହ୍ମା ଦେଖିଲେ ଏହି ଶିଶୁଦୈତ୍ୟର ତପସ୍ୟା ସାରା ବିଶ୍ୱକୁ ପ୍ରକମ୍ପିତ କଲାଣି । ତେଣୁ ସେ ତା' ନିକଟକୁ ଆସି ତାର ଯାଚନା କ୍ରମେ ବ୍ରହ୍ମାସ୍ତ୍ର ସହିତ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ପ୍ରଦାନ କଲେ । କିନ୍ତୁ ବ୍ରହ୍ମାସ୍ତ୍ର ଦେଲାବେଳେ ସେ କହିଲେ, 'ଦେଖ, ଏହା ହେଉଛି ବ୍ରହ୍ମାସ୍ତ୍ର । ଭଗବାନ ରୁଦ୍ରଙ୍କ

ପାଶୁପତ ଅସ୍ତ୍ର ବ୍ୟତୀତ ଅନ୍ୟ କୌଣସି ଅସ୍ତ୍ର ଦ୍ୱାରା ଏହା ପ୍ରତିହତ ହେବନାହିଁ । କିନ୍ତୁ ସେହି ପାଶୁପତ ଅସ୍ତ୍ରର ଜ୍ଞାନ ମୋର ଅବିଦିତ । ତୁମେ ଶତ୍ରୁସଂହାର କରିବାପାଇଁ ଅସମୟରେ ଏହାକୁ ପ୍ରୟୋଗ କରିବ ନାହିଁ । ଅନନ୍ୟୋପାୟ ହେଲେ ସର୍ବଶେଷରେ ଏହାର ପ୍ରୟୋଗ ବିଧେୟ ।' ଏହା କହି ବ୍ରହ୍ମା ଅନ୍ତର୍ହିତ ହେଲେ । ଦୈତ୍ୟ ବାଳକ ମଧ ସଫଳକାମ ହୋଇ ନିଜ ରାଜ୍ୟକୁ ଫେରିଆସିଲା ।

ଦୈତ୍ୟ ରାଜ୍ୟରେ ମହାଉତ୍ସବ ପାଳିତ ହେଲା । ଏଥିରେ ଯୋଗଦେଇଥିବା ଅନ୍ୟାନ୍ୟ ଦୈତ୍ୟ ଓ ସେମାନଙ୍କ ସେନାବାହିନୀ ସହିତ ବିଦ୍ୟୁଦ୍‌ଧ୍ୱଜ ଇନ୍ଦ୍ରଙ୍କୁ ଜୟ କରିବାପାଇଁ ପ୍ରଥମ ବିଜୟ ଯାତ୍ରା ଆରମ୍ଭ କଲା । ପିତା ବିଦ୍ୟୁତ୍‌ପ୍ରଭ ମଧ ପୁତ୍ରର ଅନୁଗମନ କଲେ । ଦେବରାଜ ଇନ୍ଦ୍ର ଗୁପ୍ତଚରମାନଙ୍କ ନିକଟରୁ ଏହି ଦୁଃସମ୍ବାଦ ପାଇ ସ୍ୱର୍ଗରକ୍ଷାର ପ୍ରବନ୍ଧ କଲେ । ବିଦ୍ୟାଧର ରାଜ ଚନ୍ଦ୍ରକେତୁ, ଗନ୍ଧର୍ବରାଜ ପଦ୍ମଶେଖର, ଅଗ୍ନି, ବାୟୁ ପ୍ରଭୃତି ଦେବତା ତଥା ଲୋକପାଳମାନଙ୍କ ସହିତ ଦେବସେନା ଯୁଦ୍ଧପାଇଁ ପ୍ରସ୍ତୁତ ହେଲା । ବିଦ୍ୟୁଦ୍‌ଧ୍ୱଜର ସେନାବାହିନୀ ଆକାଶମାର୍ଗକୁ ଆଚ୍ଛାଦନ କରି ଅଗ୍ରସର ହେଲେ । ବ୍ରହ୍ମା, ରୁଦ୍ର ପ୍ରଭୃତି ଦେବତାମାନେ ଏହି ଯୁଦ୍ଧ ଦେଖିବାପାଇଁ ନିଜ ନିଜ ଲୋକରୁ ଚାହିଁ ରହିଲେ ।

ଉଭୟ ସେନାବାହିନୀ ମଧରେ ଭୀଷଣ ଯୁଦ୍ଧ ଆରମ୍ଭ ହେଲା । ଉଭୟ ପକ୍ଷର ଶରଜାଲରେ ସୂର୍ଯ୍ୟମଣ୍ଡଳ ଆଚ୍ଛାଦିତ ହୋଇପଡ଼ିଲା । ଚତୁର୍ଦ୍ଦିଗ ଅନ୍ଧକାର ଦେଖାଗଲା । କ୍ରୋଧରୂପକ ବାୟୁଦ୍ୱାରା ଆନ୍ଦୋଳିତ ସଂଗ୍ରାମ ରୂପକ ସମୁଦ୍ର ଉଦ୍‌ବେଳିତ ହୋଇଉଠିଲା । ଏଥିରେ ହସ୍ତୀ ଓ ଅଶ୍ୱରୂପକ ମୀନ, ମଗର, ରକ୍ତତରଙ୍ଗରେ ପ୍ରବାହିତ ହୋଇଚାଲିଲେ । ଦୈତ୍ୟମାନଙ୍କ ସହିତ ଦେବତାମାନଙ୍କ ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭ ହେବାରୁ ବିଦ୍ୟୁଦ୍‌ଧ୍ୱଜର ପିତା ବିଦ୍ୟୁଦ୍‌ପ୍ରଭ କ୍ରୋଧରେ ଇନ୍ଦ୍ରଙ୍କୁ ଆକ୍ରମଣ କଲା । ଦୈତ୍ୟ ଅଧିପତିର ଅସ୍ତ୍ରସବୁକୁ ପ୍ରତି-ଅସ୍ତ୍ରଦ୍ୱାରା ପରାଭୂତ କରି ଇନ୍ଦ୍ର ଯେତେବେଳେ ଧୀରେ ଧୀରେ ନିର୍ବଳ ହୋଇଆସିଲେ ସେତେବେଳେ ସେ ତାଙ୍କର ଶେଷ ଅସ୍ତ୍ର ବଜ୍ରଦ୍ୱାରା ବିଦ୍ୟୁତ୍‌ପ୍ରଭକୁ ପ୍ରହାର କଲେ । ବଜ୍ରାହତ ହୋଇ ଦେବଶତ୍ରୁ ବିଦ୍ୟୁତ୍‌ପ୍ରଭ ମୃତ୍ୟୁବରଣ କଲା ।

ପିତାଙ୍କ ମୃତ୍ୟୁଦେଖି ପୁତ୍ର ବିଦ୍ୟୁଦ୍‌ଧ୍ୱଜ ମ୍ରିୟମାଣ ଓ ଉତ୍‌କ୍ଷିପ୍ତ ହୋଇଉଠିଲା । କ୍ରୋଧରେ ପ୍ରଜ୍ୱଳିତ ହୋଇ, ଇନ୍ଦ୍ର ତାକୁ ଆକ୍ରମଣ କରିବା ପୂର୍ବରୁ, ସେ ତାଙ୍କ ପ୍ରତି ବ୍ରହ୍ମାସ୍ତ୍ର ପ୍ରୟୋଗ କଲା । ଅନ୍ୟାନ୍ୟ ରାକ୍ଷସମାନେ ମଧ ସେମାନଙ୍କ ଦିବ୍ୟାସ୍ତ୍ରଦ୍ୱାରା ଇନ୍ଦ୍ରଙ୍କୁ ଆକ୍ରମଣ କଲେ । ଇନ୍ଦ୍ର ଅନନ୍ୟୋପାୟ ହୋଇ ରୁଦ୍ରପ୍ରଦତ୍ତ ପାଶୁପତ ଅସ୍ତ୍ରକୁ ସ୍ମରଣ

କଲେ । ଅସ୍ତ୍ରରାଜ ତତ୍‌କ୍ଷଣାତ୍ ଆସି ଉପସ୍ଥିତ ହେଲା । ଇନ୍ଦ୍ର ତାକୁ ପୂଜା କରି ଶତ୍ରୁମାନଙ୍କ ପ୍ରତି ପ୍ରୟୋଗ କଲେ । ପ୍ରଳୟକାଳୀନ ପ୍ରଚଣ୍ଡ ଅଗ୍ନିପରି ପାଶୁପତ ପଲକମାତ୍ରେ ସମଗ୍ର ଦୈତ୍ୟ ସେନାବାହିନୀକୁ ଦଗ୍ଧୀଭୂତ କରିଦେଲା । କେବଳ ବାଳକ ଥିବା ହେତୁ ବିଦ୍ୟୁଦ୍‌ଧ୍ୱଜର ମୃତ୍ୟୁ ହେଲାନାହିଁ; ସେ ମୂର୍ଚ୍ଛିତ ହୋଇପଡ଼ିଲା । ପାଶୁପତ ପରି ଦିବ୍ୟାସ୍ତ୍ର ବାଳକ, ବୃଦ୍ଧ ଓ ପୃଷ୍ଠଭଙ୍ଗ ଦେଉଥିବା ସୈନିକକୁ ବଧ କରେ ନାହିଁ । ଦେବତାମାନେ ଜୟଯୁକ୍ତ ହୋଇ ନିଜନିଜ ସ୍ଥାନକୁ ଫେରିଗଲେ ।

ବିଦ୍ୟୁଦ୍‌ଧ୍ୱଜ ବହୁସମୟ ଧରି ମୂର୍ଚ୍ଛିତ ହୋଇ ରହିଲା । ଚେତନା ଫେରି ପାଇବାରୁ ତା'ର ଅବସୋସର ସୀମା ରହିଲା ନାହିଁ । ପାଶୁପତ ମୁଖରୁ ବଞ୍ଚିଯାଇଥିବା କିଛି ସୈନ୍ୟ ଧୀରେ ଧୀରେ ଆସି ତା ନିକଟରେ ପହଞ୍ଚିଲେ । ସେ ଦୁଃଖରେ ସେମାନଙ୍କୁ କହିଲା, 'ଦେଖ, ଆଜି ପର୍ଯ୍ୟନ୍ତ ଦୈତ୍ୟ ବାହିନୀ କଦାପି ପରାଜିତ ହୋଇନଥିଲା । କିନ୍ତୁ ବ୍ରହ୍ମାସ୍ତ୍ର ଲାଭକରି ସୁଦ୍ଧା ଆଜି ଆମର ଏ ଦୁର୍ଦ୍ଦଶା । ତେଣୁ ବର୍ତ୍ତମାନ ମୁଁ ଇନ୍ଦ୍ର ସହିତ ଯୁଦ୍ଧକରି ପ୍ରାଣ ବିସର୍ଜନ କରିବାପାଇଁ ଯାଉଛି । ପିତାଙ୍କ ମୃତ୍ୟୁ ପରେ ନଗର ମଧ୍ୟରେ ଏକାକୀ ପ୍ରବେଶ କରିବା ମୋ ପକ୍ଷରେ ସମ୍ଭବ ନୁହେଁ ।' ଭଗ୍ନମନୋରଥ ଦୈତ୍ୟପୁତ୍ରର ଏ ପ୍ରକାର ଅସମ୍ଭବ ପ୍ରତିଜ୍ଞା ଶୁଣି ବିଦ୍ୟୁତ୍‌ପ୍ରଭର ଜଣେ ବୃଦ୍ଧ ମନ୍ତ୍ରୀ ପରାମର୍ଶ ଦେଇ କହିଲା, 'ଦେଖ, ତୁମେ ପାଇଥିବା ବ୍ରହ୍ମାସ୍ତ୍ରର ପ୍ରୟୋଗ ଅସମୟରେ କରାଗଲା । ସେତେବେଳେ ସୈନିକମାନେ ନିଜନିଜର ଅସ୍ତ୍ରଶସ୍ତ୍ର ପ୍ରୟୋଗ କରୁଥିବା ଯୋଗୁଁ ତା'ର ପ୍ରଭାବ କ୍ଷୀଣ ହୋଇପଡ଼ିଲା । ପୁଣି ସମସ୍ତ ଅସ୍ତ୍ରକୁ ପରାଭୂତ କରୁଥିବା ପାଶୁପତ ବ୍ରହ୍ମାସ୍ତ୍ରକୁ ଶକ୍ତିହୀନ କରିପକାଇଲା । ତେଣୁ ବିଜୟପ୍ରାପ୍ତ କରିଥିବା ଶତ୍ରୁକୁ ତୁମେ ଅସମୟରେ ଆକ୍ରମଣ କରିବା ଉଚିତ ହେବନାହିଁ । ଏହାଦ୍ୱାରା ଶତ୍ରୁର ଅଭିବୃଦ୍ଧି ଏବଂ ତୁମର ବିନାଶ ସାଧିତ ହେବ । ପଣ୍ଡିତ ଲୋକମାନେ ଆତ୍ମରକ୍ଷା କରି ପ୍ରଥମେ ଶକ୍ତି ସଞ୍ଚୟ କରନ୍ତି ଏବଂ ସମୟ ଓ ସୁଯୋଗ ଦେଖି ଶତ୍ରୁର ପ୍ରତିଶୋଧ ନେଇଥାନ୍ତି । ଏହିପରି ବ୍ୟକ୍ତି ହିଁ ପୃଥିବୀରେ ଯଶସ୍ୱୀ ହୋଇଥାଏ ।'

'ଧୀରୋ ହି ରକ୍ଷନ୍ନାତ୍ମାନଂ କାଳେ ପ୍ରାପ୍ୟ ବଳଂ ରିପୋଃ
ମନ୍ୟୁପ୍ରତିକ୍ରିୟାଂ କୃତ୍ୱା ବିଶ୍ୱଶ୍ଳାଘ୍ୟଂ ଯଶୋଽଶ୍ନୁତେ'

ବୃଦ୍ଧ ମନ୍ତ୍ରୀର କଥାରେ ବିଦ୍ୟୁଦ୍‌ଧ୍ୱଜ କହିଲା, 'ତା'ହେଲେ ତମେ ସମସ୍ତେ ଯାଇ ଆମର ରାଜ୍ୟ ରକ୍ଷା କର । ମୁଁ ପୁଣି ଯାଇ ସର୍ବେଶ୍ୱର ଶିବଙ୍କ ଆରାଧନା କରିବି ।' ସୈନିକ ଓ ମନ୍ତ୍ରୀମାନେ ତା'କୁ ଏକାକୀ ଛାଡ଼ିଯିବାପାଇଁ ପ୍ରସ୍ତୁତ ନଥିଲେ ସୁଦ୍ଧା ସେ

ସେମାନଙ୍କୁ ରାଜ୍ୟକୁ ପଠାଇଦେଇ ପାଞ୍ଚଜଣ ମିତ୍ର ଦୈତ୍ୟବାଳକ ସହିତ କୈଳାସ ପର୍ବତର ପାଦଦେଶରେ ବହିଯାଉଥିବା ଗଙ୍ଗାତଟକୁ ଚାଲିଗଲା । ସେଠାରେ ଆରମ୍ଭ ହେଲା ତା'ର ଅଭୂତପୂର୍ବ ତପସ୍ୟା । ଗ୍ରୀଷ୍ମଋତୁରେ ସେ ଚତୁର୍ଦ୍ଦିଗରେ ଅଗ୍ନି ପ୍ରଜ୍ୱଳନ କରି ପ୍ରଚଣ୍ଡ ସୂର୍ଯ୍ୟକିରଣରେ ପଞ୍ଚାଗ୍ନି ତପସ୍ୟା କରୁଥାଏ । ଶୀତଋତୁରେ ଜଳମଧ୍ୟରେ ରହି ତପସ୍ୟା କରେ । ଏହିପରି ଭଗବାନ ଶଙ୍କରଙ୍କୁ ଧ୍ୟାନ ପୂର୍ବକ ପ୍ରଥମ ହଜାରେ ବର୍ଷ କେବଳ ଫଳାହାରରେ ବିତାଇ ଦେଲା । ଦ୍ୱିତୀୟ ହଜାର ବର୍ଷ ସେ କେବଳ ମୂଳ ଆହାର କରୁଥାଏ । ତୃତୀୟ ହଜାର ବର୍ଷ ଜଳପାନ କରି ଏବଂ ଚତୁର୍ଥ ହଜାର ବର୍ଷ ବାୟୁସେବନ କରି ତପଶ୍ଚରଣ କଲା । ଶେଷ ହଜାର ବର୍ଷର ନିରାହାର ତପସ୍ୟା ଦେବତାମାନଙ୍କୁ ଆଉ ସ୍ଥିର କରି ରଖିପାରିଲା ନାହିଁ । ବ୍ରହ୍ମା ବର ପ୍ରଦାନ କରିବାପାଇଁ ଆସି ଉପସ୍ଥିତ ହେଲେ । କିନ୍ତୁ ସେ ତାଙ୍କ ପ୍ରତି ଭ୍ରୂକ୍ଷେପ ନକରି କହିଲା, 'ମୁଁ ତୁମ ବରର ପ୍ରଭାବ ଜାଣିସାରିଛି । ତୁମେ ଏଠାରୁ ଚାଲିଯାଅ ।'

ବ୍ରହ୍ମା ଚାଲିଯିବା ପରେ ସେ ଶିବଙ୍କୁ ଲାଭ କରିବାପାଇଁ ପୁଣି ପାଞ୍ଚହଜାର ବର୍ଷ ନିରାହାର ତପସ୍ୟା କରିବାକୁ ଲାଗିଲା । ଶେଷ ବେଳକୁ ତା' ମସ୍ତକରୁ ପ୍ରଚୁର ପରିମାଣରେ ଉତ୍ତପ୍ତ ଧୂମରାଶି ନିର୍ଗତ ହେଉଥାଏ । ଶିବଙ୍କ କୈଳାସ ପର୍ବତ ଥରହର ହୋଇଉଠିଲା । ମହାଯୋଗୀଶ୍ୱର ଶିବ ଧ୍ୟାନରେ ବିଦ୍ୟୁଦ୍‌ଧ୍ୱଜର ତପସ୍ୟା କଥା ଜାଣିପାରି ପ୍ରତ୍ୟକ୍ଷ ଭାବରେ ଆସି ପହଞ୍ଚିଲେ । ବର ମାଗିବାପାଇଁ କହିବାରୁ ଦୈତ୍ୟବାଳକ କହିଲା, 'ପ୍ରଭୁ ! ମୁଁ ଆପଣଙ୍କ କୃପାରୁ ଯେପରି ଯୁଦ୍ଧରେ ଇନ୍ଦ୍ରଙ୍କୁ ନିହତ କରିପାରିବି, ମୋତେ ସେହି ବର ଦିଅନ୍ତୁ ।' ଭଗବାନ ଶଙ୍କର କହିଲେ 'ଉଠ, ମରିବା ଓ ପରାସ୍ତ ହେବା ଭିତରେ କୌଣସି ପାର୍ଥକ୍ୟ ନାହିଁ । ତେଣୁ ମୁଁ ତୋତେ ଏହି ବର ପ୍ରଦାନ କରୁଛି ଯେ ତୁ ସଂଗ୍ରାମରେ ଇନ୍ଦ୍ରଙ୍କୁ ଜୟ କରି ଇନ୍ଦ୍ରପଦ ଲାଭ କରିବୁ ।'

ଏହି ବର ପ୍ରଦାନ କରି ମହାଦେବ ଅନ୍ତର୍ହିତ ହୋଇଗଲେ । ବିଦ୍ୟୁଦ୍‌ଧ୍ୱଜ ନିଜର ମନୋରଥ ସିଦ୍ଧ ହୋଇଥିବା ଯୋଗୁଁ ବ୍ରତ ପାରଣା କରି ନିଜ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲା । ନାଗରିକମାନେ ତାର ଅଭିନନ୍ଦନ କଲେ । ରାଜପୁତ୍ରର କଲ୍ୟାଣ କାମନା କରି ତପସ୍ୟାରେ ବସିଥିବା ପୂର୍ବୋକ୍ତ ବୃଦ୍ଧ ମନ୍ତ୍ରୀଙ୍କ ସହିତ ଯାଇ ସାକ୍ଷାତ କଲା । ସେ ମଧ୍ୟ ଅତ୍ୟନ୍ତ ଆନନ୍ଦିତ ହୋଇ ରାଜ୍ୟରେ ମହୋତ୍ସବ ପାଳନ କରିବାର ବ୍ୟବସ୍ଥା କଲେ । କିନ୍ତୁ ବିଦ୍ୟୁଦ୍‌ଧ୍ୱଜ ଏସବୁ ପ୍ରତି ବିଶେଷ ଦୃଷ୍ଟି ନଦେଇ ମହାସଂଗ୍ରାମର ଆୟୋଜନ କଲା । ଏଥିପାଇଁ ପ୍ରସ୍ତୁତ ରହିବା ନିମିତ୍ତ ଦୂତଦ୍ୱାରା ଇନ୍ଦ୍ରଙ୍କ ନିକଟକୁ ମଧ୍ୟ ସମ୍ବାଦ ପ୍ରେରିତ ହେଲା । ସେନାମାନଙ୍କ କୋଳାହଳରେ ଗଗନପବନ ମୁଖରିତ ହୋଇଉଠିଲା ।

ଯୁଦ୍ଧପତାକା ସବୁ ଆକାଶକୁ ଆଚ୍ଛନ୍ନ କରି ରଖିଲା । ଦେବତାମାନେ ଅଶୁଭ ସୂଚକ ସଙ୍କେତ ସବୁ ଲକ୍ଷ୍ୟ କଲେ । ରାକ୍ଷସ ସଂଗ୍ରାମପାଇଁ ଦେବଲୋକକୁ ପ୍ରୟାଣ କଲା ।

ଶିବ-ବରରେ ବଳୀୟାନ୍ ବିଦ୍ୟୁଦ୍‌ଧ୍ୱଜର ଯୁଦ୍ଧଯାତ୍ରାରେ ବିଚଳିତ ହୋଇ ଦେବରାଜ ଇନ୍ଦ୍ର ଗୁରୁ ବୃହସ୍ପତିଙ୍କ ସହିତ ମନ୍ତ୍ରଣା କରି ଯୁଦ୍ଧପାଇଁ ସୈନ୍ୟବାହିନୀ ପ୍ରସ୍ତୁତ କଲେ । ଉଭୟ ସେନା ସମ୍ମୁଖୀନ ହେବାମାତ୍ରେ ମହାସମର ଆରମ୍ଭ ହେଲା । ସୈନିକମାନଙ୍କ ମଧ୍ୟରେ ନିଜ ପର ଜ୍ଞାନ ରହିଲା ନାହିଁ । ସୁବାହୁ ଆଦି ରାକ୍ଷସ ପବନଦେବଙ୍କ ସହିତ, ପିଙ୍ଗାକ୍ଷ ପ୍ରଭୃତି କୁବେରଙ୍କ ସହିତ, ମହାମାୟ ପ୍ରଭୃତି ଅଗ୍ନିଙ୍କ ସହିତ, ଅୟଃକାୟ ପ୍ରମୁଖ ସୂର୍ଯ୍ୟଙ୍କ ସହିତ, ଅକଂପନ ପ୍ରଭୃତି ସିଦ୍ଧମାନଙ୍କ ସହିତ, ଅନ୍ୟ କେତେକ ରାକ୍ଷସ ବିଦ୍ୟାଧର ଓ ଗନ୍ଧର୍ବମାନଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଏହିପରି ଏହି ମହାସଂଗ୍ରାମ କୋଡ଼ିଏ ଦିନ ପର୍ଯ୍ୟନ୍ତ ଚାଲିଲା । ଏକବିଂଶ ଦିବସରେ ଦେବତାମାନେ ପୃଷ୍ଠଭଙ୍ଗ ଦେଲେ । ଦୈତ୍ୟସେନା ସ୍ୱର୍ଗରାଜ୍ୟରେ ପ୍ରବେଶ କରୁଥିବା ଦେଖି ଇନ୍ଦ୍ର ସ୍ୱୟଂ ଐରାବତ ହସ୍ତୀ ଆରୋହଣ କରି ଯୁଦ୍ଧ ନିମିତ୍ତ ବାହାରିଲେ । ଚନ୍ଦ୍ରକେତୁ ପ୍ରଭୃତି ବିଦ୍ୟାଧର ରାଜା ନିଜ ନିଜର ବିପୁଳ ସେନାବାହିନୀ ସହିତ ଇନ୍ଦ୍ରଙ୍କୁ ସବୁଦିଗରୁ ରକ୍ଷା କରୁଥାନ୍ତି ।

ପୁନଶ୍ଚ ଯୁଦ୍ଧ ଆରମ୍ଭ ହେଲା । ବହୁ ଦେବସେନା ଓ ରାକ୍ଷସ ନିହତ ହେଲେ । ପିତୃହନ୍ତା ଇନ୍ଦ୍ରଙ୍କୁ ଦେଖି ପ୍ରତିଶୋଧପରାୟଣ ବିଦ୍ୟୁଦ୍‌ଧ୍ୱଜ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କଲା । ପ୍ରତ୍ୟସ୍ତ୍ର ଦ୍ୱାରା ସେ ଇନ୍ଦ୍ରଙ୍କ ସମସ୍ତ ଅସ୍ତ୍ରକୁ ବ୍ୟର୍ଥ କରୁଥାଏ । ଇନ୍ଦ୍ର ମଧ୍ୟ ନିଜର ବାଣଦ୍ୱାରା ତାର ଧନୁଗୁଣକୁ ବାରମ୍ବାର କର୍ତ୍ତନ କରୁଥାନ୍ତି । ଶିବଙ୍କ ବରରେ ଉଦ୍ଧତ ବିଦ୍ୟୁଦ୍‌ଧ୍ୱଜ ଧନୁ ପରିବର୍ତ୍ତେ ବିଶାଳ ଗଦା ଧାରଣ କରି ଇନ୍ଦ୍ରଙ୍କ ପ୍ରତି ଧାବମାନ ହେଲା । ସେ ତୀବ୍ର ବେଗରେ ଯାଇ ଐରାବତର ଉଭୟ ଦନ୍ତ ଉପରେ ଚଢ଼ିଗଲା ଏବଂ ମାହୁନ୍ତକୁ ହତ୍ୟା କଲା । ସେ ଦେବରାଜ ଇନ୍ଦ୍ରଙ୍କ ଉପରେ ଗଦା ପ୍ରହାର କଲାବେଳେ ଇନ୍ଦ୍ର ମୂଷଳ ପ୍ରହାର କରି ତା'ର ଉତ୍ତର ଦେଲେ । କିନ୍ତୁ ବିଦ୍ୟୁଦ୍‌ଧ୍ୱଜର ପ୍ରଚଣ୍ଡ ଗଦା ପ୍ରହାର ଇନ୍ଦ୍ରଙ୍କୁ ମୂର୍ଚ୍ଛିତ କଲା । ସେ ପବନ ଦେବଙ୍କ ରଥ ଉପରେ ଯାଇ ପଡ଼ିଲେ । ଏ ସମୟରେ ଶୂନ୍ୟବାଣୀ ହେଲା ଯେ ବର୍ତ୍ତମାନ ସମୟ ତୁମପାଇଁ ଅନୁକୂଳ ନୁହେଁ । ଇନ୍ଦ୍ରଙ୍କୁ ଯଥାଶୀଘ୍ର ଯୁଦ୍ଧ ଭୂମିରୁ ଦୂରେଇ ନିଅନ୍ତୁ । ପବନଦେବ ସଙ୍ଗେସଙ୍ଗେ ମନୋବେଗରେ ଇନ୍ଦ୍ରଙ୍କ ସହିତ ରଥକୁ ଦୂରେଇ ନେଲେ । ବିଦ୍ୟୁଦ୍‌ଧ୍ୱଜ ତାଙ୍କୁ ଧରିବାପାଇଁ ଚେଷ୍ଟା କରି ତଳେ ପଡ଼ିଗଲା । କିନ୍ତୁ ପୂର୍ବାପେକ୍ଷା ଅଧିକ ବେଗରେ ଗତି କରୁଥିବା ପବନଦେବଙ୍କ ରଥର ଅନୁଧାବନ କରିବାରୁ ସେ ନିବୃତ୍ତ ହେଲାନାହିଁ ।

ମାହୁନ୍ତର ମୃତ୍ୟୁପରେ ଐରାବତ ନିରଙ୍କୁଶ ହୋଇ ଭୟଙ୍କର କ୍ରୋଧରେ ଶତ୍ରୁ ସେନାବାହିନୀକୁ ପଦଦଳିତ କରିବାକୁ ଲାଗିଲା । ଅସଂଖ୍ୟ ସେନା ମୃତ୍ୟୁବରଣ କଲେ । ସେ ଇନ୍ଦ୍ର ଯିବା ମାର୍ଗରେ ଯୁଦ୍ଧଭୂମିରୁ ଫେରିଗଲା । ଦେବତାମାନେ ମଧ୍ୟ ଯୁଦ୍ଧ ଭୂମି ଛାଡ଼ି ଇନ୍ଦ୍ରଙ୍କ ଅନୁସରଣ କଲେ । ଦେବଗୁରୁ ବୃହସ୍ପତି ଅମଙ୍ଗଳ ଆଶଙ୍କା କରି ଇନ୍ଦ୍ରପତ୍ନୀ ଶଚୀଙ୍କୁ ଧରି ବ୍ରହ୍ମଲୋକ ଚାଲିଗଲେ । ଚେତନାପାଇ ଇନ୍ଦ୍ର ଦେଖିଲେ ଯେ ସମୟ ତାଙ୍କ ପାଇଁ ଅନୁକୂଳ ନୁହେଁ । ସେ ମଧ୍ୟ ଦେବତାମାନଙ୍କ ସହିତ ବ୍ରହ୍ମଲୋକରେ ଯାଇ ଆଶ୍ରୟ ନେଲେ । ବ୍ରହ୍ମା ତାଙ୍କୁ ଆଶ୍ୱାସନା ଦେଇ କହିଲେ, 'ବର୍ତ୍ତମାନ ଦୈତ୍ୟ ଯାହା କରିଛି ତାହା ଶିବଙ୍କ ବରପ୍ରଭାବ । ତୁମେ ଦୁଃଖକର ନାହିଁ । ପୁଣି ତୁମର ପଦ ତୁମେ ନିଶ୍ଚିତ ଭାବେ ଲାଭ କରିବ ।' ଏହିପରି ଆଶ୍ୱାସନା ଦେଇ ବ୍ରହ୍ମା ବ୍ରହ୍ମଲୋକର ଏକ ନିଭୃତ କୋଣରେ ଥିବା ସମାଧିସ୍ଥଳରେ ନେଇ ଦେବତାମାନଙ୍କୁ ସୁରକ୍ଷିତ କଲେ । ସେଠାରେ ସମସ୍ତ ସୁଖ ସୁବିଧାର ବ୍ୟବସ୍ଥା କରାଗଲା । ଇନ୍ଦ୍ର ଶଚୀ ଓ ଐରାବତ ସହିତ ସେଠାରେ ରହିବାକୁ ଲାଗିଲେ । ଇନ୍ଦ୍ରଙ୍କ ଆଦେଶରେ ବିଦ୍ୟାଧର ରାଜାମାନେ ବାୟୁଲୋକକୁ ଏବଂ ଗନ୍ଧର୍ବ ରାଜାମାନେ ଆକ୍ରମଣ ଆଶଙ୍କା ରହିତ ଚନ୍ଦ୍ରଲୋକରେ ଯାଇ ଆଶ୍ରୟ ନେଲେ । ଅନ୍ୟାନ୍ୟମାନେ ମଧ୍ୟ ନିଜ ନିଜ ସ୍ଥାନ ପରିତ୍ୟାଗ କରି ବିଭିନ୍ନ ସ୍ଥାନରେ ନିଜକୁ ଗୁପ୍ତ ରଖିଲେ ।

ଏଣେ ବିଦ୍ୟୁଦ୍‌ଧ୍ୱଜ ଡିଣ୍ଡିମ ବଜାଇ ସ୍ୱର୍ଗରାଜ୍ୟ ଅଧିକାର କଲା । ଇନ୍ଦ୍ରଙ୍କ ସିଂହାସନ ଉପରେ ବସି ସେ ନିଜକୁ ସ୍ୱର୍ଗରାଜ୍ୟର ଅଧିପତି ବୋଲି ଘୋଷଣା କଲା ।

ବହୁଦିନ ଧରି ବାୟୁଲୋକରେ ରହିବା ପରେ ବିଦ୍ୟାଧରରାଜ ଚନ୍ଦ୍ରକେତୁ ଚିନ୍ତା କଲେ 'ନିଜ ନିଜ ସ୍ଥାନରୁ ବିଚ୍ୟୁତ ହୋଇ ଆମେ ଏଠାରେ ଆଉ କେତେଦିନ ବା ରହିବା । ଏ ପର୍ଯ୍ୟନ୍ତ ଦେବଶତ୍ରୁ ବିଦ୍ୟୁଦ୍‌ଧ୍ୱଜର ତପସ୍ୟାର ପ୍ରଭାବ କ୍ଷୀଣ ହେଲା ନାହିଁ । ଶୁଣିଛି, ମିତ୍ର ପଦ୍ମଶେଖର ଚନ୍ଦ୍ରଲୋକରୁ ତପସ୍ୟା କରିବା ନିମିତ୍ତ ଶିବପୁରୀ ଯାଇଛନ୍ତି । ଗନ୍ଧର୍ବ-ରାଜଙ୍କ ତପସ୍ୟାରେ ଭଗବାନ କୈଳାସପତି ଏବେସୁଦ୍ଧା ତାଙ୍କ ପ୍ରତି ପ୍ରସନ୍ନ ହେଲେଣି କି ନାହିଁ ଜାଣିପାରୁନି । ତାଙ୍କ ସମ୍ପର୍କରେ ଜାଣିବା ପରେ ସିନା ମୋର କର୍ତ୍ତବ୍ୟାକର୍ତ୍ତବ୍ୟ ନିଶ୍ଚୟ କରିବି ।'

ବିଦ୍ୟାଧରାଧିପତି ଚନ୍ଦ୍ରକେତୁ ଏହିପରି ଚିନ୍ତା କରୁଥିବା ବେଳେ ମିତ୍ର ଗନ୍ଧର୍ବ-ରାଜ ପଦ୍ମଶେଖର ତପସ୍ୟାରେ ସଫଳକାମ ହୋଇ ତାଙ୍କ ନିକଟରେ ଆସି ପହଞ୍ଚିଲେ । ମିତ୍ରଙ୍କ ଦ୍ୱାରା ଯଥୋଚିତ ସତ୍‌କୃତ ହୋଇ ସେ ଜଣାଇଲେ, 'ମୁଁ ଶିବପୁରୀଠାରେ

ଦୀର୍ଘଦିନ ଧରି ଭଗବାନ ଶଙ୍କରଙ୍କ ଆରାଧନା କଲି । ଶିବ ମୋ ପ୍ରତି ପ୍ରସନ୍ନ ହୋଇ କହିଲେ ଯେ ମୁଁ ଏକ ଉତ୍ତମ ପୁତ୍ର ଲାଭ କରିବି । ମୋର ପୁଣି ରାଜ୍ୟଲାଭ ହେବ । ଭଗବାନ ପୁଣି କହିଲେ ଯେ ମୁଁ ଏକ ସର୍ବଶ୍ରେଷ୍ଠ କନ୍ୟାର ପିତା ହେବି । ସେ ଯେଉଁ ବୀରପୁରୁଷଙ୍କୁ ବିବାହ କରିବ ସେହି ବୀରପୁରୁଷ ହିଁ ବିଦ୍ୟୁଦ୍‌ଧ୍ୱଜର ବଧସାଧନ କରିବେ । ଶିବଙ୍କ ଠାରୁ ଏହିପରି ବରଲାଭ କରିବା ପରେ ମୁଁ ତମୁକୁ ଜଣାଇବା ନିମିତ୍ତ ଚାଲିଆସିଲି ।'

ମିତ୍ର ପଦ୍ମଶେଖରଙ୍କଠାରୁ ଏହା ଶୁଣି ଚନ୍ଦ୍ରକେତୁଙ୍କର ମଧ୍ୟ ଅନୁରୂପ ଆକାଂକ୍ଷା ଜାତ ହେଲା । ସେ କହିଲେ, 'ଆମର ଏହି ଦୁଃଖ ଲାଘବ କରିବା ନିମିତ୍ତ ମୋତେ ମଧ୍ୟ ଶିବାରାଧନା କରିବାକୁ ପଡ଼ିବ । ତାଙ୍କ ଆଶୀର୍ବାଦ ବିନା କୌଣସି ଅଭିଳାଷ ପୂର୍ଣ୍ଣ ହେବା ସମ୍ଭବ ନୁହେଁ ।' ଏହିପରି ନିଶ୍ଚୟ କରି ବିଦ୍ୟାଧରରାଜ ଚନ୍ଦ୍ରକେତୁ ସ୍ୱୀୟ ପତ୍ନୀ ମୁକ୍ତାବଳୀଙ୍କ ସହିତ ତପସ୍ୟା କରିବାପାଇଁ ସିଦ୍ଧଶିବକ୍ଷେତ୍ର ଶିବପୁରୀ ଅଭିମୁଖରେ ପ୍ରସ୍ଥାନ କଲେ । ପଦ୍ମଶେଖର ମଧ୍ୟ ଶିବଙ୍କଠାରୁ ଲାଭ କରିଥିବା ଆଶୀର୍ବାଦ କଥା ଇନ୍ଦ୍ରଙ୍କୁ ଜଣାଇ ଚନ୍ଦ୍ରଲୋକ ଅଭିମୁଖରେ ଯାତ୍ରା କଲେ ।

ନିଶ୍ଚିନ୍ତ ମନରେ ପଦ୍ମଶେଖରଙ୍କୁ ଯାଉଥିବା ଦେଖି ସମାଧି ସ୍ଥଳରେ ରହୁଥିବା ଦେବରାଜ ଇନ୍ଦ୍ରଙ୍କ ମନରେ ପୁନଃ ରାଜ୍ୟପ୍ରାପ୍ତିର ଆଶା ଉଜ୍ଜୀବିତ ହେଲା । ଶତ୍ରୁର ବିନାଶ ନିଶ୍ଚିତ ବୋଲି ଜାଣି ସେ ଦେବଗୁରୁ ବହସ୍ପତିଙ୍କୁ ସ୍ମରଣ କଲେ । ବୃହସ୍ପତି ତତ୍‌କ୍ଷଣାତ୍ ସେଠାରେ ଆସି ପହଞ୍ଚିବାରୁ ଇନ୍ଦ୍ର ଯଥୋଚିତ ସତ୍କାର କରି ନମ୍ରତାପୂର୍ବକ କହିଲେ ଯେ ପଦ୍ମଶେଖରଙ୍କ ତପସ୍ୟାରେ ଦେବଦେବ ମହାଦେବ ସନ୍ତୁଷ୍ଟ ହୋଇ ବର ପ୍ରଦାନ କରିଛନ୍ତି ଯେ ବିଦ୍ୟୁଦ୍‌ଧ୍ୱଜ ତାଙ୍କ ଜାମାତାଙ୍କ ଦ୍ୱାରା ନିହତ ହେବ । ଏଥିରୁ ଆମ୍ଭମାନଙ୍କ ସମସ୍ତ ସଙ୍କଟ ଦୂର ହେବାର ସମୟ ଉପସ୍ଥିତ ବୋଲି ମନେହେଉଛି । କିନ୍ତୁ ଏତେଦିନ ଧରି ଦେବଲୋକରୁ ବିଚ୍ୟୁତ ହୋଇ ଏହି ଅଜ୍ଞାତବାସ ଅସହ୍ୟ ହୋଇଉଠିଲାଣି । ତେଣୁ ଆପଣ ଆମର ମଙ୍ଗଳପାଇଁ ଯଥାଶୀଘ୍ର କିଛି ବ୍ୟବସ୍ଥା କରନ୍ତୁ ।

ଇନ୍ଦ୍ରଙ୍କ ଅନୁରୋଧରେ ଦେବଗୁରୁ ବୃହସ୍ପତି ଜଣାଇଲେ ଯେ କୁକର୍ମ ଯୋଗୁଁ ବିଦ୍ୟୁଦ୍‌ଧ୍ୱଜର ତପଃ ପ୍ରଭାବ କ୍ଷୀଣ ହୋଇ ଆସିଲାଣି । ତେଣୁ ଏହାହିଁ ଉପଯୁକ୍ତ ଅବସର । ଉଦ୍ୟମ କଲେ ଅବିଳମ୍ବେ ଫଳପ୍ରାପ୍ତି ହେବ । ତେଣୁ ବ୍ରହ୍ମାଙ୍କ ନିକଟକୁ ଗଲେ ସେ ଏ ସମ୍ପର୍କରେ ଉପଯୁକ୍ତ ପରାମର୍ଶ ଦେବେ ।

ବୃହସ୍ପତିଙ୍କ ନିର୍ଦ୍ଦେଶ ଅନୁଯାୟୀ ଇନ୍ଦ୍ର ତାଙ୍କ ସହିତ ବ୍ରହ୍ମାଙ୍କ ନିକଟରେ ଯାଇ ଉପସ୍ଥିତ ହେଲେ । ପ୍ରଣାମ ଜଣାଇ ବ୍ରହ୍ମାଙ୍କ ନିକଟରେ ନିଜର ମନକଥା ପ୍ରକାଶ କରନ୍ତେ ସେ କହିଲେ, 'ଆପଣମାନେ କଣ ଭାବୁଛନ୍ତି ମୁଁ ସେ ସମ୍ପର୍କରେ ଚିନ୍ତିତ ନୁହେଁ, କିନ୍ତୁ ଭଗବାନ ବୃଷଭଧ୍ୱଜ ଯାହା କରିଛନ୍ତି, ତାହା ସେ ହିଁ ଦୂର କରିପାରିବେ । କିନ୍ତୁ ଶିବଙ୍କୁ ହଠାତ୍ ସନ୍ତୁଷ୍ଟ କରିବା ସମ୍ଭବ ନୁହେଁ । ତେଣୁ, ଚାଲନ୍ତୁ, ଆମେ ଭଗବାନ ବିଷ୍ଣୁଙ୍କ ନିକଟକୁ ଯିବା । ହରି ଓ ହରଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ସେ ନିଶ୍ଚିତ ଭାବେ ଆମର ମଙ୍ଗଳପାଇଁ କୌଣସି ଉପାୟ ବାହାର କରିପାରିବେ ।' ବ୍ରହ୍ମା, ଇନ୍ଦ୍ର ଓ ବୃହସ୍ପତି ହଂସବାହନ ଆରୋହଣ କରି ଶ୍ୱେତଦ୍ୱୀପରେ ଯାଇ ପହଞ୍ଚିଲେ । ଶ୍ୱେତଦ୍ୱୀପର ପ୍ରତ୍ୟେକଟି ବ୍ୟକ୍ତି ଚତୁର୍ଭୁଜ । ସେମାନଙ୍କ ହସ୍ତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମପୁଷ୍ପ ଶୋଭା ପାଉଥାଏ । ସେମାନଙ୍କ ଶରୀର ଓ ହୃଦୟ ବିଷ୍ଣୁମୟ । ବ୍ରହ୍ମାଙ୍କ ସହିତ ଯାଇ ସମସ୍ତେ ଭଗବାନ ବିଷ୍ଣୁଙ୍କ ଦର୍ଶନ କଲେ । ସେ ବିଶାଳ ରତ୍ନମୟ ଭବନ ମଧ୍ୟରେ ଅନନ୍ତ ଶଯ୍ୟା ଉପରେ ବସିଥାନ୍ତି । ଭଗବତୀ ଲକ୍ଷ୍ମୀ ତାଙ୍କ ପଦସଂବାହନରେ ରତ । ସମସ୍ତେ ସ୍ତୁତିଗାନ କରି ପ୍ରଣାମ କରନ୍ତେ ବିଷ୍ଣୁ ସମସ୍ତଙ୍କ ଯଥୋଚିତ ସତ୍କାର କଲେ । ନିଜ ନିଜ ଆସନ ଗ୍ରହଣ କଲାପରେ ଭଗବାନ ସେମାନଙ୍କ କୁଶଳ ଜିଜ୍ଞାସା କରନ୍ତେ ସେମାନେ ଯୁକ୍ତହସ୍ତରେ କହିଲେ, 'ଭଗବନ୍ ! ବିଦ୍ୟୁଦ୍‌ଧ୍ୱଜ ଥିବା ପର୍ଯ୍ୟନ୍ତ ଆମ କୁଶଳତାର ପ୍ରଶ୍ନ ଉଠୁଛି କେଉଁଠି ? ସେ ଆମ୍ଭମାନଙ୍କ ଯେଉଁ ଦୁରବସ୍ଥା କରିଛି, ତାହା ତ ଆପଣ ଜାଣନ୍ତି । ସେଥିପାଇଁ ଆମେ ଆପଣଙ୍କ ନିକଟକୁ ଆସିଛୁ । ପରବର୍ତ୍ତୀ ସମୟରେ କଣ ହେବ ତାହା ଆପଣ କେବଳ ଜାଣନ୍ତି ।'

ଦେବତାମାନଙ୍କ କଥା ଶୁଣି ଭଗବାନ ବିଷ୍ଣୁ କହିଲେ, 'ବିଦ୍ୟୁଦ୍‌ଧ୍ୱଜଦ୍ୱାରା ଯେ ଆମ୍ଭମାନଙ୍କର ଏ ଅବସ୍ଥା ହୋଇଛି, ତାହା କଣ ମୁଁ ଜାଣେନି ? କିନ୍ତୁ ତ୍ରିପୁରାନ୍ତକ ଭଗବାନ୍ ଶିବଙ୍କ ବର ପ୍ରଭାବରୁ ଏ ପରିସ୍ଥିତି ସୃଷ୍ଟି ହୋଇଛି, ତାହାକୁ ସେ ନିଜେ ହିଁ ବଦଳାଇ ପାରିବେ; ମୋ ପକ୍ଷରେ ତାହା ସମ୍ଭବ ନୁହେଁ । ସେହି ଶିବଙ୍କଦ୍ୱାରା ହିଁ ରାକ୍ଷସର ବଧ ସାଧିତ ହେବ । ଆପଣମାନେ ଯଦି ଶୀଘ୍ର କାର୍ଯ୍ୟାନୁଷ୍ଠାନ କରିବାପାଇଁ ଚାହୁଁଥାନ୍ତି ତେବେ ମୁଁ ଗୋଟିଏ ଉପାୟ ବତାଉଛି ଶୁଣନ୍ତୁ । ସିଦ୍ଧୀଶ୍ୱର ନାମରେ ଏକ ସିଦ୍ଧ ଶିବକ୍ଷେତ୍ର ଅଛି । ଭଗବାନ ଶିବ ସର୍ବଦା ସେଠାରେ ବାସ କରନ୍ତି । ପ୍ରାଚୀନ କାଳରେ ସେ ସେଠାରେ ଜ୍ୟୋତିର୍ଲିଙ୍ଗ ରୂପେ ଆବିର୍ଭୂତ ହୋଇ ତାଙ୍କର ଏ ରହସ୍ୟ ମୋତେ ଓ ବ୍ରହ୍ମାଙ୍କୁ କହିଥିଲେ । ତେଣୁ, ଆସନ୍ତୁ, ଆମେ ସେଠାକୁ ଯାଇ ତାଙ୍କ ଦର୍ଶନ ନିମିତ୍ତ ତପସ୍ୟା କରିବା । ଆମ ପ୍ରାର୍ଥନା ଶୁଣି ସେ ନିଶ୍ଚିତ ଭାବେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିଲୋକର ଏ ସନ୍ତାପ ଦୂର କରିବେ ।'

ଭଗବାନ ବିଷ୍ଣୁ ଏହା କହି ଅନ୍ୟମାନଙ୍କ ସହିତ ହଂସ ଓ ଗରୁଡ଼ ପୃଷ୍ଠରେ ସିଦ୍ଧୀଶ୍ୱର କ୍ଷେତ୍ରରେ ଯାଇ ଉପସ୍ଥିତ ହେଲେ । ସେହି ସିଦ୍ଧ କ୍ଷେତ୍ରକୁ ବାର୍ଦ୍ଧକ୍ୟ, ମୃତ୍ୟୁ ଓ ରୋଗ ସ୍ପର୍ଶ କରିପାରୁ ନଥିଲା । ତାହା ଥିଲା ଦିବ୍ୟ ଆନନ୍ଦ ଧାମ । ସେହି କ୍ଷେତ୍ରସ୍ଥିତ ସମସ୍ତ ପଶୁ, ପକ୍ଷୀ ଓ ବୃକ୍ଷଲତା ସୁବର୍ଣ୍ଣ ଓ ରତ୍ନମୟ ଥିଲେ । ଏକ ବିଶାଳ ଶିବଲିଙ୍ଗ ସେଠାରେ ଶୋଭା ପାଉଥିଲା । ତାହା ଏକ ସ୍ୱୟଂଭୂ ଜ୍ୟୋତିର୍ଲିଙ୍ଗ । ଲିଙ୍ଗଟି ମଧ୍ୟରେ ପ୍ରତି ମୁହୂର୍ତ୍ତରେ ଭଗବାନ ଶଙ୍କରଙ୍କ ଭିନ୍ନଭିନ୍ନ ରୂପ ଝଲସି ଉଠୁଥାଏ । ପ୍ରତି ମୁହୂର୍ତ୍ତରେ ଲିଙ୍ଗଟି ବିଭିନ୍ନ ରତ୍ନର ଶୋଭା ପ୍ରକାଶ କରୁଥାଏ ।

ବିଷ୍ଣୁ, ବ୍ରହ୍ମା, ଇନ୍ଦ୍ର ଓ ବୃହସ୍ପତି ବ୍ୟଗ୍ର ଭାବରେ ଭଗବାନ୍ ଭବାନୀପତିଙ୍କୁ ସନ୍ତୁଷ୍ଟ କରିବାପାଇଁ ସେଠାରେ କଠୋର ତପସ୍ୟା ଆରମ୍ଭ କଲେ ।

ଏହା ମଧ୍ୟରେ ବିଦ୍ୟାଧରରାଜ ଚନ୍ଦ୍ରକେତୁ କଠୋର ତପସ୍ୟା କରି ଭଗବାନ ଶଙ୍କରଙ୍କୁ ସନ୍ତୁଷ୍ଟ କରିଥାନ୍ତି । ସେ ବରଦାନ କରିଥାନ୍ତି ଯେ ତାଙ୍କ ଗୃହରେ ଏକ ମହାନ୍ ବୀରପୁତ୍ର ଜନ୍ମଲାଭ କରିବ । ତା'ଦ୍ୱାରା ହିଁ ଦୈତ୍ୟ ବିଦ୍ୟୁଦ୍‌ଧ୍ୱଜ ପରାଜିତ ହୋଇ ମୃତ୍ୟୁବରଣ କରିବ । ସେହି ବାଳକଟି ଅଭିଶପ୍ତ ହୋଇ ପ୍ରଥମେ ମନୁଷ୍ୟ ଯୋନିରେ ଜନ୍ମନେବ ଏବଂ ଦେବତାମାନଙ୍କର ମଙ୍ଗଳ ସାଧନକରିବ । ଗନ୍ଧର୍ବରାଜଙ୍କ କନ୍ୟା ପଦ୍ମାବତୀର ତପସ୍ୟା ଫଳରେ ସେ ପୁଣି ନିଜ ସ୍ୱରୂପ ପ୍ରାପ୍ତ ହୋଇ ପଦ୍ମାବତୀ ସହିତ ଚାଳିଶିଟି ଯୁଗ ପର୍ଯ୍ୟନ୍ତ ବିଦ୍ୟାଧର ସାମ୍ରାଜ୍ୟ ଭୋଗ କରିବ । ଭଗବାନ ଶଙ୍କରଙ୍କଠାରୁ ଏହିପରି ବରପ୍ରାପ୍ତ ହୋଇ ଚନ୍ଦ୍ରକେତୁ ପତ୍ନୀ ସହିତ ବାୟୁଲୋକକୁ ଫେରିଯାଇଥାନ୍ତି ।

ବିଷ୍ଣୁ, ବ୍ରହ୍ମା ପ୍ରଭୃତି ଦେବତାଙ୍କ ଘୋର ତପସ୍ୟାରେ ଭଗବାନ ଶଙ୍କର ସନ୍ତୁଷ୍ଟ ହେଲେ । ସିଦ୍ଧୀଶ୍ୱର କ୍ଷେତ୍ରର ସେହି ଜ୍ୟୋତିର୍ଲିଙ୍ଗ ମଧ୍ୟରେ ହିଁ ଦର୍ଶନ ପ୍ରଦାନ କରି ହସିହସି କହିଲେ, 'ଆପଣମାନେ ମୋ ପାଇଁ ବହୁକଷ୍ଟ ସ୍ୱୀକାର କରିଛନ୍ତି । ଉଠନ୍ତୁ, ଆପଣଙ୍କ ସମସ୍ତ ସଙ୍କଟ ଦୂର ହେବ । ଆପଣମାନଙ୍କ ପକ୍ଷରୁ ବିଦ୍ୟାଧରରାଜ ଚନ୍ଦ୍ରକେତୁ କଠୋର ତପସ୍ୟା କରି ମୋର ବରଲାଭ କରିଛନ୍ତି । ମୋ ଅଂଶରୁ ତାଙ୍କର ଏକ ମହାନ୍ ଶକ୍ତିଶାଳୀ ପୁତ୍ର ଜାତ ହେବ । ସେ ସଂଗ୍ରାମରେ ଦୁଷ୍ଟ ବିଦ୍ୟୁଦ୍‌ଧ୍ୱଜକୁ ବଧ କରିବ । ଦେବତାମାନଙ୍କ ଅନ୍ୟ କାର୍ଯ୍ୟ ସିଦ୍ଧିପାଇଁ ସମୟକ୍ରମେ ସେ ମନୁଷ୍ୟ ଯୋନିରେ ଯାଇ ଅବତୀର୍ଣ୍ଣ ହେବ । ଗନ୍ଧର୍ବରାଜ ପଦ୍ମଶେଖରଙ୍କ କନ୍ୟା ମର୍ତ୍ତ୍ୟଲୋକରୁ ତାକୁ ଉଦ୍ଧାର କରିବ । ଏହି କନ୍ୟାଟି ମଧ୍ୟ ଭଗବତୀ ଗୌରୀଙ୍କ ଅଂଶ ସମ୍ଭୂତା । ଉଭୟେ ପୁନଶ୍ଚ ବିଦ୍ୟାଧର ରୂପେ ଦୀର୍ଘଦିନ ଧରି ମୋ ଆଶ୍ରୟରେ କାଳାତିପାତ କରିବେ । ଆପଣମାନେ ଧୈର୍ଯ୍ୟ ଧରି ଆଉ କିଛି

ସମୟ ଅପେକ୍ଷା କରନ୍ତୁ । ଆପଣମାନଙ୍କ ଅଭିଳାଷ ପୂର୍ଣ୍ଣ ହେଲା ବୋଲି ମନେକରି ନିଜନିଜ ସ୍ଥାନକୁ ଫେରିଯାଆନ୍ତୁ ।’

ଭଗବାନ ମହେଶ୍ୱର ଜ୍ୟୋତିର୍ଲିଙ୍ଗ ମଧ୍ୟରେ ଅନ୍ତର୍ହିତ ହୁଅନ୍ତେ ବିଷ୍ଣୁ ପ୍ରଭୃତି ଦେବବୃନ୍ଦ ନିଜ ନିଜ ଲୋକକୁ ଫେରିଗଲେ ।

କିଛିଦିନ ପରେ ବିଦ୍ୟାଧରରାଜ ଚନ୍ଦ୍ରକେତୁଙ୍କ ପତ୍ନୀ ମୁକ୍ତାବଳୀଙ୍କ ଗର୍ଭୋଦୟ ହେଲା । ସେ ଯଥାସମୟରେ ଏକ ପୁତ୍ରସନ୍ତାନକୁ ଜନ୍ମଦେଲେ । ପୁତ୍ରଟି ଭୂମିଷ୍ଠ ହେବାମାତ୍ରେ ଦଶଦିଗ ଆଲୋକିତ ହୋଇଉଠିଲା । ମନେହେଲା ଶଙ୍କଟରୂପକ ଅନ୍ଧକାରକୁ ଦୂର କରିବାପାଇଁ ଅଂଶୁମାନ୍ ସୂର୍ଯ୍ୟ ଉଦିତ ହେଲେ । ଦିବ୍ୟବାଣୀ ଶୁଣାଗଲା ଯେ ସେହି ସନ୍ତାନ ବିଦ୍ୟୁଦ୍‌ଧ୍ୱଜ ଦୈତ୍ୟକୁ ବିନାଶ କରିବ । ଏହି ଶତ୍ରୁସଂହାରକାରୀ ପୁତ୍ରଟିର ନାମ ମୁକ୍ତାଫଳକେତୁ ହେବ । ଦିବ୍ୟବାଣୀ ଉପଗତ ହେବାମାତ୍ରେ ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ସମ୍ବାଦ ପାଇ ପଦ୍ମଶେଖର, ଇନ୍ଦ୍ର ପ୍ରଭୃତି ନିଜ ନିଜର ଗୁପ୍ତବାସରୁ ସେଠାରେ ଆସି ଉପସ୍ଥିତ ହେଲେ । ପରସ୍ପରଠାରୁ ଶିବଙ୍କ ବରଲାଭ କଥା ଶୁଣି ସେମାନଙ୍କର ଚିନ୍ତା ଦୂର ହେଲା । ସେମାନେ ପୁଣି ନିଜନିଜ ଅଜ୍ଞାତ ବାସସ୍ଥଳୀକୁ ଫେରିଗଲେ ।

ମୁକ୍ତାଫଳକେତୁ ଚନ୍ଦ୍ରକଳା ତୁଲ୍ୟ ଧୀରେଧୀରେ ବଢ଼ିବାକୁ ଲାଗିଲେ । ତାଙ୍କ ବୟୋବୃଦ୍ଧି ସହିତ ଦେବତାମାନଙ୍କ ଆନନ୍ଦ ମଧ୍ୟ ବୃଦ୍ଧିପ୍ରାପ୍ତ ହେଲା ।

ଚନ୍ଦ୍ରକେତୁଙ୍କ ପୁତ୍ରଲାଭର କିଛି ସମୟ ବ୍ୟବଧାନରେ ଗନ୍ଧର୍ବରାଜ ପଦ୍ମଶେଖର ମଧ୍ୟ ଏକ କନ୍ୟାଲାଭ କଲେ । ତା’ର ଜନ୍ମ ସମୟରେ ଆକାଶ ମାର୍ଗରୁ ଶୁଣାଗଲା ଯେ ପଦ୍ମାବତୀ ନାମକ ଏହି କନ୍ୟା ବିଦ୍ୟୁଦ୍‌ଧ୍ୱଜର ନିଧନ କର୍ତ୍ତା ବିଦ୍ୟାଧରରାଜଙ୍କ ପତ୍ନୀ ହେବ । କନ୍ୟାଟି ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । ତା’ର କ୍ରମବର୍ଦ୍ଧମାନ ଶାରୀରିକ ସୌନ୍ଦର୍ଯ୍ୟ ଦେଖିଲେ ମନେହେଉଥିଲା ସତେ ଯେପରି ଚନ୍ଦ୍ରଲୋକରେ ଜନ୍ମଗ୍ରହଣ କରିଥିବା ଯୋଗୁଁ ଅମୃତନିଧିରେ ତରଙ୍ଗରାଶି ସୃଷ୍ଟି ହେଉଛି ।

ବାଳକ ମୁକ୍ତାଫଳକେତୁ ଶୈଶବରେ ହିଁ ସମସ୍ତ ବିଦ୍ୟାର ଅଧିକାରୀ ହେଲେ । ଭଗବାନ ଶଙ୍କରଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି । ଉପନୟନ ସଂସ୍କାର ପରେ ସେ ସର୍ବଦା ବ୍ରତ, ଉପବାସ ଆଦି ପାଳନ କରୁଥାନ୍ତି । ଏକଦା ବାରଦିନ ଉପବାସ ରହି ସେ ଭଗବାନ ଶିବଙ୍କ ଆରାଧନା କଲେ । ଏଥିରେ ଗୌରୀପତି ସନ୍ତୁଷ୍ଟ ହୋଇ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ପ୍ରଦାନପୂର୍ବକ କହିଲେ, ‘ବତ୍ସ ! ମୁଁ ତୋର ତପସ୍ୟାରେ ସନ୍ତୁଷ୍ଟ । ମୋର ଆଶୀର୍ବାଦରୁ

ସମସ୍ତ ଅସ୍ତ୍ରଶସ୍ତ୍ର ତୋତେ ସ୍ୱୟଂ ପ୍ରାପ୍ତ ହେବେ । ଅତିଶୀଘ୍ର ତୁ ସମସ୍ତ ବିଦ୍ୟାରେ ଧୁରୀଣ ହେବୁ । ମୋର ଏହି ଅପରାଜିତ ନାମକ ଖଡ୍‌ଗ ଗ୍ରହଣ କର । ଏହାଦ୍ୱାରା ଶତ୍ରୁ-ମାନଙ୍କଠାରୁ ତୁ ସର୍ବଦା ଅପରାଜିତ ରହି ସାମ୍ରାଜ୍ୟଲକ୍ଷ୍ମୀ ଭୋଗ କରିବୁ ।'

ଖଡ୍‌ଗ ଓ ବର ପ୍ରଦାନ କରି ଭଗବାନ ଗୌରୀପତି ଅନ୍ତର୍ହିତ ହେଲେ । ତାଙ୍କ ଆଶୀର୍ବାଦ ପ୍ରଭାବରେ ବିଦ୍ୟାଧର ରାଜପୁତ୍ର ମୁକ୍ତାଫଳକେତୁ ଶୈଶବରୁ ହିଁ ଦିବ୍ୟାସ୍ତ୍ର ବଳରେ ମହାପରାକ୍ରମଶାଳୀ ହୋଇଉଠିଲେ ।

ଏହା ମଧ୍ୟରେ ସେହି ଦୈତ୍ୟ ବିଦ୍ୟୁଦ୍‌ଧ୍ୱଜ ଆକାଶବାହିନୀ ଗଙ୍ଗାରେ ଜଳକ୍ରୀଡ଼ା କରୁଥାଏ । ସେ ଲକ୍ଷ୍ୟ କଲା ଯେ ନଦୀର ଜଳ ପୁଷ୍ପ ପରାଗରେ ଆରକ୍ତ ବର୍ଣ୍ଣ ହୋଇଉଠୁଛି । ହସ୍ତୀର ମଦଗନ୍ଧରେ ସୁବାସିତ ଜଳରାଶି ପ୍ରବଳ ତରଙ୍ଗାବଳୀରେ ଆନ୍ଦୋଳିତ ହୋଇଉଠୁଛି । ନିଜ ପରାକ୍ରମରେ ମଦୋନ୍ମତ୍ତ ରାକ୍ଷସ ଏହାର କାରଣ ଜାଣିବା ପାଇଁ ଅନୁଚରମାନଙ୍କୁ ପ୍ରେରଣ କଲା । ସେମାନେ ଆସି ସମ୍ବାଦ ଦେଲେ ଯେ ଶିବଙ୍କ ବୃଷଭ ନନ୍ଦୀ ଇନ୍ଦ୍ରବାହନ ଐରାବତ ସହିତ ଉପରେ ଜଳକ୍ରୀଡ଼ା କରୁଛି । ତେଣୁ ନନ୍ଦୀ କଣ୍ଠରୁ ବଚ୍ଛିନ୍ନ ପୁଷ୍ପମାଳା ଏବଂ ଐରାବତର ଗଣ୍ଡଦେଶରୁ ସ୍ରବିତ ମଦବାରିଦ୍ୱାରା ଗଙ୍ଗାସ୍ରୋତର ଅବସ୍ଥା ଏହିପରି ହୋଇଛି । ସ୍ୱାଭିମାନବଶତଃ ବରଦାତା ଶିବଙ୍କୁ ମଧ୍ୟ ଭ୍ରୂକ୍ଷେପ ନକରି ସେ ନନ୍ଦୀ ଓ ଐରାବତକୁ ବାନ୍ଧି ଆଣିବାପାଇଁ ଅନୁଚରମାନଙ୍କୁ ପଠାଇଲା । ଅନୁଚରମାନେ ଏପରି ଦୁଃସାହସ କରିବା ଯୋଗୁଁ ଉଭୟ ଦେବବାହନ ସେମାନଙ୍କ ମଧ୍ୟରୁ ବହୁ ଅନୁଚରଙ୍କୁ ମାରିଦେଲେ । ଅବଶିଷ୍ଟ ରାକ୍ଷସମାନେ ବିଦ୍ୟୁଦ୍‌ଧ୍ୱଜ ନିକଟରେ ଆସି ଏହା ଜଣାଇବାରୁ ସେ ସେମାନଙ୍କୁ ଧରିବାପାଇଁ ଏକ ବିଶାଳ ରାକ୍ଷସ ସେନା ପ୍ରେରଣ କଲା । ଏହି ସେନାବାହିନୀକୁ ଧ୍ୱସ୍ତବିଧ୍ୱସ୍ତ କରି ନନ୍ଦୀ ଶିବଙ୍କ ନିକଟକୁ ଏବଂ ଐରାବତ ଇନ୍ଦ୍ରଙ୍କ ସମୀପକୁ ଫେରିଗଲେ ।

ଐରାବତଠାରୁ ରାକ୍ଷସ ସେନା ପରାସ୍ତ ହୋଇଥିବା ଶୁଣି ଇନ୍ଦ୍ର ଆଶ୍ୱସ୍ତ ହେଲେ । ଶିବଙ୍କ ପ୍ରତି ମଧ୍ୟ ଅବମାନନା କରିଥିବା ଯୋଗୁଁ ବିଦ୍ୟୁଦ୍‌ଧ୍ୱଜର ଅନ୍ତିମ ସମୟ ନିକଟତର ହେଲା ବୋଲି ତାଙ୍କର ବିଶ୍ୱାସ ହେଲା । ସେ ଯାଇ ବ୍ରହ୍ମାଙ୍କୁ ଏ ସମ୍ବାଦ ଶୁଣାଇଲେ । ତାଙ୍କ ପରାମର୍ଶକ୍ରମେ ବିଦ୍ୟାଧର ଓ ଦେବସେନା ଏକତ୍ର ପ୍ରସ୍ତୁତ ହେଲା । ଦେବରାଜ ଇନ୍ଦ୍ର ଐରାବତ ଉପରେ ଆରୋହଣ କଲେ । ଦେବୀ ଶଚୀଙ୍କଦ୍ୱାରା ଅଭିନନ୍ଦିତ ହୋଇ ଏହି ବିପୁଳ ସେନାବାହିନୀ ସହିତ ବିଦ୍ୟୁଦ୍‌ଧ୍ୱଜକୁ ଆକ୍ରମଣ କରିବାପାଇଁ ଦେବରାଜ ଇନ୍ଦ୍ରଙ୍କ ବିଜୟ ଯାତ୍ରା ଆରମ୍ଭ ହେଲା ।

## ତୃତୀୟ ତରଙ୍ଗ

ଦେବରାଜ ଇନ୍ଦ୍ର ବିଶାଳ ଦେବ ଓ ବିଦ୍ୟାଧର ସେନା ସହିତ ସ୍ୱର୍ଗପୁରରେ ଯାଇ ପହଞ୍ଚିଲେ । ମହାଦେବଙ୍କ ଆଶୀର୍ବାଦ ଲାଭ କରିଥିବା ଯୋଗୁଁ ସେମାନଙ୍କ ମନରୁ ପରାଜୟର ଭୟ ଦୂରୀଭୂତ ହୋଇଥିଲା । ଦୀର୍ଘ ସମୟ ଧରି ନିଶ୍ଚେଷ୍ଟ ଭାବେ ବସି ରହିଥିବା ଯୋଗୁଁ ସେମାନେ ସଂଗ୍ରାମପାଇଁ ଉତ୍କଣ୍ଠିତ ଥିଲେ । ଇନ୍ଦ୍ରଙ୍କ ଆଦେଶ ପାଇବା ମାତ୍ରେ ଏହି ବିଶାଳ ସେନା ବିଦ୍ୟୁଦ୍‌ଧ୍ୱଜର ସେନାବାହିନୀକୁ ଚତୁର୍ଦ୍ଦିଗରୁ ଘେରିଗଲେ ।

ସମ୍ବାଦ ପାଇ ବିଦ୍ୟୁଦ୍‌ଧ୍ୱଜର ଦୈତ୍ୟ ସେନାବାହିନୀ ସଜାଗ ହୋଇଉଠିଲା । ସେ ନିଜେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇଆସିଲା । ରଥପତାକା ଉପରେ ବଜ୍ରପାତ, ଗୃଧ୍ରମାନଙ୍କ ପକ୍ଷସଞ୍ଚାଳନ, ଛତ୍ରଦଣ୍ଡଭଙ୍ଗ ଇତ୍ୟାଦି ଅପଶକୁନ ପ୍ରତି ଭ୍ରୂକ୍ଷେପ ନକରି ସେ ଦେବସେନାର ସମ୍ମୁଖୀନ ହେଲା । ଉଭୟ ସେନାବାହିନୀ ମହାସମରରେ ପ୍ରବୃତ୍ତ ହେଲେ ।

ଯୁଦ୍ଧ ଭୂମିରେ ମୁକ୍ତାଫଳକେତୁଙ୍କୁ ନଦେଖି ଇନ୍ଦ୍ର ଏହାର କାରଣ ସମ୍ପର୍କରେ ବିଦ୍ୟାଧର ଅଧିପତି ଚନ୍ଦ୍ରକେତୁଙ୍କୁ ଜିଜ୍ଞାସା କରନ୍ତେ ସେ ଜଣାଇଲେ ଯେ ସେନାବାହିନୀକୁ ନିୟନ୍ତ୍ରଣ କରିବାପାଇଁ ଶୀଘ୍ର ଚାଲିଆସିଥିବା ଯୋଗୁଁ ସେ ତାଙ୍କ ଆସିବା କଥା କହିବାପାଇଁ ଭୁଲିଯାଇଛନ୍ତି । ଯୁଦ୍ଧ ସମ୍ବାଦ ଶୁଣିବା ମାତ୍ରେ ସେ ଅବିଳମ୍ବେ ଏଠାରେ ନିଶ୍ଚୟ ଆସି ପହଞ୍ଚିବ ।

ଦେବରାଜ ଇନ୍ଦ୍ର ଚନ୍ଦ୍ରକେତୁଙ୍କ କଥାରେ ସ୍ଥିର ହୋଇ ରହିପାରିଲେ ନାହିଁ । ମୁକ୍ତାଫଳକେତୁଙ୍କୁ ଆଣିବା ନିମିତ୍ତ ରଥସହିତ ସେ ବାୟୁଦେବଙ୍କୁ ପଠାଇଲେ । ପିତା ଚନ୍ଦ୍ରକେତୁ ମଧ୍ୟ ପୁତ୍ରକୁ ସମ୍ବାଦ ଦେବା ନିମିତ୍ତ ଜଣେ ଦୂତକୁ ଉପଯୁକ୍ତ ସେନାବାହିନୀ ସହିତ ରଥପଛରେ ପ୍ରେରଣ କଲେ ।

ଏଣେ ମୁକ୍ତାଫଳକେତୁ ଦ୍ୱାରପାଳମାନଙ୍କଠାରୁ ଦେବାସୁର ସଂଗ୍ରାମ ବିଷୟ ଜାଣିବାକୁ ପାଇଲେ । ପିତା ଚନ୍ଦ୍ରକେତୁ ଏଥିରେ ଯୋଗ ଦେବାପାଇଁ ଯାଇଥିବା ଶୁଣି ସେ ବିନ ବିଳମ୍ବରେ ଯୁଦ୍ଧ ଭୂମିକୁ ଯିବାପାଇଁ ପ୍ରସ୍ତୁତ ହେଲେ । ଜୟ ନାମକ ହସ୍ତୀ ପୃଷ୍ଠରେ

ଆରୋହଣ କରିବା ମାତ୍ରେ ମାତା ପୁତ୍ରର ବିଜୟ କାମନାକରି ମାଙ୍ଗଳିକ କର୍ମ ଅନୁଷ୍ଠାନ କଲେ । ଆକାଶରୁ ପୁଷ୍ପ ବୃଷ୍ଟି ହେବାକୁ ଲାଗିଲା । ମୃଦୁମନ୍ଦ ମଳୟ ହିଲ୍ଲୋଳରେ ରଥ ପତାକାସବୁ ଭାବୀ ମଙ୍ଗଳର ସୂଚନା ଦେଲେ । ଦେବତାମାନଙ୍କ ଦୁନ୍ଦୁଭି ବାଦ୍ୟ ସୈନିକମାନଙ୍କୁ ପ୍ରୋତ୍ସାହିତ କଲା । ମୁକ୍ତାଫଳକେତୁ ଶିବଦତ୍ତ ଖଡ୍ଗ ଧାରଣ ପୂର୍ବକ ବାୟୁଲୋକରୁ ନିଷ୍କ୍ରାନ୍ତ ହେଲେ । ବିଦ୍ୟୁଦ୍‌ଧ୍ୱଜର ଭୟରେ ଯେଉଁ ଦେବତାମାନେ ବିଭିନ୍ନ ସ୍ଥାନରେ ଆତ୍ମଗୋପନ କରି ରହିଥିଲେ ସେମାନେ କ୍ରମେ କ୍ରମେ ତାଙ୍କ ସହିତ ଆସି ମିଳିତ ହେଲେ । ମୁକ୍ତାଫଳକେତୁ ଏହି ବିପୁଳ ସେନାବାହିନୀ ସହିତ ବୀରବିକ୍ରମରେ ରଣଭୂମି ଅଭିମୁଖରେ ଚାଲିଥାନ୍ତି ।

ପଥ ମଧ୍ୟରେ ସେମାନଙ୍କୁ ଦେବୀ ପାର୍ବତୀଙ୍କ ମେଘବନ ନାମକ ଏକ ପ୍ରଶସ୍ତ ଆୟତନ ବିଶିଷ୍ଟ ମନ୍ଦିର ଅତିକ୍ରମ କରିବାକୁ ପଡ଼ିଲା । ସେ ଦେବୀଙ୍କୁ ଉଲ୍ଲଙ୍ଘନ ନକରି ହସ୍ତୀପୃଷ୍ଠରୁ ଅବତରଣ କଲେ । ନିକଟସ୍ଥ ଲତାଗୁଡ଼ିକରୁ ପୁଷ୍ପ ଚୟନ କରି ସେ ଦେବୀଙ୍କ ଆରାଧନାରେ ପ୍ରବୃତ୍ତ ହେଲେ ।

ଏହା ମଧ୍ୟରେ ଗନ୍ଧର୍ବରାଜ ପଦ୍ମଶେଖରଙ୍କ କନ୍ୟା ପଦ୍ମାବତୀ ଯୌବନରେ ପଦାର୍ପଣ କରିଥାନ୍ତି । ଯୁଦ୍ଧକ୍ଷେତ୍ରକୁ ଯାଇଥିବା ପତିଙ୍କ ମଙ୍ଗଳକାମନା କରି ତପସ୍ୟା କରୁଥିବା ମାତାଙ୍କଠାରୁ ଅନୁମତି ନେଇ ସେ ପିତା ଏବଂ ଭାବୀପତିଙ୍କ ମଙ୍ଗଳ କାମନାରେ ଦେବୀ ଆରାଧନା ନିମିତ୍ତ ବିମାନରେ ଆସି ପାର୍ବତୀଙ୍କ ସେହି ମନ୍ଦିରରେ ପହଞ୍ଚିଲେ । ପଥ ମଧ୍ୟରେ ଜନୈକା ସଖୀ 'ଯୁଦ୍ଧରେ ପ୍ରବୃତ୍ତ ଥିବା କୌଣସି ଯୁବକ ତ ଏପର୍ଯ୍ୟନ୍ତ ତୁମର ପତିରୂପେ ନିର୍ଦ୍ଦିଷ୍ଟ ହୋଇନାହାଁନ୍ତି । ଅବଶ୍ୟ ପିତା ଅସୁରମାନଙ୍କ ସହିତ ସଂଗ୍ରାମରତ । କିନ୍ତୁ ତାଙ୍କପାଇଁ ତୁମ ମାତା ତପସ୍ୟାରେ ବସିଛନ୍ତି । ତୁମେ ଏ ପର୍ଯ୍ୟନ୍ତ କୁମାରୀ । ତେବେ କାହାପାଇଁ ତୁମେ ପାର୍ବତୀଙ୍କ ଆରାଧନା କରିବ ?' ବୋଲି ପ୍ରଶ୍ନ କରନ୍ତେ ପଦ୍ମାବତୀ ଉତ୍ତର ଦେଲେ, 'ସଖୀ ! କନ୍ୟା ପାଇଁ ପିତା ହିଁ ଦେବତା । ସେହିଁ ତାର ସମସ୍ତ ସିଦ୍ଧିର କାରଣ । ମୋର ପତି ମଧ୍ୟ ନିର୍ଦ୍ଦିଷ୍ଟ ହୋଇସାରିଛନ୍ତି । ସେ ସମସ୍ତଙ୍କ ଅପେକ୍ଷା ପରାକ୍ରମଶାଳୀ ଓ ଗୁଣବାନ୍ । ବିଦ୍ୟୁଦ୍‌ଧ୍ୱଜକୁ ବିନାଶ କରିବାପାଇଁ ବିଦ୍ୟାଧର ରାଜପୁତ୍ର ରୂପରେ ଯେଉଁ ମୁକ୍ତାଫଳକେତୁ ଜନ୍ମଗ୍ରହଣ କରିଛନ୍ତି ସେହିଁ ମୋର ପତି ହେବେ ବୋଲି-ଭଗବାନ ପାର୍ବତୀପତି ସୂଚନା ଦେଇଛନ୍ତି । ମାତାଙ୍କ ଜିଜ୍ଞାସା କ୍ରମେ ପିତା ଏହା ପ୍ରକାଶ କରୁଥିବା ମୁଁ ଶୁଣିଛି । ସେ ହିଁ ମୋର ସ୍ୱାମୀ । ସେ ନିଶ୍ଚିତ ଭାବରେ ଯୁଦ୍ଧକୁ ଯିବେ କିମ୍ବା ଯାଇସାରିଥିବେ । ସେଥିପାଇଁ ପିତା ଓ ପତି ଉଭୟଙ୍କ ବିଜୟ କାମନା କରି ମୁଁ ଭଗବତୀ ମହିଷମର୍ଦ୍ଦିନୀଙ୍କ ଆରାଧନା କରିବା ନିମିତ୍ତ ବାହାରିଛି ।'

ସଖୀ ପଦ୍ମାବତୀଙ୍କୁ ଆଗାମୀ ସମୟପାଇଁ ସଚେତନ ଦେଖି ତାଙ୍କର ଉଚ୍ଚ ପ୍ରଶଂସା କଲା । ଉଭୟେ ଦେବୀ ମନ୍ଦିର ନିକଟସ୍ଥ ଏକ ଭବ୍ୟ ଓ ବିସ୍ତୃତ ସରୋବର ନିକଟରେ ଅବତରଣ କଲେ । ସରୋବରଟି ସ୍ୱର୍ଣ୍ଣକମଳରେ ପରିପୂର୍ଣ୍ଣ ଥିଲା । ମନେହେଉଥିଲା ତାର ନିର୍ମଳ ଜଳରାଶି ପଦ୍ମାବତୀଙ୍କ ବଦନମଣ୍ଡଳର ସହସ୍ର ପ୍ରତିବିମ୍ବ ଧାରଣ କରିଛି । ସେ ସ୍ନାନପୂର୍ବକ ସ୍ୱର୍ଣ୍ଣକମଳ ଚୟନପାଇଁ ସରୋବର ମଧ୍ୟରେ ପ୍ରବେଶ କଲେ ।

ଦୁର୍ଯୋଗବଶତଃ ଏ ସମୟରେ ଯୁଦ୍ଧଭୂମିର ମାଂସ ଲୋଭରେ ଅସୁର, ପିଶାଚ, ଡାକିନୀ ପ୍ରଭୃତି ସେହି ମାର୍ଗରେ ଚାଲିଥାନ୍ତି । ତା' ମଧ୍ୟରୁ ଦୁଇଜଣ ରାକ୍ଷସୀ ସେହି ସରୋବର ନିକଟରେ ଆସି ବିଶ୍ରାମ କଲେ । ସେମାନଙ୍କ ଦୀର୍ଘ ଦନ୍ତପଂକ୍ତିଯୁକ୍ତ ଭୟଙ୍କର ମୁଖଗହ୍ୱରରୁ ଅଗ୍ନିଜ୍ୱାଳା ନିର୍ଗତ ହୋଇ କେଶରାଶିକୁ ପିଙ୍ଗଳବର୍ଣ୍ଣ କରିଦେଇଥାଏ । ସେମାନଙ୍କ ଶରୀର ଯେପରି ବିଶାଳ ସେହିପରି ଧୂମରାଶି ପରି କୃଷ୍ଣବର୍ଣ୍ଣ । ସେମାନଙ୍କ ପ୍ରଲମ୍ବିତ ସ୍ତନ ଓ ଉନ୍ନତ ଉଦର ଭୟଙ୍କର ଦେଖାଯାଉଥାଏ । ସେମାନେ ଗନ୍ଧର୍ବ ରାଜକନ୍ୟା ପଦ୍ମାବତୀଙ୍କୁ ଦେଖିବା ମାତ୍ରେ ଉଠାଇନେଇ ଆକାଶମାର୍ଗକୁ ଉଡ଼ିଗଲେ । ପଦ୍ମାବତୀଙ୍କ ଦେହରକ୍ଷୀ ଏବଂ ପରିଚାରିକାମାନେ ସେମାନଙ୍କର ପ୍ରତିରୋଧ କରିନପାରି କେବଳ ଆର୍ତ୍ତଚିତ୍କାର କରୁଥାନ୍ତି ।

ଏ ସମୟରେ ମୁକ୍ତାଫଳକେତୁ ଦେବୀ ପାର୍ବତୀଙ୍କ ପୂଜା ଶେଷକରି ମନ୍ଦିର ବାହାରକୁ ଆସିଲେ । କୋଳାହଳ ଶୁଣି ସେ ସେହି ଦିଗକୁ ଯାଇ ଦେଖିଲେ କୌଣସି ସୁନ୍ଦରୀଙ୍କୁ ଧରି ଦୁଇଜଣ ରାକ୍ଷସୀ ଆକାଶମାର୍ଗରେ ପଳାୟନ କରୁଛନ୍ତି । ଅପୂର୍ବ ସୁନ୍ଦରୀଙ୍କ ଶରୀରକାନ୍ତି ଘନକୃଷ୍ଣ ମେଘରାଶି ମଧ୍ୟରେ ବିଦ୍ୟୁତ୍‌ରେଖା ପରି ଝଲସି ଉଠୁଥାଏ । ସେ ନିଜର ମୁଷ୍ଟି ଆଘାତରେ ରାକ୍ଷସୀ ଦୁଇଟିକୁ ମାରି ତଳେ ପକାଇଦେଲେ; ଏବଂ ପଦ୍ମାବତୀଙ୍କୁ ମୁକ୍ତ କଲେ । ରାଜକନ୍ୟାଙ୍କ ତ୍ରିବଳୀଯୁକ୍ତ ଉଦର ଲାବଣ୍ୟ ନିର୍ଝରଣୀ ବୋଲି ତାଙ୍କର ମନେହେଲା । ସ୍ୱର୍ଗର ଅପ୍‌ସରାମାନଙ୍କୁ ନିର୍ମାଣ କରିସାରିବା ପରେ ତିନିଭୁବନର ସମସ୍ତ ସୁନ୍ଦର ପଦାର୍ଥର ସାର ଗ୍ରହଣ କରି ନିପୁଣଶିଳ୍ପୀ ବିଧାତା ଏହାଙ୍କୁ ସୃଷ୍ଟି କରିଛନ୍ତି ବୋଲି ସେ ମନେକଲେ । ମୁକ୍ତାଫଳକେତୁ ଧୀରସ୍ୱଭାବର ହେଲେ ସୁଦ୍ଧା ପଦ୍ମାବତୀଙ୍କ ଦର୍ଶନରେ ତାଙ୍କ ଚିତ୍ତବୃତ୍ତି କାମମୋହିତ ହୋଇପଡ଼ିଲା । କ୍ଷଣକପାଇଁ ତାଙ୍କର ସମସ୍ତ ଇନ୍ଦ୍ରିୟ ଶୀଥିଳ ହୋଇପଡ଼ିଲେ; ସେ ଚିତ୍ରାର୍ପିତ ପରି ରହିଗଲେ ।

ରାକ୍ଷସୀମାନଙ୍କଠାରୁ ମୁକ୍ତିଲାଭ କରି କିଛି ସମୟ ମଧ୍ୟରେ ପଦ୍ମାବତୀ ପ୍ରକୃତିସ୍ଥା ହେଲେ । ମୁକ୍ତାଫଳକେତୁଙ୍କ ଉପରେ ତାଙ୍କ ଦୃଷ୍ଟି ସଞ୍ଚାରିତ ହେଲା । ବିଦ୍ୟାଧର

ରାଜକୁମାର ତ ଦର୍ଶକମାନଙ୍କ ଚକ୍ଷୁର ଉତ୍ସବ ସ୍ୱରୂପ । ତାଙ୍କ ରୂପ ନାରୀମାନଙ୍କୁ ପାଗଳ କରିଦେଉଥିଲା । ବିଧାତା ଯେପରି ଚନ୍ଦ୍ର ଓ କନ୍ଦର୍ପଙ୍କୁ ମିଳାଇ ତାଙ୍କର ସର୍ଜନା କରିଥିଲେ । ପଦ୍ମାବତୀ ଲଜ୍ଜାରେ ମୁଖଅବନତ କରି ସଖୀକୁ ଧୀର ସ୍ୱରରେ କହିଲେ, 'ରାକ୍ଷସୀ ଠାରୁ ରକ୍ଷା କରିଥିବା ଏହି ମହାପୁରୁଷଙ୍କ କଲ୍ୟାଣ ହେଉ । ଚାଲ, ବର୍ତ୍ତମାନ ଆମେ ଏଠାରୁ ଯିବା । ପରପୁରୁଷ ନିକଟରେ ରହିବା ଉଚିତ ହେବନାହିଁ ।' କୌତୂହଳବଶତଃ ମୁକ୍ତାଫଳକେତୁ ସଖୀଠାରୁ ପଦ୍ମାବତୀ କହିଥିବା କଥାର ତାତ୍ପର୍ଯ୍ୟ ଜାଣିବାକୁ ଚାହିଁଲେ । ସେ ଜଣାଇଲା ଯେ ରାକ୍ଷସୀମାନଙ୍କଠାରୁ ମୁକ୍ତ କରିଥିବା ଯୋଗୁଁ ରାଜକୁମାରୀ ତାଙ୍କର କଲ୍ୟାଣ କାମନା କରୁଛନ୍ତି ଏବଂ ପରପୁରୁଷ ନିକଟରୁ ଚାଲିଯିବାପାଇଁ ମୋତେ ନିର୍ଦ୍ଦେଶ ଦେଇଛନ୍ତି ।

ସଖୀ କଥାରୁ ରୂପମୁଗ୍ଧ ମୁକ୍ତାଫଳକେତୁ ତାଙ୍କ ଉନ୍ନତ ଚରିତ୍ରବତ୍ତାର ସୂଚନା ପାଇ ତାଙ୍କ କୁଳ, ଗୋତ୍ର, ପତି ଓ ନାମ ଜାଣିବାପାଇଁ ସଖୀକୁ ପ୍ରଶ୍ନ କଲେ । ସେ ଉତ୍ତରରେ କହିଲା, 'ମୋର ଏହି ସଖୀ ପଦ୍ମାବତୀ ଗନ୍ଧର୍ବରାଜ ପଦ୍ମଶେଖରଙ୍କ କନ୍ୟା । ଭଗବାନ ଶଙ୍କର କହିଛନ୍ତି ଯେ ବିଦ୍ୟାଧରରାଜ ଚନ୍ଦ୍ରକେତୁଙ୍କ ପୁତ୍ର, ଦେବରାଜ ଇନ୍ଦ୍ରଙ୍କ ସହାୟକ, ବିଦ୍ୟୁଦ୍‌ଧ୍ୱଜର ବିନାଶକାରୀ ଏବଂ ବିଶ୍ୱବିମୋହନ ମୁକ୍ତାଫଳକେତୁ ଏହାଙ୍କର ପତି ହେବେ । ଦେବାସୁର ସଂଗ୍ରାମରେ ପ୍ରବୃତ୍ତ ଥିବା ଭାବୀ ପତି ଓ ପିତାଙ୍କ ମଙ୍ଗଳ କାମନା କରି ସେ ଆଜି ପାର୍ବତୀଙ୍କ ଆରାଧନା ନିମିତ୍ତ ଏଠାକୁ ଆସିଥିଲେ ।'

ସଖୀର କଥାଶୁଣି ମୁକ୍ତାଫଳକେତୁଙ୍କ ଅନୁଚରମାନେ ଅତ୍ୟନ୍ତ ଆନନ୍ଦରେ ପଦ୍ମାବତୀଙ୍କୁ ଅଭିନନ୍ଦନ ଜଣାଇଲେ । ସେମାନେ ତାଙ୍କ ପରିଚୟ ପ୍ରଦାନ କରିବାରୁ ପଦ୍ମାବତୀଙ୍କ ମୁଖମଣ୍ଡଳ ଲଜ୍ଜାରେ ଆରକ୍ତ ଓ ଶରୀର ରୋମାଞ୍ଚିତ ହୋଇଉଠିଲା । ଉଭୟେ ହର୍ଷୋତ୍‌ଫୁଲ୍ଲ ନୟନରେ ପରସ୍ପରକୁ ଚାହିଁ ରହିଲେ ।

ଏ ସମୟରେ ଦୂରରୁ ବାଦ୍ୟ ଧ୍ୱନି ଶୁଣାଗଲା । ଧୀରେ ଧୀରେ ସୈନିକ ମଣ୍ଡଳୀ ଦେଖାଦେଲେ । ତାଙ୍କ ପଛରେ ବାୟୁଦେବଙ୍କ ରଥ ଦୃଷ୍ଟିପଥାରୂଢ଼ ହେଲା । ରଥ ପଛରେ ଆସୁଥିବା ରାଜା ଚନ୍ଦ୍ରକେତୁଙ୍କ ପ୍ରତିହାରକୁ ରାଜକୁମାର ଚିହ୍ନିପାରିଲେ । ସେମାନେ ଶୀଘ୍ର ନିଜନିଜ ବାହନରୁ ଓହ୍ଲାଇ ନମ୍ରତାପୂର୍ବକ ଜଣାଇଲେ ଯେ ଦେବରାଜ ଇନ୍ଦ୍ର ଓ ପିତା ଚନ୍ଦ୍ରକେତୁ ଯଥାଶୀଘ୍ର ଯୁଦ୍ଧଭୂମିରେ ପହଞ୍ଚିବାପାଇଁ ତାଙ୍କୁ ଅନୁରୋଧ ଜଣାଇଛନ୍ତି । ତେଣୁ ଆପଣ ଏହି ଦ୍ରୁତଗାମୀ ରଥ ଆରୋହଣ କରି ଯଥାଶୀଘ୍ର ଏଠାରୁ ପ୍ରସ୍ଥାନ କରନ୍ତୁ ।

ପଦ୍ମାବତୀଙ୍କ ପ୍ରଣୟ ରଜ୍ଜୁରେ ଆବଦ୍ଧ ଥିଲେ ସୁଦ୍ଧା ସମ୍ମୁଖରେ ଗୁରୁତର କାର୍ଯ୍ୟଭାର ଥିବା ଯୋଗୁଁ ମୁକ୍ତାଫଳକେତୁ ଦ୍ରୁତପଦରେ ଯାଇ ରଥ ଆରୋହଣ କଲେ । ଇନ୍ଦ୍ରଙ୍କଦ୍ୱାରା ପ୍ରେରିତ ଏକ ବଜ୍ରକବଚ ଧାରଣପୂର୍ବକ ସେ ବାରମ୍ବାର ପଦ୍ମାବତୀଙ୍କ ପ୍ରତି ଦୃଷ୍ଟିପାତ କରି ଯୁଦ୍ଧଭୂମି ପ୍ରତି ଅଗ୍ରସର ହେଲେ ।

ପଦ୍ମାବତୀ ମଧ୍ୟ ରାଜକୁମାର ଦୃଷ୍ଟି ଅନ୍ତରାଳକୁ ଚାଲିଯିବା ପର୍ଯ୍ୟନ୍ତ ତାଙ୍କ ପଥକୁ ଚାହିଁ ରହିଥାନ୍ତି । ସେ ଅନ୍ତର୍ହିତ ହେବାରୁ ତାଙ୍କୁ ସ୍ମରଣ କରି କରି ପୁଣି ନିଜ କର୍ତ୍ତବ୍ୟ ପାଇଁ ପ୍ରସ୍ତୁତ ହେଲେ । ସରୋବର ମଧ୍ୟରେ ସ୍ନାନ କରି ଗୌରୀ ଓ ଶଙ୍କରଙ୍କୁ ସ୍ୱର୍ଣ୍ଣକମଳଦ୍ୱାରା ଆରାଧନା କଲେ । ଆରାଧନା ଶେଷରେ ସେ ନିଜ ବାସଭବନକୁ ଫେରିନଯାଇ ଭାବୀପତିଙ୍କ ମଙ୍ଗଳ କାମନାରେ ସେହି ମନ୍ଦିର ମଧ୍ୟରେ ରହି ବ୍ରତ ପାଳନ କରିବାକୁ ଲାଗିଲେ । ମୁକ୍ତାଫଳକେତୁ ମଧ୍ୟ ପଦ୍ମାବତୀଙ୍କ ମଙ୍ଗଳମୟ ଓ ବିଜୟସୂଚକ ରୂପକୁ ଧ୍ୟାନ କରି ସଂଗ୍ରାମ ଭୂମିରେ ପ୍ରବେଶ କଲେ ।

ସସନ୍ନଦ୍ଧ ଏବଂ ସସୈନ୍ୟ ପରାକ୍ରମଶାଳୀ ମୁକ୍ତାଫଳକେତୁଙ୍କୁ ସଂଗ୍ରାମ ଭୂମିରେ ପ୍ରବେଶ କରିବା ଦେଖି ଦୈତ୍ୟସେନା ତାଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କଲେ । ରାଜକୁମାର ମଧ୍ୟ ଯୁଦ୍ଧରୂପକ ମହୋତ୍ସବ ଆରମ୍ଭ କରିବା ପୂର୍ବରୁ ନିଜର ତୀକ୍ଷ୍ଣ ଶରରାଶିଦ୍ୱାରା ଅସୁରମାନଙ୍କର ମସ୍ତକ ଅବଲୀଳା କ୍ରମେ କର୍ତ୍ତନ କରି ଦଶଦିଗପାଳଙ୍କୁ ବଳିଦାନ କରିବା ଆରମ୍ଭ କଲେ । ବିଦ୍ୟୁଦ୍‌ଧ୍ୱଜ ଦୈତ୍ୟସେନାବାହିନୀକୁ ସଂହାର କରି ଚାଲିଥିବା ଏହି ବୀର ରାଜପୁତ୍ରଙ୍କୁ ଦେଖି ନିଜେ ତାଙ୍କର ସମ୍ମୁଖୀନ ହେଲା । ଆହତ ଓ ନିଶ୍ଚେଷ୍ଟ ହୋଇପଡୁଥିବା ଅସୁର ସେନା ପୁଣି କ୍ରିୟାଶୀଳ ହୋଇଉଠିଲା । ଏମାନଙ୍କୁ ଏକତ୍ର ଆକ୍ରମଣ କରୁଥିବା ଦେଖି ମୁକ୍ତାଫଳକେତୁଙ୍କ ସହାୟତା ନିମିତ୍ତ ଦେବରାଜ ଇନ୍ଦ୍ର ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର ଓ ଦେବବାହିନୀ ସହିତ ଅସୁରମାନଙ୍କୁ ଆକ୍ରମଣ କରିବାପାଇଁ ପ୍ରଧାବିତ ହେଲେ ।

ଯୁଦ୍ଧ ଭୟଙ୍କର ରୂପ ଧାରଣ କଲା । ତୀର, ଢାଲ, ଶକ୍ତି, ତୋମର, ପଟ୍ଟିଶ ଇତ୍ୟାଦି ଅସ୍ତ୍ରଶସ୍ତ୍ରର ଶବ୍ଦ ଓ ଜ୍ୱାଳାରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହୋଇଉଠିଲା । ଅଗଣିତ ସେନା ମୃତ୍ୟୁବରଣ କଲେ । ରକ୍ତର ନଦୀ ପ୍ରବାହିତ ହେଲା । ସେଥିରେ ମୃତ ଗଜ ଓ ଅଶ୍ୱମାନଙ୍କ ଶରୀର, ମଗର, ହସ୍ତୀମାନଙ୍କ ଗଣ୍ଡଚ୍ୟୁତ ମୁକ୍ତାରାଶି ବାଲିଚର, ଯୋଦ୍ଧାମାନଙ୍କ ଶିରସ୍ତ୍ରାଣ ଛିନ୍ନ ମସ୍ତକାବଳୀ ଶିଳାପ୍ରସ୍ତର ପରି ଦେଖାଗଲେ । ରକ୍ତରୂପକ ମଦିରା ପାନ କରି ଭୂତ, ପ୍ରେତ, ପିଶାଚମାନେ କବନ୍ଧଗୁଡ଼ିକ ସହିତ ନୃତ୍ୟ କରିବାକୁ

ଲାଗିଲେ । ରଣଭୂମି ସେମାନଙ୍କ ଉନ୍ମତ୍ତ କ୍ରୀଡ଼ାସ୍ଥଳୀରେ ପରିଣତ ହେଲା । ରଣାଙ୍ଗନରେ ବିଜୟଲକ୍ଷ୍ମୀ କେତେବେଳେ ଅସୁର ଓ କେତେବେଳେ ଦେବତାଙ୍କ ପକ୍ଷରେ ଶୋଭା ପାଉଥାନ୍ତି । ଏହିପରି ଚବିଶ ଦିନ ଧରି ଅନବରତ ସଂଗ୍ରାମ ଲାଗି ରହିଲା । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏହି ମହାସଂଗ୍ରାମ ଦେଖିବାପାଇଁ ଆକାଶ ମାର୍ଗରେ ଆସି ଉପସ୍ଥିତ ହେଲେ ।

ପଞ୍ଚବିଂଶ ଦିନ ବେଳକୁ ଉଭୟ ପକ୍ଷର ସେନାବାହିନୀ କ୍ରମଶଃ କ୍ଷୀଣ ହୋଇଆସିଲେ । ଏହା ଦେଖି ଯୋଦ୍ଧାମାନେ ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭ କରିଦେଲେ । ଶ୍ରୀମୁକ୍ତାଫଳକେତୁ ରଥ ଏବଂ ବିଦ୍ୟୁଦ୍‌ଧ୍ୱଜ ହସ୍ତୀ ପୃଷ୍ଠରେ ରହି ଏହିପରି ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । ମୁକ୍ତାଫଳକେତୁ ବିଦ୍ୟୁଦ୍‌ଧ୍ୱଜର ତମସା ଅସ୍ତ୍ରକୁ ଭାସ୍କର ଅସ୍ତ୍ରଦ୍ୱାରା, ଗ୍ରୀଷ୍ମାସ୍ତ୍ରକୁ ଶିଶିର ଅସ୍ତ୍ରଦ୍ୱାରା, ପର୍ବତାସ୍ତ୍ରକୁ ବଜ୍ରାସ୍ତ୍ର ଦ୍ୱାରା ଏବଂ ସର୍ପାସ୍ତ୍ରକୁ ଗରୁଡ଼ାସ୍ତ୍ର ଦ୍ୱାରା ପ୍ରତିହତ କରି ଗୋଟିଏ ଗୋଟିଏ ଶରରେ ମାହୁନ୍ତ ଓ ହସ୍ତୀକୁ ନିହତ କଲେ । ବିଦ୍ୟୁଦ୍‌ଧ୍ୱଜ ରଥ ଆରୋହଣ କଲା । ମୁକ୍ତାଫଳକେତୁ ତାର ସାରଥି ଓ ଅଶ୍ୱଗୁଡ଼ିକୁ ପରପାରକୁ ପ୍ରେରଣ କଲେ । ଏଥିରେ ବିବ୍ରତ ହୋଇ ଅସୁର ମାୟାଯୁଦ୍ଧ ଆରମ୍ଭ କଲା । ଅଦୃଶ୍ୟଭାବରେ ରହି ସେ ଦେବ ସେନାବାହିନୀ ଉପରେ ଶିଳାଖଣ୍ଡ ଓ ବିବିଧ ଅସ୍ତ୍ର ବୃଷ୍ଟି କରୁଥାଏ । ଏହାକୁ ପ୍ରତିରୋଧ କରିବାପାଇଁ ମୁକ୍ତାଫଳକେତୁ ଶରଜାଲଦ୍ୱାରା ଏକ ଆବରଣ ସୃଷ୍ଟି କଲେ । କିନ୍ତୁ ମାୟାବୀ ରାକ୍ଷସ ଆଗ୍ନେୟାସ୍ତ୍ର ପ୍ରୟୋଗ କରି ତାକୁ ପୋଡ଼ି ପକାଇଲା । ଶେଷରେ ମୁକ୍ତାଫଳକେତୁ ବିଶ୍ୱଧ୍ୱଂସୀ ବ୍ରହ୍ମାସ୍ତ୍ରକୁ ଅଭିମନ୍ତ୍ରିତ କରି ଅନୁଗାମୀ ଅସ୍ତ୍ର ସହିତ ଶତ୍ରୁ ପ୍ରତି ପ୍ରୟୋଗ କଲେ । ଫଳରେ ନିଜର ସେନାବାହିନୀ ସହିତ ମହାସୁର ବିଦ୍ୟୁଦ୍‌ଧ୍ୱଜ ଆକାଶ ମାର୍ଗରୁ ପ୍ରାଣହୀନ ଅବସ୍ଥାରେ ପୃଥିବୀ ପୃଷ୍ଠରେ ଆସି ପଡ଼ିଲା ।

ବଜ୍ରଦଂଷ୍ଟ୍ର ପ୍ରଭୃତି ସେନାପତିମାନେ ଭୟଭୀତ ହୋଇ ବିଦ୍ୟୁଦ୍‌ଧ୍ୱଜର ପୁତ୍ର ସହିତ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ । ଆକାଶରୁ ପୁଷ୍ପ ବୃଷ୍ଟି ହେଲା । ଦେବତାମାନେ ଶ୍ରୀମୁକ୍ତାଫଳକେତୁଙ୍କୁ ଧନ୍ୟଧନ୍ୟ କଲେ । ଶତ୍ରୁର ବିନାଶ ପରେ ଦେବରାଜ ଇନ୍ଦ୍ର ପୁଣି ଯାଇ ସ୍ୱର୍ଗରାଜ୍ୟରେ ପ୍ରବେଶ କଲେ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳରେ ବିଜୟ ମହୋତ୍ସବ ପାଳିତ ହେଲା । ଦେବୀ ଶଚୀଙ୍କୁ ଧରି ବ୍ରହ୍ମଦେବ ସେଠାରେ ଆସି ଉପସ୍ଥିତ ହେଲେ । ସେ ତାଙ୍କ ବୀରତ୍ୱର ପୁରସ୍କାର ସ୍ୱରୂପ ଏକ ଉତ୍ତମ ଚୂଡ଼ାମଣି ମୁକ୍ତାଫଳକେତୁଙ୍କୁ ପ୍ରଦାନ କଲେ । ବିଜୟଶ୍ରୀ ଲାଭ କରିଥିବା ବିଦ୍ୟାଧର ରାଜପୁତ୍ରଙ୍କୁ ନିଜର କଣ୍ଠହାର ପ୍ରଦାନ କରି ଦେବରାଜ ଇନ୍ଦ୍ର ତାଙ୍କର ଶ୍ରୀବୃଦ୍ଧି କଲେ । ରାଜ୍ୟ ପ୍ରତ୍ୟର୍ପଣ କରିଥିବା ମୁକ୍ତାଫଳକେତୁଙ୍କୁ ବିବିଧ ଆଶୀର୍ବାଦ ପ୍ରଦାନ ପୂର୍ବକ ଇନ୍ଦ୍ରଙ୍କ ତୁଲ୍ୟ ଏକ ଆସନରେ ଆସୀନ କରାଗଲା । ପାତାଳପୁରକୁ ଦୂତପ୍ରେରଣ କରି ବିଦ୍ୟୁଦ୍‌ଧ୍ୱଜର ରାଜ୍ୟ ଇନ୍ଦ୍ରଦେବ

ନିଜ ରାଜ୍ୟରେ ମିଶାଇଲେ । ଭବିଷ୍ୟତରେ ଏହାକୁ ମୁକ୍ତାଫଳକେତୁଙ୍କ ହସ୍ତରେ ସମର୍ପଣ କରିବାପାଇଁ ସେ ଚିନ୍ତା କରିଥାନ୍ତି ।

ଏହି ଅବସରରେ ଗନ୍ଧର୍ବରାଜ ପଦ୍ମଶେଖର ନିଜ କନ୍ୟା ପଦ୍ମାବତୀଙ୍କୁ ମୁକ୍ତାଫଳକେତୁଙ୍କ ହସ୍ତରେ ପ୍ରଦାନ କରିବାର ଆକାଂକ୍ଷା ପୋଷଣ କରି ବ୍ରହ୍ମାଙ୍କ ଅନୁମତି କାମନା କଲେ । କିନ୍ତୁ ବ୍ରହ୍ମା ତାଙ୍କ ଅବଶିଷ୍ଟ ଅନ୍ୟ ଏକ କାର୍ଯ୍ୟସିଦ୍ଧି ପର୍ଯ୍ୟନ୍ତ ଅପେକ୍ଷା କରିବାପାଇଁ ନିର୍ଦ୍ଦେଶ ଦେଇ ବିଦାୟ ଦେଲେ ।

ସ୍ୱର୍ଗ ରାଜ୍ୟରେ ବିଜୟ ଉତ୍ସବ ପାଳିତ ହେଲା । ହାହା ହୂହୂ ଗନ୍ଧର୍ବମାନେ ସଙ୍ଗୀତ ଗାନ କରିବାକୁ ଲାଗିଲେ । ସ୍ୱର୍ଗପୁର ରମ୍ଭା ପ୍ରଭୃତି ଅପ୍‌ସରାମାନଙ୍କ ଦ୍ୱାରା ନୃତ୍ୟମୁଖର ହୋଇଉଠିଲା । ଚତୁର୍ଦ୍ଦିଗ ଦୁନ୍ଦୁଭିର ମଧୁର ସ୍ୱନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ନିଜେ ଇନ୍ଦ୍ରଦେବ ମଧ କରତାଳି ପ୍ରଦାନ ପୂର୍ବକ ଏହି ଉତ୍ସବରେ ଯୋଗ ଦେଲେ । ଉତ୍ସବ ଶେଷରେ ବ୍ରହ୍ମା ବ୍ରହ୍ମଲୋକକୁ ଫେରିଗଲେ । ଅଗ୍ନି, ବାୟୁ ପ୍ରଭୃତି ଦେବତାମାନେ ଇନ୍ଦ୍ରଙ୍କଠାରୁ ବିଦାୟ ନେଇ ନିଜ ନିଜ ପୁରକୁ ପ୍ରତ୍ୟାବର୍ତ୍ତନ କଲେ । ଅନୁଚରମାନଙ୍କ ସହିତ ଗନ୍ଧର୍ବରାଜ ପଦ୍ମଶେଖରଙ୍କୁ ବହୁ ସମ୍ମାନିତ କରି ବିଦାୟ ଦିଆଗଲା । ଭଗବାନ ବିଷ୍ଣୁ ଚନ୍ଦ୍ରକେତୁ ଓ ତାଙ୍କ ପୁତ୍ର ଶ୍ରୀମୁକ୍ତାଫଳକେତୁଙ୍କୁ ଅଭିନନ୍ଦିତ କରି ମହୋତ୍ସବ ପାଳନ ନିମିତ୍ତ ନିଜ ରାଜ୍ୟକୁ ପଠାଇ ଦେଲେ । ସମଗ୍ର ବିଶ୍ୱର କଣ୍ଟକ ସ୍ୱରୂପ ବିଦ୍ୟୁଦ୍‌ଧ୍ୱଜକୁ ସଂହାର କରିଥିବା ଶ୍ରୀମୁକ୍ତାଫଳକେତୁ ବିଜୟୋଲ୍ଲାସରେ ଆସି ନିଜ ରାଜ୍ୟରେ ପ୍ରବେଶ କଲେ । ପିତା ଚନ୍ଦ୍ରକେତୁ ଏବଂ ଅନ୍ୟାନ୍ୟ ବିଦ୍ୟାଧର ରାଜାଙ୍କଦ୍ୱାରା ବିଦ୍ୟାଧର ନଗରୀ ହର୍ଷୋତ୍‌ଫୁଲ୍ଲ ହୋଇଉଠିଲା । ବହୁଦିନ ପରେ ରାଜଧାନୀରେ ପ୍ରବେଶ କରିଥିବାଯୋଗୁଁ ନଗରୀ ରାଣୀ ପତାକାରୂପ ଶାଟିକାରେ ଆବୃତ ହୋଇ ନିଜର ହର୍ଷୋଲ୍ଲାସ ପ୍ରକାଶ କରିବାକୁ ଲାଗିଲା । ରାଜା ଚନ୍ଦ୍ରକେତୁ ପୁତ୍ରର କୃତିତ୍ୱରେ ବନ୍ଧୁ, ସ୍ୱଜନ ଓ ଅନୁଚରମାନଙ୍କ ସହିତ ଆନନ୍ଦ ଉତ୍ସବ ପାଳନ କଲେ । ବର୍ଷାକାଳୀନ ବାରିଧାରା ପରି ଧନରାଶି ବୃଷ୍ଟି ହେବାକୁ ଲାଗିଲା ।

କିନ୍ତୁ ପଦ୍ମାବତୀଙ୍କ ବିରହ ବେଦନାରେ ବ୍ୟଥିତ ମୁକ୍ତାଫଳକେତୁ ବିଦ୍ୟୁଦ୍‌ଧ୍ୱଜକୁ ଜୟ କରିଥିବା ପରମ କୃତିତ୍ୱକୁ ହୃଦୟର ସହିତ ଉପଭୋଗ କରିପାରୁ ନଥାନ୍ତି । ଏହି ପ୍ରବଳ ଆନନ୍ଦ ଉତ୍ସବରେ ଆନ୍ତରିକ ଭାବେ ଯୋଗ ଦେବା ତାଙ୍କ ପକ୍ଷରେ ସମ୍ଭବ ହୋଇପାରୁ ନଥାଏ । ମିତ୍ର ସଂଜତକ ଭଗବାନ ଶଙ୍କରଙ୍କ ଆଦେଶ ସ୍ମରଣ କରାଇ ତାଙ୍କୁ ଆଶ୍ୱାସନା ଦେଉଥାନ୍ତି । ତଥାପି ପଦ୍ମାବତୀଙ୍କ ବିରହ ତାଙ୍କୁ ସର୍ବଦା ବ୍ୟଥିତ କରୁଥାଏ ।

## ଚତୁର୍ଥ ତରଙ୍ଗ

## ଅଭିଶପ୍ତ ମୁକ୍ତାଫଳକେତୁ ଓ ପଦ୍ମାବତୀ

ସ୍ୱର୍ଗଲୋକରୁ ପ୍ରତ୍ୟାବର୍ତ୍ତନ କରି ଗନ୍ଧର୍ବରାଜ ପଦ୍ମଶେଖର ନିଜ ନଗରରେ ବିଜୟ ଉତ୍ସବ ପାଳନ କଲେ । ବେଶ୍ ଧୁମ୍‌ଧାମ୍‌ରେ ଉତ୍ସବ ଆରମ୍ଭ ହେଲା । ପଦ୍ମାବତୀଙ୍କୁ ତା' ମଧ୍ୟରେ ନଦେଖି ରାଜା କନ୍ୟାଙ୍କ ସମ୍ପର୍କରେ ଜାଣିବାପାଇଁ ଚାହିଁବାରୁ ପତ୍ନୀଙ୍କଠାରୁ ଶୁଣିଲେ ଯେ ସେ ରାଜାଙ୍କ ବିଜୟ କାମନା କରି ଗିରିଜା ମନ୍ଦିରରେ ତପସ୍ୟାରତା । ରାଜା ଦୂତପ୍ରେରଣ କରି କନ୍ୟାକୁ ନେଇଆସିଲେ । ତପସ୍ୟା ଓ ବିରହରେ ପଦ୍ମାବତୀଙ୍କ ଶରୀର ଅତ୍ୟନ୍ତ କ୍ଷୀଣ ଓ ଦୁର୍ବଳ ହୋଇପଡ଼ିଥାଏ । ପାଦସ୍ପର୍ଶ କରି ପ୍ରଣାମ କରନ୍ତେ ପିତା ଆଶୀର୍ବାଦ ଦେଇ କହିଲେ, 'ମୋ ପାଇଁ ତୁ କଠିନ ତପସ୍ୟା କରିଛୁ । ତେଣୁ ଭଗବାନ ଶଙ୍କର ନିର୍ଦ୍ଦେଶ ଦେବାପରି ତୁ ବିଦ୍ୟାଧର ରାଜପୁତ୍ର, ବିଦ୍ୟୁଦ୍‌ଧ୍ୱଜର ସଂହାରକର୍ତ୍ତା, ଜଗତ୍‌ଶରଣ୍ୟ ବିଜୟୀ ଶ୍ରୀମୁକ୍ତାଫଳକେତୁଙ୍କୁ ଅବିଳମ୍ବେ ପତି ରୂପରେ ଲାଭ କର ।' ପିତାଙ୍କ ଆଶୀର୍ବାଦରେ ପଦ୍ମାବତୀ ଅଧୋମୁଖୀ ହୋଇ ରହିଲେ ।

ଅପରାଜେୟ ବିଦ୍ୟୁଦ୍‌ଧ୍ୱଜକୁ ସଂହାର କରିବାପାଇଁ ରାଜକୁମାର ମୁକ୍ତାଫଳକେତୁ କିପରି ସମର୍ଥ ହେଲେ ଜାଣିବାପାଇଁ ଚାହିଁବାରୁ ରାଜା ଚନ୍ଦ୍ରକେତୁ ରାଣୀଙ୍କ ନିକଟରେ ଦେବାସୁର ସଂଗ୍ରାମର ଏକ ଆମୂଳଚୂଳ ବିବରଣୀ ପ୍ରଦାନ କଲେ । ପଦ୍ମାବତୀଙ୍କ ସଖୀ ମଧ୍ୟ ମୁକ୍ତାଫଳକେତୁ କିପରି ଦୁଇଟି ରାକ୍ଷସୀ ହସ୍ତରୁ ରାଜକନ୍ୟାଙ୍କୁ ଉଦ୍ଧାର କଲେ ତାହା ବର୍ଣ୍ଣନା କରି ଶୁଣାଇଲେ । ମୁକ୍ତାଫଳକେତୁ ଓ ପଦ୍ମାବତୀଙ୍କ ମଧ୍ୟରେ ସାକ୍ଷାତକାର ଓ ପ୍ରଣୟ ଅଙ୍କୁରିତ ହୋଇଥିବା ଜାଣି ରାଜା ପଦ୍ମଶେଖର ଓ ରାଣୀ କୁବଳୟାବତୀ ଅତ୍ୟନ୍ତ ପ୍ରସନ୍ନ ହେଲେ । ରାଜା କହିଲେ, 'ମହର୍ଷି ଅଗସ୍ତ୍ୟଙ୍କ ପରି ଯିଏ ରାକ୍ଷସ ସେନାସମୁଦ୍ରକୁ ଅବଲୀଳାକ୍ରମେ ଶୋଷଣ କରିଛନ୍ତି ତାଙ୍କପାଇଁ ସେହି ରାକ୍ଷସୀ ଦୁଇଟି ବା କେତେ ?'

ମୁକ୍ତାଫଳକେତୁଙ୍କ ପ୍ରଶଂସା ରୂପକ ବାୟୁ ହିଲ୍ଲୋଳରେ ପଦ୍ମାବତୀଙ୍କ ବିରହାଗ୍ନି ଅଧିକ ପ୍ରଜ୍ୱଳିତ ହୋଇଉଠିଲା । ସେ ପିତାମାତାଙ୍କଠାରୁ ବଦାୟ ନେଇ ବିରହାତୁର ଭାବରେ ନିଜର ଅନ୍ତଃପୁରସ୍ଥିତ ଶୟନ କକ୍ଷ ଉପରକୁ ଉଠିଗଲେ ।

ଶୟନକକ୍ଷର ସ୍ତମ୍ଭଗୁଡ଼ିକ ଉପରେ ମୁକ୍ତାମାଳା ସବୁ ପ୍ରଲମ୍ବିତ ହେଉଥିଲା । ମଣିମୟ ଚଟାଣ ଉପରେ ଆରାମଦାୟକ କୋମଳଶଯ୍ୟା ଓ ଆସନ ସବୁ ସଜ୍ଜିତ ହୋଇ ରହିଥିଲା । ଧ୍ୟାନ କରିବା ମାତ୍ରେ ସ୍ୱର୍ଗୀୟ ଖାଦ୍ୟ ସାମଗ୍ରୀ ସବୁ ଆସି ପହଞ୍ଚି ଯାଉଥିଲା । ଏପରି ସୁଖାତ୍ମକ ପରିବେଶ ପଦ୍ମାବତୀଙ୍କୁ ବିରହବେଦନାରେ ଅଧିକ ସନ୍ତପ୍ତ କରିବାକୁ ଲାଗିଲା । ସେ ଅଟ୍ଟାଳିକା ପୃଷ୍ଠକୁ ଉଠିଗଲେ । ସେଠାରୁ ଏକ ଦିବ୍ୟ ଉଦ୍ୟାନ ତାଙ୍କର ଦୃଷ୍ଟିଗୋଚର ହେଲା । ଉଦ୍ୟାନଟି ସୁବର୍ଣ୍ଣର ବୃକ୍ଷଲତା ଓ ରତ୍ନନିର୍ମିତ ଶତାଧିକ ପୁଷ୍କରିଣୀରେ ସୁଶୋଭିତ ଥାଏ । ଏହା ଯେ ତାଙ୍କ ଜନ୍ମଭୂମି ଚନ୍ଦ୍ରଲୋକଠାରୁ ଅଧିକ ସମୃଦ୍ଧ ଓ ରମଣୀୟ ! ହିମାଳୟର ମଥାମଣି ସ୍ୱରୂପ ଏହି ନଗରକୁ ପୂର୍ବରୁ ସେ ଦେଖିନଥିଲେ, ଏହାର ଉପବନ ନନ୍ଦନ ଅପେକ୍ଷା ଅଧିକ ରମଣୀୟ । ସେ ନିଜର ବିରହାଗ୍ନିକୁ ପ୍ରଶମନ କରିବାପାଇଁ ସେହି ଉପବନର ଶୀତଳ ପରିବେଶ ମଧ୍ୟକୁ ଯିବାପାଇଁ ଇଚ୍ଛା କଲେ । ଅନ୍ୟମାନଙ୍କ ଅଗୋଚରରେ ଏକାକିନୀ ପ୍ରାସାଦ ଉପରୁ ଓହ୍ଲାଇବା ବେଳେ ଦୁର୍ବଳତାଯୋଗୁଁ ଅଧିକ ଦୂର ଅଗ୍ରସର ହେବା ତାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ତେଣୁ ନିଜର ସିଦ୍ଧିଦ୍ୱାରା ପକ୍ଷୀ ବାହନ ଉପରେ ଆରୋହଣ କରି ସେ ଉପବନ ମଧ୍ୟରେ ପହଞ୍ଚିଲେ ।

ଉଦ୍ୟାନଟି ବହୁ ଲତା ଓ ବୃକ୍ଷ କୁଞ୍ଜରେ ପରିପୂର୍ଣ୍ଣ ଥିଲା । ସେ ଗୋଟିଏ କଦଳୀ ଗୃହ ମଧ୍ୟରେ ପ୍ରବେଶ କଲେ ଏବଂ ସେଠାରେ ଥିବା ପୁଷ୍ପଶଯ୍ୟା ଉପରେ ଲୋଟିଗଲେ । ତା' ମଧ୍ୟରୁ ମଧୁର ଗୀତବାଦ୍ୟର ଧ୍ୱନି ଶୁଣାଯାଉଥାଏ । ତାହା ତାଙ୍କର ମନୋରଞ୍ଜନ କରିବାପାଇଁ ସମର୍ଥ ହେଲାନାହିଁ । କାମବେଦନା ପ୍ରଶମିତ ହେବା ପରିବର୍ତ୍ତେ ପ୍ରିୟ ବିରହରୁ ଅଧିକତର ଅସହ୍ୟ ହେଲା । ସେ ଉତ୍କଣ୍ଠିତ ହୋଇ ରାଜକୁମାରଙ୍କୁ ଅନ୍ତତଃ ଚିତ୍ରପଟରେ ଦେଖିବାପାଇଁ ଚିନ୍ତାକଲେ । ସ୍ମରଣ କରିବା ମାତ୍ରେ ଚିତ୍ରଫଳକ ଓ ତୂଳିକା ଆସି ପାଖରେ ପହଞ୍ଚିଲା । ଭାବିଲେ ଯେ ଯେଉଁ ପୁରୁଷଟିର ଅନୁରୂପ ଅନ୍ୟ ଏକ ପୁରୁଷ ସୃଷ୍ଟି କରିବାପାଇଁ ସ୍ୱୟଂ ବିଧାତା ଅସମର୍ଥ, ତାଙ୍କୁ ଚିତ୍ରପଟରେ ଚିତ୍ରିତ କରିବା ଜଣେ ସାଧାରଣ କନ୍ୟାପକ୍ଷରେ କେତେଦୂର ବା ସମ୍ଭବ ହେବ ? ତଥାପି ଆତ୍ମ ବିନୋଦନ ପାଇଁ ଚିତ୍ରଟିଏ ଅଙ୍କନ କରାଯାଇପାରେ । ଏହିପରି ଭାବି ସେ ମୁକ୍ତାଫଳକେତୁଙ୍କ ଏକ ଚିତ୍ର ଫଳକ ଉପରେ ଅଙ୍କନ କଲେ ।

ରାଜକୁମାରୀଙ୍କୁ ଶୟନ କକ୍ଷ କିମ୍ବା ଅଟ୍ଟାଳିକା ଉପରେ ନଦେଖି ସଖୀ ମନୋହାରିକା ସେହି କଦଳୀ ଗୃହ ନିକଟରେ ଆସି ପହଞ୍ଚିଲା । ନିଜକୁ ଅନ୍ତରାଳରେ ରଖି ସେ ଦେଖିଲା ଯେ ବିରହାତୁରା ପଦ୍ମାବତୀ କଦଳୀଗୃହ ମଧ୍ୟରେ ଚିତ୍ରପଟଟିକୁ ଧରି ଏକାକିନୀ ଠିଆ ହୋଇଛନ୍ତି । ସଖୀ ତାଙ୍କ କାର୍ଯ୍ୟକଳାପ ନିରୀକ୍ଷଣ କରିବାପାଇଁ ସେଠାରେ କିଛି ସମୟ ଅପେକ୍ଷା କଲା । ଦେଖିଲା ରାଜକୁମାରୀଙ୍କ କମଳତୁଲ୍ୟ ନେତ୍ର ଯୁଗଳରୁ ଉତ୍ତପ୍ତ ଅଶ୍ରୁ ପ୍ରବାହିତ ହେଉଛି । ସେ ଚିତ୍ରପଟଟିକୁ ସମ୍ମୁଖରେ ରଖି କହୁଛନ୍ତି, 'ତୁମେ ଦୁର୍ଜ୍ଜେୟ ରାକ୍ଷସକୁ ସଂହାର କରି ଇନ୍ଦ୍ରଙ୍କୁ ରକ୍ଷା କଲ । କେବଳ ପଦେ ମାତ୍ର କଥାକହି ମୋତେ କାହିଁକି କନ୍ଦର୍ପଠାରୁ ରକ୍ଷା କରୁନାହଁ ? ଅବଶ୍ୟ ଭାଗ୍ୟହୀନ ବ୍ୟକ୍ତି-ମାନଙ୍କ ପାଇଁ କଳ୍ପବୃକ୍ଷ ମଧ୍ୟ କୃପଣତା ପ୍ରକାଶ କରେ, ବୁଦ୍ଧଦେବ ମଧ୍ୟ ନିର୍ଦ୍ଦୟ ହୋଇପଡ଼ନ୍ତି, ହାତକୁ ଆସିଥିବା ସୁନା ମଧ୍ୟ ପଥର ପାଲଟିଯାଏ ।

'କଳ୍ପଦ୍ରୁମୋଽପ୍ୟଦାତୃତ୍ୱଂ ସୁଗତୋଽପ୍ୟଦୟାଳୁତାମ୍
ଆୟାତି ମନ୍ଦପୁଣ୍ୟସ୍ୟ ସୁବର୍ଣ୍ଣମପି ଚାଶ୍ମତାମ୍ ।'

ତୁମେ ନିଶ୍ଚିତ ଭାବରେ କେବେ କାମଜ୍ୱରରେ ପୀଡ଼ିତ ହୋଇନାହଁ । ତେଣୁ ମୋର ବେଦନା ବୁଝିବା ତୁମପକ୍ଷରେ ସମ୍ଭବ ହୋଇପାରୁନାହିଁ । ବିଦ୍ୟୁଦ୍‌ଧ୍ୱଜ ପରି ରାକ୍ଷସ ଯେତେବେଳେ ତୁମକୁ ଜୟ କରିପାରିଲା ନାହିଁ କନ୍ଦର୍ପ ପୁଷ୍ପବାଣଟିଏ ନେଇ ତୁମର ବା କଣ କରିପାରିବ ? ଦେଖ, ବିଧାତା ପୁଣି ମୋ ପ୍ରତି କିପରି ନିଷ୍ଠୁର ? ମୋର ଚକ୍ଷୁଯୁଗଳକୁ ଅଶ୍ରୁଦ୍ୱରା ରୁଦ୍ଧକରି ତୁମ ଚିତ୍ରପଟ ଦେଖିବାରୁ ମଧ୍ୟ ମୋତେ ବଞ୍ଚିତ କରୁଛି ।'

ଏହିପରି କହିକହି ରାଜକୁମାରୀ କାନ୍ଦିବାକୁ ଲାଗିଲେ । ଛିନ୍ନହାରରୁ ମୁକ୍ତାଫଳପରି ତାଙ୍କ ଚକ୍ଷୁରୁ ଅଶ୍ରୁବିନ୍ଦୁ ସବୁ ପଡ଼ିବାକୁ ଲାଗିଲା । ମନୋହାରିକା ଆଉ ଅପେକ୍ଷା ନକରି ତାଙ୍କ ସମ୍ମୁଖରେ ଆସି ଠିଆ ହେଲା । ପଦ୍ମାବତୀ ଚିତ୍ରଫଳକଟିକୁ ପଛପଟେ ଲୁଚାଇଦେଇ କହିଲେ, 'ସଖି ! ଏତେ ସମୟ ହେଲା କୁଆଡ଼େ ଯାଇଥିଲ ? ତମର ଦେଖାନଥିଲା ।' ଏଥିରେ ମନୋହାରିକା ଉତ୍ତର ଦେଲା, 'ମୁଁ ତ ତୁମକୁ ଖୋଜିଖୋଜି ନୟାନ୍ତ ହୋଇପଡ଼ିଲିଣି । ତୁମେ ଆଉ ସେହି ଚିତ୍ରଫଳକଟିକୁ କାହିଁକି ଲୁଚାଇ ଧରିଚ ? ମୁଁ ସବୁକିଛି ଦେଖିଛି ଏବଂ ଶୁଣିଛି ମଧ୍ୟ ।'

ମନୋହାରିକାର କଥାଶୁଣି ପଦ୍ମାବତୀଙ୍କ ମୁଖମଣ୍ଡଳ ଲଜ୍ଜାରେ ଆରକ୍ତ ହୋଇଉଠିଲା । ସେ ସଖୀର ହାତଦୁଇଟିକୁ ଧରି ବାଷ୍ପାକୁଳ କଣ୍ଠରେ କହିଲେ, 'ସଖି ! ତୁମକୁ ଲୁଚାଇବାର କିଛି ନାହିଁ । ଆରମ୍ଭରୁ ତ ତମେ ସବୁ ଜାଣିଛ । ରାଜକୁମାର

ମୁକ୍ତାଫଳକେତୁ ଗୌରୀ ମନ୍ଦିରରେ ମୋତେ ସେହି ଭୟଙ୍କରୀ ରାକ୍ଷସୀ ରୂପୀ ଅଗ୍ନି ମଧ୍ୟରୁ ବଞ୍ଚାଇ ଦୁର୍ନିବାର ବିରହଜ୍ୱାଳାରୂପକ କାମାଗ୍ନି ମଧ୍ୟରେ ନିକ୍ଷେପ କରିଛନ୍ତି । ଏଣୁ କୁଆଡ଼େ ଯିବି, କଣ କରିବି, କାହାକୁ କହିବି ଅଥବା କି ଉପାୟ ଅବଲମ୍ୱନ କରିବି ଜାଣିପାରୁନାହିଁ । ସେହି ଦୁର୍ଲ୍ଲଭ ପୁରୁଷଙ୍କ ପ୍ରତି ମୋର ମନ ଆକୃଷ୍ଟ ହୋଇପଡ଼ିଛି ।' ପଦ୍ମାବତୀଙ୍କ କଥାଶୁଣି ସଖୀ ମନୋହାରିକା ଆଶ୍ୱାସନା ପ୍ରଦାନ ପୂର୍ବକ କହିଲା, 'ସଖି ! ତାଙ୍କପ୍ରତି ଆକୃଷ୍ଟ ହୋଇ ତୁମେ କିଛି ଅନୁଚିତ କାର୍ଯ୍ୟ କରିନାହଁ । ଉଚିତ ପୁରୁଷ ପ୍ରତି ତୁମର ମନ ଆକୃଷ୍ଟ ହୋଇଛି । ନୂତନ ଚନ୍ଦ୍ର ଯେପରି ଶିବଙ୍କ ଜଟାଭାର ଉପରେ ଥିବା ମଣିମୁକୁଟର ଶୋଭା ବଢ଼ାଇଥାଏ ତୁମେ ଉଭୟେ ସେହିପରି ପରସ୍ପରକୁ ସୁଶୋଭନ କରିବ । ତୁମେ ଆଦୌ ଅଧୀର ହୁଅ ନାହିଁ । ସେ ନିଶ୍ଚିତ ଭାବେ ତୁମ ବିନା ରହିପାରିବେ ନାହିଁ । ଯାହାର ରୂପଦେଖି ନାରୀମାନେ ମଧ୍ୟ ପୁରୁଷ ହେବାପାଇଁ ଅଭିଳାଷ କରନ୍ତି ସେହି ରୂପବତୀ ଲଳନାଙ୍କୁ ଲାଭ କରିବାପାଇଁ କିଏ ବା ନଚାହିଁବ ? ସେ ତ ତୁମର ଅନୁରୂପ ରୂପବାନ୍ । ସେ କଣ ନିଜର ସମକକ୍ଷ ପତ୍ନୀଟିଏ ଲାଭ କରିବାପାଇଁ ଚାହିଁବେ ନାହିଁ । ଭଗବାନ ଶଙ୍କର କେବେ କଣ ମିଥ୍ୟାବାଦୀ ହୋଇପାରନ୍ତି । ସେ ତ ତୁମେ ଦୁହେଁ ପତିପତ୍ନୀ ହେବ ବୋଲି କହିଛନ୍ତି । ନିକଟରେ ପରିପୂର୍ଣ୍ଣ ହେବାକୁ ଯାଉଥିବା ଅଭିଳାଷପାଇଁ କିଏ ବା ଏହିପରି ଅଧୀର ହୁଏ ? ତେଣୁ ତୁମେ ଧୈର୍ଯ୍ୟ ଧର । ମୁକ୍ତାଫଳକେତୁ ଅଚିରେ ତୁମର ପାଣିଗ୍ରହଣ କରିବେ । ତୁମ ପାଇଁ କୌଣସି ପୁରୁଷ ଦୁର୍ଲ୍ଲଭ ନୁହେଁ, କିନ୍ତୁ ତୁମେ ସମସ୍ତଙ୍କ ପାଇଁ ଦୁର୍ଲ୍ଲଭ ।'

ସଖୀର ଆଶ୍ୱାସନାବାଣୀ ରାଜକୁମାରୀଙ୍କ ମନରେ କୌଣସି ପ୍ରଭାବପାତ କରିପାରିଲା ନାହିଁ । ସେ ତାକୁ ଲକ୍ଷ୍ୟ କରି କହିଲେ, 'ସଖି ! ମୁଁ ସବୁକିଛି ବୁଝିପାରୁଛି । କିନ୍ତୁ କରିବି କଣ ? ମୁକ୍ତାଫଳକେତୁଙ୍କ ବିନା ମୋର ମନ କ୍ଷଣକପାଇଁ ମଧ୍ୟ ସ୍ଥିର ହୋଇପାରୁନାହିଁ । କାମଦେବ ମଧ୍ୟ ମୋତେ କ୍ଷମା କରିପାରୁ ନାହାଁନ୍ତି । ତାଙ୍କର ରୂପଶ୍ରୀ ଧ୍ୟାନ କରି ମୋର ମନ ମୁହୂର୍ତ୍ତକପାଇଁ ଶାନ୍ତ ହୋଇପାରୁନାହିଁ । ବିରହଜ୍ୱାଳାରେ ମୋର ସମଗ୍ର ଶରୀର ସନ୍ତପ୍ତ ହୋଇଉଠୁଛି । ମୋର ପ୍ରାଣ ଊର୍ଦ୍ଧ୍ୱଗାମୀ ହେଉଛି ।'

ଏହିପରି କହୁଥିବାବେଳେ ପଦ୍ମାବତୀ ହଠାତ୍ ମୂର୍ଚ୍ଛିତ ହୋଇ ସଖୀ କୋଳରେ ପଡ଼ିଗଲେ । ଶୋକବିହ୍ୱଳା ସଖୀ ତାଙ୍କ ଶରୀରରେ ଶୀତଳ ଜଳ ସିଞ୍ଚନ କରି ଏବଂ କଦଳୀ ପତ୍ରରେ ବ୍ୟଜନ କରି ତାଙ୍କ ଚେତନା ଫେରାଇ ଆଣିଲା । ମୃଣାଳର ହାର ଓ କବଚ, ଶ୍ରୀଖଣ୍ଡଚନ୍ଦନର ପ୍ରଲେପ, ନଳିନୀଦଳର ଶଯ୍ୟା ଇତ୍ୟାଦି ସଖୀର ସମସ୍ତ ବିରହ ଉପଚାର ବ୍ୟର୍ଥ ହେଲା । ଏସବୁ ପଦାର୍ଥ ରାଜକୁମାରୀଙ୍କ ଅଙ୍ଗସ୍ପର୍ଶ ପାଇବା ମାତ୍ରେ

ଶୁଷ୍କ ହୋଇପଡ଼ିଲେ । ବ୍ୟାକୁଳ ପଦ୍ମାବତୀ ସଖୀଙ୍କୁ କହିଲେ, 'ତୁମେ ମୋ ପାଇଁ ଏତେ କଷ୍ଟ ସ୍ୱୀକାର କରିବା ବୃଥା । ଏସବୁ ଉପଚାର ମୋର ବେଦନାକୁ ଶାନ୍ତ କରିବା ପରିବର୍ତ୍ତେ ବୃଦ୍ଧି କରୁଛି । ଯାହାଦ୍ୱାରା ମୁଁ ଶାନ୍ତି ପାଇପାରିବି ତୁମେ ଯଦି ତାହା କରିପାର ତେବେ ମୋର କିଛି କଲ୍ୟାଣ ହେବ ।' ସଖୀ ମନୋହାରିକା ଜିଜ୍ଞାସୁ ଦୃଷ୍ଟିରେ ରାଜକୁମାରୀଙ୍କୁ ଚାହିଁ ରହିଲା ।

ରାଜକୁମାରୀ କିଛି ସମୟ ନୀରବ ରହି ଲଜ୍ଜିତ ସ୍ୱରରେ କହିଲେ, 'ସଖି ! ତୁମେ ଯାଇ ମୋର ସେହି ପ୍ରିୟତମଙ୍କୁ ଶୀଘ୍ର ଏଠାକୁ ନେଇଆସ । ଅନ୍ୟ କୌଣସି ଉପଚାର ମୋତେ ଶାନ୍ତି ଦେଇପାରିବ ନାହିଁ । ଏଥିରେ ପିତାମାତା ମଧ୍ୟ ଅସମ୍ମତ ହେବେ ନାହିଁ ବରଂ ମୋତେ ତାଙ୍କ ହସ୍ତରେ ସମର୍ପଣ କରିଦେବେ ।'

ରାଜକୁମାରୀଙ୍କ କଥାରେ ମନୋହାରିକା କହିଲା, 'ସଖି ! ତୁମର ଯଦି ଏହି ଅଭିଳାଷ, ତେବେ ତୁମେ ଧୈର୍ଯ୍ୟ ଧରି ଏଠାରେ ରହ । ମୋପାଇଁ ଏହା କି ବା ବଡ଼ କଥା । ମୁଁ ଏଇମାତ୍ର ତୁମର ପ୍ରିୟତମ ମୁକ୍ତାଫଳକେତୁଙ୍କୁ ଆଣିବାପାଇଁ ତାଙ୍କ ପିତା ବିଦ୍ୟାଧରରାଜ ଚନ୍ଦ୍ରକେତୁଙ୍କ ରାଜଧାନୀ ଚନ୍ଦ୍ରପୁର ଚାଲିଲି । ତୁମେ ଜାଣ ଯେ ତୁମ ପ୍ରିୟତମ ଏଇ ଆସିଗଲେ । ଏଣୁ ତୁମେ ନିଶ୍ଚିନ୍ତ ମନରେ ଶୋକ ତ୍ୟାଗ କର ।' ସଖୀର କଥା ଶୁଣି ପଦ୍ମାବତୀ ଅଧୀର ଭାବରେ କହିଲେ, 'ତାହେଲେ ଆଉ ବିଳମ୍ବ କାହିଁକି କରୁଛ ? ଉଠ,ତୁମର ଯାତ୍ରା ମଙ୍ଗଳମୟ ହେଉ । ଶୀଘ୍ର ଏଠାରୁ ପ୍ରସ୍ଥାନ କର । ତୁମେ ଯାଇ ତ୍ରିଭୁବନ ତ୍ରାଣକର୍ତ୍ତା ମୋର ପ୍ରିୟତମ ରାଜକୁମାରଙ୍କୁ କହିବ, 'ଗୌରୀ ମନ୍ଦିରରେ ତୁମେ ମୋତେ ରାକ୍ଷସୀମାନଙ୍କ ଭୟରୁ ରକ୍ଷା କରିଥିଲ । କିନ୍ତୁ ମୋତେ ବର୍ତ୍ତମାନ କନ୍ଦର୍ପ ଯେଉଁ ବାଣ ପ୍ରୟୋଗ କରି ସନ୍ତପ୍ତ କରୁଛି ସେଥିରୁ କାହିଁକି ବଞ୍ଚାଉନାହଁ ? ସମଗ୍ର ସଂସାରକୁ ଶଙ୍କଟରୁ ଉଦ୍ଧାର କରୁଥିବା ତୁମପରି ପରାକ୍ରମଶାଳୀ ମହାପୁରୁଷମାନଙ୍କର ଏହା କଣ ଧର୍ମ ଯେ ସେମାନେ ଥରେ ପରିତ୍ରାଣ କରିଥିବା ବ୍ୟକ୍ତିମାନଙ୍କୁ, ସେମାନେ ଯେତେ ଅନୁଗାମୀ ହେଲେ ସୁଦ୍ଧା, ପୁଣି ରକ୍ଷା କରିବେ ନାହିଁ ।' ସଖି ! ତୁମେ ମୋର ସର୍ବଦା କଲ୍ୟାଣ ବାଞ୍ଛା କରି ଆସିଛ । ତେଣୁ ମୁଁ ଯାହା କହିଲି ତୁମେ ତାହା ତାଙ୍କ ନିକଟରେ ପ୍ରକାଶ କରିବ, କିମ୍ବା ତୁମେ ଯାହା ଭଲଭାବୁଛ ସେହିପରି କହିବ ।' ଏପରି କହି ସେ ସଖୀ ମନୋହାରିକାକୁ ବିଦାୟ ଦେଲେ ।

ମନୋହାରିକା ସ୍ୱବିଦ୍ୟା ପ୍ରଭାବରେ ପକ୍ଷୀବାହନ ଆରୋହଣ କରି ବିଦ୍ୟାଧର ନଗରୀ ଅଭିମୁଖରେ ଯାତ୍ରା କଲା । ପଦ୍ମାବତୀ ପ୍ରିୟମିଳନ ଆଶାରେ ଚିତ୍ରଫଳକଟି ଧରି

ଶୟନ କକ୍ଷକୁ ଫେରିଗଲେ । ଦାସୀ ପରିଚାରିକାମାନେ ତାଙ୍କୁ ସ୍ନାନ କରାଇ ପ୍ରସାଧନ ଶେଷ କରିବା ପରେ ସେ ଭଗବାନ ଶଙ୍କରଙ୍କୁ ଆରାଧନା କରି ପ୍ରାର୍ଥନା କଲେ, 'ଭଗବନ୍ ! ଆପଣଙ୍କ ଅନୁଗ୍ରହ ବ୍ୟତୀତ ସଂସାରର କୌଣସି ବ୍ୟକ୍ତିର ଛୋଟବଡ଼ କୌଣସି କାମନା ପୂର୍ଣ୍ଣ ହେବା ସମ୍ଭବ ନୁହେଁ । ତୁମେ ବିଦ୍ୟାଧର ରାଜପୁତ୍ର ମୁକ୍ତାଫଳକେତୁଙ୍କୁ ପତି ରୂପରେ ପ୍ରଦାନ ନକଲେ ମୁଁ ତୁମ ସମ୍ମୁଖରେ ହିଁ ଶରୀର ତ୍ୟାଗ କରିବି ।' ତାଙ୍କ ପ୍ରାର୍ଥନା ଶୁଣି ପରିଚାରିକାମାନେ ଦୁଃଖ ଓ ଆଶ୍ଚର୍ଯ୍ୟର ସହିତ କହିଲେ, 'ଆପଣ ଏହି ଅଲୌକିକ ରୂପସମ୍ପନ୍ନ ଶରୀର ପ୍ରତି ଲେଶମାତ୍ର ଦୃଷ୍ଟି ନଦେଇ ଏପରି କଣ କହୁଛନ୍ତି ? ତିନିଭୁବନରେ ଏପରି କେଉଁ ପଦାର୍ଥ ଅଛି ଯାହା ଆପଣଙ୍କପାଇଁ ବିନାକଷ୍ଟରେ ସୁଲଭ ନୁହେଁ । ତୁମେ ଯଦି ମହାସଂଯମୀ ବୁଦ୍ଧଦେବଙ୍କୁ କାମନା କର ତେବେ ସେ ମଧ୍ୟ ତାଙ୍କର ବ୍ରତ ପରିତ୍ୟାଗ କରିବେ । ତେଣୁ ତୁମେ ଭଲପାଉଥିବା ପୁରୁଷଟି ପୃଥିବୀର ସର୍ବଶ୍ରେଷ୍ଠ ସୌଭାଗ୍ୟଶାଳୀ ।'

ଏହା ଶୁଣି ରାଜକୁମାରଙ୍କ ପ୍ରତି ଆକୃଷ୍ଟ ପଦ୍ମାବତୀ କହିଲେ, 'ଯେଉଁ ପୁରୁଷ ଦେବରାଜ ଇନ୍ଦ୍ରଙ୍କ ସହିତ ଅନ୍ୟ ସମସ୍ତ ଦେବତାଙ୍କ ଏକମାତ୍ର ସହାୟକ, ପ୍ରଚଣ୍ଡ ସୂର୍ଯ୍ୟ ଅନ୍ଧକାରକୁ ନାଶ କଲାପରି ଭୀଷଣ ଦୈତ୍ୟ ସେନାବାହିନୀକୁ ଯିଏ ମୁହୂର୍ତ୍ତକ ମଧ୍ୟରେ ନାଶ କରିଛନ୍ତି ଏବଂ ଯେଉଁ ମହାପୁରୁଷ ରାକ୍ଷସୀମାନଙ୍କଠାରୁ ମୋତେ ଜୀବନଦାନ ଦେଇଛନ୍ତି, ମୁଁ ତାଙ୍କୁ କାମନା କରିବା କଣ ଅଯଥାର୍ଥ ?' ଏହିପରି ଦାସୀ ପରିଜନମାନଙ୍କ ସହିତ ମୁକ୍ତାଫଳକେତୁଙ୍କ ଗୁଣ, ଚରିତ୍ର, ପରାକ୍ରମ ଇତ୍ୟାଦି ସମ୍ପର୍କରେ ବାର୍ତ୍ତାଳାପ କରି ସେ ସମୟ ବିତାଇବାପାଇଁ ଚେଷ୍ଟା କରୁଥାନ୍ତି ।

ଏଣେ ମନୋହାରିକା କ୍ଷଣକ ମଧ୍ୟରେ ବିଦ୍ୟାଧରରାଜ ଚନ୍ଦ୍ରକେତୁଙ୍କ ରାଜଧାନୀ ଚନ୍ଦ୍ରପୁର ନଗରୀରେ ଆସି ପହଞ୍ଚିଲା । ଦେବତାମାନଙ୍କପାଇଁ ସ୍ୱର୍ଗରାଜ୍ୟ ନିର୍ମାଣ କରି ସନ୍ତୁଷ୍ଟ ହୋଇନପାରିବାରୁ ଦେବଶିଳ୍ପୀ ବିଶ୍ୱକର୍ମା ଏହି ନଗରଟିକୁ ଅଦ୍ଭୁତ ଓ ଅସାଧାରଣ ବିଭୂତିରେ ପରିପୂର୍ଣ୍ଣ କରି ନିର୍ମାଣ କରିଛନ୍ତି । ନଗରର ବିଭିନ୍ନ ସ୍ଥାନରେ ସନ୍ଧାନ କରି ମନୋହାରିକା ଶେଷରେ ଯାଇ ନଗରୀସ୍ଥିତ ଉଦ୍ୟାନ ମଧ୍ୟରେ ପହଞ୍ଚିଲା । ଉଦ୍ୟାନଟିର ବୈଭବ ମଧ୍ୟ କଳ୍ପନାତୀତ । ମଣିମୟ ବୃକ୍ଷସମୂହରେ ଏହା ପରିପୂର୍ଣ୍ଣ ଥିଲା । ଗୋଟିଏ ଗୋଟିଏ ବୃକ୍ଷ ବିଭିନ୍ନ ବର୍ଣ୍ଣ ଓ ସୁଗନ୍ଧିଯୁକ୍ତ ପୁଷ୍ପରେ ଶୋଭା ପାଉଥିଲା । ବିଦ୍ୟାଧରମାନଙ୍କ ସଙ୍ଗୀତ ଧ୍ୱନି ସହିତ ପକ୍ଷୀମାନଙ୍କର କଳରବ ଏହାର ରମଣୀୟତା ଅଧିକ ପରିମାଣରେ ବୃଦ୍ଧି କରୁଥିଲା । ବିଭିନ୍ନ ସ୍ଥାନରେ ଭିନ୍ନଭିନ୍ନ ମଣିମୟ ଶିଳାପ୍ରସ୍ତର ସବୁ ବିକ୍ଷିପ୍ତ ଭାବରେ

ରହିଥିଲେ । ସେ ଉଦ୍ୟାନର ଶୋଭାରେ ଅଭିଭୂତ ହୋଇପଡ଼ିଲା । ଉଦ୍ୟାନପାଳର ସ୍ୱରୂପ ଥିଲା ଏକ ବିଚିତ୍ର ପକ୍ଷୀ ସଦୃଶ । ତାର ବଚନବିନ୍ୟାସ ଯେପରି ମଧୁର, ସେହିପରି ମନୋରଞ୍ଜକ । ମନୋହାରିକାକୁ ଦେଖି ସେ ସୁନ୍ଦର ଓ ସ୍ପଷ୍ଟ ବାକ୍ୟରେ ତାର ସ୍ୱାଗତ କଲା; ପାରିଜାତ ବୃକ୍ଷର ପାଦଦେଶରେ ପଡ଼ିଥିବା ବୈଦୂର୍ଯ୍ୟ ଆସନ ଉପରେ ବସାଇ ବିଭିନ୍ନ ଦିବ୍ୟବସ୍ତୁ ଦ୍ୱାରା ତାର ସତ୍କାର କଲା । ମନୋହାରିକା ଆତିଥ୍ୟର ପ୍ରଶଂସା କରିବା ସହିତ ବିଦ୍ୟାଧରମାନଙ୍କ ରାଜ୍ୟର ଆଶ୍ଚର୍ଯ୍ୟଜନକ ବିଭୂତି ଦେଖି କିଛି ସମୟପାଇଁ ଆତ୍ମବିସ୍ମୃତ ହୋଇପଡ଼ିଲା । ଚିନ୍ତା କଲାମାତ୍ରେ ଭୋଗ୍ୟବସ୍ତୁ ସବୁ ଆପେ ଆପେ ଆସି ପହଞ୍ଚିଯାଉଛନ୍ତି । ସ୍ୱର୍ଗରାଜ୍ୟର ଦିବ୍ୟନାରୀମାନେ ସଙ୍ଗୀତାଳାପ କରୁଛନ୍ତି । ବିଚିତ୍ର ପକ୍ଷୀସମୂହ ପରିଚାରକ ରୂପେ ରହିଛନ୍ତି ।

ଉଦ୍ୟାନପାଳଠାରୁ ମୁକ୍ତାଫଳକେତୁଙ୍କ ସନ୍ଧାନ ଲାଭକରି ମନୋହାରିକା ଏକ ପାରିଜାତ କୁଞ୍ଜ ନିକଟରେ ଯାଇ ପହଞ୍ଚିଲା । ତା' ମଧ୍ୟରେ ରାଜକୁମାର ଚନ୍ଦନସିଞ୍ଚିତ ପୁଷ୍ପ ଶଯ୍ୟା ଉପରେ ରୋଗୀଟିଏ ପରି ଶୋଇଥାନ୍ତି । ଗୌରୀ ମନ୍ଦିରରେ ଦେଖିଥିବା ଯୋଗୁଁ ସେ ତାଙ୍କୁ ଚିହ୍ନିପାରିଲା; କିନ୍ତୁ ହଠାତ୍ ତାଙ୍କ ନିକଟକୁ ନଯାଇ ଚତୁରୀ ମନୋହାରିକା ବୃକ୍ଷ ଅନ୍ତରାଳରୁ ତାଙ୍କର ଗତିବିଧି ଲକ୍ଷ୍ୟ କଲା ।

ସଖା ସଂଯତକ ତୁଷାର, ଚନ୍ଦନ ଓ ଚାମର ସାହାଯ୍ୟରେ ରାଜକୁମାରଙ୍କ ସେବା କରୁଥାନ୍ତି । କିଛି ସମୟ ପରେ ଚକ୍ଷୁ ମୁଦ୍ରିତ କରି ସେ ସଖାଙ୍କୁ କହିଲେ, 'ମିତ୍ର ! ଦୁଷ୍ଟ କନ୍ଦର୍ପ ସତେ ଯେପରି ମୋତେ ସବୁଦିଗରୁ ସନ୍ତପ୍ତ କରିବାକୁ ଚାହୁଁଛି । ତେଣୁ ସେ ତୁଷାର ମଧ୍ୟରେ ଜ୍ୱଳନ୍ତ ଅଙ୍ଗାର, ଚନ୍ଦନରେ ଜ୍ୱଳନ୍ତ ଚକ୍ଷୁ ଏବଂ ଚାମରରେ ଦାବାନଳ ଭରି ଦେଇଛି । ତେଣୁ ତୁମେ ଆଉ ଏପରି ବ୍ୟର୍ଥ ପ୍ରୟାସ କାହିଁକି କରିବ ? ନନ୍ଦନବନ ପରି ଆମର ଏହି ଉପବନର ସ୍ୱର୍ଗସୁନ୍ଦରୀମାନଙ୍କ ନୃତ୍ୟ, ଗୀତ ଓ ବାଦ୍ୟଧ୍ୱନି ମୋର ବିରହତପ୍ତ ହୃଦୟକୁ ଶାନ୍ତି ଦେଇପାରୁନାହିଁ । ମୋର ମନ ସର୍ବଦା ଅଶାନ୍ତ ରହୁଛି । ପଦ୍ମଶେଖରଙ୍କ କନ୍ୟା ପଦ୍ମମୁଖୀ ପଦ୍ମାବତୀ କେବଳ କନ୍ଦର୍ପର ଶରାଘାତରୁ ମୋତେ ରକ୍ଷା କରିପାରିବେ । ଏହା ମୁଁ କାହାକୁ କହିପାରୁନାହିଁ କିମ୍ବା ଧୈର୍ଯ୍ୟ ମଧ୍ୟ ଧରି ରହିପାରୁନାହିଁ । ଏହାଙ୍କୁ ଲାଭ କରିବାପାଇଁ ମୋ ନିକଟରେ ଗୋଟିଏ ମାତ୍ର ଉପାୟ ଅଛି । ମୁଁ ଏବେ ଗୌରୀ ମନ୍ଦିରକୁ ଯାଉଛି । ସେହି ମନ୍ଦିର ପ୍ରାଙ୍ଗଣରେ ପଦ୍ମାବତୀ ପ୍ରଥମ କଟାକ୍ଷପାତରେ ମୋର ହୃଦୟ ଉତ୍ଖାତ କରି ହରଣ କରିଥିଲେ । ସେଠାରେ ମୁଁ ପାର୍ବତୀଙ୍କ ସହିତ ଦେବଦେବ ମହାଦେବଙ୍କ ଆରାଧନା କରିବି । ସେ କେବଳ ମିଳନର ଉପାୟ ନିର୍ଦ୍ଦେଶ କରିପାରିବେ ।'

ମିତ୍ର ସଂଯତକଙ୍କୁ ଏହା କହି ମୁକ୍ତାଫଳକେତୁ ଯେତେବେଳେ ଶଯ୍ୟା ଉପରେ ଉଠିବସିଲେ ସେତେବେଳେ ମନୋହାରିକା ତାଙ୍କ ସମ୍ମୁଖରେ ନିଜକୁ ପ୍ରକଟନ କଲା । ତାକୁ ଦେଖି ସଂଯତକ ହର୍ଷ ଗଦ୍‌ଗଦ ସ୍ୱରରେ ଚକ୍ଷୁ ମୁଦ୍ରିତ କରି ବସିଥିବା ମିତ୍ରଙ୍କୁ ଜଣାଇଲେ, 'ମିତ୍ର ! ଆମର ପରମ ସୌଭାଗ୍ୟ । ମୁଁ ତୁମକୁ ଶୁଭସମାଚାରଟିଏ ଶୁଣାଉଛି । ତୁମର ଅଭିଳାଷ ପୂର୍ଣ୍ଣ ହୋଇଛି ବୋଲି ଜାଣ । ତୁମ ପ୍ରିୟତମାଙ୍କ ସଖୀ ଆସି ତୁମ ସମ୍ମୁଖରେ ଠିଆ ହୋଇଛନ୍ତି । ଗୌରୀ ଆଶ୍ରମରେ ପୂର୍ବରୁ ତାଙ୍କୁ ଦେଖିଥିବା ହେତୁ ମୁଁ ଚିହ୍ନିପାରିଛି । ଚକ୍ଷୁ ଉନ୍ମୀଳନ କରି ପ୍ରକୃତିସ୍ଥ ହୁଅ ।'

ମିତ୍ରଙ୍କ କଥାଶୁଣି ମୁକ୍ତାଫଳକେତୁ ଚକ୍ଷୁଉନ୍ମୀଳନ କରି ଚାହିଁଲେ । ଆଗରେ ମନୋହାରିକାକୁ ଦେଖି ହର୍ଷ, ଆନନ୍ଦ, ବିସ୍ମୟ ଏବଂ ଔତ୍ସୁକ୍ୟ ତାଙ୍କୁ ଆଣି ଏକ ଅଦ୍ଭୁତ ସ୍ଥିତିରେ ପହଞ୍ଚାଇଲା । ତାକୁ ନିକଟରେ ବସାଇ ସେ ରାଜକୁମାରୀଙ୍କ କୁଶଳ ଜିଜ୍ଞାସା କଲେ । ସଖୀ ଜଣାଇଲା, 'ଆପଣଙ୍କ ପରି ପତି ଲାଭ କରିବାପାଇଁ ଯାଉଥିବାରୁ ତାଙ୍କ କୁଶଳ କଥା କହିବା ଅନାବଶ୍ୟକ । କିନ୍ତୁ ସମ୍ପ୍ରତି ସେ ଅସହ୍ୟ କଷ୍ଟ ଭୋଗ କରୁଛନ୍ତି । ଯେଉଁ ମୁହୂର୍ତ୍ତରୁ ଆପଣ ତାଙ୍କ ହୃଦୟଟିକୁ ଚୋରାଇ ନେଇ ଆସିଲେ ସେହି ମୁହୂର୍ତ୍ତରୁ ସେ ବିମନା ହୋଇପଡ଼ିଛନ୍ତି । ଆପଣଙ୍କୁ ଦେଖିବା ଏବଂ ଆପଣଙ୍କ ସହିତ ବାର୍ତ୍ତାଳାପ କରିବା ପରେ ସେ ଅନ୍ୟକିଛି ନା ଦେଖିପାରୁଛନ୍ତି ନା ଶୁଣିପାରୁଛନ୍ତି । ସେ ମଣିଖଚିତ ହାରଯଷ୍ଟିକୁ ବାହାର କରି କଣ୍ଠରେ ମୃଣାଳର ମାଳା ଧାରଣ କରିଛନ୍ତି । ଦୁଗ୍ଧଫେନନିଭ ଶଯ୍ୟା ପରିତ୍ୟାଗ କରି ପଦ୍ମପତ୍ର ଉପରେ ଶୟନ କରିଛନ୍ତି । ମୋର ଯେଉଁ ସଖୀ ପୂର୍ବେ ବର ପ୍ରସଙ୍ଗ ପଡ଼ିଲେ ଲଜ୍ଜାରେ ଝାଉଁଳି ପଡୁଥିଲେ ସେ ବର୍ତ୍ତମାନ ସେହି ବିଷୟ ହିଁ ଆଲୋଚନା କରି ସମୟ ବିତାଉଛନ୍ତି । ତାଙ୍କ ଶରୀରର କାନ୍ତି ବର୍ତ୍ତମାନ ଶ୍ରୀଖଣ୍ଡ ଚନ୍ଦନର ବର୍ଣ୍ଣକୁ ଧିକ୍‌କାର କଲାଣି । ଆପଣଙ୍କ ବିରହ ତାଙ୍କୁ ଏ ଅବସ୍ଥାରେ ଆଣି ପହଞ୍ଚାଇଛି । ସେ ମୋଦ୍ୱାରା ଆପଣଙ୍କ ନିକଟକୁ ସମ୍ୱାଦ ପ୍ରେରଣ କରିଛନ୍ତି ।' ଏହା କହି ସେ ପଦ୍ମାବତୀଙ୍କ ସନ୍ଦେଶ ଅକ୍ଷରଶଃ ଶୁଣାଇଲା ।

ମନୋହାରିକାର ଅମୃତବର୍ଷିଣୀ ସମ୍ୱାଦ ଶୁଣି ମୁକ୍ତାଫଳକେତୁ ସ୍ୱାଭାବିକ ସ୍ୱରରେ କହିଲେ, 'ମୁଁ ତୁମକୁ କିପରି ଭାବରେ ଅଭିନନ୍ଦନ ଜଣାଇବି ଜାଣିପାରୁନାହିଁ । ତୁମର ଏହି ସମସ୍ତ କଥା ମୋର ଚେତନାରେ ଅମୃତ ସିଞ୍ଚନ କରିଛି । ମୋର ଶ୍ୱାସବାୟୁ ପୁଣି ଫେରିଆସିଛି । ମୁଁ ପୁଣି ଧୈର୍ଯ୍ୟ ଫେରିପାଇଛି । ମୋର ସମସ୍ତ ବିଷାଦ ଦୂରୀଭୂତ ହୋଇଛି । ଗନ୍ଧର୍ବ ରାଜପୁତ୍ରୀ ପଦ୍ମାବତୀ ଯେ ମୋ ପ୍ରତି ଏପରି ଅନୁରାଗିଣୀ, ଏହା

ମୋର ସମସ୍ତ ପୂର୍ବାର୍ଜିତ ପୁଣ୍ୟକୁ ଏକତ୍ର ସଫଳ କରିଦେଇଛି । ମୁଁ ତ ଏହି ଅସହ୍ୟବିରହ ବେଦନା କୌଣସିମତେ ସହିଯାଉଛି । କିନ୍ତୁ ଶିରୀଷ କୋମଳାଙ୍ଗୀ ପଦ୍ମାବତୀ କିପରି ବା ଏହାକୁ ସହ୍ୟ କରୁଥିବେ ! ତେଣୁ ମୁଁ ଯଥାଶୀଘ୍ର ଗୌରୀମନ୍ଦିରକୁ ଯାଉଛି । ତୁମେ ଯାଇ ତାଙ୍କୁ ସେଠାକୁ ନେଇଆସ । ଆଜି ହିଁ ଆମମାନଙ୍କର ମିଳନ ସଂଘଟିତ ହେଉ ।

କଲ୍ୟାଣି ! ତୁମେ ଯେତେ ଶୀଘ୍ର ପାର ସଖୀଙ୍କ ନିକଟକୁ ଫେରିଯାଅ । ତାଙ୍କୁ ମୋର ଦୁଃଖ ନିବେଦନ କରି ଆଶ୍ୱାସନା ଦିଅ । ସମସ୍ତ ଦୁଃଖ ଅପହରଣ କରିବାର ସମର୍ଥ ଏହି ଚୂଡ଼ାମଣିଟି ମଧ ତାଙ୍କୁ ପ୍ରଦାନ କର । ଭଗବାନ ଶଙ୍କର ମୋ ପ୍ରତି ପ୍ରସନ୍ନ ହୋଇ ଏହାକୁ ଦେଇଥିଲେ । ଆଉ ଏହି ହାରଟିକୁ ମଧ ମୁଁ ପୁରସ୍କାର ସ୍ୱରୂପ ତୁମକୁ ଦେଉଛି । ଇନ୍ଦ୍ରଙ୍କଠାରୁ ମୁଁ ଏହା ଲାଭ କରିଥିଲି ।'

ଏହିପରି କହି ରାଜକୁମାର ନିଜ ମସ୍ତକରୁ ଚୂଡ଼ାମଣିଟି ଆଣି ମନୋହାରିକା ହସ୍ତରେ ଅର୍ପଣ କଲେ ଏବଂ ନିଜ କଣ୍ଠରୁ ଦିବ୍ୟହାରଟିକୁ ବାହାର କରି ତା' କଣ୍ଠରେ ଲମ୍ବାଇ ଦେଲେ । ମୁକ୍ତାଫଳକେତୁଙ୍କଦ୍ୱାରା ପୁରସ୍କୃତ ହୋଇ ମନୋହାରିକା ନିଜର ପୂର୍ବୋକ୍ତ ପକ୍ଷୀବାହନ ଆରୋହଣ ପୂର୍ବକ ପଦ୍ମାବତୀଙ୍କ ନିକଟକୁ ପ୍ରସ୍ଥାନ କଲା । ରାଜକୁମାର ସମସ୍ତ ଦୁଃଖ ପରିତ୍ୟାଗ କରି ସହର୍ଷ ଚିତ୍ତରେ ନିଜ ଭବନ ମଧ୍ୟରେ ପ୍ରବେଶ କଲେ ।

ମନୋହାରିକା ପଦ୍ମାବତୀଙ୍କ ନିକଟରେ ଯାଇ ପହଞ୍ଚିଲା । ସେ ରାଜକୁମାରଙ୍କ ବିରହବେଦନା ସହିତ ଗୌରୀ ମନ୍ଦିରରେ ସାକ୍ଷାତ ହେବାର ସଙ୍କେତ ପର୍ଯ୍ୟନ୍ତ ସମସ୍ତ କଥା ତାଙ୍କୁ କହି ଶୁଣାଇଲା । ରାଜକୁମାର ଦେଇଥିବା ଚୂଡ଼ାମଣି ପ୍ରଦାନ ପୂର୍ବକ ନିଜେ ପୁରସ୍କାର ରୂପେ ପାଇଥିବା ହାରଟିକୁ ମଧ ଦେଖାଇଲା । ପଦ୍ମାବତୀ ମନୋହାରିକାଠାରୁ ତା'ର ସଫଳତା କଥା ଶୁଣି ଆନନ୍ଦରେ ଅଧୀର ହୋଇଉଠିଲେ । ତାକୁ ଗଳାରେ ଲଗାଇ କାମାଗ୍ନି ସନ୍ତାପ ଭୁଲିଗଲେ । ଚୂଡ଼ାମଣିଟି ମୂର୍ତ୍ତିମନ୍ତ ଆନନ୍ଦ ତୁଲ୍ୟ ତାଙ୍କ କେଶପାଶରେ ଶୋଭା ପାଇଲା । ସେ ଗୌରୀ ମନ୍ଦିର ଯିବାପାଇଁ ପ୍ରସ୍ତୁତ ହେଲେ ।

ଏହା ମଧ୍ୟରେ ତପୋଧନ ନାମକ ଜଣେ ମୁନି ସଂଯୋଗବଶତଃ ନିଜର ଶିଷ୍ୟ ଦୃଢ଼ବ୍ରତ ସହିତ ସେହି ଗୌରୀଆଶ୍ରମରେ ଆସି ପହଞ୍ଚିଥାନ୍ତି । ମୁନି ଦୃଢ଼ବ୍ରତକୁ ଦ୍ୱାର ନିକଟରେ ରଖାଇ ପାରିଜାତ ବୃକ୍ଷର ଛାୟାରେ ସେ ସମାଧିସ୍ଥ ଥା'ନ୍ତି । ତାଙ୍କ ଆଦେଶ ଥାଏ ଯେ ସେ କାହାରିକୁ ଭିତରେ ପ୍ରବେଶ କରିବାପାଇଁ ଦେବେନାହିଁ । ବହୁ ସମୟ ଧରି ଧ୍ୟାନସ୍ଥ ହେବାପରେ ମୁନିଙ୍କ ଧ୍ୟାନଭଙ୍ଗ ହେଲା । ସେ ଉଠି ଦେବୀଙ୍କ ଉପାସନାପାଇଁ

ମନ୍ଦିରର ଗର୍ଭଗୃହରେ ପ୍ରବେଶ କଲେ, କିନ୍ତୁ ଶିଷ୍ୟଙ୍କୁ ଏକଥା ଜଣାଇବାପାଇଁ ସେ ଭୁଲିଯାଇଥାନ୍ତି ।

ଏହି ସମୟରେ ମୁକ୍ତାଫଳକେତୁ ଦିବ୍ୟବେଶଭୂଷାରେ ଭୂଷିତ ହୋଇ ମିତ୍ର ସଂଯତକ ସହିତ ସେଠାରେ ଆସି ପହଞ୍ଚିଲେ । ସେ ଉଦ୍ୟାନ ମଧ୍ୟରେ ପ୍ରବେଶ କରିବା ନିମିତ୍ତ ଉଦ୍ୟତ ହୁଅନ୍ତେ ଦୃଢ଼ବ୍ରତ ତାଙ୍କୁ ବାରଣ କରି ମୁନି ତପୋଧନ ସେଠାରେ ସମାଧିସ୍ଥ ଥିବା ସୂଚିତ କଲା । କିନ୍ତୁ ପ୍ରିୟାମିଳନପାଇଁ ଉତ୍କଣ୍ଠିତ ମୁକ୍ତାଫଳକେତୁ ଭାବିଲେ ଯେ ମନ୍ଦିର ମଧ୍ୟସ୍ଥିତ ବିସ୍ତୃତ ଉଦ୍ୟାନର କୌଣସି କୋଣରେ ମୁନି ଧ୍ୟାନସ୍ଥ ଥାଇପାରନ୍ତି । କିନ୍ତୁ ପଦ୍ମାବତୀ ଅନ୍ୟତ୍ର ତାଙ୍କୁ ଅପେକ୍ଷା କରିଥିବେ ମନେକରି ସେ ଆକାଶ ମାର୍ଗରେ ଯାଇ ଦୃଢ଼ବ୍ରତର ଅଗୋଚରରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ସେଠାରେ ପଦ୍ମାବତୀଙ୍କ ଅନୁସନ୍ଧାନ କରୁଥିବାବେଳେ ଗୁରୁଦେବଙ୍କ ଧ୍ୟାନଭଙ୍ଗ ହେଲା କି ନାହିଁ ଜାଣିବା ନିମିତ୍ତ ଶିଷ୍ୟ ମଧ୍ୟ ଯାଇ ମନ୍ଦିର ମଧ୍ୟରେ ପ୍ରବେଶ କଲା । ସେ ଗୁରୁ ତପୋଧନଙ୍କୁ ତ ଦେଖିଲା ନାହିଁ ବରଂ ସଂଯତକଙ୍କ ସହିତ ମୁକ୍ତାଫଳକେତୁ ତାର ଅଜ୍ଞାତସାରରେ ପ୍ରବେଶ କରିଥିବା ଦେଖିବାକୁ ପାଇଲା । ତାଙ୍କର ଏହି ଦୁର୍ବିନୀତ ବ୍ୟବହାର ଫଳରେ ସେ କ୍ରୋଧାନ୍ୱିତ ହୋଇ ସେମାନଙ୍କୁ ମନୁଷ୍ୟ ଯୋନିରେ ଯାଇ ଜନ୍ମନେବା ନିମିତ୍ତ ଅଭିଶାପ ଦେଲା । ସେମାନଙ୍କଦ୍ୱାରା ଗୁରୁଙ୍କ ଧ୍ୟାନ ଭଗ୍ନ ହୋଇଥିବା ନିଶ୍ଚୟ କରି ତାଙ୍କରି ଅନୁସନ୍ଧାନରେ ସେ ମନ୍ଦିରର ଗର୍ଭଗୃହ ମଧ୍ୟକୁ ଚାଲିଗଲା ।

ମୁକ୍ତାଫଳକେତୁ ନିଜର ମନୋରଥ ସିଦ୍ଧ ହୋଇଆସିଲା ବେଳେ ବଜ୍ରପାତ ତୁଲ୍ୟ ଏହି ଅଭିଶାପରେ ବିଷାଦିତ ହୋଇପଡ଼ିଲେ । ଏ ସମୟରେ ପ୍ରିୟ ମଳିନପାଇଁ ଉତ୍କଣ୍ଠିତା ପଦ୍ମାବତୀ ସହଚରୀ ମନୋହାରିକା ଏବଂ ଅନ୍ୟ ପରିଚାରିକାମାନଙ୍କ ସହିତ ପକ୍ଷୀବାହନରେ ଆସି ସେଠାରେ ଅବତରଣ କରନ୍ତି । ସ୍ୱୟଂବରଣ ନିମିତ୍ତ ଉପଗତ ପଦ୍ମାବତୀଙ୍କୁ ଦେଖି ଏବଂ ମୁନିଶିଷ୍ୟଙ୍କ ଅଭିଶାପବଶତଃ ତାଙ୍କଠାରୁ ବିଚ୍ଛିନ୍ନ ହେବା ଜାଣି ମୁକ୍ତାଫଳକେତୁ ସୁଖଦୁଃଖ ମିଶ୍ରିତ ଏକ କଷ୍ଟକର ପରିସ୍ଥିତିରେ ପଡ଼ିଗଲେ । ଅମଙ୍ଗଳର ସୂଚନା ଦେଇ ପଦ୍ମାବତୀଙ୍କ ଦକ୍ଷିଣ ଚକ୍ଷୁ ସ୍ଫୁରିତ ହେଲା ଏବଂ ତାଙ୍କର ହୃଦୟ କମ୍ପିତ ହେବାକୁ ଲାଗିଲା । ସେ ରାଜକୁମାରଙ୍କୁ ବିଷାଦିତ ଅବସ୍ଥାରେ ଦେଖି ଭାବିଲେ ଯେ ତାଙ୍କ ଆସିବା ବିଳମ୍ବ ଦେଖି ପ୍ରିୟତମ ଅଭିମାନ କରିବସିଛନ୍ତି । ସେ ଧୀରେ ଧୀରେ ତାଙ୍କ ନିକଟରେ ଯାଇ ପହଞ୍ଚିଲେ । ତାଙ୍କୁ ଦେଖିବାମାତ୍ରେ ମୁକ୍ତାଫଳକେତୁ ଜଣାଇଲେ, 'ପ୍ରିୟେ ! ଆମର ମନୋରଥ ପୂର୍ଣ୍ଣ ହୋଇଆସିଲା ବେଳେ ବିଧାତା ସେଥିରେ ପୂର୍ଣ୍ଣଚ୍ଛେଦ

ଟାଣିଦେଇଛି ।' ରାଜକୁମାରୀଙ୍କ ଜିଜ୍ଞାସା କ୍ରମେ ସେ ସମସ୍ତ ବୃତ୍ତାନ୍ତ ତାଙ୍କୁ କହି ଶୁଣାଇଲେ ।

ମୁନିଶିଷ୍ୟ ଦୃଢ଼ବ୍ରତଙ୍କ ଅଭିଶାପ ଯେ ଦୁର୍ଲ୍ଲଂଘ୍ୟ ଏହା ଜାଣିପାରି ସେମାନେ ତାଙ୍କ ଗୁରୁ ତପୋଧନଙ୍କୁ ସନ୍ତୁଷ୍ଟ କରିବାପାଇଁ ଗୌରୀ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ମୁନି ସେଠାରେ ଦେବୀଙ୍କ ଆରାଧନା କରୁଥାନ୍ତି । ସମସ୍ତେ ଦେବୀଙ୍କୁ ଭୂମିଷ୍ଠ ପ୍ରଣାମ ଜଣାଇ ତପୋଧନଙ୍କୁ ପ୍ରଣିପାତ କଲେ । ତ୍ରିକାଳଜ୍ଞ ମୁନି ସେମାନଙ୍କୁ ଆଶ୍ୱାସନା ଦେଇ ପ୍ରୀତିପୂର୍ବକ ମୁକ୍ତାଫଳକେତୁଙ୍କୁ କହିଲେ, 'ବିନା ବିଚାରରେ କାର୍ଯ୍ୟ ସମ୍ପାଦନା କରୁଥିବା ମୋର ଏହି ଦୂରଦୃଷ୍ଟିହୀନ ମୂର୍ଖ ଶିଷ୍ୟ କ୍ରୋଧରେ ତୁମକୁ ଅଭିଶାପ ଦେଇଛି । ତୁମେ ତ ମୋର କିଛି ଅନିଷ୍ଟ କରିନାହଁ । ଧ୍ୟାନଭଙ୍ଗ ହେବାରୁ ମୁଁ ନିଜେ ଉଠି ମନ୍ଦିର ମଧ୍ୟରେ ପ୍ରବେଶ କରିଥିଲି । କିନ୍ତୁ ଏହି ଅଭିଶାପପାଇଁ ମୋର ଶିଷ୍ୟ ନିମିତ୍ତ ମାତ୍ର । ମର୍ତ୍ତ୍ୟଲୋକରେ ଜନ୍ମହେବା ତୁମର ଭବିତବ୍ୟ; କାରଣ ତୁମେ ମାନବ ରୂପରେ ଦେବତାମାନଙ୍କ ଆବଶ୍ୟକୀୟ କାର୍ଯ୍ୟ ସମ୍ପନ୍ନ କରିବ । ସେଠାରେ ଅକସ୍ମାତ୍ ପଦ୍ମାବତୀଙ୍କୁ ଦେଖି କାମାତୁର ହୋଇପଡ଼ିବ । ଫଳରେ ଶରୀର ବିସର୍ଜନ କରି ଶୀଘ୍ର ଶାପମୁକ୍ତ ହେବ । ପୁଣି ତୁମେ ସେହି ଜନ୍ମରେ ହିଁ ତୁମର ଏହି ପ୍ରାଣେଶ୍ୱରୀ ପଦ୍ମାବତୀଙ୍କୁ ତ୍ରାଣ କରିବ । ସର୍ବଦା ସମଗ୍ର ବିଶ୍ୱର କଲ୍ୟାଣପାଇଁ ଚିନ୍ତା କରୁଥିବାଯୋଗୁଁ ଅଧିକ ସମୟ ତୁମେ ଶାପଗ୍ରସ୍ତ ହୋଇ ରହିବ ନାହିଁ । ବିଦ୍ୟୁଦ୍‌ଧ୍ୱଜ ସହିତ ଯୁଦ୍ଧ କଲାବେଳେ ତୁମେ ବ୍ରହ୍ମାସ୍ତ୍ର ପ୍ରୟୋଗ କରିଥିଲ । ସେଥିରେ ଶତ୍ରୁସେନା ତ ନିପାତ ହୋଇଥିଲେ, କିନ୍ତୁ ତା'ସହିତ ବହୁ ବାଳକ ଓ ବୃଦ୍ଧ ମଧ୍ୟ ମୃତ୍ୟୁବରଣ କରିଥିଲେ । ଏହି ଅଭିଶାପ ସେହି କ୍ଷୀଣ ପାପର ଫଳଶ୍ରୁତି ।'

ଏହା ଶୁଣି ପଦ୍ମାବତୀ ଅଶ୍ରୁପୂର୍ଣ୍ଣ ଲୋଚନରେ ମୁନି ତପୋଧନଙ୍କ ପାଦତଳେ ନିବେଦନ କଲେ, 'ପ୍ରଭୁ ! ମୋର ପତିଙ୍କ ଯେଉଁ ଗତି ହେବ ମୋର ମଧ୍ୟ ସେହି ଗତି ହେବାପାଇଁ ଆପଣ ବରଦାନ କରନ୍ତୁ । ମୁଁ ପ୍ରିୟତମ ମୁକ୍ତାଫଳକେତୁଙ୍କ କ୍ଷଣମାତ୍ର ବିରହ ସହ୍ୟ କରିପାରିବି ନାହିଁ ।' କିନ୍ତୁ ମୁନି ତାଙ୍କୁ ଆଶ୍ୱାସନା ଦେଇ କହିଲେ, 'ଏହା ସମ୍ଭବ ନୁହେଁ । ତୁମେ ଏଠାରେ ହିଁ ରହି ଦେବୀଙ୍କ ଆରାଧନା କରୁଥାଅ । ତୁମ ତପସ୍ୟା ଯୋଗୁଁ ଯଥାଶୀଘ୍ର ରାଜକୁମାରଙ୍କ ଅଭିଶାପ କ୍ଷୀଣ ହୋଇପଡ଼ିବ । ତା'ପରେ ତୁମ ଉଭୟଙ୍କ ବିବାହ ସୁନିଶ୍ଚିତ । ସେହିଠାରୁ ଦଶକଳ୍ପ ପର୍ଯ୍ୟନ୍ତ ତୁମେ ମୁକ୍ତାଫଳକେତୁଙ୍କ ସହିତ ଉଭୟ ବିଦ୍ୟାଧର ଓ ଦୈତ୍ୟ ସାମ୍ରାଜ୍ୟର ସାମ୍ରାଜ୍ଞୀ ହୋଇ ଆନନ୍ଦମୟ ଜୀବନଯାପନ କରିବ । ମୁକ୍ତାଫଳକେତୁ ପ୍ରଦାନ କରିଥିବା ବ୍ରହ୍ମାଙ୍କ କମଣ୍ଡଳୁ ମଧ୍ୟରୁ ଜାତ ଏହି ଦିବ୍ୟ ଚୂଡ଼ାମଣି ତପସ୍ୟା ସମୟରେ ତୁମକୁ ରକ୍ଷା କରୁଥିବ ।'

ପଦ୍ମାବତୀଙ୍କୁ ଏହିପରି ଆଶ୍ୱାସନା ଦେଉଥିବା ବେଳେ ମୁକ୍ତାଫଳକେତୁ ସେହି ଦିବ୍ୟଦ୍ରଷ୍ଟା ତପୋଧନଙ୍କୁ ପ୍ରାର୍ଥନା କଲେ ଯେ ସେ ମନୁଷ୍ୟ ଜନ୍ମରେ ଯେପରି ଭଗବାନ ପାର୍ବତୀ ପତିଙ୍କ ସେବାରୁ ନିବୃତ୍ତ ନହୁଅନ୍ତି ଏବଂ ଅନ୍ୟ ନାରୀ ପ୍ରତି ଆକୃଷ୍ଟ ନହୁଅନ୍ତି, ସେଥିପାଇଁ ଆଶୀର୍ବାଦ ପ୍ରଦାନ କରନ୍ତୁ ।' ମହର୍ଷି ପ୍ରୀତ ହୋଇ 'ତଥାସ୍ତୁ' କହିଲେ ।

ଭାବୀ ବିରହପାଇଁ ବ୍ୟାକୁଳ ହୋଇପଡୁଥିବା ପଦ୍ମାବତୀଙ୍କ ଦୃଷ୍ଟି ଯେତେବେଳେ ମୁନିଶିଷ୍ୟ ଦୃଢ଼ବ୍ରତ ଉପରେ ପଡ଼ିଲା ସେ ଦୁଃଖ ଓ କ୍ରୋଧରେ ତାକୁ ଅଭିଶାପ ଦେଇ କହିଲେ, 'ତୁ ବିନା କାରଣରେ ମୋର ପ୍ରାଣେଶ୍ୱରଙ୍କୁ ଯେଉଁ ଅଭିଶାପ ଦେଇଛୁ ସେଥିପାଇଁ ତୁ ମଧ୍ୟ ଯାଇ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରିବୁ । ସେଠାରେ ମୁକ୍ତାଫଳକେତୁଙ୍କ କାମରୂପ ଓ କାମଚର ବାହନ ରୂପେ କାର୍ଯ୍ୟ କରିବୁ । ଅର୍ଥାତ୍ ସେ ଯେପରି ବାହନ ଚାହିଁବେ ତୁ ସେହି ରୂପ ଧାରଣ କରିବୁ ଏବଂ ସେ ଯେଉଁଠାକୁ ଯେତେ ବେଗରେ ଯିବାପାଇଁ ଚାହିଁବେ ତୁ ତାଙ୍କ ଇଚ୍ଛାଅନୁଯାୟୀ ସେଠାରେ ନେଇ ପହଞ୍ଚାଇବୁ ।'

ଅଭିଶପ୍ତ ହୋଇ ଦୃଢ଼ବ୍ରତ ଦୁଃଖିତ ହେଲା । ମୁନି ଶିଷ୍ୟ ସହିତ ସେଠାରୁ ଚାଲିଗଲେ ।

ଏହାପରେ ଅତ୍ୟନ୍ତ ଦୁଃଖରେ ମ୍ରିୟମାଣ ହୋଇ ମୁକ୍ତାଫଳକେତୁ ରାଜକୁମାରୀ ପଦ୍ମାବତୀଙ୍କୁ କହିଲେ, 'ପ୍ରିୟେ ! ଆଉ ଚିନ୍ତାକରି ଲାଭ କଣ ? ଭବିତବ୍ୟ ଆମ ହାତରେ ନାହିଁ । ମୁଁ ବର୍ତ୍ତମାନ ଆମ ନଗରକୁ ଫେରିଯାଉଛି । ଦେଖିବି ସେଠାରେ ମୋର ଅବସ୍ଥା କଣ ହେଉଛି ।' ବାତ୍ୟାପୀଡ଼ିତ ପୁଷ୍ପିତ ଲତାପରି ପଦ୍ମାବତୀ ଏହା ଶୁଣିବାମାତ୍ରେ ଭୂମି ଉପରେ ଢଳିପଡ଼ିଲେ । ତାଙ୍କୁ କୌଣସିମତେ ଆଶ୍ୱାସନା ଦେଇ ରାଜକୁମାର ମିତ୍ର ସଂଯତକ ସହିତ ବାରମ୍ବାର ପଛକୁ ଚାହିଁ ଚାହିଁ ସ୍ୱନଗର ଅଭିମୁଖରେ ପ୍ରସ୍ଥାନ କଲେ ।

ମୁକ୍ତାଫଳକେତୁ ବିଦାୟ ନେବାପରେ ପଦ୍ମାବତୀ ଦୁଃଖରେ ଭାଙ୍ଗିପଡ଼ିଲେ । ବିଳାପ କରିବା ବ୍ୟତୀତ ସେ ବା ଆଉ କଣ କରନ୍ତେ ? ସଖୀ ତାଙ୍କୁ ଆଶ୍ୱାସନା ଦେଉଥାଏ । ତାକୁ ସେ ବାଷ୍ପାକୁଳ କଣ୍ଠରେ କହିଲେ 'ସଖି ! ଆଜି ଏପରି କିଛି ଘଟିବ ବୋଲି ମୁଁ ଜାଣିଥିଲି । ରାତିରେ ଦେବୀ ପାର୍ବତୀ ମୋତେ ସ୍ୱପ୍ନରେ ଦେଖାଦେଇଥିଲେ । ସେ ପଦ୍ମପୁଷ୍ପର ଗୋଟିଏ ମାଳା ମୋ ଗଳାରେ ଦେଉଥିବା ବେଳେ ହଠାତ୍ ରହିଯାଇ କହିଲେ ଯେ ଥାଉ, ପରେ ଦିଆଯିବ । ଏହାଦ୍ୱାରା ଦେବୀ ପ୍ରିୟ ମିଳନର ପ୍ରତିବନ୍ଧକ ସମ୍ପର୍କରେ ହିଁ ସୂଚନା ଦେଇଥିଲେ ।'

ଅନୁତପ୍ତା ପଦ୍ମାବତୀଙ୍କଠାରୁ ସ୍ୱପ୍ନ ବୃତ୍ତାନ୍ତ ଶୁଣି ମନୋହାରିକା କହିଲା, 'ସଖି ! ଏଥିରୁ ମନେହେଉଛି ଦେବୀ ତୁମ ଉପରେ ପ୍ରସନ୍ନ ଅଛନ୍ତି । ଆଶ୍ୱାସନା ଦେବାପାଇଁ ହିଁ ସେ ତୁମକୁ ଏପରି ସ୍ୱପ୍ନ ଦେଖାଇଥିଲେ । ମୁନି ତପୋଧନ ମଧ୍ୟ ଏହାହିଁ ସୂଚାଇଛନ୍ତି । ପୂର୍ବେ ଭଗବାନ ଶଙ୍କର ମଧ୍ୟ ଏହିପରି ହିଁ ନିର୍ଦ୍ଦେଶ ଦେଇଥିଲେ । ଏଣୁ ତୁମେ ଅଧୀରା ହୁଅନାହିଁ । ଧୈର୍ଯ୍ୟ ଧର । ଅବିଳମ୍ବେ ମୁକ୍ତାଫଳକେତୁଙ୍କ ସହିତ ତୁମର ମିଳନ ଅବଶ୍ୟ ଘଟିବ ।' ସଖୀର ଆଶ୍ୱାସନା ବାଣୀ ଏବଂ ଅଲୌକିକ ଚୂଡ଼ାମଣିର ପ୍ରଭାବ ପଦ୍ମାବତୀଙ୍କୁ କିଛି ପରିମାଣରେ ଆଶ୍ୱସ୍ତ କଲା । ସେ ଗୌରୀ ମନ୍ଦିରରେ ରହିବାକୁ ଲାଗିଲେ । ପ୍ରତିଦିନ ତ୍ରିସଂନ୍ଧ୍ୟାରେ ପାର୍ବତୀଙ୍କ ସହିତ ଶିବ ଏବଂ ନିଜେ ଅଙ୍କନ କରିଥିବା ମୁକ୍ତାଫଳକେତୁଙ୍କ ଚିତ୍ରପଟକୁ ପୂଜା କରି ସେ ତପଶ୍ଚରଣ କରୁଥାନ୍ତି । ଦେବଦେବୀଙ୍କ ପରି ରାଜକୁମାର ମଧ୍ୟ ତାଙ୍କପାଇଁ ଥିଲେ ଦେବତା ।

ଏହି ଘଟଣା ଜାଣି ରାଜା ଚନ୍ଦ୍ରକେତୁ ଓ ରାଣୀ କୁବଳୟାବଳୀ ସେଠାରେ ଆସି ପହଞ୍ଚିଲେ । ପିତା ତପସ୍ୟାରୁ ବିରତ ହେବାପାଇଁ ଅନୁରୋଧ ଜଣାଇ କହିଲେ, 'ଯେଉଁ କାମନା ସ୍ୱୟଂ ପୂର୍ଣ୍ଣ ହେବା ନିଶ୍ଚିତ ତା' ପାଇଁ ଏପରି ତପସ୍ୟା କରିବାର ଆବଶ୍ୟକତା କଣ ? ତୋର କୋମଳ ଶରୀର ତପସ୍ୟାର କଠିନତା ସହ୍ୟ କରିପାରିବ ନାହିଁ ।' କିନ୍ତୁ ପିତାଙ୍କ ଅନୁରୋଧକୁ ସସଂଭ୍ରମ ଭାବେ ପ୍ରତ୍ୟାଖ୍ୟାନ କରି ପଦ୍ମାବତୀ ଜଣାଇଲେ, 'ବିଧିନିର୍ଦ୍ଦିଷ୍ଟ ମୋର ଭାବୀ ପତି ଯେତେବେଳେ ହଠାତ୍ ଅଭିଶପ୍ତ ହୋଇ ସଙ୍କଟାପନ୍ନ ହୋଇପଡ଼ିଛନ୍ତି ସେତେବେଳେ ମୁଁ ବା କିପରି ରାଜଭୋଗ ଉପଭୋଗ କରିବି ? କୁଳକାମିନୀମାନଙ୍କପାଇଁ ପତି ହିଁ ପରମାତ୍ମା । ତପସ୍ୟାଦ୍ୱାରା ଭଗବାନ ପାର୍ବତୀପତିଙ୍କୁ ସନ୍ତୁଷ୍ଟ କରି ମୁଁ ପତିଙ୍କୁ ଅଭିଶାପରୁ ମୁକ୍ତ କରିବି । ତା'ହେଲେ ଆମର ମିଳନ ଅବିଳମ୍ବେ ସଂଘଟିତ ହୋଇପାରିବ । ଆପଣ ଜାଣନ୍ତି, ତପସ୍ୟାଦ୍ୱାରା କୌଣସି କାର୍ଯ୍ୟ ଅସାଧ୍ୟ ନୁହେଁ ।'

କନ୍ୟାକୁ ନିଜ ପ୍ରତିଜ୍ଞାରେ ଅଟଳ ରହୁଥିବା ଦେଖି ରାଣୀ କୁବଳୟାବଳୀ ରାଜା ଚନ୍ଦ୍ରକେତୁଙ୍କୁ କହିଲେ, 'ଆର୍ଯ୍ୟପୁତ୍ର ! ଏପରି କଠୋର ତପସ୍ୟା କରିବାପାଇଁ ତାକୁ ଛାଡ଼ିଦିଅନ୍ତୁ । ଏଥିପାଇଁ ଆପଣ ଦୁଃଖ କରିବା ବୃଥା । ଏହାହିଁ ତାର ଭବିତବ୍ୟ । ଏହାର କିଛି କାରଣ ମଧ୍ୟ ଅଛି । ସେ ସମ୍ପର୍କରେ ମୁଁ ଆପଣଙ୍କୁ ଜଣାଉଛି ଶୁଣନ୍ତୁ ।

ପ୍ରାଚୀନ କାଳରେ ଶିବପୁର ବୋଲି ଗୋଟିଏ ନଗର ଥିଲା । ସେଠାରେ ଦେବପ୍ରଭା ନାମରେ ଜଣେ ସିଦ୍ଧକନ୍ୟା ନିଜର ଅଭିମତ ପତିଲାଭ କରିବାପାଇଁ ତପସ୍ୟା

କରୁଥାଏ । ମୁଁ ଦିନେ ପଦ୍ମାବତୀ ସହିତ ଶିବଦର୍ଶନ ପାଇଁ ସେଠାକୁ ଯାଇଥିଲି । ପଦ୍ମାବତୀ ଦେବପ୍ରଭାକୁ ତପସ୍ୟା କରୁଥିବା ଦେଖି ପରିହାସ ପୂର୍ବକ କହିଲା, 'ପତି ପାଇଁ ତପସ୍ୟା କରୁଛ । ତମକୁ ଟିକିଏ ଲାଜ ଲାଗୁ ନାହିଁ ।' ଏଥିରେ ଦେବପ୍ରଭା ରୁଷ୍ଟ ହେଲା । ସେ ପଦ୍ମାବତୀକୁ ଅଭିଶାପ ଦେଇ କହିଲା 'ଆରେ ଚଣ୍ଡି ! ତୁ ପିଲାଳିଆମିରେ ମୋତେ ଉପହାସ କରୁଛୁ । ତେଣୁ ତୋତେ ମଧ୍ୟ ମନୋମତ ପତିପ୍ରାପ୍ତିପାଇଁ କଠୋର ତପସ୍ୟା କରିବାକୁ ପଡ଼ିବ ।' ତେଣୁ ସେହି ସିଦ୍ଧକନ୍ୟା ଅଭିଶାପରୁ ଏହାକୁ ଅବଶ୍ୟ ତପସ୍ୟାର କଷ୍ଟ ଭୋଗ କରିବାକୁ ପଡ଼ିବ । ତାକୁ କିଏ ବା ବଦଳାଇପାରେ ? ତେଣୁ ସେ ଯାହା କରୁଛି ତାକୁ କରିବାକୁ ଦିଅନ୍ତୁ ।'

ରାଣୀ କୁବଳୟାବଳୀଙ୍କ କଥାଶୁଣି ଗନ୍ଧର୍ବରାଜ ଚନ୍ଦ୍ରକେତୁ ପଦପ୍ରାନ୍ତରେ ପ୍ରଣାମ କରୁଥିବା କନ୍ୟାଠାରୁ ଅଶ୍ରୁପୂର୍ଣ୍ଣ ନୟନରେ ବିଦାୟ ନେଲେ । ପଦ୍ମାବତୀ ବ୍ରତ, ଜପ ଓ ଧ୍ୟାନରେ ନିମଜ୍ଜିତ ରହି ଦେବୀଙ୍କ ଆରାଧନା କରିବାକୁ ଲାଗିଲେ । ପ୍ରତ୍ୟହ ସେ ଆକାଶ ମାର୍ଗରେ ଯାଇ ବ୍ରହ୍ମା, ବିଷ୍ଣୁ ପ୍ରଭୃତି ଦେବତାଙ୍କଦ୍ୱାରା ପୂଜିତ ସିଦ୍ଧୀଶ୍ୱରଙ୍କୁ ପୂଜା କରୁଥାନ୍ତି । ଏହି କ୍ଷେତ୍ରରେ ତାଙ୍କୁ ପୂଜା କରିବାପାଇଁ ଦେବଦେବ ମହାଦେବ ମଧ୍ୟ ପୂର୍ବେ ନିର୍ଦ୍ଦେଶ ଦେଇଥିଲେ ।

## ପଞ୍ଚମ ତରଙ୍ଗ

ଗନ୍ଧର୍ବରାଜ ଚନ୍ଦ୍ରକେତୁଙ୍କ କନ୍ୟା ପଦ୍ମାବତୀ ଗୌରୀ ଆଶ୍ରମ ପରିସରରେ ରହି ମୁକ୍ତାଫଳକେତୁଙ୍କୁ ଯଥାଶୀଘ୍ର ପତିରୂପରେ ଲାଭ କରିବା ନିମିତ୍ତ ତପସ୍ୟା କରୁଥାନ୍ତି ।

ବିଦ୍ୟାଧର ରାଜକୁମାର ମୁକ୍ତାଫଳକେତୁ ପଦ୍ମାବତୀଙ୍କଠାରୁ ବିଦାୟ ନେଇ ନିଜ ରାଜଧାନୀକୁ ଫେରିବା ପରେ ବ୍ରହ୍ମଶାପ ତାଙ୍କୁ ବିଚଳିତ କରିବାକୁ ଲାଗିଲା । ମାନବଲୋକରେ ଜନ୍ମଗ୍ରହଣ କରିବାର ଭୟ ତାଙ୍କୁ ଆକ୍ରାନ୍ତ କଲା । ସେ ଭଗବାନ ବିଶ୍ୱେଶ୍ୱରଙ୍କ ଶରଣାଗତ ହେଲେ । ଦିନେ ପୂଜାସାରି ମନ୍ଦିର ମଧ୍ୟରୁ ବାହାରୁଥିବା ବେଳେ ଗର୍ଭଗୃହ ମଧ୍ୟରୁ ଶୁଣାଗଲା, 'ବତ୍ସ ! ଭୟଭୀତ ହୁଅ ନାହିଁ । ଗର୍ଭବାସର ଦୁଃଖ ତୋତେ ସହ୍ୟ କରିବାକୁ ପଡ଼ିବ ନାହିଁ । ମନୁଷ୍ୟ ଜନ୍ମ ମଧ୍ୟ ତୋ ପକ୍ଷରେ କଷ୍ଟଦାୟକ ହେବ ନାହିଁ । ଅଳ୍ପଦିନ ମଧ୍ୟରେ ଅଭିଶାପର ଅବଧି ଶେଷ ହେବ । ପୃଥିବୀରେ ରାଜକୁମାର ରୂପେ ତୁ ଜନ୍ମଗ୍ରହଣ କରିବୁ । ଅତ୍ୟନ୍ତ ବଳଶାଳୀ ଓ ପରାକ୍ରମୀ ଭାବରେ ତୋର ଯଶ ଚତୁର୍ଦ୍ଦିଗରେ ପ୍ରଚାରିତ ହେବ । ମହର୍ଷି ତପୋଧନଙ୍କଠାରୁ ତୁ ସମସ୍ତ ଅସ୍ତ୍ର ପ୍ରାପ୍ତ ହେବୁ । ମୋର ଗଣ, କିଙ୍କର ତୋର ଭ୍ରାତା ରୂପେ ଜନ୍ମଗ୍ରହଣ କରିବ । ତା'ରି ସହାୟତାରେ ତୁ ସମସ୍ତ ଶତ୍ରୁଙ୍କୁ ଜୟକରି ଦେବତାମାନଙ୍କ କାର୍ଯ୍ୟ ସିଦ୍ଧ କରିବୁ । ପଦ୍ମାବତୀ ସହିତ ତୋର ପୁଣି ମିଳନ ଘଟିବ । ବିଦ୍ୟାଧର ଚକ୍ରବର୍ତ୍ତୀ ଭାବେ ତୁ ଦୀର୍ଘଦିନ ଧରି ବିଦ୍ୟାଧରମାନଙ୍କ ରାଜ୍ୟ ପରିପାଳନା କରିବୁ ।'

ଶୂନ୍ୟବାଣୀ ଶୁଣି ମୁକ୍ତାଫଳକେତୁ ଅଧୀରତା ତ୍ୟାଗ କଲେ । ଅଭିଶାପର ଫଳ ଭୋଗ କରିବାପାଇଁ ସେ ସେହିଠାରେ ହିଁ ରହୁଥାନ୍ତି ।

### ରାଜା ମେରୁଧ୍ୱଜ ଓ ଦୈତ୍ୟ ତ୍ରୈଲୋକ୍ୟମାଳୀ କଥା

ଏହି ସମୟରେ ପୂର୍ବାଞ୍ଚଳରେ ଦେବସଭ ନାମରେ ଏକ ନଗର ଥାଏ । ତାହାର ସୌନ୍ଦର୍ଯ୍ୟ ଦେବସଭାଠାରୁ କୌଣସି ଗୁଣରେ କମ୍ ନଥିଲା । ସେଠରେ ମେରୁଧ୍ୱଜ

ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଦେବାସୁର ସଂଗ୍ରାମରେ ଥିଲେ ଦେବରାଜ ଇନ୍ଦ୍ରଙ୍କ ସହାୟକ । ଏହି ପବିତ୍ରାତ୍ମା ରାଜଚକ୍ରବର୍ତ୍ତୀଙ୍କ ଯଶଃ ପାଇଁ କେବଳ ଲୋଭ ଥିଲା, କିନ୍ତୁ ଅନ୍ୟର ଧନପ୍ରତି ନୁହେଁ; ତାଙ୍କ ଖଡ଼୍ଗଧାରରେ କେବଳ ତୀକ୍ଷ୍ଣତା ଥିଲା, କିନ୍ତୁ ଦଣ୍ଡରେ ନୁହେଁ; ସେ ପାପକୁ ଭୟ କରୁଥିଲେ, ଶତ୍ରୁମାନଙ୍କୁ ନୁହେଁ । ଶତ୍ରୁମାନଙ୍କ ପ୍ରତି କ୍ରୋଧ ପ୍ରକାଶ କଲାବେଳେ ତାଙ୍କ ଭ୍ରୂଯୁଗଳରେ ବକ୍ରତା ଦେଖାଦେଉଥିଲା, କିନ୍ତୁ ଆଚରଣରେ ନୁହେଁ; ଧନୁର୍ଗୁଣର ଘର୍ଷଣଦ୍ୱାରା ତାଙ୍କ ଅଙ୍ଗୁଳିଗୁଡ଼ିକରେ କର୍କଶତା ଦେଖାଦେଉଥିଲା, କିନ୍ତୁ ବଚନରେ ନୁହେଁ; ସେ ଯୁଦ୍ଧରେ ପଳାୟିତ ଶତ୍ରୁମାନଙ୍କୁ ରକ୍ଷା କରୁଥିଲେ କିନ୍ତୁ ରାକ୍ଷସମାନଙ୍କୁ ନୁହେଁ; ଧର୍ମାଚରଣରେ ତାଙ୍କର ଆସକ୍ତି ଥିଲା, କିନ୍ତୁ ପରସ୍ତ୍ରୀମାନଙ୍କଠାରେ ନୁହେଁ । ଦୁଇଟି ଚିନ୍ତା ସର୍ବଦା ତାଙ୍କୁ ବିଚଳିତ କରୁଥିଲା । ପ୍ରଥମ ହେଲା ସେ ଉତ୍ତର ଯୌବନରେ ମଧ୍ୟ ପୁତ୍ର ସନ୍ତାନ ଲାଭରୁ ବଞ୍ଚିତ ଥିଲେ ଏବଂ ଦ୍ୱିତୀୟ ଚିନ୍ତା ଥିଲା ଦେବାସୁର ମହାସଂଗ୍ରାମରେ ଜୀବନ ରକ୍ଷା କରି ଯେଉଁ ରାକ୍ଷସମାନେ ଆତ୍ମରକ୍ଷାପାଇଁ ପାତାଳପୁରକୁ ଚାଲିଯାଇଥିଲେ ସେମାନେ ବାରମ୍ବାର ଛଦ୍ମବେଶରେ ଆସି ରାଜ୍ୟସ୍ଥିତ ତୀର୍ଥ, ମନ୍ଦିର, ଆଶ୍ରମ ଇତ୍ୟାଦିକୁ ନଷ୍ଟଭ୍ରଷ୍ଟ କରୁଥିଲେ ସୁଦ୍ଧା ରାଜା ସେହି ଆକାଶ ଓ ପାତାଳଗାମୀ ରାକ୍ଷସମାନଙ୍କୁ ଧରିପାରୁ ନଥିଲେ । ସେ ପୃଥିବୀ ପୃଷ୍ଠରେ ଶତ୍ରୁହୀନ ଥିଲେ ମଧ୍ୟ ଏହି କାରଣରୁ ଦୁଃଖଲାଭ କରୁଥାନ୍ତି ।

ଏହିପରି ଚିନ୍ତାକୁଳ ଥିବାବେଳେ ଚୈତ୍ରମାସ ଶୁକ୍ଳପକ୍ଷର ପ୍ରଥମ ଦିନରେ ଦେବରାଜ ଇନ୍ଦ୍ର ଗୋଟିଏ ଦିବ୍ୟ ରଥ ପଠାଇ ତାଙ୍କୁ ସ୍ୱର୍ଗପୁରକୁ ନିମନ୍ତ୍ରଣ କରିନେଲେ । ପ୍ରତିବର୍ଷ ସୃଷ୍ଟିର ପ୍ରଥମ ଦିନରେ ସେ ଇନ୍ଦ୍ରଙ୍କ ନିମନ୍ତ୍ରଣ କ୍ରମେ ଦେବସଭାରେ ଯାଇ ଯୋଗଦିଅନ୍ତି । ସେହି ବର୍ଷ ମଧ୍ୟ ସେ ଯାଇ ଦେବସଭାରେ ପହଞ୍ଚିଲେ । ଇନ୍ଦ୍ରଙ୍କଦ୍ୱାରା ସମ୍ମାନିତ ହୋଇ ଗନ୍ଧର୍ବ ଓ ଅପ୍ସରାମାନଙ୍କ ନୃତ୍ୟ ଓ ଗୀତରେ ମୁଖରିତ ଦେବସଭା ମଧ୍ୟରେ ବସିଥିଲେ ମଧ୍ୟ ତାଙ୍କ ମୁଖମଣ୍ଡଳ ମ୍ଳାନ ଦେଖାଯାଉଥାଏ । ଉତ୍ସବ ଶେଷ ହେଲା । ସେ ଦୀର୍ଘଶ୍ୱାସ ତ୍ୟାଗ କରି ଉଠିଲେ । ଏହା ଲକ୍ଷ୍ୟକରି ଦେବରାଜ ତାଙ୍କ ମନୋବେଦନା ଅବଗତ ହୋଇ କହିଲେ, 'ରାଜନ୍ ! ଆପଣଙ୍କ ମାନସିକ ବ୍ୟଥା ମୋର ଅଜ୍ଞାତ ନୁହେଁ । କିନ୍ତୁ ଆପଣ ଦୁଃଖ କରନ୍ତୁ ନାହିଁ । ଭଗବାନ ଶଙ୍କରଙ୍କ ଅଂଶରେ ଆପଣଙ୍କ ମୁକ୍ତାଫଳଧ୍ୱଜ ନାମରେ ଗୋଟିଏ ପୁତ୍ର ସନ୍ତାନ ଜାତ ହେବ । ଶିବଗଣମାନଙ୍କ ମଧ୍ୟରୁ କିଂକର ନାମକ ଗଣ ଅବତାର ଗ୍ରହଣ କରି ଆପଣଙ୍କ ଔରସରୁ ମଳୟଧ୍ୱଜ ନାମରେ ଜନ୍ମଗ୍ରହଣ କରିବ । କନିଷ୍ଠ ଭ୍ରାତା ମଳୟଧ୍ୱଜ ସହିତ ମୁକ୍ତାଫଳଧ୍ୱଜ ମହର୍ଷି ତପୋଧନଙ୍କଠାରୁ ସମସ୍ତ ବିଦ୍ୟାସହିତ କାମରୂପ ବାହନ ଏବଂ ବହୁ ଦିବ୍ୟାସ୍ତ୍ର ପ୍ରାପ୍ତ ହେବ । ମହାପାଶୁପତ ଅସ୍ତ୍ର

ଅଧିକାରୀ ହୋଇ ସେ ହେବ ଦୁର୍ଜେୟ । ରାକ୍ଷସମାନଙ୍କୁ ପରାସ୍ତ କରି ଉଭୟ ମର୍ତ୍ତ୍ୟ ଓ ପାତାଳ ଲୋକରେ ଆଧିପତ୍ୟ ବିସ୍ତାର କରିବାପାଇଁ ମଧ୍ୟ ସମର୍ଥ ହେବ । ଆପଣ ମଧ୍ୟ ମୋଠାରୁ ବିବିଧ ଅପ୍ରତିରୋଧ୍ୟ ଶସ୍ତ୍ରାସ୍ତ୍ର ସହିତ ଏହି ହସ୍ତୀ ଦୁଇଟିକୁ ଗ୍ରହଣ କରନ୍ତୁ । ଏଥିରୁ ଗୋଟିକର ନାମ କାଞ୍ଚନଗିରି ଏବଂ ଅନ୍ୟଟିର ନାମ କାଞ୍ଚନଶେଖର ।' ମେରୁଧ୍ୱଜ ଇନ୍ଦ୍ରପ୍ରଦତ୍ତ ଉପଢ଼ୌକନ ସହ ସହର୍ଷଚିତ୍ତରେ ନିଜ ନଗରକୁ ଫେରିଆସିଲେ ।

ରାଜା ଦେବବଳରେ ଆକାଶଚାରୀ ହୋଇପାରିଥିଲେ ମଧ୍ୟ ରାକ୍ଷସମାନଙ୍କୁ ଆୟତ୍ତ କରିବାପାଇଁ ସମର୍ଥ ହୋଇପାରୁ ନଥିଲେ । ସେମାନେ ବିଭିନ୍ନ ଉପଦ୍ରବ କରି ପାତାଳପୁରୀକୁ ଚାଲିଯାଉଥାନ୍ତି । ରାଜାଙ୍କ ମନୋବେଦନା ଶାନ୍ତ ହୋଇପାରୁନଥାଏ । ଦିନେ ସେ ଇନ୍ଦ୍ରଙ୍କ କଥା ସ୍ମରଣ କରି ପୁତ୍ରଲାଭ ଇଚ୍ଛାରେ ମହର୍ଷି ତପୋଧନଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ । ସେ ଇନ୍ଦ୍ରଙ୍କଠାରୁ ଶୁଣିଥିବା କଥା ଶୁଣାଇ ପୁତ୍ରପ୍ରାପ୍ତି ନିମିତ୍ତ ଶୀଘ୍ର କିଛି ଉପାୟ କରିବାପାଇଁ ମହର୍ଷିଙ୍କୁ ଅନୁରୋଧ କଲେ । ମହର୍ଷି ନିର୍ଦ୍ଦେଶ ଦେଲେ ଯେ ଏଥିପାଇଁ ଏକମାତ୍ର ଉପାୟ ହେଉଛି ଶିବାରାଧନା । ରାଜା ବ୍ରତ ଆଚରଣ ପୂର୍ବକ ସର୍ବବ୍ୟାପୀ ଶଙ୍କରଙ୍କ ଆରାଧନା କରିବାକୁ ଲାଗିଲେ । କିଛିଦିନ ପରେ ଭଗବାନଙ୍କ ଆଦେଶ ହେଲା, 'ଉଠ, ରାକ୍ଷସମାନଙ୍କୁ ପରାଜିତ କରିବାପାଇଁ ତୁମେ ଯଥାଶୀଘ୍ର ଦୁଇଟି ଅଜେୟ ପୁତ୍ର ଲାଭ କରିବ ।' ରାଜା ଜାଗ୍ରତ ହୋଇ ମହର୍ଷିଙ୍କୁ ସ୍ୱପ୍ନ ବୃତ୍ତାନ୍ତ ଜଣାଇଲେ ଏବଂ ବ୍ରତପାରଣା କରି ସ୍ୱନଗରୀକୁ ଫେରିଆସିଲେ ।

କିଛିଦିନ ମଧ୍ୟରେ ମେରୁଧ୍ୱଜଙ୍କ ସୁଲକ୍ଷଣା ମହାଦେବୀ ଗର୍ଭ ଧାରଣ କଲେ । ଗର୍ଭଭାର ସହିତ ରାଜାଙ୍କ ଆନନ୍ଦଉଲ୍ଲାସ ବୃଦ୍ଧିଲାଭ କରିବାକୁ ଲାଗିଲା । ମୁକ୍ତାଫଳକେତୁ ଅଭିଶାପର ଫଳଭୋଗ କରିବାପାଇଁ ନିଜର ବିଦ୍ୟାଧର ଶରୀର ପରିତ୍ୟାଗ କରି ଅତର୍କିତ ଭାବରେ ମହାରାଣୀଙ୍କ ଗର୍ଭରେ ପ୍ରବେଶ କଲେ । ଚନ୍ଦ୍ରପୁରଠାରେ ତାଙ୍କ ପ୍ରାଣହୀନ ଶରୀର ଆତ୍ମୀୟମାନଙ୍କଦ୍ୱାରା ସୁରକ୍ଷିତ ରହିଲା । ବିଦ୍ୟା ପ୍ରଭାବରେ ତାହା ଅମ୍ଳାନ ରହିଥାଏ ।

ସମୟକ୍ରମେ ମେରୁଧ୍ୱଜଙ୍କ ରାଣୀ ସୂର୍ଯ୍ୟଙ୍କ ପରି ତେଜୀୟାନ୍ ଏକ ପୁତ୍ରକୁ ଜନ୍ମଦେଲେ । ସମଗ୍ର ରାଜ୍ୟରେ ପୁତ୍ର ଜନ୍ମଉତ୍ସବ ପାଳିତ ହେଲା । ଦେବତାମାନେ ଦୁନ୍ଦୁଭିବାଦନ କରିବାକୁ ଲାଗିଲେ । ଦିବ୍ୟଦର୍ଶୀ ତପୋଧନ ମଧ୍ୟ ରାଜା ମେରୁଧ୍ୱଜଙ୍କୁ ଅଭିନନ୍ଦନ କରିବାପାଇଁ ଆସି ପହଞ୍ଚିଲେ । ମୁନିଙ୍କ ନିର୍ଦ୍ଦେଶକ୍ରମେ ପୁତ୍ରଟିର ନାମକରଣ କରାଗଲା ମୁକ୍ତାଫଳଧ୍ୱଜ । ତପୋଧନ ସ୍ୱଆଶ୍ରମକୁ ଫେରିଗଲେ ।

ଗୋଟିଏ ବର୍ଷ ବ୍ୟବଧାନରେ ମହାରାଣୀଙ୍କ ଗର୍ଭରୁ ରାଜା ଦ୍ୱିତୀୟ ପୁତ୍ର ଲାଭ କଲେ । ମୁନିଙ୍କ ନିର୍ଦ୍ଦେଶରେ ପୁତ୍ରର ନାମ ରଖାଗଲା ମଳୟଧ୍ୱଜ । ଏହା ମଧ୍ୟରେ ମୁକ୍ତାଫଳକେତୁଙ୍କ ମିତ୍ର ସଂଯତକ ମଧ୍ୟ ଶାପ ପ୍ରଭାବରୁ ରାଜା ମେରୁଧ୍ୱଜଙ୍କ ମନ୍ତ୍ରୀପୁତ୍ର ରୂପେ ଜନ୍ମଗ୍ରହଣ କରିଥାନ୍ତି । ତାଙ୍କ ନାମ ରଖାଯାଇଥାଏ ମହାବୁଦ୍ଧି ।

ସିଂହଶାବକ ପରି ତିନିଜଣ ବାଳକ ବୃଦ୍ଧିଲାଭ କରୁଥାନ୍ତି । ବୟସ ବୃଦ୍ଧି ସହିତ ସେମାନଙ୍କ ତେଜ ଓ ପରାକ୍ରମ ବୃଦ୍ଧିପ୍ରାପ୍ତ ହେଉଥାଏ । ଅଷ୍ଟମ ବର୍ଷରେ ପଦାର୍ପଣ କରିବାରୁ ମହର୍ଷି ତପୋଧନ ଆସି ଉଭୟ ରାଜକୁମାରଙ୍କ ଉପନୟନ ସଂସ୍କାର କଲେ । ନବମ ବର୍ଷରେ ସେ ରାଜକୁମାରମାନଙ୍କୁ ସମସ୍ତ ବିଦ୍ୟା, ସମସ୍ତ କଳା ଓ ସମସ୍ତ ଦିବ୍ୟାସ୍ତ୍ର ଶିକ୍ଷା ଦେଲେ । ଯୁବକ ପୁତ୍ରମାନଙ୍କୁ ଶାସ୍ତ୍ର ଓ ଶସ୍ତ୍ର କୁଶଳ ଦେଖି ପିତା ମେରୁଧ୍ୱଜ ନିଜକୁ କୃତକୃତ୍ୟ ମନେକରୁଥାନ୍ତି ।

ଦିନେ ମହର୍ଷି ଶିଷ୍ୟ ଯୁଗଳଙ୍କୁ ଆଣି ରାଜାଙ୍କ ନିକଟରେ ସମର୍ପଣ କଲେ । ସେ ବିଦାୟ ନେବାବେଳେ ରାଜା ବିନୀତ କଣ୍ଠରେ ଜଣାଇଲେ, 'ମହାତ୍ମନ୍ ! ଆପଣ ଯଦି ଅନ୍ୟଥା ନଭାବନ୍ତି ତେବେ ଗୁରୁଦକ୍ଷିଣା ଗ୍ରହଣ କରନ୍ତୁ ।' ରାଜାଙ୍କ ଅନୁରୋଧ ରକ୍ଷାକରି ମହର୍ଷି ଜଣାଇଲେ ଯେ ସେ ଯଦି ଦକ୍ଷିଣା ଦେବାକୁ ଚାହାଁନ୍ତି ତେବେ ପୁତ୍ରମାନଙ୍କ ସହିତ ଆସି ତାଙ୍କ ଯଜ୍ଞରେ ବିଘ୍ନ ଘଟାଉଥିବା ରାକ୍ଷସମାନଙ୍କୁ ବଧ କରନ୍ତୁ ।

ମହର୍ଷିଙ୍କ ଯାଚନାରେ ରାଜା ମେରୁଧ୍ୱଜ ସଙ୍ଗେସଙ୍ଗେ ସ୍ୱୀକୃତ ହେଲେ, 'ମହାତ୍ମନ୍ ! ଆପଣ ଏହି ମୁହୂର୍ତ୍ତରେ ହିଁ ଦକ୍ଷିଣା ଗ୍ରହଣ କରନ୍ତୁ । ନିର୍ବିଚାରରେ ଆପଣଙ୍କ ଯଜ୍ଞ ଆରମ୍ଭ ହେଉ । ଏଥିରେ ବିଘ୍ନ ସୃଷ୍ଟି କରିବାପାଇଁ ରାକ୍ଷସମାନେ ପହଞ୍ଚିବା ମାତ୍ରେ ମୁଁ ପୁତ୍ରମାନଙ୍କ ସହିତ ଯାଇ ସେଠାରେ ଉପସ୍ଥିତ ହେବି । ପୂର୍ବେ ସେମାନେ ଆପଣମାନଙ୍କ ଯଜ୍ଞ ଧ୍ୱଂସକରି ଛଳପୂର୍ବକ ଆକାଶ ମାର୍ଗରେ ଉଡ଼ିଯାଉଥିଲେ କିମ୍ବା ପାତାଳ ମଧ୍ୟରେ ପ୍ରବେଶ କରି ଆତ୍ମଗୋପନ କରୁଥିଲେ । କିନ୍ତୁ ବର୍ତ୍ତମାନ ମୋ ନିକଟରେ ଦୁଇଟି ଆକାଶଗାମୀ ହସ୍ତୀ ଅଛନ୍ତି । ଆକାଶମାର୍ଗରେ ପଳାୟନ କରୁଥିବା ରାକ୍ଷସମାନଙ୍କୁ ଧରିବା ମୋ ପକ୍ଷରେ ଆଉ କଷ୍ଟସାଧ୍ୟ ହେବ ନାହିଁ ।' ରାଜାଙ୍କ ପ୍ରତିଶ୍ରୁତିରେ ପ୍ରୀତ ହୋଇ ତାଙ୍କଦ୍ୱାରା ସଂଗୃହୀତ ଯଜ୍ଞ ସାମଗ୍ରୀ ସହିତ ମହର୍ଷି ତପୋଧନ ସ୍ୱଆଶ୍ରମକୁ ଫେରିଗଲେ । ଯିବାବେଳେ ଜଣାଇଲେ, 'ମୁଁ ଯଥାଶୀଘ୍ର ଏକ ବିଶ୍ୱଯଜ୍ଞର ଆୟୋଜନ କରୁଛି । ମୋର ଶିଷ୍ୟ ଦୃଢ଼ବ୍ରତ ମୋଠାରୁ ସମ୍ବାଦ ନେଇ ଆପଣଙ୍କ ନିକଟକୁ ଆସିବ । ସେ ଇଚ୍ଛାଗତି, ନିର୍ବାଧ ଓ ମହାପରାକ୍ରମଶାଳୀ ପକ୍ଷୀରୂପ ଧାରଣ କରି ମୁକ୍ତାଫଳଧ୍ୱଜର ବାହନ ରୂପେ

କାର୍ଯ୍ୟ କରିବ ।' ମୁନିଙ୍କ ସହିତ ରାଜା ମେରୁଧ୍ୱଜ ଯଜ୍ଞନିମିତ୍ତ ଆବଶ୍ୟକୀୟ ସମସ୍ତ ସାମଗ୍ରୀ ପଠାଇଦେଲେ ।

ଯଜ୍ଞ ଆରମ୍ଭ ହେଲା । ବିଭିନ୍ନ ସ୍ଥାନରୁ ଦେବତା ଓ ଋଷିମାନେ କ୍ରମେ କ୍ରମେ ସେଠାରେ ଆସି ଋଣ୍ଡୀଭୂତ ହେଲେ । ପାତାଳବାସୀ ରାକ୍ଷସମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ଖେଳିଗଲା । ସେମାନେ ଯଜ୍ଞକୁଣ୍ଡ ଧ୍ୱଂସ କରିବାପାଇଁ ପ୍ରସ୍ତୁତ ହୋଇଆସିଲେ । ସେମାନଙ୍କୁ ଦେଖି ମହର୍ଷି ତପୋଧନ ଅଭିଶାପବଶତଃ ପକ୍ଷୀ ରୂପ ଧାରଣ କରିଥିବା ନିଜର ଶିଷ୍ୟ ଦୃଢ଼ବ୍ରତକୁ ଦେବସଭ ନଗର ଯିବାପାଇଁ ନିର୍ଦ୍ଦେଶ ଦେଲେ । ରାଜା ମେରୁଧ୍ୱଜ ତା'ଠାରୁ ସମ୍ବାଦ ପାଇବା ମାତ୍ରେ ନିଜର ପ୍ରତିଶ୍ରୁତି ସ୍ମରଣ କରି ଉଭୟ ଦିବ୍ୟହସ୍ତୀ ସଜ୍ଜିତ କଲେ । ମୁଖ୍ୟ କାଞ୍ଚନଗରି ଉପରେ ନିଜେ ଆରୋହରଣ କରି ଅନ୍ୟ ହସ୍ତୀ କାଞ୍ଚନଶେଖର ଉପରେ କନିଷ୍ଠ ପୁତ୍ର ମଳୟଧ୍ୱଜକୁ ବସିବାପାଇଁ ନିର୍ଦ୍ଦେଶ ଦେଲେ । ମୁକ୍ତାଫଳଧ୍ୱଜ ନିଜର ଅସ୍ତ୍ରଶସ୍ତ୍ର ସହିତ ଦୃଢ଼ବ୍ରତ ଉପରେ ଆରୋହଣ କଲେ । ବ୍ରାହ୍ମଣମାନଙ୍କଦ୍ୱାରା ମଙ୍ଗଳ ଆଶଂସା କରାଗଲା । ଆକାଶଗାମୀ ବାହନ ଉପରେ ତିନିଜଣଯାକ ମୁନିଙ୍କ ଆଶ୍ରମ ପ୍ରତି ପ୍ରସ୍ଥାନ କଲେ । ସେନାବାହିନୀ ପୃଥିବୀ ପୃଷ୍ଠରେ ସେମାନଙ୍କ ଅନୁଗମନ କରୁଥାନ୍ତି ।

ଆଶ୍ରମରେ ପହଞ୍ଚିବା ମାତ୍ରେ ମହର୍ଷି ତପୋଧନ ପ୍ରହୃଷ୍ଟ ଚିତ୍ତରେ ପ୍ରଥମେ ସେମାନେ ଯେପରି ଶତ୍ରୁର ଶରାଘାତପାଇଁ ଅଭେଦ୍ୟ ହେବେ ସେହି ବ୍ୟବସ୍ଥା କରି ସେମାନଙ୍କ ଶରୀରକୁ କିଳି ଦେଲେ ।

ଏ ସମୟରେ ରାକ୍ଷସ ସେନା ଆସି ସେଠାରେ ଉପସ୍ଥିତ ହେଲା । ସେମାନେ ଯଜ୍ଞକୁଣ୍ଡ ପ୍ରତି ଅଗ୍ରସର ହେବାମାତ୍ରେ ମେରୁଧ୍ୱଜଙ୍କ ସେନାବାହିନୀ ଆକ୍ରମଣ ଆରମ୍ଭ କଲେ । ରାକ୍ଷସ ଓ ମନୁଷ୍ୟମାନଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ରାକ୍ଷସମାନେ ଆକାଶ ମାର୍ଗରେ ରହି ମାନବ ସେନାକୁ ଧ୍ୱଂସ କରିବାକୁ ଲାଗିଲେ । ଏହା ଦେଖି ମୁକ୍ତାଫଳଧ୍ୱଜ ନିଜେ ଶସ୍ତ୍ରାସ୍ତ୍ର ଧାରଣ କରି ରାକ୍ଷସମାନଙ୍କୁ ସଂହାର କରିବାକୁ ଲାଗିଲେ । ଗରୁଡ଼ତୁଲ୍ୟ ପକ୍ଷୀ ଉପରେ ବସି ନିଜ ତେଜରେ ଚତୁର୍ଦ୍ଦିଗ ଆଲୋକିତ କରୁଥିବା ମୁକ୍ତାଫଳଧ୍ୱଜଙ୍କୁ ଦେଖି ରାକ୍ଷସମାନଙ୍କ ମନରେ ରାକ୍ଷସହନ୍ତା ନାରାୟଣଙ୍କ ଭ୍ରମ ସୃଷ୍ଟି ହେଲା । ସେମାନେ ଆଶ୍ରମ ପରିତ୍ୟାଗ କରି ପାତାଳପୁରକୁ ପଳାୟନ କଲେ ।

ପାତାଳପୁରରେ ସେତେବେଳେ ରାକ୍ଷସ ଅଧିପତି ତ୍ରୈଲୋକ୍ୟମାଳୀ ରାଜତ୍ୱ କରୁଥାଏ । ସେ ସୈନିକମାନଙ୍କଠାରୁ ଏହି ଦୁଃସମ୍ବାଦ ପାଇ ପ୍ରକୃତ ଘଟଣା ଜାଣିବା ନିମିତ୍ତ ଗୁପ୍ତଚରମାନଙ୍କୁ ପ୍ରେରଣ କଲା । ସେମାନେ ଆସି ଜଣାଇଲେ ଯେ ପକ୍ଷୀ ପୃଷ୍ଠରେ

ବସି ଯୁଦ୍ଧ କରୁଥିବା ବ୍ୟକ୍ତିଟି ନାରାୟଣ ନୁହଁନ୍ତି, ଜଣେ ମନୁଷ୍ୟ ମାତ୍ର; ମୁକ୍ତାଫଳଧ୍ୱଜ । ମନୁଷ୍ୟଠାରୁ ପରାଭବ ତ୍ରୈଲୋକ୍ୟମାଳୀର ଅସହ୍ୟ ହେଲା । ସେ ପାତାଳପୁରର ସମସ୍ତ ସୈନିକଙ୍କୁ ଏକତ୍ର କରି, ସମସ୍ତ ଅପଶକୁନକୁ ପଛରେ ପକାଇ ମହର୍ଷି ତପୋଧନଙ୍କ ଆଶ୍ରମରେ ଯାଇ ପହଞ୍ଚିଲା । ସେମାନଙ୍କ ଆଗମନର ପ୍ରତୀକ୍ଷା କରୁଥିବା ମୁକ୍ତାଫଳଧ୍ୱଜ ପ୍ରଭୃତି ଦେଖିବାମାତ୍ରେ ଆକ୍ରମଣ ଆରମ୍ଭ କଲେ । ମାନବ ଓ ରାକ୍ଷସମାନଙ୍କ ମଧ୍ୟରେ ପୁଣି ଭୟଙ୍କର ସଂଗ୍ରାମ ଆରମ୍ଭ ହେଲା । ଶିବ, ଇନ୍ଦ୍ର ପ୍ରଭୃତି ଦେବତାମାନେ ଏହି ଯୁଦ୍ଧ ଦେଖିବାପାଇଁ ଆକାଶ ମାର୍ଗରେ ଆସି ଉପସ୍ଥିତ ହେଲେ ।

ଯୁଦ୍ଧ ଭୀଷଣ ଆକାର ଧାରଣ କରିବା ପୂର୍ବରୁ ଭଗବାନ ଶଙ୍କରଙ୍କ ପ୍ରଦତ୍ତ ବିଶ୍ୱବ୍ରହ୍ମାଣ୍ଡ ଧ୍ୱଂସକାରୀ ଅସ୍ତ୍ରରାଜ ପାଶୁପତ ସ୍ୱୟଂ ଆସି ମୁକ୍ତାଫଳଧ୍ୱଜଙ୍କ ସମ୍ମୁଖରେ ଉପସ୍ଥିତ ହେଲା । ତାର ଆକାର ଯେପରି ବିଶାଳକାୟ ଥିଲା, ତାର ଶରୀରରୁ ସେହିପରି ପ୍ରଚଣ୍ଡ ଜ୍ୱାଳା ଚତୁର୍ଦ୍ଦିଗରେ ବିଛୁରିତ ହେଉଥିଲା । ତାର ତିନୋଟି ଚକ୍ଷୁ, ଚାରୋଟି ମୁଖ, ଗୋଟିଏ ପାଦ ଏବଂ ସେ ଅଷ୍ଟଭୁଜ । ପ୍ରଳୟକାଳୀନ ଅଗ୍ନିପରି ସେ ଦେଦୀପ୍ୟମାନ ହେଉଥାଏ । ଶିବଙ୍କଦ୍ୱାରା ଆଦିଷ୍ଟ ହୋଇ ରାକ୍ଷସ ସେନା ବାହିନୀକୁ ଧ୍ୱଂସ କରିବାପାଇଁ ଉପସ୍ଥିତ ବୋଲି ସେ ରାଜକୁମାରଙ୍କୁ ନିବେଦନ କଲା । ମୁକ୍ତାଫଳଧ୍ୱଜ ତାକୁ ମସ୍ତକରେ ଲଗାଇ ପୂଜା କଲେ ।

ଏ ସମୟରେ ଆକାଶଚାରୀ ରାକ୍ଷସମାନେ ମାନବ ସେନାକୁ ଧ୍ୱସ୍ତ ବିଧ୍ୱସ୍ତ କରିଚାଲିଥାନ୍ତି । ଭୂମି ଉପରୁ ସେମାନଙ୍କ ସହିତ ଯୁଦ୍ଧ କରିବା ସମ୍ଭବ ହେଉନଥାଏ । ଏହା ଦେଖି ବିଚିତ୍ରଯୋଦ୍ଧା ମୁକ୍ତାଫଳଧ୍ୱଜ ଉଭୟଙ୍କ ମଧ୍ୟରେ ଶରଜାଳଦ୍ୱାରା ଏକ ଆବରଣ ସୃଷ୍ଟି କଲେ ଏବଂ ତାର ଉର୍ଦ୍ଧ୍ୱରେ ରହି ରାକ୍ଷସମାନଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । ମେରୁଧ୍ୱଜ ଓ ମଳୟଧ୍ୱଜଙ୍କୁ ଆକାଶଚାରୀ ବାହନ ଉପରେ ବସି ଯୁଦ୍ଧ କରୁଥିବା ଦେଖି ଦୈତ୍ୟରାଜ ତ୍ରୈଲୋକ୍ୟମାଳୀ ସର୍ପାସ୍ତ୍ର ପ୍ରୟୋଗ କଲା । ଏକ ସଙ୍ଗରେ ଅସଂଖ୍ୟ ସର୍ପ ବିଷଜ୍ୱାଳା ବୃଷ୍ଟିକରି ସେମାନଙ୍କ ଆଡ଼କୁ ମାଡ଼ିଆସିଲେ । ମଳୟଧ୍ୱଜ ନିଜ ଗରୁଡ଼ାସ୍ତ୍ରରୁ ଅସଂଖ୍ୟ ଗରୁଡ଼ଜାତୀୟ ପକ୍ଷୀ ସୃଷ୍ଟିକରି ସର୍ପଗୁଡ଼ିକୁ ନିଃଶେଷ କରିଦେଲେ । ପୁତ୍ରରହିତ ତ୍ରୈଲୋକ୍ୟମାଳୀ ଯେତେସବୁ ଅସ୍ତ୍ର ପ୍ରୟୋଗ କଲା ମୁକ୍ତାଫଳଧ୍ୱଜଙ୍କଦ୍ୱାରା ସେ ସମସ୍ତ ପରାହତ ହେଲା । ଏଥିରେ କ୍ରୁଦ୍ଧ ହୋଇ ରାକ୍ଷସ ଓ ତାର ସମସ୍ତ ଯୋଦ୍ଧା ଏକସଙ୍ଗରେ ଆଗ୍ନେୟାସ୍ତ୍ର ପ୍ରୟୋଗ କଲେ । ଅସ୍ତ୍ରଗୁଡ଼ିକ ପ୍ରଚଣ୍ଡ ଜ୍ୱାଳା ଧରି ମୁକ୍ତାଫଳଧ୍ୱଜଙ୍କ ଆଡ଼କୁ ଆସୁଥିବାବେଳେ ପାଶୁପତକୁ ଦେଖି ଦୂରରୁ ଫେରିଗଲେ ।

ନିଜର ସମସ୍ତ ଶକ୍ତି ଓ କୌଶଳ ବ୍ୟର୍ଥ ହେବାରୁ ରାକ୍ଷସୀ ସେନା ଭୟରେ ପୃଷ୍ଠଭଙ୍ଗ ଦେବାପାଇଁ ଉଦ୍ୟତ ହେଲା । ସେମାନଙ୍କର ଏ ପ୍ରକାର ଉଦ୍ୟମ ଲକ୍ଷ୍ୟକରି ମୁକ୍ତାଫଳଧ୍ୱଜ ସେମାନଙ୍କୁ ଚତୁର୍ଦ୍ଦିଗ ଏବଂ ଉର୍ଦ୍ଧ୍ୱକୁ ଶର ପ୍ରୟୋଗ ଦ୍ୱାରା ଏକ ଅଭେଦ୍ୟ ପ୍ରାଚୀର ସୃଷ୍ଟି କରିଦେଲେ । ରାକ୍ଷସମାନେ ଯିବାପାଇଁ କୌଣସି ପଥ ନପାଇ ସେହି ରୁଦ୍ଧ ଶରଗୃହ ମଧ୍ୟରେ ରହିଥାନ୍ତି । ମେରୁଧ୍ୱଜ ଓ ମଳୟଧ୍ୱଜ ଏହି ଅବରୁଦ୍ଧ ରାକ୍ଷସମାନଙ୍କୁ ପକ୍ଷୀ ଶିକାର କଲାପରି ଗୋଟି ଗୋଟି କରି ହତ୍ୟା କରୁଥାନ୍ତି । ସେମାନଙ୍କ ଛିନ୍ନଭୁଜ, ପାଦ, ମସ୍ତକ ଇତ୍ୟାଦି ଗୋଟି ଗୋଟି ହୋଇ ଭୂପୃଷ୍ଠରେ ପଡୁଥାଏ । ସେମାନଙ୍କ ରକ୍ତରେ ସେଠାରେ ଏକ ରକ୍ତନଦୀର ସୃଷ୍ଟି ହେଲା । ଦେବତାମାନେ ପୁଷ୍ପବୃଷ୍ଟି କଲେ ।

ରାକ୍ଷସମାନଙ୍କ ଅସହାୟତା ଦେଖି ମୁକ୍ତାଫଳଧ୍ୱଜ ପ୍ରଥମେ ମୋହନାସ୍ତ୍ର ପ୍ରୟୋଗ କରି ସେମାନଙ୍କୁ ମୂର୍ଚ୍ଛିତ କରିଦେଲେ । ସଂଜ୍ଞାହୀନ ଶରୀର ସବୁ ଭୂମି ଉପରେ ଆସି ପଡ଼ିଲା । ରାଜକୁମାର ବାରୁଣାସ୍ତ୍ର ସାହାଯ୍ୟରେ ସେମାନଙ୍କୁ ପାଶବଦ୍ଧ କଲେ । ରାକ୍ଷସମାନଙ୍କର ଏ ପ୍ରକାର ଅବସ୍ଥା ଦେଖି ଦୟାଶୀଳ ମହର୍ଷି ତପୋଧନ ରାଜା ମେରୁଧ୍ୱଜଙ୍କୁ କହିଲେ, 'ରାଜନ୍ ! ଏହି ମୂର୍ଚ୍ଛାଗତ ଅସୁର ସେନାକୁ ଆଉ ମାରନ୍ତୁ ନାହିଁ । ସେମାନେ ଆପଣଙ୍କ ବଶତା ସ୍ୱୀକାର କରିଛନ୍ତି । ଏମାନଙ୍କ ସହାୟତାରେ ଆପଣମାନେ ଯାଇ ପାତାଳପୁରରେ ପ୍ରବେଶ କରନ୍ତୁ । ପୁତ୍ର, ମନ୍ତ୍ରୀ, ସେନାପତି ଓ ଯୋଦ୍ଧାମାନଙ୍କ ସହିତ ଦୈତ୍ୟରାଜ ତ୍ରୈଲୋକ୍ୟମାଳୀକୁ ବାନ୍ଧିନେଇ ଇନ୍ଦ୍ରଙ୍କ ଦେବସଭା ନିକଟସ୍ଥ ଶ୍ୱେତଶୈଳର ଅନ୍ଧକାର କନ୍ଦରା ମଧ୍ୟରେ ବନ୍ଦୀକରି ରଖନ୍ତୁ ।'

ମୁନିଙ୍କଠାରୁ ଏହିପରି ନିର୍ଦ୍ଦେଶ ପାଇ ରାଜା ମେରୁଧ୍ୱଜ ରାକ୍ଷସ ସୈନିକମାନଙ୍କୁ କହିଲେ, 'ତୁମେ ଆଉ ଭୟ କର ନାହିଁ । ଆମେ ଆଉ ତୁମକୁ ମାରୁନାହୁଁ । କିନ୍ତୁ ଆଜିଠାରୁ ତୁମେ ମୁକ୍ତାଫଳଧ୍ୱଜ ଓ ମଳୟଧ୍ୱଜଙ୍କ ଅଧୀନରେ ରହିବ ।' ଜୀବନଲାଭ କରି ସେମାନେ ରାଜାଙ୍କ ଆଦେଶକୁ ଶିରୋଧାର୍ଯ୍ୟ କଲେ । ରାଜା ମେରୁଧ୍ୱଜ ପୁତ୍ର ଓ ସ୍ୱଜନ ସହିତ ରାକ୍ଷସରାଜ ତ୍ରୈଲୋକ୍ୟମାଳୀକୁ ନେଇ ଶ୍ୱେତଶୈଳର ଗୁହା ମଧ୍ୟରେ ଅବରୁଦ୍ଧ କରି ରଖିଲେ । ଗୁହା ମୁଖକୁ ବହୁ ସଶସ୍ତ୍ର ବୀର ସୈନିକ ରକ୍ଷା କରୁଥାନ୍ତି ।

ମନୁଷ୍ୟ ଓ ରାକ୍ଷସମାନଙ୍କ ଯୁଦ୍ଧ ଶେଷ ହେଲା । ଦେବତାମାନେ ବିମାନ ଉପରେ ରହି ପାରିଜାତ ପୁଷ୍ପ ବୃଷ୍ଟି କଲେ । ତିନିଭୁବନରେ ମହୋତ୍ସବ ପାଳିତ ହେଲା । ବିଜୟୀ ମେରୁଧ୍ୱଜ ପୁତ୍ରମାନଙ୍କୁ ଡାକି କହିଲେ, 'ମୁଁ ଯଜ୍ଞ ରକ୍ଷା କରିବାପାଇଁ ଆଶ୍ରମରେ ରହୁଛି । ତୁମେ ଦୁହେଁ ଆମ ସେନାବାହିନୀ ସହିତ ଜୀବିତ ଥିବା ସୈନିକମାନଙ୍କ ଦର୍ଶିତ ପଥରେ

ପାତାଳପୁରରେ ପ୍ରବେଶ କର । ପାତାଳବାସୀଙ୍କୁ ଆଶ୍ୱାସନା ଦେଇ ସେମାନଙ୍କୁ ଆମର ବଶୀଭୂତ କରାଅ । ଆମ ସେନାବାହିନୀର ଜଣକୁ ସେଠାରେ ଶାସକ ରୂପେ ନିଯୁକ୍ତ କରି ଆଶ୍ରମକୁ ଫେରିଆସ ।'

ପିତାଙ୍କ ପ୍ରସ୍ତାବରେ ସମ୍ମତ ହୋଇ ଉଭୟ ମୁକ୍ତାଫଳଧ୍ୱଜ ଓ ମଳୟଧ୍ୱଜ ଅଧିକ କାଳବିଳମ୍ବ ନକରି ଆକାଶଗାମୀ ବାହନ ଆରୋହଣ କଲେ । ବଶତା ସ୍ୱୀକାର କରିଥିବା ରାକ୍ଷସମାନଙ୍କଦ୍ୱାରା ନିର୍ଦ୍ଦିଷ୍ଟ ମାର୍ଗରେ ଯାଇ ସେମାନେ ପାତାଳପୁରରେ ପହଞ୍ଚିଲେ । ପଥ ମଧ୍ୟରେ ଶତ୍ରୁ ପକ୍ଷର ସମସ୍ତ ପ୍ରହରୀ ଓ ଦ୍ୱାରପାଳ ପ୍ରତିରୋଧ କରି ନିହତ ହେଉଥାନ୍ତି । ଅବଶିଷ୍ଟ ପାତାଳବାସୀଙ୍କୁ ନିର୍ଭୟରେ ରହିବାପାଇଁ ଉଭୟ ରାଜପୁତ୍ର ଡିଣ୍ଡିମ ଦ୍ୱାରା ଜଣାଇଦେଲେ । ଏଥିରେ ପାତାଳପୁର ଜନତା ସେମାନଙ୍କ ପ୍ରତି ବିଶ୍ୱସ୍ତ ହେବା ଦେଖାଗଲା । ରତ୍ନମୟ ଶତଶତ ନଗରୀଯୁକ୍ତ ସପ୍ତପାତାଳ ସେମାନଙ୍କ କରଗତ ହେଲା । ପାତାଳପୁର ସ୍ୱର୍ଗୀୟ ମଦିରା, ରତ୍ନମୟ ସୋପାନଯୁକ୍ତ ପୁଷ୍କରିଣୀ ଏବଂ ସମସ୍ତ କାମନା ପୂରଣକାରୀ ଉପବନସମୂହ ଦ୍ୱାରା ସୁଶୋଭିତ ଥିଲା । ସେଠାରେ ଉଭୟ ଭ୍ରାତା ଅଦ୍ଭୁତ ଭାବେ ନିଜକୁ ବୃକ୍ଷ ମଧ୍ୟରେ ଗୋପନ କରି ରଖିଥିବା ରାକ୍ଷସରମଣୀମାନଙ୍କୁ ଆବିଷ୍କାର କଲେ । ତ୍ରୈଲୋକ୍ୟମାଳୀର ପତ୍ନୀ ସ୍ୱୟଂପ୍ରଭା ନିଜର କାରାରୁଦ୍ଧ ପତିଙ୍କ ମୁକ୍ତିପାଇଁ ସେଠାରେ ତପସ୍ୟା କରୁଥାଏ । ମାତାଙ୍କୁ ଅନୁସରଣ କରି କନ୍ୟା ତ୍ରୈଲୋକ୍ୟପ୍ରଭା ଓ ତ୍ରିଭୁବନପ୍ରଭା ମଧ୍ୟ ପିତାଙ୍କ କଲ୍ୟାଣପାଇଁ ତପସ୍ୟାରେ ବସିଥାନ୍ତି । ପାତାଳପୁରବାସୀଙ୍କ ମନରେ ବିଶ୍ୱାସ ଜାଗ୍ରତ କରିବାପାଇଁ ମୁକ୍ତାଫଳଧ୍ୱଜ ନିଜର ଭ୍ରାତା ସହିତ ବିଭିନ୍ନ କଲ୍ୟାଣକର କାର୍ଯ୍ୟ କରୁଥାନ୍ତି । ସେମାନଙ୍କ କାର୍ଯ୍ୟକଳାପରେ ରାକ୍ଷସପୁରବାସୀ ନିର୍ଭୟ ଓ ଆଶ୍ୱସ୍ତ ହୁଅନ୍ତେ ସଂଗ୍ରାମ ସିଂହଙ୍କୁ ସେଠାରେ ଶାସକରୂପେ ନିଯୁକ୍ତ କରାଗଲା । ଏହିପରି କାର୍ଯ୍ୟ ଶେଷ କରି ଉଭୟେ ଆଶ୍ରମରେ ଅପେକ୍ଷା କରିଥିବା ପିତାଙ୍କ ନିକଟକୁ ଫେରିଆସିଲେ ।

ମହର୍ଷି ତପୋଧନଙ୍କ ବିଶ୍ୱଯଜ୍ଞ ନିର୍ବିଘ୍ନରେ ସମାପ୍ତ ହେଲା । ଋଷି ଓ ଦେବତାମାନେ ସନ୍ତୁଷ୍ଟ ହୋଇ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବା ଆରମ୍ଭ କଲେ । ଦେବରାଜ ଇନ୍ଦ୍ର ମେରୁଧ୍ୱଜଙ୍କ ପ୍ରତି ପ୍ରସନ୍ନତା ପ୍ରକାଶ କରନ୍ତେ ରାଜା ବିନୀତ ଭାବରେ ପ୍ରାର୍ଥନା କଲେ, 'ଭଗବନ୍ ! ଆପଣ ମୋ ପ୍ରତି ଯଦି ପ୍ରୀତ ଓ ଦୟାର୍ଦ୍ର ତେବେ ଅନୁଗ୍ରହ ପୂର୍ବକ ଆମ ନଗରୀରେ ପଦାର୍ପଣ କରନ୍ତୁ ।' ଇନ୍ଦ୍ରଦେବ ରାଜାଙ୍କ ଅନୁରୋଧ ରକ୍ଷାକରି ମହର୍ଷି ତପୋଧନଙ୍କଠାରୁ ବିଦାୟ ଗ୍ରହଣ ପୂର୍ବକ ରାଜା ଓ ରାଜକୁମାରମାନଙ୍କ ସହିତ ଦେବସଭ ନଗରୀରେ ଯାଇ ଉପସ୍ଥିତ ହେଲେ । ପୃଥିବୀ ଏବଂ ପାତାଳ ଉଭୟ ଲୋକର ଅଧିପତି

ରାଜା ମେରୁଧ୍ୱଜ ଦେବରାଜଙ୍କ ଏପରି ଅଭ୍ୟର୍ଥନା କଲେ ଯେ କିଛିଦିନପାଇଁ ସେ ଦେବଲୋକର ସୁଖ ମଧ୍ୟ ବିସ୍ମୃତ ହୋଇପଡ଼ିଲେ ।

ରାଜାଙ୍କ ଆତିଥ୍ୟରେ ପ୍ରୀତ ହୋଇ ଦେବରାଜ ଇନ୍ଦ୍ର ଉଭୟ ପୁତ୍ରଙ୍କ ସହିତ ରାଜା ମେରୁଧ୍ୱଜଙ୍କୁ ନିଜର ସ୍ୱର୍ଗୀୟ ବିମାନରେ ବସାଇ ସ୍ୱର୍ଗପୁରକୁ ନେଇଗଲେ । ନାରଦ, ରମ୍ଭା ପ୍ରଭୃତିଙ୍କ ସଙ୍ଗୀତ ଶ୍ରବଣ କରି ଏବଂ ଅପ୍‌ସରାମାନଙ୍କ ନୃତ୍ୟ ଉପଭୋଗ କରି ସେମାନେ କିଛିଦିନ ଇନ୍ଦ୍ରପୁରୀରେ ଅବସ୍ଥାନ କଲେ । ଫେରିବା ବେଳେ ଇନ୍ଦ୍ର ପ୍ରତ୍ୟେକଙ୍କୁ ଦିବ୍ୟ ମୁକୁଟ ଓ ପାରିଜାତ ମାଳା ପ୍ରଦାନ କରି ଆପ୍ୟାୟନ କଲେ । ଏହିପରି ମେରୁଧ୍ୱଜ, ମୁକ୍ତାଫଳଧ୍ୱଜ ଓ ମଳୟଧ୍ୱଜ ଭୂଲୋକ ଓ ପାତାଳଲୋକରେ ଗତାଗତ କରି ରାଜତ୍ୱ କରୁଥାନ୍ତି ।

ଦିନେ ରାଜା ମେରୁଧ୍ୱଜ ପୁତ୍ରକୁ କହିଲେ, 'ଦେଖ, ଆମେ ବର୍ତ୍ତମାନ ଶତ୍ରୁମାନଙ୍କୁ ପରାଜିତ କରିପାରିଛେ । ଭୂଲୋକ ଓ ପାତାଳଲୋକ ଆମର ଶାସନାଧୀନ । ତୁମେ-ମାନେ ମଧ୍ୟ ଯୌବନରେ ପଦାର୍ପଣ କଲଣି । ମୁଁ ତୁମମାନଙ୍କପାଇଁ ଦୁଇଟି ରାଜକନ୍ୟାଙ୍କ ସନ୍ଧାନ ନେଇଛି । ସେମାନେ ଆମ ନିକଟରେ ହିଁ ରହିଛନ୍ତି । ବର୍ତ୍ତମାନ ତୁମେ ଦୁହେଁ ବିବାହ କର । ଉପଯୁକ୍ତ ବୟସରେ ଯୁବକମାନେ ବିବାହ କରିବା ଉଚିତ ।'

ପିତାଙ୍କ ପ୍ରସ୍ତାବରେ ମୁକ୍ତାଫଳଧ୍ୱଜ ଜଣାଇଲେ, 'ଆର୍ଯ୍ୟ, ବିବାହ କରିବାପାଇଁ ମୋର ଇଚ୍ଛା ନାହିଁ । ମୁଁ ଭଗବାନ ଶଙ୍କରଙ୍କ ଆରାଧନା କରି ତପଶ୍ଚରଣ କରିବି । ମଳୟଧ୍ୱଜର ବିବାହ ସଂସ୍କାର ଆପଣ ଅନୁଷ୍ଠାନ କରନ୍ତୁ ।' ଏଥିରେ କନିଷ୍ଠ ମଳୟଧ୍ୱଜ ନିଜର ଅସମ୍ମତି ଜଣାଇ ଜ୍ୟେଷ୍ଠଭ୍ରାତାଙ୍କୁ କହିଲେ, 'ଆପଣ ଅବିବାହିତ ଥିବା ପର୍ଯ୍ୟନ୍ତ ମୁଁ ବିବାହ କରିବା କଣ ଉଚିତ ହେବ ? ରାଜ ସିଂହାସନରେ ଅଭିଷିକ୍ତ ହୋଇ ଆପଣ ଶାସନ କାର୍ଯ୍ୟ ପରିଚାଳନା ନକଲେ ରାଜ୍ୟ ଗ୍ରହଣ କରିବା ମୋ ପକ୍ଷରେ କଣ ସମୁଚିତ ହେବ ? ମୁଁ ଆପଣଙ୍କ ଅନୁଗାମୀ ମାତ୍ର ।' ମଳୟଧ୍ୱଜଙ୍କ କଥାରେ ରାଜା ମେରୁଧ୍ୱଜ ମଧ୍ୟ ସମ୍ମତି ପ୍ରକାଶ କଲେ । କହିଲେ, 'ବତ୍ସ ! ତୁମେ ଯାହା କହୁଛ ତାହା ସଙ୍ଗତ ନୁହେଁ । ନବଯୌବନ ତପସ୍ୟାର ଉପଯୁକ୍ତ ସମୟ ନୁହେଁ, ଏହା ଉପଭୋଗର ସମୟ । ତେଣୁ, ବତ୍ସ, ତୁମେ ଏ ପ୍ରକାର ଅକାଳୋଚିତ ଅନାଗ୍ରହ ପରିତ୍ୟାଗ କର ।' କିନ୍ତୁ ମୁକ୍ତାଫଳଧ୍ୱଜ ପିତାଙ୍କୁ ସ୍ପଷ୍ଟ ଜଣାଇଦେଲେ ଯେ ସେ କେବଳ ଏବେ ନୁହେଁ ଜୀବନରେ ଆଦୌ ବିବାହ କରିବେ ନାହିଁ । ଜ୍ୟେଷ୍ଠ ପୁତ୍ରର ଏ ପ୍ରକାର ନିଷ୍ପତ୍ତି ଶୁଣି ରାଜା ମେରୁଧ୍ୱଜ ନୀରବରେ ସମୟର ପ୍ରତୀକ୍ଷା କରିବାକୁ ଲାଗିଲେ ।

ଏହା ମଧ୍ୟରେ ରାକ୍ଷସରାଜ ତ୍ରୈଲୋକ୍ୟମାଳୀର ପତ୍ନୀ ସ୍ୱୟଂପ୍ରଭାଙ୍କୁ ପାତାଳଲୋକରେ ତପସ୍ୟା କରୁଥିବା ଉଭୟ କନ୍ୟା କହିଲେ, 'ମାତା ! ଆମେ ଉଭୟେ କେଡ଼େ ଅଭାଗିନୀ । ପିତା ସାତ ଆଠ ବର୍ଷ ହେଲା ବନ୍ଦୀ ହୋଇ ରହିଛନ୍ତି । ରାଜ୍ୟ ବି ଚାଲିଗଲା । ଆମେ ତପସ୍ୟା କରିବାର ଅଷ୍ଟମ ବର୍ଷ ଚାଲିଛି । ଭଗବାନ ଶଙ୍କର ଆମ ପ୍ରତି ପ୍ରସନ୍ନ ହେଉନାହାଁନ୍ତି । ପିତା ମଧ୍ୟ କାରାଗାରରୁ ମୁକ୍ତି ପାଉନାହାଁନ୍ତି । ଯଦି ଶତ୍ରୁମାନେ ଆମର ଏପରି ଅପକାର କରି ଚାଲନ୍ତି ତେବେ ଆମ ଜୀବନର ସାର୍ଥକତା କେଉଁଠି । ତେଣୁ ଅଗ୍ନି ମଧ୍ୟରେ ପ୍ରବେଶ କରି ଶରୀର ତ୍ୟାଗ କରିବା ନିମିତ୍ତ ଆମେ ସଂକଳ୍ପ କରିଛୁ ।'

କନ୍ୟାମାନଙ୍କର ଏପରି ଅଶୁଭ ସଂକଳ୍ପ ଶୁଣି ସ୍ୱୟଂପ୍ରଭା ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, 'ଆଉ କିଛି ସମୟ ଅପେକ୍ଷା କର । ଆମର ଶୁଭଦିନ ଫେରିଆସୁଛି । ତପସ୍ୟା କରୁଥିବା ବେଳେ ଭଗବାନ ଭବାନୀପତି ଜଣାଇଛନ୍ତି ଯେ ତୁମ ପିତା ପୁନଶ୍ଚ ରାଜ୍ୟ ଲାଭ କରିବେ । ତୁମେ ଦୁହେଁ ମୁକ୍ତାଫଳଧ୍ୱଜ ଓ ମଳୟଧ୍ୱଜଙ୍କୁ ବିବାହ କରିବ ବୋଲି ମଧ୍ୟ ସେ ଜଣାଇଛନ୍ତି । ଭଗବାନ ଏହା ବି କହିଛନ୍ତି ଯେ ଏହି ରାଜକୁମାରମାନେ ସାଧାରଣ ମନୁଷ୍ୟ ନୁହଁନ୍ତି, ଜଣେ ବିଦ୍ୟାଧର ଶ୍ରେଷ୍ଠ ଏବଂ ଅନ୍ୟଜଣେ ତାଙ୍କ ସେବକ । ଏପରି ସ୍ୱପ୍ନାଦେଶ ପାଇ ଧୈର୍ଯ୍ୟର ସହିତ ରହିଛି । ମୁଁ ବର୍ତ୍ତମାନ ଯାଇ ତୁମ ପିତାଙ୍କୁ ଏହି ସମ୍ବାଦ ଜଣାଇବି । ସେ ଯଦି ଅନୁମତି ଦିଅନ୍ତି, ତାହାହେଲେ ତୁମ ଉଭୟଙ୍କ ବିବାହ ସମ୍ପନ୍ନ କରିବାପାଇଁ ପ୍ରୟାସ କରିବି ।'

ରାଣୀ ସ୍ୱୟଂପ୍ରଭା କନ୍ୟାମାନଙ୍କୁ ଏପରି ଆଶ୍ୱାସନା ଦେଇ ଅନ୍ତଃପୁରସ୍ଥିତ ବୃଦ୍ଧା ଦୂତୀ ଇନ୍ଦୁମତିକୁ ଡାକି କହିଲା, 'ଇନ୍ଦୁମତି ! ତୁ ବର୍ତ୍ତମାନ ଶ୍ୱେତଶୈଳର ଗୁହାମଧ୍ୟରେ ବନ୍ଦୀଥିବା ରାଜାଙ୍କ ନିକଟକୁ ଚାଲିଯା । ତାଙ୍କ ପାଦସ୍ପର୍ଶ କରି ମୁଁ ଯାହା କହୁଛି ତାହା ଅକ୍ଷରଶଃ ତାଙ୍କୁ ଜଣାଇବୁ । କହିବୁ, 'ମହାରାଜ ! ମୋ ପରି କଠୋର ହୃଦୟ ଅଭାଗିନୀ ଅନ୍ୟତ୍ର ବିରଳା । ଆପଣଙ୍କ ବିରହରେ ମୁଁ ଯେ ଏତେଦିନ ବଞ୍ଚିପାରିଛି ତାହାହିଁ ମୋ କଠୋରତାର ପ୍ରମାଣ । ଆପଣଙ୍କ ପୁନଃଦର୍ଶନ ପାଇଁ ମୁଁ ପ୍ରାଣତ୍ୟାଗ କରିପାରୁନାହିଁ ।' ଏହା ଜଣାଇ ସେ ମହାଦେବଙ୍କଠାରୁ ପ୍ରାପ୍ତ ସୂଚନା ତାକୁ କହି ଶୁଣାଇଲା । ତାଙ୍କୁ ପଚାରିବୁ କନ୍ୟାମାନଙ୍କର ବିବାହ ସମ୍ପର୍କରେ ତାଙ୍କର ମତାମତ କଣ ? ସେ ଯାହା ନିର୍ଦ୍ଦେଶ ଦେବେ ତାହା ଆସି ମୋତେ ଜଣାଇବୁ । ତାହା ହେଲେ ମୁଁ ଭବିଷ୍ୟତ କାର୍ଯ୍ୟପନ୍ଥା ନିଶ୍ଚୟ କରିବି ।' ଏହା କହି ସ୍ୱୟଂପ୍ରଭା ଇନ୍ଦୁମତୀକୁ ବିଦାୟ ଦେଲା ।

ଇନ୍ଦୁମତୀ ଶ୍ୱେତଶୈଳର ଗୁହାଦ୍ୱାରରେ ଉପସ୍ଥିତ ହୋଇ ଦ୍ୱାରପାଳମାନଙ୍କୁ ଅନୁରୋଧ ଜଣାଇବାରେ ସେମାନେ ଭିତରେ ପ୍ରବେଶ କରିବାପାଇଁ ଅନୁମତି ଦେଲେ । ଅନ୍ଧକାର ଗୁହାମଧ୍ୟରେ ରାଜା ତ୍ରୈଲୋକ୍ୟମାଳୀଙ୍କୁ ବନ୍ଦୀ ଅବସ୍ଥାରେ ଦେଖିବା ମାତ୍ରେ ସେ ତାଙ୍କ ପାଦ ଦୁଇଟି ଧରି ପଡ଼ିଗଲା । କୁଶଳ ସମାଚାର ଆଦାନପ୍ରଦାନ ପରେ ଇନ୍ଦୁମତୀ ସ୍ୱୟଂପ୍ରଭାଠାରୁ ଆଣିଥିବା ସମ୍ବାଦ ରାଜାଙ୍କ ନିକଟରେ ନିବେଦନ କଲା । ପତ୍ନୀ ପ୍ରେରିତ ସମ୍ବାଦ ଓ ପ୍ରସ୍ତାବ ଶୁଣି ତ୍ରୈଲୋକ୍ୟମାଳୀ କହିଲା, 'ଭଗବାନ୍ ପିନାକପାଣି ମୋର ମୁକ୍ତିର କଥା ଯାହା କହିଛନ୍ତି ସେଥିରେ ମୁଁ ଆଶ୍ୱାସିତ । କିନ୍ତୁ ମେରୁଧ୍ୱଜର ପୁତ୍ରମାନଙ୍କ ସହିତ ମୋ କନ୍ୟାର ବିବାହ ପ୍ରସ୍ତାବ ଉଠୁଛି କେଉଁଠି ? ମୁଁ ଏଠାରେ ମରିଯାଇପାରେ କିମ୍ବା ଜୀବନସାରା ବନ୍ଦୀହୋଇ ରହିପାରେ, କିନ୍ତୁ ପ୍ରଥମେ ମନୁଷ୍ୟ ଏବଂ ଦ୍ୱିତୀୟରେ ଶତ୍ରୁପୁତ୍ରମାନଙ୍କ ହସ୍ତରେ କନ୍ୟାମାନଙ୍କୁ ଭେଟିଦେବା ଅସମ୍ଭବ ।' ରାଜା ତ୍ରୈଲୋକ୍ୟମାଳୀ ଏହିପରି ନିଜର ଅସମ୍ମତି ଜଣାଇ ଇନ୍ଦୁମତୀକୁ ବିଦାୟ କଲା । ସେ ମଧ୍ୟ ଫେରିଆସି ରାଣୀ ସ୍ୱୟଂପ୍ରଭାକୁ ରାଜାଙ୍କ ମତାମତ ଜଣାଇଲା । ତ୍ରୈଲୋକ୍ୟପ୍ରଭା ଓ ତ୍ରିଭୁବନପ୍ରଭା ମଧ୍ୟ ଏ ସମ୍ବାଦ ଶୁଣିଲେ । ସେମାନେ ବିନୀତଭାବେ ମାତାକୁ କହିଲେ ଯେ ଅଗ୍ନିପ୍ରବେଶ ବ୍ୟତୀତ ସେମାନଙ୍କପାଇଁ ଅନ୍ୟ ଗତି ନାହିଁ । ଅଗ୍ନିଦେବ କେବଳ ସେମାନଙ୍କୁ ଯୌବନଜ୍ୱାଳାରୁ ରକ୍ଷା କରିପାରନ୍ତି । ତେଣୁ ଆଗାମୀ ଚତୁର୍ଦ୍ଦଶୀ ତିଥିରେ ସେମାନେ ଅଗ୍ନିପ୍ରବେଶ କରିବେ । କନ୍ୟାମାନଙ୍କ ନିଷ୍ପତ୍ତି ଶୁଣି ସ୍ୱୟଂପ୍ରଭା ମଧ୍ୟ ଉକ୍ତଦିନ ସପରିବାର ଅଗ୍ନିରେ ପ୍ରବେଶ କରିବାପାଇଁ ସ୍ଥିର କଲା ।

ଚତୁର୍ଦ୍ଦଶୀ ତିଥି ଆସି ପହଞ୍ଚିଲା । ସେମାନେ ସମସ୍ତେ ଯାଇ ପାପରିପୁ ନାମକ ତୀର୍ଥକ୍ଷେତ୍ରରେ ପହଞ୍ଚିଲେ । ସେଠାରେ ହାଟକେଶ୍ୱର ମନ୍ଦିର ଅବସ୍ଥିତ । ସ୍ନାନକରି ସେମାନେ ହାଟକେଶ୍ୱରଙ୍କ ଆରାଧନା ପୂର୍ବକ ଚିତାଗ୍ନି ପ୍ରସ୍ତୁତ କଲେ ।

ସଂଯୋଗ ବଶରୁ ଚତୁର୍ଦ୍ଦଶୀ ତିଥିରେ ହାଟକେଶ୍ୱର ଆରାଧନାପାଇଁ ରାଜା ମେରୁଧ୍ୱଜ ସେହି ତୀର୍ଥକ୍ଷେତ୍ରକୁ ସପରିବାର ଆସିଥାନ୍ତି । ତୀର୍ଥର ଅଦୂରରେ ଥିବା ଗୋଟିଏ ସ୍ଥାନରୁ ପ୍ରବଳ ଧୂମରାଶି ଉତ୍ଥିତ ହେଉଥିବା ତାଙ୍କ ଦୃଷ୍ଟିଗୋଚର ହେଲା । ସେ ଏହାର କାରଣ ସନ୍ଧାନ କରିବାପାଇଁ ସାମନ୍ତରାଜା ଓ ଦୂତଙ୍କୁ ନିର୍ଦ୍ଦେଶ ଦେଲେ । ସେମାନେ କହିଲେ, 'ମହାରାଜ ! ଏଠାରେ ରାକ୍ଷସରାଜ ତ୍ରୈଲୋକ୍ୟମାଳୀର ଦୁଇଜଣ କନ୍ୟା ମାତା ସହିତ ଦୀର୍ଘଦିନ ଧରି ତପସ୍ୟା କରୁଛନ୍ତି । ସେମାନେ ହୁଏତ ରନ୍ଧନକାର୍ଯ୍ୟପାଇଁ ଅଗ୍ନି ପ୍ରଜ୍ୱଳନ କରିଥାଇପାରନ୍ତି କିମ୍ବା ତପସ୍ୟାରେ ନିଜର ଅଭୀଷ୍ଟ ସିଦ୍ଧ ନହେବା ଯୋଗୁଁ ଆତ୍ମାହୁତି ଦେବାପାଇଁ ଚିତାଗ୍ନି ପ୍ରସ୍ତୁତ କରିଥାଇପାରନ୍ତି ।'

ରାଜା କୌତୂହଳାକ୍ରାନ୍ତ ହୋଇ ପୁତ୍ର ଓ ପତ୍ନୀ ସହିତ ଅନୁଚର ଓ ପରିଜନମାନଙ୍କୁ ସେଠାରେ ରଖି ସେହି ଧୂମରାଶି ଉତ୍‌ଥିତ ହେଉଥିବା ସ୍ଥାନକୁ ଗମନ କଲେ । ଦେଖିଲେ ମାତା ସହିତ ଉଭୟ କନ୍ୟା ପ୍ରଜ୍ୱଳିତ ଅଗ୍ନିର ପୂଜା କରୁଛନ୍ତି । କନ୍ୟା ଦୁଇଜଣଙ୍କୁ ଦେଖି ରାଜାଙ୍କର ମନେହେଲା ସତେ ଯେପରି ପାତାଳପୁରର ଅନ୍ଧକାର ଦୂର କରିବାପାଇଁ ଶତଶତ ଚନ୍ଦ୍ର ଉଦୟ ହୋଇଛି । ସେମାନଙ୍କ ବକ୍ଷସ୍ଥଳରେ ଶୋଭା ପାଉଥିବା ହାରଯଷ୍ଟିଗୁଡ଼ିକ ସତେ ଯେପରି ସ୍ତନ ରୂପକ ପୂର୍ଣ୍ଣକଳସଦ୍ୱାରା ତ୍ରିଲୋକ ବିଜୟରେ ବାହାରିଥିବା କନ୍ଦର୍ପର ଅଭିଷେକ କରୁଛନ୍ତି । କଟୀମେଖଳା ବଦ୍ଧ ସେମାନଙ୍କର ସୁପୁଷ୍ଟ ଓ ବିସ୍ତୃତ ଜଘନସ୍ଥଳ କାମଦେବଙ୍କ ନକ୍ଷତ୍ରମାଳା ପରିବେଷ୍ଟିତ ହସ୍ତୀର ଗଣ୍ଡସ୍ଥଳ ପରି ମନେହେଉଥାଏ । ସେମାନଙ୍କ ବେଣୀଯୁକ୍ତ କେଶପାଶ ବିଧାତାର ସୌନ୍ଦର୍ଯ୍ୟ କୋଷକୁ ରକ୍ଷା କରିବା ପାଇଁ ନିଯୁକ୍ତ ଦୁଇଟି କୃଷ୍ଣ ସର୍ପ ପରି ମନେହେଉଥାନ୍ତି । ସେମାନଙ୍କୁ ଦେଖି ରାଜା ମେରୁଧ୍ୱଜ ମନେମନେ ଚିନ୍ତାକଲେ, 'ବିଧାତାର ସୃଷ୍ଟି ପ୍ରକୃତରେ ଅପୂର୍ବ । କେତେ ଅଲୌକିକ ବସ୍ତୁରେ ତାହା ଭରପୂର । ଏହି ଅସୁର ରାଜକୁମାରୀମାନଙ୍କ ରୂପ ସମ୍ପଦ ରମ୍ଭା କିମ୍ବା ଉର୍ବଶୀ କିମ୍ବା ତିଳୋତ୍ତମାଙ୍କ ସହିତ ତୁଳନୀୟ ନୁହେଁ ।'

ନିଜକୁ ଲୁକ୍କାୟିତ ରଖି ସେମାନଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିବା ରାଜା ମେରୁଧ୍ୱଜ ଏହିପରି ଚିନ୍ତା କରୁଥିବା ବେଳେ ଦୈତ୍ୟକନ୍ୟା ତ୍ରୈଲୋକ୍ୟପ୍ରଭା ଅଗ୍ନିଙ୍କୁ ଆରାଧନା କରି ଜଣାଇଲା, 'ହେ ଅଗ୍ନିଦେବ ! ଶଙ୍କରଙ୍କ ସ୍ୱପ୍ନାଦେଶ ଲାଭକରି ମାତା ମୋତେ କହିବାଠାରୁ ସର୍ବଗୁଣ ସମ୍ପନ୍ନ ରାଜା ମେରୁଧ୍ୱଜଙ୍କ ପୁତ୍ର ମୁକ୍ତାଫଳଧ୍ୱଜଙ୍କୁ ମୁଁ ମନେମନେ ପତିରୂପେ ବରଣ କରିନେଇଛି । ତେଣୁ ପରଜନ୍ମରେ ସେ ଯେପରି ମୋର ପତିହୁଅନ୍ତି ସେହି ବର ମୋତେ ପ୍ରଦାନ କରନ୍ତୁ । ଏହି ଜନ୍ମରେ ମାତା ତାଙ୍କ ହସ୍ତରେ ମୋତେ ସମର୍ପଣ କରିବାପାଇଁ ଚାହୁଁଥିଲେ ମଧ୍ୟ କାରାରୁଦ୍ଧ ପିତାଙ୍କ ସ୍ୱାଭିମାନ ଯୋଗୁଁ ତାହା ସମ୍ଭବ ହୋଇପାରୁନାହିଁ ।' ଜ୍ୟେଷ୍ଠାଭଗିନୀର ପ୍ରାର୍ଥନା ଶୁଣି ତ୍ରିଭୁବନପ୍ରଭା ମଧ୍ୟ ଅନୁରୂପ ଭାବେ ମଳୟଧ୍ୱଜ ପରଜନ୍ମରେ ତାର ପତି ହେବାପାଇଁ ବର ଭିକ୍ଷା କଲା ।

ସେମାନେ ଅଗ୍ନିଦେବଙ୍କୁ ଏହିପରି ପ୍ରାର୍ଥନା କରୁଥିବା ଶୁଣି ରାଜା ମେରୁଧ୍ୱଜ ଓ ମହାରାଣୀ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଲେ ଯେ ଯଦି ଏହି ଦୁଇ କନ୍ୟା ସେମାନଙ୍କର ଦୁଇ ପୁତ୍ରଙ୍କୁ ବିବାହ କରନ୍ତି ତେବେ ଉଭୟଙ୍କର ମର୍ତ୍ତ୍ୟ ଓ ପାତାଳ ଜୟ କରିବା ସାର୍ଥକ ହୁଅନ୍ତା । ମାତା ସହିତ ଏମାନେ ନିଜକୁ ଚିତାଗ୍ନିରେ ଆହୁତି ଦେବା ପୂର୍ବରୁ ଏମାନଙ୍କୁ ରକ୍ଷା କରିବା ଉଚିତ । ରାଣୀଙ୍କ ସମ୍ମତିରେ ମେରୁଧ୍ୱଜ ସେମାନଙ୍କ ନିକଟକୁ ଯାଇ କହିଲେ,

'ତୁମେମାନେ ଏପରି ଦୁଃସାହସ କରନାହିଁ । ମୁଁ ତମର ଦୁଃଖ ଦୂର କରିବି ।' ରାଜାଙ୍କ ଅମୃତ ଶୀତଳ ବାକ୍ୟ ଶୁଣି ଏବଂ ତାଙ୍କୁ ସମ୍ମୁଖରେ ଦେଖି ଦୈତ୍ୟ ଲଳନାମାନେ ତାଙ୍କୁ ପ୍ରଣାମ କଲେ । ରାଣୀ ସ୍ୱୟଂପ୍ରଭା କହିଲେ, 'ପ୍ରଭୁ ! ଆମେ ତ ଆପଣଙ୍କୁ ପୂର୍ବରୁ ଦେଖିଥିଲୁ କିନ୍ତୁ ମାୟାବଳରେ ଆମେ ନିଜକୁ ଅଦୃଶ୍ୟ ରଖିଥିବାରୁ ଆପଣମାନେ ଆମକୁ ଦେଖିପାରି ନଥିଲେ । ଆପଣମାନେ ଭୂଲୋକ ଓ ପାତାଳ ଲୋକ ଉଭୟର ସ୍ୱାମୀ । ଆଜି ସମ୍ମୁଖରେ ଆପଣଙ୍କୁ ଦେଖି ଆମର ସମସ୍ତ ଦୁଃଖ ଦୂର ହେବାପରି ମନେହେଉଛି । ଆପଣ ତ ନିଜେ ଆମେ ଯାଚନା କରିବା ପୂର୍ବରୁ ଅଭୀଷ୍ଟ ବରଦାନ କରିଛନ୍ତି । ଆମେ ବା ଆଉ ଅଧିକ କଣ କହିବୁ ? ଆସନ ଗ୍ରହଣ କରି ପାଦ୍ୟ ଓ ଅର୍ଘ୍ୟ ଦେବାର ସୁଯୋଗ ଦିଅନ୍ତୁ । ଆପଣ ତ୍ରିଲୋକର ସମ୍ମାନନୀୟ । ଏବଂ ଏହା ଆମର ଆଶ୍ରମ । ଏଣୁ ଆପଣ ଆମର ପୂଜନୀୟ ଅତିଥି ।'

ସ୍ୱୟଂପ୍ରଭାଙ୍କ କଥାରେ ରାଜା ମେରୁଧ୍ୱଜ ହସିହସି କହିଲେ, 'ତୁମେ ଏହି ପାଦ୍ୟ ଓ ଅର୍ଘ୍ୟ ତୁମ ଜାମାତାମାନଙ୍କୁ ଦିଅ ।' ସ୍ୱୟଂପ୍ରଭା ଲଜ୍ଜିତା ହେଲାପରି କହିଲେ, 'ଭଗବାନ ଶଙ୍କର ସେମାନଙ୍କ ପାଦ୍ୟ ଅର୍ଘ୍ୟର ବ୍ୟବସ୍ଥା କରିବେ । ବର୍ତ୍ତମାନ ଆପଣ ଗ୍ରହଣ କରନ୍ତୁ ।' ରାଜା ମେରୁଧ୍ୱଜ ସାଗ୍ରହରେ ସେମାନଙ୍କୁ କହିଲେ, 'ବର୍ତ୍ତମାନ ତୁମେମାନେ ଚିତାଗ୍ନି ସହ ଶରୀର ତ୍ୟାଗ କରିବାର ସଂକଳ୍ପରୁ ନିବୃତ୍ତ ହୁଅ । ମୁଁ ତୁମଠାରୁ ପାଦ୍ୟ ଅର୍ଘ୍ୟ ଇତ୍ୟାଦି ଗ୍ରହଣ କରୁଛି । ପାତାଳପୁରୀର ସମସ୍ତ ନଗର ସକଳ କାମନା ପୂର୍ଣ୍ଣ କରିବାରେ ସମର୍ଥ । ତୁମେମାନେ ଯାଇ କୌଣସି ଏକ ନଗରୀରେ ବସବାସ କର । ମୁଁ ସମସ୍ତଙ୍କର ଯେପରି କଲ୍ୟାଣ ହେବ ସେପରି କିଛି ବ୍ୟବସ୍ଥା କରିବାପାଇଁ ଚେଷ୍ଟା କରୁଛି ।'

ରାଜା ମେରୁଧ୍ୱଜଙ୍କ ଆଶ୍ୱସନା ବାଣୀ ଓ ପ୍ରତିଶ୍ରୁତି ଶୁଣି ସେମାନଙ୍କ ମନରେ ସାହସ ସଞ୍ଚିତ ହେଲା । ସ୍ୱୟଂପ୍ରଭା ବିନୀତଭାବେ ନିବେଦନ କଲେ, 'ମହାରାଜ୍ ! ଆପଣଙ୍କ ଆଦେଶରେ ଆମେ ପ୍ରାଣ ବିସର୍ଜନର ସଂକଳ୍ପ ତ ତ୍ୟାଗ କଲୁ । କିନ୍ତୁ ଯେତେବେଳେ ମୋର ସ୍ୱାମୀ କାରାବଦ୍ଧ ସେତେବେଳେ ଆମେ ଆପଣଙ୍କ ରାଜ୍ୟର କୌଣସି ନଗରୀରେ କିପରି ଆନନ୍ଦର ସହିତ ବାସ କରିପାରିବୁ ? ତେଣୁ ମହାରାଜ୍ ! ଆପଣ ନିଜ ବାକ୍ୟ ରକ୍ଷାକରି ଯେପର୍ଯ୍ୟନ୍ତ ପୁତ୍ର ଓ ସଚିବ ସହିତ ମୋର ପତି ତ୍ରୈଲୋକ୍ୟମାଳୀଙ୍କୁ କାରାମୁକ୍ତ ନ କରିଛନ୍ତି ସେପର୍ଯ୍ୟନ୍ତ ଆମେ ଏହି ଆଶ୍ରମରେ ହିଁ ପଡ଼ିରହିବୁ । ମୁକ୍ତ ହେବା ପରେ ସେ ଆପଣଙ୍କର ସାମନ୍ତ ରାଜା ରୂପେ ପାତାଳପୁରରେ

ରାଜତ୍ୱ କରିବେ । ଆପଣ ଚାହିଁବା ମାତ୍ରେ ରାଜ୍ୟ ଆପଣଙ୍କୁ ସମର୍ପିତ ହେବ । ସେ ଏବଂ ଅନ୍ୟ ପାତାଳବାସୀମାନେ ଆପଣଙ୍କ ସହିତ ଏ ପ୍ରକାର ଚୁକ୍ତିରେ ଆବଦ୍ଧ ହେବାପାଇଁ ଆମେମାନେ ମଧ୍ୟସ୍ଥ ହେବୁ । ଆପଣ ପାତାଳପୁରର ବିଭିନ୍ନ ସ୍ତରରେ ଥିବା ବହୁମୂଲ୍ୟ ରତ୍ନରାଶି ସ୍ୱୀକାର କରନ୍ତୁ ।' ସ୍ୱୟଂପ୍ରଭାର ପ୍ରସ୍ତାବରେ ରାଜା ସମ୍ମତି ପ୍ରକାଶ କରି ସେ ଯେପରି ତାଙ୍କ ପ୍ରତିଶ୍ରୁତି ରକ୍ଷା କରନ୍ତି ସେ ସମ୍ପର୍କରେ ସ୍ମରଣ କରାଇଦେଲେ ।

ରାଜା ମେରୁଧ୍ୱଜ ସ୍ନାନପୂର୍ବକ ପ୍ରଭୁ ହାଟକେଶ୍ୱରଙ୍କ ଉପାସନା କଲେ । ସେ ଧ୍ୟାନସ୍ଥ ଥିବା ବେଳେ ସ୍ୱୟଂପ୍ରଭାର ଉଭୟ କନ୍ୟା ରାଜକୁମାରମାନଙ୍କ ଧ୍ୟାନରେ ନିମଜ୍ଜିତ ଥାନ୍ତି । ଉପାସନା ଶେଷରେ ରାଜା ଶ୍ୱେତଛତ୍ର ରୂପକ ଯଶଃ ପ୍ରଭାବରେ ଚତୁର୍ଦ୍ଦିଗକୁ ଆଲୋକିତ କରି ରାଣୀ, ପୁତ୍ର ଓ ପରିଜନମାନଙ୍କ ସହିତ ପାତାଳଲୋକରୁ ନିର୍ଗତ ହେଲେ । ପାତାଳପୁରବାସୀ ତାଙ୍କୁ ପ୍ରଣାମ କରି ସେମାନଙ୍କ ରାଜା ତ୍ରୈଲୋକ୍ୟମାଳୀଙ୍କୁ ମୁକ୍ତ କରିବା ନିମିତ୍ତ ବିନୀତ ପ୍ରାର୍ଥନା କରୁଥାନ୍ତି ।

ରାଜପୁତ୍ର ମଳୟଧ୍ୱଜ କନିଷ୍ଠ ଦୈତ୍ୟ କନ୍ୟା ତ୍ରିଭୁବନପ୍ରଭାକୁ ଦେଖିବାଠାରୁ ତା' ପ୍ରତି ଆସକ୍ତ ହୋଇପଡ଼ିଥାନ୍ତି । ଶଯ୍ୟାରେ ପଡ଼ିଥିଲେ ସୁଦ୍ଧା ନିଦ୍ରା ତାଙ୍କୁ ସ୍ପର୍ଶ କରୁନଥାଏ । କନ୍ଦର୍ପ ଜ୍ୱରରେ ପୀଡ଼ିତ ହୋଇ ସେ ରାତ୍ରିଯାପନ କରୁଥାନ୍ତି । କିନ୍ତୁ ମୁକ୍ତାଫଳଧ୍ୱଜ ଥିଲେ ଧୈର୍ଯ୍ୟର ସାଗର । ଜ୍ୟେଷ୍ଠା ଦୈତ୍ୟ କନ୍ୟା ତ୍ରୈଲୋକ୍ୟପ୍ରଭା ତାଙ୍କ ପ୍ରତି ଗଭୀର ଭାବେ ଆସକ୍ତା ଥିଲା । ସେ ନିଜ ରୂପରେ ଯୋଗୀଶ୍ୱର ମୁନିମାନଙ୍କ ସମାଧି ଭଙ୍ଗ କରିବାରେ ସମର୍ଥା ଥିଲେ ସୁଦ୍ଧା ମୁକ୍ତାଫଳଧ୍ୱଜଙ୍କ ଉପରେ କୌଣସି ପ୍ରଭାବ ବିସ୍ତାର କରିପାରିନଥିଲା । ପୂର୍ବରୁ ମହର୍ଷିଙ୍କ ଆଶୀର୍ବାଦ ଲାଭ କରିଥିବା ଯୋଗୁଁ ସେ ସମ୍ପୂର୍ଣ୍ଣ ଅନାସକ୍ତ ଥିଲେ । ମେରୁଧ୍ୱଜ ଦେଖିଲେ ତାଙ୍କ ଜ୍ୟେଷ୍ଠପୁତ୍ର ବିବାହ କରିବାପାଇଁ ଅନିଚ୍ଛୁକ, କନିଷ୍ଠ ପୁତ୍ର ଦୈତ୍ୟକନ୍ୟା ପ୍ରତି ଆସକ୍ତ ହୋଇ କାମପୀଡ଼ିତ, ଦୈତ୍ୟରାଜ ତ୍ରୈଲୋକ୍ୟମାଳୀ ତାଙ୍କ ପୁତ୍ରମାନଙ୍କ ସହିତ ତା'ର କନ୍ୟାମାନଙ୍କର ବିବାହପାଇଁ ସମ୍ମତି ପ୍ରଦାନ କରୁନଥିବା ବେଳେ ରାଣୀ ସ୍ୱୟଂପ୍ରଭା ଏଥିପାଇଁ ଆଗ୍ରହଶୀଳା । ରାଜା ମେରୁଧ୍ୱଜ ନିରୁପାୟ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲେ ।

## ଷଷ୍ଠ ତରଙ୍ଗ

## ମୁକ୍ତାଫଳକେତୁଙ୍କ ବିଦ୍ୟାଧର ସାମ୍ରାଜ୍ୟ ପ୍ରାପ୍ତି

ମଳୟଧ୍ୱଜଙ୍କ କନ୍ଦର୍ପଜ୍ୱର ଧୀରେ ଧୀରେ ବୃଦ୍ଧିପ୍ରାପ୍ତ ହେବାକୁ ଲାଗିଲା । ସେ ନିଜେ ଏହା ପ୍ରକାଶ ନକଲେ ସୁଦ୍ଧା ରାଜା ପୁତ୍ରର ମନୋଭାବ ଜାଣିପାରି ଦିନେ ରାଣୀଙ୍କୁ କହିଲେ, 'ପାତାଳରେ ତ୍ରୈଲୋକ୍ୟମାଳୀର ଯେଉଁ ଦୁଇଟି କନ୍ୟାକୁ ଦେଖିଲେ ସେମାନଙ୍କୁ ଯଦି ପୁତ୍ରବଧୂ କରିନପାରିବା ତେବେ ଆମେ ଆଉ କଣ ବା କଲେ ? ସେମାନଙ୍କ ମଧ୍ୟରୁ କନିଷ୍ଠ କନ୍ୟାଟି ପୁତ୍ର ମଳୟଧ୍ୱଜର ଏପରି ଅବସ୍ଥା କରିଛି । ସେ ଲଜ୍ଜାବଶତଃ ଆମକୁ ଏକଥା କହିପାରୁ ନଥିଲେ ସୁଦ୍ଧା ପୁଟପାକପରି ନିଜ ଭିତରେ ଦଗ୍ଧୀଭୂତ ହେଉଛି । ଏଣେ ସ୍ୱୟଂପ୍ରଭାକୁ ପ୍ରତିଶ୍ରୁତି ଦେଇ ସୁଦ୍ଧା ମୁଁ ତ୍ରୈଲୋକ୍ୟମାଳୀକୁ ଶୀଘ୍ର ମୁକ୍ତ କରିପାରୁନାହିଁ । ସେ କାରାମୁକ୍ତ ହେଲେ ଅସୁରତ୍ୱର ସ୍ୱାଭିମାନରେ ମୋର ପୁତ୍ରମାନଙ୍କୁ ମନୁଷ୍ୟ ଭାବି ହୁଏତ ସେମାନଙ୍କ ହସ୍ତରେ କନ୍ୟାମାନଙ୍କୁ ସମର୍ପଣ କରିନପାରେ । ତେଣୁ ତାକୁ ମୁକ୍ତି ଦେବା ପୂର୍ବରୁ ତା' ସହିତ ଶାନ୍ତିପୂର୍ଣ୍ଣ ଭାବେ କଥାବାର୍ତ୍ତା କରିବା ଉଚିତ ।'

ରାଣୀଙ୍କ ସହିତ ଏହିପରି ବିଚାରବିମର୍ଶ କରି ରାଜା ମେରୁଧ୍ୱଜ ନିଜର ଜଣେ ବିଶ୍ୱସ୍ତ ପ୍ରତିହାରକୁ ଆଦେଶ ଦେଲେ ଯେ ସେ ଶ୍ୱେତଶୈଳ ମଧ୍ୟସ୍ଥ ଗୁହା ମଧ୍ୟକୁ ଯିବ । ସେଠାରେ ବନ୍ଦୀଭାବେ ରହିଥିବା ଦୈତ୍ୟାଧିପତି ତ୍ରୈଲୋକ୍ୟମାଳୀକୁ ପ୍ରୀତିପୂର୍ବକ ମୋର ଏହି ସମ୍ବାଦ ଜଣାଇବ । 'ତୁମେ ବହୁଦିନ ଧରି ଏଠାରେ କଷ୍ଟ ଭୋଗିଲଣି । ବର୍ତ୍ତମାନ ମୋର କଥାମାନି ଏହି କଷ୍ଟରୁ ମୁକ୍ତ ହୁଅ । ତୁମର ଉଭୟ କନ୍ୟା ମୋର ଉଭୟ ପୁତ୍ର ପ୍ରତି ଆସକ୍ତ । ତୁମେ ସେମାନଙ୍କର ବିବାହ ସମ୍ପାଦନ କରି ମୁକ୍ତ ହୁଅ ଏବଂ ନିଃଶଙ୍କ ଚିତ୍ତରେ ନିଜ ରାଜ୍ୟ ପରିପାଳନା କର ।'

ଦୂତ ଯାଇ ଦୈତ୍ୟକୁ ରାଜାଙ୍କ ସମ୍ବାଦ କହି ଶୁଣାଇବାରେ ସେ ନିଜର ଅସମ୍ମତି ପ୍ରକାଶ କରି କହିଲା ଯେ ମନୁଷ୍ୟ ହସ୍ତରେ କନ୍ୟାମାନଙ୍କୁ ଦେବା ତା' ପକ୍ଷରେ ସମ୍ଭବ

ନୁହେଁ । ଦୂତଠାରୁ ଏହି ସମ୍ବାଦ ପାଇ ରାଜା ମେରୁଧ୍ୱଜ ଚିନ୍ତିତ ହୋଇପଡ଼ିଲେ । ସେ ଅନ୍ୟ କିଛି ଉପାୟପାଇଁ ପରାମର୍ଶ କରୁ କରୁ ଦୀର୍ଘଦିନ ବିତିଗଲା ।

ପ୍ରତିଶ୍ରୁତି ପାଳନରେ ରାଜା ମେରୁଧ୍ୱଜଙ୍କ ବିଳମ୍ବ ଦେଖି ଦୈତ୍ୟରାଣୀ ସ୍ୱୟଂପ୍ରଭା ଧୈର୍ଯ୍ୟହରା ହୋଇପଡ଼ିଲା । ସେ ପୁଣି ପୂର୍ବୋକ୍ତ ଦୂତୀ ଇନ୍ଦୁମତୀଙ୍କୁ ସନ୍ଦେଶ ଦେଇ ମର୍ତ୍ତ୍ୟଲୋକକୁ ପଠାଇଲା । ଚତୁରୀ ଇନ୍ଦୁମତୀ ଦ୍ୱାରପାଳମାନଙ୍କଦ୍ୱାରା ସୂଚିତ କରି ମହାରାଣୀଙ୍କ ନିକଟରେ ଯାଇ ପହଞ୍ଚିଲା । ତାଙ୍କୁ ଦେଖି ରାଣୀ ମଧ୍ୟ ଆଦର ସତ୍କାର କଲେ । ଦୂତୀ ପ୍ରଣାମ ଜଣାଇ ନିବେଦନ କଲା ଯେ, ମହାରାଣୀ ସ୍ୱୟଂପ୍ରଭା ତାଙ୍କୁ ପଠାଇଛନ୍ତି । ସେ କହିଛନ୍ତି 'ଆପଣମାନେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ବୋଧହୁଏ ଭୁଲିଗଲେ । ମହାସମୁଦ୍ର ଓ କୁଳପର୍ବତଗୁଡ଼ିକ ମହାପ୍ରଳୟ କାଳରେ ଅନ୍ୟଥା ହୋଇଯାଇପାରନ୍ତି କିନ୍ତୁ ଆପଣମାନଙ୍କ ପରି ମହାତ୍ମାମାନଙ୍କର ବଚନ ଅନ୍ୟଥା ହୁଏ ନାହିଁ । ମୋର ସ୍ୱାମୀ ଯଦି କନ୍ୟାମାନଙ୍କୁ ପ୍ରଦାନ କରିବାପାଇଁ ଅସମ୍ମତ ହୋଇଥାନ୍ତି ତେବେ ସେ ଅଯଥାର୍ଥ କହିନାହାଁନ୍ତି । ଗୁହା ମଧ୍ୟରେ ବନ୍ଦୀଥାଇ ସେ କିପରି ଦାନ କରିବେ ? ଆପଣମାନେ ଯଦି ଔଚିତ୍ୟ ଦୃଷ୍ଟିରୁ ଏବଂ ଉପକାର କରିବାର ଭାବନା ନେଇ ତାଙ୍କୁ ବନ୍ଧନ ମୁକ୍ତ କରନ୍ତି ତେବେ ସେ ନିଶ୍ଚୟ ନିଜ କନ୍ୟାମାନଙ୍କୁ ସମର୍ପଣ କରି ପ୍ରତ୍ୟୁପକାର କରିବେ । ଯଦି ଏହାର ଅନ୍ୟଥା ହୁଏ ଏବଂ ଆପଣ ତାଙ୍କୁ କାରାମୁକ୍ତ ନ କରନ୍ତି ତେବେ ସ୍ୱୟଂପ୍ରଭା ନିଜ କନ୍ୟାମାନଙ୍କ ସହିତ ଅଗ୍ନିରେ ପ୍ରବେଶ କରିବାପାଇଁ ବାଧ୍ୟ ହେବେ । ତା' ଫଳରେ ଆପଣ ନା ମୋର କନ୍ୟାମାନଙ୍କୁ ପାଇବେ ନା ଆପଣଙ୍କ ସତ୍ୟ ରକ୍ଷା କରିବେ ? ତେଣୁ ଆପଣ ଏପରି କିଛି ବ୍ୟବସ୍ଥା କରନ୍ତୁ ଯାହାଦ୍ୱାରା ଚୁକ୍ତି କିମ୍ବା ବିଶ୍ୱାସ ଉପରେ ଭିତ୍ତିକରି ରାଜା ମେରୁଧ୍ୱଜ କାର୍ଯ୍ୟସିଦ୍ଧି ନିମିତ୍ତ ତ୍ରୈଲୋକ୍ୟମାଳୀଙ୍କୁ ମୁକ୍ତି ଦେବେ ।' ସ୍ୱୟଂପ୍ରଭା ଆପଣଙ୍କପାଇଁ ଏହିସବୁ ଉପହାର ପଠାଇଛନ୍ତି । ଏଥିରେ ବିଦ୍ୟାଧରତ୍ୱ ପ୍ରାପ୍ତିର ସହାୟକ ବହୁ ମୂଲ୍ୟବାନ୍ ରତ୍ନ ଖଚିତ ଅଛି ।'

ଇନ୍ଦୁମତୀର ଉପହାର ଗ୍ରହଣ କରିବାପାଇଁ ମହାଦେବୀ ନିଜର ଅସମ୍ମତି ପ୍ରକାଶ କରି କହିଲେ ଯେ ସେ ଦୈତ୍ୟରାଣୀର ଦୁଃଖ ଦୂର ନ କରିବା ପର୍ଯ୍ୟନ୍ତ ତା'ର ଉପହାର ଗ୍ରହଣ କରିପାରିବେ ନାହିଁ । କିନ୍ତୁ ଇନ୍ଦୁମତୀ ଚାତୁର୍ଯ୍ୟର ସହିତ ନିବଦେନ କଲା, 'ଆପଣ ଯଦି ଏସବୁ ଗ୍ରହଣ ନ କରନ୍ତି ତେବେ ଆମେ କିପରି ଧୈର୍ଯ୍ୟ ରକ୍ଷା କରିବୁ ? ଉପହାର ସ୍ୱୀକାର କଲେ ଜାଣିବୁ ଯେ ଆମ ଦୁଃଖ ଶେଷ ହୋଇଛି ।' ଇନ୍ଦୁମତୀର ଯୁକ୍ତିରେ ମହାଦେବୀ ଉପହାରଗୁଡ଼ିକୁ ଗ୍ରହଣ କରିବାପାଇଁ ବାଧ୍ୟ ହେଲେ । ସେ ତାକୁ ମହାରାଜାଙ୍କ ପାଇଁ ସେଠାରେ ଅପେକ୍ଷା କରିବା ନିମିତ୍ତ ଆଦେଶ ଦେଲେ ।

କିଛି ସମୟ ମଧ୍ୟରେ ରାଜା ମେରୁଧ୍ୱଜ ସେଠାରେ ଆସି ପହଞ୍ଚିଲେ । ଇନ୍ଦୁମତୀ ସହିତ ରାଣୀ ତାଙ୍କର ପରିଚୟ କରାଇଦେବାରୁ ସେ ଦୂତୀର ପ୍ରଣାମ ସ୍ୱୀକାର କରି ତାର ଯଥୋଚିତ ସତ୍କାର କଲେ । ଦୂତୀ ସ୍ୱୟଂପ୍ରଭା ଦ୍ୱାରା ପ୍ରେରିତ, ଭୂତ, ପ୍ରେତ, ବିଷ, ରାକ୍ଷସ, ରୋଗ ଓ ଜରା ଭୟକୁ ଦୂର କରିପାରୁଥିବା ଏକ ଚୂଡ଼ାମଣି ରାଜାଙ୍କ ହସ୍ତରେ ପ୍ରଦାନ କଲା । ସେ ମଧ୍ୟ ରାଣୀଙ୍କ ପରି ନିଜର ପ୍ରତିଶ୍ରୁତି ରକ୍ଷା କଲାପରେ ଉପହାର ଗ୍ରହଣ କରିବା କଥା କହିଲେ । କିନ୍ତୁ ଚତୁରୀ ଇନ୍ଦୁମତୀ କହିଲା, 'ପ୍ରଭୁ ! ଆପଣ ପ୍ରତିଶ୍ରୁତି ଦେଇଛନ୍ତି ଅର୍ଥ କାର୍ଯ୍ୟ ସିଦ୍ଧ ହୋଇଯାଇଛି । ଆପଣଙ୍କ ପ୍ରତିଶ୍ରୁତିରେ ଆମେ ଆଶ୍ୱସ୍ତ । ଯଦି ଉପହାର ସ୍ୱୀକାର କରନ୍ତି ତେବେ ଆମେ ଅଧିକ ଆଶ୍ୱାସିତ ହେବୁ ।' ଇନ୍ଦୁମତୀର ଯୁକ୍ତିକୁ ସମର୍ଥନ କରି ମହାଦେବୀ ତୁରନ୍ତ ଚୂଡ଼ାମଣିଟି ଉଠାଇନେଇ ରାଜାଙ୍କ ମସ୍ତକରେ ପିନ୍ଧାଇ ଦେଲେ । ଇନ୍ଦୁମତୀ ରାଣୀଙ୍କୁ ଶୁଣାଇଥିବା ସ୍ୱୟଂପ୍ରଭାଙ୍କ ସମସ୍ତ କଥା ରାଜାଙ୍କ ନିକଟରେ ପୁଣି ପ୍ରକାଶ କଲା ।

ରାଣୀଙ୍କ ସମ୍ମତିରେ ରାଜା ଇନ୍ଦୁମତୀକୁ ସେହିଦିନଟି ରାଜଅନ୍ତଃପୁରରେ ରହି ପରଦିନ କର୍ତ୍ତବ୍ୟ ନିରୂପଣ କରିବାପାଇଁ କହିଲେ । ପରଦିନ ପ୍ରାତଃକାଳରୁ ମନ୍ତ୍ରୀମାନଙ୍କ ସମ୍ମୁଖରେ ମେରୁଧ୍ୱଜ ଇନ୍ଦୁମତୀକୁ କହିଲେ–

'ମୋର ଏହି ମନ୍ତ୍ରୀମାନଙ୍କ ସହିତ ତ୍ରୈଲୋକ୍ୟମାଳୀ ନିକଟକୁ ଯାଅ । ତାର ଅନୁମତି ନେଇ ପାତାଳପୁରରୁ ସ୍ୱୟଂପ୍ରଭା ପ୍ରଭୃତି ଅସୁର ଲଳନାମାନଙ୍କ ସହିତ ପ୍ରମୁଖ ନାଗରିକମାନଙ୍କୁ ଏଠାକୁ ନେଇଆସ । ଆସିଲାବେଳେ ହାଟକେଶ୍ୱରଙ୍କ ଅଙ୍ଗଲାଗି ଜଳ ଗୋଟିଏ ରୁଦ୍ଧ ପାତ୍ରରେ ନେଇଆସିବ । ମନ୍ତ୍ରୀମାନଙ୍କ ସମ୍ମୁଖରେ ସ୍ୱୟଂପ୍ରଭା ପ୍ରଭୃତି ପାତାଳପୁରବାସୀ ତ୍ରୈଲୋକ୍ୟମାଳୀର ଚରଣ ସ୍ପର୍ଶ କରି ଶପଥ ନେବେ ଯେ ସେମାନେ ରାଜାଙ୍କ ସହିତ ଆମର ବଶତା ସ୍ୱୀକାର କରିବେ । ନାଗଗଣ ମଧ୍ୟ ଆମର ଶସ୍ୟକ୍ଷେତ୍ର ଗୁଡ଼ିକୁ ନଷ୍ଟ କରିବେ ନାହିଁ । ପ୍ରମୁଖ ପାତାଳବାସୀ ଏଥିପାଇଁ ପ୍ରତିଭୂ ରହିବେ । ପୁଣି ରାଜା ଓ ସମସ୍ତ ପାତାଳବାସୀଙ୍କ ସନ୍ତାନମାନେ ଆମର ଅଧୀନସ୍ଥ ରହିବେ । ଏହି ମର୍ମରେ ଏକ ଚିଠା ପ୍ରସ୍ତୁତ ହେବ । ସେଥିରେ ରାଜାଙ୍କ ସହିତ ଅନ୍ୟମାନେ ସ୍ୱାକ୍ଷର କରି ଶପଥ ପୂର୍ବକ ହାଟକେଶ୍ୱରଙ୍କ ଚନ୍ଦଣଉଦକ ପାନ କରିବେ । ତେବେ ଯାଇ ମୁଁ ତ୍ରୈଲୋକ୍ୟମାଳୀକୁ ବନ୍ଧନ ମୁକ୍ତ କରିବି ।' ଏହା କହି ରାଜା ଇନ୍ଦୁମତୀକୁ ବିଦାୟ ଦେଲେ ।

ଇନ୍ଦୁମତୀ ରାଜାଙ୍କ ନିର୍ଦ୍ଦେଶ ଅନୁଯାୟୀ ପ୍ରଥମେ ତ୍ରୈଲୋକ୍ୟମାଳୀ ନିକଟରେ ପହଞ୍ଚିଲା ଏବଂ ତା'ଠାରୁ ଅନୁମତି ନେଇ ମନ୍ତ୍ରୀମାନଙ୍କ ସହିତ ପାତାଳପୁରରେ ପ୍ରବେଶ

କଲା । ପାତାଳବାସୀମାନଙ୍କୁ ଏହି ସମ୍ବାଦ ଶୁଣାଇ ସେ ସେମାନଙ୍କ ସହିତ ସ୍ୱୟଂପ୍ରଭା ଓ ହାଟକେଶ୍ୱରଙ୍କ ଅଙ୍ଗଲାଗି ଜଳ ଧରି ରାଜା ମେରୁଧ୍ୱଜଙ୍କ ନିକଟକୁ ଫେରିଆସିଲା । ମନ୍ତ୍ରୀମାନଙ୍କ ସମ୍ମୁଖରେ ରାଜା ଯାହାସବୁ କହିଥିଲେ ସେ ସବୁ ଯଥାରୀତି ପାଳିତ ହେଲା । ମେରୁଧ୍ୱଜଙ୍କ ମନରେ ସମ୍ପୂର୍ଣ୍ଣ ବିଶ୍ୱାସ ସୃଷ୍ଟି ହେବାରୁ ସେ ତ୍ରୈଲୋକ୍ୟମାଳୀକୁ କାରାମୁକ୍ତ କଲେ ।

ଭବିଷ୍ୟତରେ ସମ୍ବନ୍ଧ ସ୍ଥାପନ କରିବାପାଇଁ ଯାଉଥିବା ଯୋଗୁଁ ରାଜା ମେରୁଧ୍ୱଜ ବନ୍ଦୀମୁକ୍ତ ତ୍ରୈଲୋକ୍ୟମାଳୀ ଓ ସ୍ୱୟଂପ୍ରଭାଙ୍କୁ ନିଜ ରାଜଭବନକୁ ଆଣି ସେମାନଙ୍କର ଭବ୍ୟ ସତ୍କାର କଲେ । ଅସୁରମାନଙ୍କ ସମସ୍ତ ସମ୍ପତ୍ତି ନିଜ କୋଷାଗାରରେ ରଖି ସେ ସେମାନଙ୍କ ତାଙ୍କ ରାଜ୍ୟ ପ୍ରତ୍ୟର୍ପଣ କଲେ । ତ୍ରୈଲୋକ୍ୟମାଳୀ ନିଜ ନଗରରେ ପ୍ରବେଶ କରି ପ୍ରଜା ଓ ସ୍ୱଜନମାନଙ୍କ ସହିତ ଆନନ୍ଦରେ ରହିବାକୁ ଲାଗିଲା । ମେରୁଧ୍ୱଜ ଅସୁରମାନଙ୍କଠାରୁ ପ୍ରାପ୍ତ ଧନରାଶିକୁ ରାଜ୍ୟ ମଧ୍ୟରେ ବର୍ଷାଧାରା ପରି ବୁହାଇଦେଲେ ।

ଏହିପରି କିଛିଦିନ ବିତିଗଲା । ଦୈତ୍ୟରାଜ ତ୍ରୈଲୋକମାଳୀ ମେରୁଧ୍ୱଜଙ୍କ ଉପକାର ସ୍ମରଣ କରି ରାଣୀ ସ୍ୱୟଂପ୍ରଭା ସହିତ ବିଚାରବିମର୍ଶ ପୂର୍ବକ ନିଜ କନ୍ୟାମାନଙ୍କୁ ମୁକ୍ତାଫଳଧ୍ୱଜ ଓ ମଳୟଧ୍ୱଜଙ୍କ ହସ୍ତରେ ସମର୍ପଣ କରିବାପାଇଁ ନିଶ୍ଚୟ କଲା । ସେମାନଙ୍କୁ ନିଜ ବାସଭବନକୁ ନିମନ୍ତ୍ରଣ କରି ଆଣିବାପାଇଁ ନିଜର ବନ୍ଧୁପରିଜନଙ୍କ ସହିତ ସେ ସ୍ୱୟଂ ଯାଇ ମେରୁଧ୍ୱଜଙ୍କ ବାସଭବନରେ ପହଞ୍ଚିଲା । ରାଜା ସେମାନଙ୍କର ଯଥୋଚିତ ସତ୍କାର କଲେ । ଦୈତ୍ୟରାଜ ଜଣାଇଲା, 'ରାଜନ୍ ! ଆପଣ ପ୍ରଥମେ ଯେତେବେଳେ ପାତାଳପୁରକୁ ଯାଇଥିଲେ ସେତେବେଳେ ପାତାଳପୁରର ସମସ୍ତ କିଛି ସଠିକ୍ ଭାବେ ଦେଖିପାରି ନାହାଁନ୍ତି । ବର୍ତ୍ତମାନ ପୁଣି ବିଜେ କରନ୍ତୁ । ଆମେ ଆପଣମାନଙ୍କ ଯଥୋଚିତ ସତ୍କାର କରିବାର ସୌଭାଗ୍ୟ ଲାଭ କରିବୁ । ସେଠାକୁ ଆସି ଆପଣଙ୍କ ପୁତ୍ରମାନଙ୍କପାଇଁ ମୋର ଉଭୟ କନ୍ୟାଙ୍କୁ ଗ୍ରହଣ କଲେ ମୁଁ କୃତାର୍ଥ ହେବି ।'

ରାଜା ମେରୁଧ୍ୱଜ ତ୍ରୈଲୋକ୍ୟମାଳୀର ସାଗ୍ରହ ନିମନ୍ତ୍ରଣ ରକ୍ଷାକରି ପତ୍ନୀ ଓ ପୁତ୍ରମାନଙ୍କୁ ଡକାଇ ଆଣିଲେ । ସେମାନଙ୍କ ନିକଟରେ ତ୍ରୈଲୋକ୍ୟମାଳୀଙ୍କ ପ୍ରସ୍ତାବ ଉପସ୍ଥାପନ କରାଗଲା । ଜ୍ୟେଷ୍ଠପୁତ୍ର ମୁକ୍ତାଫଳଧ୍ୱଜ ପିତାଙ୍କୁ ଜଣାଇଲେ, 'ମୁଁ ଆରାଧନାରେ ଭଗବାନ ଶଙ୍କରଙ୍କୁ ପ୍ରସନ୍ନ ନ କରିବା ପର୍ଯ୍ୟନ୍ତ ବିବାହ କରିବି ନାହିଁ; ପୂର୍ବରୁ ମଧ୍ୟ ଏକଥା ଆପଣଙ୍କୁ ଜଣାଇସାରିଛି । ମୋର ଧୃଷ୍ଟତାପାଇଁ କ୍ଷମାଦେବେ । ମୁଁ ଚାଲିଯିବା ପରେ ମଳୟଧ୍ୱଜ ଦୈତ୍ୟକନ୍ୟାଙ୍କୁ ବିବାହ କରୁ । ସେ ତାଙ୍କ ବିନା କ୍ଷଣମାତ୍ର

ଯେ ରହିପାରିବ ନାହିଁ ଏକଥା ତାର ଆଚରଣରୁ ଜାଣିପାରିଛି ।' ଏଥିରେ ମଳୟଧ୍ୱଜ କହିଲେ, 'ଆର୍ଯ୍ୟ ! ଆପଣ ବିବାହ ନକରିବା ଯାଏଁ ମୁଁ ବି ବିବାହ କରିବି ନାହିଁ । ଏହା ଶାସ୍ତ୍ରବିରୁଦ୍ଧ । ମୋପାଇଁ ଏହା ଅଧର୍ମ ଓ ଅପଯଶର କାରଣ ହେବ ।' ରାଜା ମୁକ୍ତାଫଳ ଧ୍ୱଜଙ୍କୁ ବୁଝାଇବାପାଇଁ ଚେଷ୍ଟା କଲେ । କିନ୍ତୁ ସେ ତାଙ୍କ ପ୍ରତିଜ୍ଞାରେ ଅଟଳ ।

ତ୍ରୈଲୋକ୍ୟମାଳୀ ମେରୁଧ୍ୱଜଙ୍କ କିଂକର୍ତ୍ତବ୍ୟବିମୂଢ଼ ପରିସ୍ଥିତି ଲକ୍ଷ୍ୟ କରି ଉଦାସଚିତ୍ତରେ ପାତାଳପୁରକୁ ଫେରିଗଲା । ସ୍ୱୟଂପ୍ରଭା ଓ କନ୍ୟାମାନେ ଦୁଃଖରେ ଭାଙ୍ଗିପଡ଼ିଲେ । ଦୈତ୍ୟରାଜ ଦୀର୍ଘନିଶ୍ୱାସ ଛାଡ଼ି କହିଲେ 'ଏହାହିଁ ଆମ ଭାଗ୍ୟର ବିଚିତ୍ର ଗତି । ଯାଚନା କରୁଥିବା ବେଳେ ଯେଉଁ ମନୁଷ୍ୟମାନଙ୍କ ହସ୍ତରେ ମୁଁ କନ୍ୟାମାନଙ୍କୁ ଅର୍ପଣ କରିନଥିଲି, ଏବେ ମୋତେ ଯାଇ ସେମାନଙ୍କୁ ପ୍ରାର୍ଥନା କରିବାକୁ ପଡ଼ିଲା । ବର୍ତ୍ତମାନ ସେମାନେ ଏମାନଙ୍କୁ ସ୍ୱୀକାର କରୁନାହାଁନ୍ତି ।' ପତ୍ନୀ ଓ ପୁତ୍ର ତାଙ୍କୁ ପ୍ରବୋଧନା ଦେଲେ 'କିଏ ଜାଣେ ବିଧାତା ଏହାଦ୍ୱାରା କି ପ୍ରକାର କାର୍ଯ୍ୟସିଦ୍ଧ କରିବାପାଇଁ ଚାହୁଁଛି । ଭଗବାନ ଶଙ୍କରଙ୍କ ବଚନ ତ ଅନ୍ୟଥା ହେବାର ନୁହେଁ । ଅପେକ୍ଷା କରିବା ବ୍ୟତୀତ ଆମର ବା ଆଉ କଣ କରିବାର ଅଛି ।'

ଏ ସବୁ ଶୁଣି ତ୍ରୈଲୋକ୍ୟପ୍ରଭା ଓ ତ୍ରିଭୁବନପ୍ରଭା ପିତାମାତାଙ୍କୁ କହିଲେ, 'ଦେଖନ୍ତୁ, ଆପଣମାନେ ଆମ ପାଇଁ ଅଯଥା କଷ୍ଟ ଭୋଗୁଛନ୍ତି । ଆମେ ଆଜିଠାରୁ ବାରଦିନ ପର୍ଯ୍ୟନ୍ତ ଉପବାସ ରହି ବ୍ରତପାଳନ କରିବୁ । ଭଗବାନ୍ ଏହା ମଧ୍ୟରେ ଆମର ଯଦି ବିବାହ କରାଇ ନ ଦିଅନ୍ତି ତେବେ ଆମେ ଦୁଇଭଉଣୀ ଏକ ସଙ୍ଗରେ ଅଗ୍ନିରେ ପ୍ରବେଶ ପୂର୍ବକ ପ୍ରାଣ ବିସର୍ଜନ କରିବୁ । ଅପମାନ ସହ୍ୟକରି କେବଳ ଶରୀର ପୋଷଣ ପାଇଁ ଜୀବନଧାରଣ କରିବା ଅପେକ୍ଷା ମୃତ୍ୟୁ ଶ୍ରେୟସ୍କର ।' ଏପରି ପ୍ରତିଜ୍ଞା ଶୁଣାଇ ଉଭୟ ଭଗିନୀ ଶିବାଳୟରେ ନିରାହାର ରହି ଜପ ଓ ଧ୍ୟାନରେ ନିମଗ୍ନ ରହିଲେ । କନ୍ୟାମାନଙ୍କ ପ୍ରତି ବାତ୍ସଲ୍ୟ ମମତାରୁ ପିତା ତ୍ରୈଲୋକ୍ୟମାଳୀ ଓ ମାତା ସ୍ୱୟଂପ୍ରଭା ମଧ୍ୟ ସେଠାରେ ନିରାହାର ରହି ତପଶ୍ଚରଣ କଲେ । ସ୍ୱୟଂପ୍ରଭା ଏ ସମ୍ବାଦ ଶୁଣାଇବାପାଇଁ ପୁଣି ଇନ୍ଦୁମତୀକୁ ମେରୁଧ୍ୱଜଙ୍କ ବାସଭବନକୁ ପଠାଇଲା । ତା'ଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ରାଜା ଓ ରାଣୀ ମଧ୍ୟ ସହାନୁଭୂତିବଶତଃ ଉପବାସ ଆଚରଣ କଲେ । ସେମାନଙ୍କୁ ଦେଖି ପୁତ୍ରମାନେ ମଧ୍ୟ ଆହାର ଗ୍ରହଣ କଲେ ନାହିଁ । ଉଭୟ ପରିବାରର ଦୁଃସ୍ଥିତି ଓ ସଙ୍କଟ ଦେଖି ମୁକ୍ତାଫଳଧ୍ୱଜ ଏକନିଷ୍ଠ ଭାବେ ବ୍ରତପାଳନ କରି ଭଗବାନ ଶଙ୍କରଙ୍କୁ ଧ୍ୟାନ କଲେ ।

ଧ୍ୟାନରେ ଛ'ଦିନ ବିତିଗଲା । ସପ୍ତମ ଦିନ ସେ ନିଜର ମିତ୍ର ପୂର୍ବଜନ୍ମର ସଂଯତକ ଏବଂ ଏ ଜନ୍ମର ମହାବୁଦ୍ଧି ନିକଟରେ ଯାଇ ପହଞ୍ଚିଲେ । ରାତିରେ ଦେଖିଥିବା ସ୍ୱପ୍ନ ବୃତ୍ତାନ୍ତ ଜଣାଇ କହିଲେ 'ମିତ୍ର ! ମୁଁ ରାତିରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲି । ମହର୍ଷି ତପୋଧନଙ୍କ ଶିଷ୍ୟ ଦୃଢ଼ବ୍ରତ ତ ମୋର କାମଚର ଓ କାମରୂପ ବାହନରୂପେ ରହିଥିଲେ । ସେ ହଠାତ୍ ଏକ ବିମାନରେ ପରିଣତ ହୋଇ ମୋତେ ତା' ଉପରେ ଆରୋହଣ କରାଇଲେ । ବିମାନଟି ମୋତେ ଧରି ମେରୁ ପର୍ବତର ବହୁ ଦୂରକୁ ଚାଲିଗଲା । ମୁଁ ଚିନ୍ତାନ୍ୱିତ ହୋଇପଡ଼ିଲି । ମୋର ଚିନ୍ତାରେ ପୂର୍ଣ୍ଣଚ୍ଛେଦ ଟାଣି ବିମାନଟି ଯାଇ ଏକ ଦିବ୍ୟ ଦେବୀ ମନ୍ଦିରରେ ପହଞ୍ଚିଲା । ସେଠାରେ ମୁଁ ଜଣେ ଅଲୌକିକ କୁମାରୀଙ୍କୁ ଦେଖିଲି । ତପସ୍ୟାରେ ତାଙ୍କ ଶରୀର କ୍ଷୀଣ ଓ ଦୁର୍ବଳ ହୋଇଯାଇଥାଏ । ସେତେବେଳେ ଜଣେ ଜଟାଧାରୀ ପୁରୁଷ ହସିହସି କନ୍ୟାଟି ସମ୍ପର୍କରେ କହିଲେ, 'ଗୋଟିଏ କନ୍ୟାଠାରୁ ପୃଷ୍ଠଭଙ୍ଗ ଦେଇ ତୁମେ ଚାଲି ଆସିଛ । ଏଠାରେ ପୁଣି ଅନ୍ୟ ଏକ କନ୍ୟା ତୁମ ପଛରେ ପଡ଼ିଲାଣି ।' ତାଙ୍କ କଥା ଶୁଣି ମୁଁ କନ୍ୟାଟିକୁ ନିରୀକ୍ଷଣ କରିବାକୁ ଲାଗିଲି, କିନ୍ତୁ ତାର ସମଗ୍ର ରୂପ ଦେଖିବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ରାତ୍ରି ଶେଷ ହେବାଯୋଗୁଁ ନିଦ୍ରାଭଙ୍ଗ ହେଲା । ତେଣୁ ସ୍ୱପ୍ନରେ ଦେଖିଥିବା ସେହି ଦିବ୍ୟକନ୍ୟାଙ୍କ ପ୍ରାପ୍ତି ନିମିତ୍ତ ମୁଁ ସେହି ମନ୍ଦିରକୁ ଯାଉଅଛି । ଯଦି ସେଠାରେ ତାଙ୍କୁ ନପାଏ ତେବେ ଅଗ୍ନିରେ ପ୍ରବେଶ କରିବି । ନିଜେ ମୋ ନିକଟରେ ନିଜକୁ ସମର୍ପଣ କରିଥିବା ଦୈତ୍ୟକନ୍ୟା ତ୍ରୈଲୋକ୍ୟପ୍ରଭା ପରିବର୍ତ୍ତେ ସ୍ୱପ୍ନରେ ଦେଖିଥିବା ଏହି କନ୍ୟାଙ୍କ ପ୍ରତି ମୁଁ ଆସକ୍ତ ହୋଇପଡ଼ିଛି । ବିଧାତାର ବିଧାନ ଜାଣିବା ଆମ ପକ୍ଷରେ ସମ୍ଭବ ନୁହେଁ । ଭବିତବ୍ୟତାକୁ କିଏ ବା ଅନ୍ୟଥା କରିପାରିବ ? ମନେହେଉଛି ସେଠାକୁ ଯିବା ମୋ ପାଇଁ କଲ୍ୟାଣକର ହେବ ।'

ମିତ୍ରଙ୍କୁ ଏହିପରି ସ୍ୱପ୍ନ ବୃତ୍ତାନ୍ତ ଶୁଣାଇ ମୁକ୍ତାଫଳଧ୍ୱଜ ମହର୍ଷି ତପୋଧନଙ୍କ ଶିଷ୍ୟରୂପୀ ବାହନକୁ ସ୍ମରଣ କଲେ । ତତ୍କ୍ଷଣାତ୍ ବିମାନରେ ପରିବର୍ତ୍ତିତ ହୋଇଥିବା ବାହନ ଆସି ପହଞ୍ଚିଲା । ବିମାନଟି ମଧ ଥିଲା କାମରୂପ ଓ କାମଚାରୀ । ରାଜକୁମାର ମିତ୍ରଙ୍କ ସହିତ ସେହି ବିମାନ ସାହାଯ୍ୟରେ ଯାଇ ପୂର୍ବୋକ୍ତ ମନ୍ଦିରରେ ପହଞ୍ଚିଲେ । ସ୍ୱପ୍ନରେ ଦେଖିଥିବା ମନ୍ଦିର ସହିତ ଏହା ସମ୍ପୂର୍ଣ୍ଣ ମିଳିଯାଉଥିଲା । ମୁକ୍ତାଫଳଧ୍ୱଜ ସିଦ୍ଧୋଦକ ନାମକ ଏହି ତୀର୍ଥରେ ସ୍ନାନ କଲେ ।

ଏଣେ ଉପବାସରେ ରହି ପିତାମାତା, ଭ୍ରାତା ପ୍ରଭୃତି କ୍ଷୀଣକାୟ ହୋଇପଡ଼ିଥାନ୍ତି । ପୁତ୍ରର ଅଜ୍ଞାତ ଭାବେ ପଳାୟନ ତାଙ୍କୁ ଅଧିକ ଶୋକ ବିହ୍ୱଳ କରିପକାଇଲା । ଏ ସମ୍ବାଦ

ଅଚିରେ ପାତାଳପୁରରେ ପ୍ରଚାରିତ ହେବାରୁ ଦୈତ୍ୟରାଜ ତ୍ରୈଲୋକମାଳୀ ଉପବାସକ୍ଲିଷ୍ଟ ପତ୍ନୀ, କନ୍ୟା ଓ ସ୍ୱଜନମାନଙ୍କ ସହିତ ମେରୁଧ୍ୱଜଙ୍କ ବାସଭବନରେ ଆସି ପହଞ୍ଚିଲେ । ସମସ୍ତେ ବିଚାର ଆଲୋଚନା କରି ମୁକ୍ତାଫଳଧ୍ୱଜ ନିଃସନ୍ଦେହ ଭାବେ ଚତୁର୍ଦ୍ଦଶୀ ଦିନ ଭଗବାନ ଶିବଙ୍କ ଆରାଧନା କରିବାପାଇଁ ଯାଇଥିବା ନିଶ୍ଚୟ କଲେ । ସେ ସେହିଦିନ ଫେରି ନ ଆସିଲେ ପରଦିନ ସମସ୍ତେ ସେହି ଶିବକ୍ଷେତ୍ରକୁ ଯିବାପାଇଁ ନିଶ୍ଚୟ ନେଲେ । ତା' ପରେ ଯାହା ହେବ ଦେଖାଯିବ ।

ଏଣେ ମେଘବନସ୍ଥିତ ଗୌରୀ ମନ୍ଦିରରେ ସଖୀ ସହିତ ତପଶ୍ଚରଣ କରୁଥିବା ପଦ୍ମାବତୀ ସଖୀକୁ କହିଲେ, 'ସଖି ! ମୁଁ ଆଜି ଗୋଟିଏ ବିଚିତ୍ର ସ୍ୱପ୍ନ ଦେଖିଛି । ମୁଁ ଯାଇ ସିଦ୍ଧୀଶ୍ୱର କ୍ଷେତ୍ରରେ ପହଞ୍ଚିଛି । ସେଠାରେ ଥିବା ଶିବ ମନ୍ଦିରରୁ ଜଣେ ଜଟାଧାରୀ ପୁରୁଷ ବାହାରି ମୋତେ କହୁଛନ୍ତି, 'ପୁତ୍ରି ! ତୋର ଦୁଃଖର ସମୟ ଶେଷ ହେଲା । ନିକଟରେ ପତି ସହିତ ତୋର ମିଳନ ହେବ ।' ସେ ଆଉକିଛି କହୁଥିବା ବେଳେ ରାତ୍ରି ପ୍ରଭାତ ହେଲା । ମୁଁ ଜାଗ୍ରତ ହୋଇଉଠିଲି । ତେଣୁ, ଚାଲ, ଆମେ ବର୍ତ୍ତମାନ ସିଦ୍ଧୀଶ୍ୱର କ୍ଷେତ୍ରକୁ ଯିବା ।'

ଏହା କହି ପଦ୍ମାବତୀ ସଖୀମାନଙ୍କ ସହିତ ଯାଇ ସିଦ୍ଧୀଶ୍ୱର କ୍ଷେତ୍ରରେ ପହଞ୍ଚିଲେ । ସେଠାରେ ସ୍ନାନ କରୁଥିବା ବେଳେ ସେ ଦୂରରୁ ମୁକ୍ତାଫଳଧ୍ୱଜଙ୍କୁ ଦେଖି ବିସ୍ମିତ ଭାବେ ସଖୀକୁ କହିଲେ, 'ଦେଖିଲ, ଏହି ପୁରୁଷଟି ସହିତ ମୋର ପ୍ରିୟତମ ମୁକ୍ତାଫଳକେତୁଙ୍କର କେତେ ସାମଞ୍ଜସ୍ୟ ଅଛି । ଏହି ବ୍ୟକ୍ତିଜଣକ ସିଏ ହୋଇଥିବାରେ ଆଶ୍ଚର୍ଯ୍ୟ କିଛି ନାହିଁ । କିନ୍ତୁ ଏହା କିପରି ସମ୍ଭବ ? ସିଏ ତ ବିଦ୍ୟାଧର, ଏହି ପୁରୁଷଟି ମନୁଷ୍ୟ ।'

ରାଜକୁମାରୀଙ୍କ କଥାରେ ସଖୀ ତାଙ୍କୁ ସମ୍ୟକ୍‌ଭାବେ ନିରୀକ୍ଷଣ କରି ନିବେଦନ କଲା, 'କେବଳ ଏହି ପୁରୁଷ ଜଣକ ତୁମର ପ୍ରିୟତମ ବୋଲି ମନେହେଉ ନାହାଁନ୍ତି, ତାଙ୍କ ସହିତ ଥିବା ମିତ୍ରଜଣକ ମଧ୍ୟ ତୁମ ପ୍ରିୟତମଙ୍କ ମିତ୍ର ସଂଯତକ ପରି ଦେଖାଯାଉଛନ୍ତି । ଟିକିଏ ଭଲଭାବରେ ଦେଖ । ଆଜି ଯେଉଁ ସ୍ୱପ୍ନ କଥା ତୁମେ କହୁଥିଲ ସେଥିରୁ ଜଣାଯାଉଛି ମର୍ତ୍ତ୍ୟଲୋକରେ ମନୁଷ୍ୟ ରୂପେ ଜନ୍ମଗ୍ରହଣ କରିଥିବା ଉଭୟ ମିତ୍ରଙ୍କୁ ଭଗବାନ ପାର୍ବତୀ-ପତି ନିଜ ବଚନ ରକ୍ଷା କରିବାପାଇଁ ତୁମ ନିକଟକୁ ନେଇ ଆସିଛନ୍ତି । ତା' ନହେଲେ ଏଠାରେ ମନୁଷ୍ୟ ପ୍ରବେଶ କରିବା କିପରି ସମ୍ଭବ ହୋଇଥାନ୍ତା ।'

ସଖୀର କଥାଶୁଣି ପଦ୍ମାବତୀଙ୍କ ଉତ୍କଣ୍ଠା ବଢ଼ିଗଲା । ସେ ମଙ୍ଗଳମୟ ଶିବଙ୍କ ପୂଜା ଶେଷକରି ନିଜକୁ ମୂର୍ତ୍ତି ଆଢୁଆଳରେ ଗୁପ୍ତକରି ରଖିଲେ । ଏହା ମଧ୍ୟରେ

ମୁକ୍ତାଫଳଧ୍ୱଜ ସ୍ନାନ ଶେଷ କରି ପୂଜାପାଇଁ ମନ୍ଦିର ମଧ୍ୟକୁ ଆସିଯାଇଥାନ୍ତି । ମନ୍ଦିର ମଧ୍ୟରେ ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି ସେ ମିତ୍ର ମହାବୁଦ୍ଧିଙ୍କୁ କହିଲେ ''ମିତ୍ର ! ସ୍ୱପ୍ନ ଅନୁରୂପ ଏହି ବିଚିତ୍ର ସ୍ୱର୍ଣ୍ଣମୟ ଶିବମନ୍ଦିରଟି ଦେଖାଯାଉଛି । ଗୌରୀପତି ଶିବଙ୍କ ଏହି ଲିଙ୍ଗଟି ମଧ୍ୟ ମୁଁ ସ୍ୱପ୍ନରେ ଦେଖିଥିଲି । ଏହାର ପରିବେଶ ମଧ୍ୟ ସ୍ୱପ୍ନ ଅନୁରୂପ । ଦେଖ, ରତ୍ନମୟ ବୃକ୍ଷଗୁଡ଼ିକ ଉପରେ ଦିବ୍ୟ ପକ୍ଷୀଗଣ କ୍ରୀଡ଼ା କରୁଛନ୍ତି । କିନ୍ତୁ ସ୍ୱପ୍ନରେ ଦେଖିଥିବା ସେହି ଦିବ୍ୟକନ୍ୟାଙ୍କୁ ମୁଁ ଦେଖିପାରୁନାହିଁ । ତାଙ୍କୁ ଯଦି ଏଠାରେ ନପାଏ ତେବେ ନିଶ୍ଚୟ ମୁଁ ପ୍ରାଣତ୍ୟାଗ କରିବି ।'

ମୁକ୍ତାଫଳଧ୍ୱଜଙ୍କ କଥାଶୁଣି ପଦ୍ମାବତୀଙ୍କ ସଖୀ କହିଲା, 'ସଖି, ଦେଖ, ଏ ମହାତ୍ମା ନିଶ୍ଚୟ ତୁମକୁ ସ୍ୱପ୍ନରେ ଦେଖି ଏଠାକୁ ଆସିଛନ୍ତି । ତୁମକୁ ନଦେଖିଲେ ସେ ଶରୀର ତ୍ୟାଗର ସଂକଳ୍ପ ମଧ୍ୟ କରୁଛନ୍ତି । ତେଣୁ ଆମେ ଏଠାରେ ଗୁପ୍ତରହି ତାଙ୍କ କାର୍ଯ୍ୟକଳାପ ଅନୁଧ୍ୟାନ କରିବା ଉଚିତ ହେବ ।'

ସେମାନେ ମୂର୍ତ୍ତି ପଛରେ ଲୁକ୍‌କାୟିତ ଭାବେ ରହିଥିବା ବେଳେ ମୁକ୍ତାଫଳଧ୍ୱଜ ମନ୍ଦିରର ଗର୍ଭଗୃହ ମଧ୍ୟରେ ପ୍ରବେଶ କଲେ । ନିବିଷ୍ଟ ଚିତ୍ତରେ ପୂଜା ଶେଷ କରି ସେ ବାହାରକୁ ଆସି ମିତ୍ର ସହ ମନ୍ଦିର ପରିକ୍ରମା ଆରମ୍ଭ କଲେ । ତୃତୀୟଥର ପରିକ୍ରମା ଶେଷ କଲାବେଳେ ଉଭୟଙ୍କ ମନରେ ପୂର୍ବଜନ୍ମର ସ୍ମୃତି ଜାଗ୍ରତ ହେଲା । ସେମାନେ ନିଜ ନିଜ ମଧ୍ୟରେ ପୂର୍ବଜନ୍ମ କଥା ଆଲୋଚନା କରୁଥିବା ବେଳେ ପଦ୍ମାବତୀଙ୍କ ଉପରେ ସେମାନଙ୍କ ଦୃଷ୍ଟିପାତ ହେଲା । ପୂର୍ବଜନ୍ମ କଥା ସ୍ମରଣ କରି ମୁକ୍ତାଫଳଧ୍ୱଜ ପଦ୍ମାବତୀଙ୍କୁ ଦେଖିବା ମାତ୍ରେ ହର୍ଷ ଗଦ୍‌ଗଦ କଣ୍ଠରେ ମିତ୍ରଙ୍କୁ କହିଲେ, 'ମିତ୍ର ! ଏହି ନାରୀଜଣକ ହିଁ ହେଉଛନ୍ତି ପଦ୍ମାବତୀ । ମୁଁ ଏହାଙ୍କୁ ହିଁ ସ୍ୱପ୍ନରେ ଦେଖିଥିଲି । ଭାଗ୍ୟବଶତଃ ତାଙ୍କ ସହିତ ଏଠାରେ ସାକ୍ଷାତ ହେଲା । ଚାଲ, ଯଥାଶୀଘ୍ର ଯାଇ ତାଙ୍କୁ ସ୍ୱାଗତ କରିବା ।' ମୁକ୍ତାଫଳଧ୍ୱଜ ଦ୍ରୁତ ପଦକ୍ଷେପରେ ଯାଇ ପଦ୍ମାବତୀଙ୍କ ନିକଟରେ ପହଞ୍ଚିଲେ । ଅଶ୍ରୁପୂର୍ଣ୍ଣ ନୟନରେ ନିବେଦନ କଲେ, 'ଦେବି ! ମୋତେ ଛାଡ଼ି ଆଉ ଏଠାରୁ ଯାଅନାହିଁ । ମୁଁ ତୁମର ପ୍ରଣୟୀ ମୁକ୍ତାଫଳକେତୁ । ମହର୍ଷି ତପୋଧନଙ୍କ ଶିଷ୍ୟ ଦୃଢ଼ବ୍ରତଙ୍କ ଅଭିଶାପ ଯୋଗୁଁ ମୁଁ ମନୁଷ୍ୟ ରୂପେ ଜନ୍ମଗ୍ରହ କରିଛି । ବର୍ତ୍ତମାନ ପୂର୍ବଜନ୍ମ କଥା ମୋର ସ୍ମରଣ ହେଲା ।' ଏହା କହି ସେ ତାଙ୍କୁ ଆଲିଙ୍ଗନ କରିବା ପାଇଁ ଉଦ୍ୟତ ହେଲେ । କିନ୍ତୁ ପଦ୍ମାବତୀ ତାଙ୍କ ବାହୁପାଶରେ ଧରାନଦେଇ ସେଠାରୁ ଦୂରେଇ ଗଲେ ।

ରାଜକୁମାରୀଙ୍କ ଅଦର୍ଶନରେ ମୁକ୍ତାଫଳଧ୍ୱଜ ଅଚେତ ହୋଇପଡ଼ିଲେ । ମିତ୍ର ମହାବୁଦ୍ଧି କିଂକର୍ତ୍ତବ୍ୟବିମୂଢ଼ ହୋଇ ଶୂନ୍ୟକୁ ଚାହିଁ କହିଲେ, 'ଦେବି ! ଯାହାପାଇଁ ତୁମେ ଏତେ କଷ୍ଟ ସ୍ୱୀକାର ପୂର୍ବକ ତପସ୍ୟା କରୁଥିଲ ସେ ବର୍ତ୍ତମାନ ତୁମ ସମ୍ମୁଖରେ ଉପସ୍ଥିତ । ତାଙ୍କୁ ପଦେ କଥାକହି କାହିଁକି ଆଶ୍ୱାସନା ଦେଉନାହଁ । ମୁଁ ତୁମ ପ୍ରିୟତମଙ୍କ ମିତ୍ର ସଂଯତକ । ତୁମ ପାଇଁ କେବଳ ମୁଁ ଅଭିଶପ୍ତ ହୋଇଥିଲି । ତଥାପି ତୁମେ ମୋତେ ପଦେ କଥା କହୁନାହଁ ।' ଏପରି କହି ସେ ଉପଚାରଦ୍ୱାରା ମିତ୍ରଙ୍କ ଚେତନା ଫେରାଇ ଆଣିଲେ । କହିଲେ, 'ପ୍ରଣୟ ନିବେଦନ କରି ସ୍ୱୟଂ ଆସିଥିବା ଦୈତ୍ୟ କନ୍ୟା ତ୍ରୈଲୋକ୍ୟପ୍ରଭାଙ୍କୁ ପରିତ୍ୟାଗ କରି ଆପଣ ଯେଉଁ ପାପ କରିଛନ୍ତି, ଏହା ତାହାର ଫଳ ।'

ସେ ଏପରି କହୁଥିବା ବେଳେ ପଦ୍ମାବତୀଙ୍କୁ ସଖୀ କହିଲା, 'ଦେଖ, ଏହି ମୁକ୍ତାଫଳଧ୍ୱଜ ଅସୁର କନ୍ୟାପ୍ରତି ଆକୃଷ୍ଟ ନୁହଁନ୍ତି । ସବୁକିଛି ମିଳିଯାଉଛି । ତୁମେ ମନେପକାଅ ତୁମ ପ୍ରିୟତମ ଅଭିଶାପ ପାଇ ମହର୍ଷି ତପୋଧନଙ୍କୁ ପ୍ରାର୍ଥନା କରିଥିଲେ ଯେ ମନୁଷ୍ୟ ଜନ୍ମରେ ମଧ ତାଙ୍କ ମାନସ ତୁମ ବ୍ୟତୀତ ଅନ୍ୟ କୌଣସି ନାରୀ ପ୍ରତି ଆକୃଷ୍ଟ ହେବନାହିଁ । ସେଥିପାଇଁ ମୁକ୍ତାଫଳଧ୍ୱଜ ଅନ୍ୟ କୌଣସି ନାରୀ ପ୍ରତି ଏ ପର୍ଯ୍ୟନ୍ତ ଅନୁରକ୍ତ ହୋଇନାହାଁନ୍ତି ।'

ସଖୀ କଥାରେ ପଦ୍ମାବତୀ ସଂଶୟାକୁଳ ହୋଇ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ପ୍ରିୟତମାଙ୍କ ଅଦର୍ଶନରେ ମୁକ୍ତାଫଳଧ୍ୱଜ ମଧ ଉଚ୍ଚସ୍ୱରରେ ବିଳାପ କରି କହୁଥାନ୍ତି, 'ତୁମପାଇଁ ବିଦ୍ୟାଧର ଶରୀରରେ ଥରେ ମେଘବନରେ ଅଭିଶପ୍ତ ହୋଇଥିଲି । ବର୍ତ୍ତମାନ ପୁଣି ତୁମପାଇଁ କେବଳ ଏହି ମାନବ ଶରୀର ବିସର୍ଜନ କରୁଛି ।'

ରାଜକୁମାରଙ୍କ ବିଳାପ ଧ୍ୱନି ପଦ୍ମାବତୀଙ୍କୁ ଶୋକାକୁଳ କରିଦେଲା । ତଥାପି ସେ କହିଲେ, 'ସଖି ! ଏହାଙ୍କ ପରିଚୟରୁ ଯଦିଓ ସବୁକଥା ମିଳିଯାଉଛି, ତଥାପି ଆମେ ଏହା ଅପ୍ରତ୍ୟକ୍ଷ ରୂପରେ ହିଁ ଶୁଣୁଅଛେ । ତେଣୁ ମୁଁ ଏ ପର୍ଯ୍ୟନ୍ତ ଏମାନଙ୍କୁ ମୋର ପ୍ରିୟତମ ଓ ତାଙ୍କ ମିତ୍ର ବୋଲି ନିଶ୍ଚିତ ହୋଇପାରୁନାହିଁ । ତେଣୁ ତାଙ୍କ ଆତୁର ବିଳାପ ଧ୍ୱନି ମୋତେ ବିଶେଷ ଭାବେ ପ୍ରଭାବିତ କରିପାରୁନାହିଁ । ପୂଜାର ସମୟ ହେଲାଣି । ମୁଁ ଗୌରୀ ମନ୍ଦିର ମଧକୁ ଯାଉଛି ।' ପଦ୍ମାବତୀ ମନ୍ଦିର ମଧରେ ପ୍ରବେଶ କରି ଦେବୀ ଭବାନୀଙ୍କ ପୂଜା ଶେଷକଲେ । ନିବେଦନ କଲେ, 'ଦେବି ! ସିଦ୍ଧୀଶ୍ୱର କ୍ଷେତ୍ରରେ ମୁଁ ଯେଉଁ ପୁରୁଷଙ୍କୁ ଦେଖିଲି, ସେ ଯଦି ମୋର ପୂର୍ବଜନ୍ମର ପତି ହୋଇଥାନ୍ତି, ତେବେ ତାଙ୍କ ସହିତ ମିଳନ ଘଟାଇ ମୋତେ ରକ୍ଷାକର ।'

ପଦ୍ମାବତୀ ସିଦ୍ଧୀଶ୍ୱର କ୍ଷେତ୍ରରୁ ଯାଇ ଗୌରୀ ମନ୍ଦିରରେ ପ୍ରତୀକ୍ଷା କରୁଥିବା ବେଳେ ମୁକ୍ତାଫଳଧ୍ୱଜ ମିତ୍ରଙ୍କୁ କହିଲେ, 'ମିତ୍ର ! ମନେହେଉଛି ସେ ମୋ ପ୍ରତି ଅଭିମାନ କରି ଗୌରୀ ମନ୍ଦିରକୁ ଚାଲିଯାଇଛନ୍ତି । ତେଣୁ ଚାଲ, ଆମେ ମଧ୍ୟ ସେହି ଆଶ୍ରମକୁ ଯିବା ।' ଉଭୟେ କାମଗତି ବିମାନ ଆରୋହଣ କରି ଗୌରୀ ମନ୍ଦିରରେ ଉପସ୍ଥିତ ହେଲେ । ଏମାନଙ୍କୁ ଆକାଶରୁ ଅବତରଣ କରୁଥିବା ଦେଖି ସଖୀମାନେ ପଦ୍ମାବତୀଙ୍କୁ କହିଲେ, 'ଦେବି ! ଏହା ତ ବଡ଼ ଆଶ୍ଚର୍ଯ୍ୟର ବିଷୟ । ସେହି ପୁରୁଷ ଦିବ୍ୟବିମାନରେ ଏଠାକୁ ମଧ୍ୟ ଆସିଗଲେ । ମନୁଷ୍ୟ ହୋଇ ଏପରି ବିମାନର ବ୍ୟବହାର କରିବା ସମ୍ଭବ ନୁହେଁ । ନିଶ୍ଚିତ ଭାବେ ସେ ଜଣେ ଅଲୌକିକ ବ୍ୟକ୍ତି ।' ପଦ୍ମାବତୀ ସେମାନଙ୍କୁ ମନେ ପକାଇ କହିଲେ, 'ତୁମର କଣ ପୂର୍ବକଥା ମନେନାହିଁ ? ତପୋଧନଙ୍କ ଶିଷ୍ୟ ଦୃଢ଼ବ୍ରତ ଯେତେବେଳେ ପ୍ରିୟତମଙ୍କୁ ଅଭିଶାପ ଦେଇଥିଲେ ସେତେବେଳେ ମୁଁ ମଧ୍ୟ ତାଙ୍କୁ ଶାପଗ୍ରସ୍ତ କରିଥିଲି । ମନୁଷ୍ୟ ଲୋକରେ ସେ ମୁକ୍ତାଫଳକେତୁଙ୍କ କାମରୂପୀ ଓ କାମଚାରୀ ବାହନ ହୋଇ ତାଙ୍କୁ ତାଙ୍କ ଇଚ୍ଛାନୁଯାୟୀ ବହନ କରିବେ ବୋଲି ମୋର ଅଭିଶାପ ଥିଲା । ସେଥିପାଇଁ ଏହି ପୁରୁଷ ଜଣକ ବିମାନରୂପଧାରୀ ମୁନିଶିଷ୍ୟଙ୍କ ସାହାଯ୍ୟରେ ଏଠାରେ ଆସି ପହଞ୍ଚିଛନ୍ତି ବୋଲି ମୋ ମନରେ ଦୃଢ଼ ବିଶ୍ୱାସ ହେଉଛି ।' ପଦ୍ମାବତୀଙ୍କ କଥା ସଖୀମାନଙ୍କୁ ବିସ୍ମିତ କଲା । ସେମାନେ ନିବେଦନ କଲେ, 'ତୁମେ ଯଦି ଏତେ ନିଶ୍ଚିତ ତେବେ ଯାଇ ତାଙ୍କ ସହିତ ବାର୍ତ୍ତାଳାପ କରୁନାହଁ କାହିଁକି ? ଅପେକ୍ଷା କରିବାର କାରଣ ବା କଣ ?' ପଦ୍ମାବତୀ ଉତ୍ତର ଦେଲେ, 'ମୋର ଏହା ସମ୍ଭାବନା ମାତ୍ର । ମୁଁ ଏପର୍ଯ୍ୟନ୍ତ ସ୍ଥିର ନିଶ୍ଚିତ ହୋଇପାରୁନାହିଁ । ପୁଣି ଯଦି ଏହି ପୁରୁଷ ନିଶ୍ଚିତଭାବେ ମୋର ପ୍ରିୟତମ ତଥାପି ସେ ନିଜର ପୂର୍ବଶରୀର ପ୍ରାପ୍ତ ନହେବା ପର୍ଯ୍ୟନ୍ତ ଅନ୍ୟ ଶରୀରରେ ସେ ମୋପାଇଁ ପରପୁରୁଷ । ମୁଁ ତାଙ୍କ ନିକଟକୁ ଯିବି କିପରି ? ତେଣୁ ଚାଲ, ଗୋପନରେ ତାଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କରିବା ।'

ସେ ସଖୀମାନଙ୍କ ସହିତ ମନ୍ଦିର ମଧ୍ୟରେ ଲୁଚିଗଲେ । ଏ ସମୟରେ ମୁକ୍ତାଫଳଧ୍ୱଜଙ୍କ ବିମାନ ଆକାଶରୁ ଅବତରଣ କଲା । ସେ ସ୍ଥାନଟିକୁ ଦେଖି କାତର କଣ୍ଠରେ ମିତ୍ରଙ୍କୁ ଜଣାଇଲେ, 'ପୂର୍ବେ ଏହି ସ୍ଥାନରେ ହିଁ ତାଙ୍କ ସହିତ ମୋର ପ୍ରଥମ ମିଳନ ଘଟିଥିଲା । ସେ ରାକ୍ଷସୀମାନଙ୍କଦ୍ୱାରା ଭୟଭୀତା ଥିଲେ । ପୁଣି ମୁଁ ତାଙ୍କୁ ଏହି ଉପବନ ମଧ୍ୟରେ ଦେଖିଥିଲି । ସେ ମୋତେ ବରଣ କରିବାପାଇଁ ସ୍ୱୟଂ ଏଠାକୁ ଆସିଥିଲେ । ଏହିଠାରେ ହିଁ ମୁଁ ଶାପଗ୍ରସ୍ତ ହୋଇଥିଲି । ସେତେବେଳେ ସେ ମୋ ସହିତ ଯିବାପାଇଁ ଉଦ୍ୟତ ଥିଲେ । ମହର୍ଷି ତପୋଧନ ଏହିଠାରେ ହିଁ ତାଙ୍କୁ ସେଥିରୁ ନିବୃତ୍ତ

କରିଥିଲେ । ବହୁକଷ୍ଟରେ ସେ ଏଠାରୁ ମୋତେ ବିଦାୟ ଦେଇଥିଲେ । କିନ୍ତୁ ମିତ୍ର, ଦେଖ, ଆଜି ସେହି ପଦ୍ମାବତୀ ମୋଠାରୁ ଦୂରେଇ ରହିବାପାଇଁ ଚେଷ୍ଟା କରୁଛନ୍ତି ।'

ମୁକ୍ତାଫଳଧ୍ୱଜଙ୍କ କାରୁଣ୍ୟ ପଦ୍ମାବତୀଙ୍କୁ ବିଚଳିତ କରୁଥାଏ । ତଥାପି ସେ ସଖୀମାନଙ୍କୁ କହିଲେ, 'ଶୁଣ, ଏହି ମହାତ୍ମାପୁରୁଷ ପ୍ରକୃତରେ ମୋର ପ୍ରିୟତମ ମୁକ୍ତାଫଳକେତୁ । କିନ୍ତୁ ସେ ନିଜର ପୂର୍ବ ଶରୀରପ୍ରାପ୍ତ ନହେବା ପର୍ଯ୍ୟନ୍ତ ମୁଁ କିପରି ତାଙ୍କ ନିକଟକୁ ଯିବି ? ଏଥିରେ ଭଗବାନ ସିଦ୍ଧୀଶ୍ୱର ହିଁ ମୋର ସହାୟ । ସେ ସ୍ୱପ୍ନରେ ମୋତେ ନିର୍ଦ୍ଦେଶ ଦେଇଥିଲେ । ବର୍ତ୍ତମାନ ପୁନର୍ମିଳନପାଇଁ ସେ କିଛି ଉପାୟ ନିଶ୍ଚୟ ବତାଇପାରନ୍ତି । ଏଣୁ, ଚାଲ ଆମେ ପୁଣି ସିଦ୍ଧୀଶ୍ୱର କ୍ଷେତ୍ରକୁ ଯିବା ।'

ପଦ୍ମାବତୀ ପୁନଶ୍ଚ ସିଦ୍ଧୀଶ୍ୱର କ୍ଷେତ୍ରକୁ ଫେରିଆସିଲେ । ସିଦ୍ଧୀଶ୍ୱରଙ୍କୁ ପୂଜା କରି ସେ ପ୍ରାର୍ଥନା କଲେ, 'ପ୍ରଭୁ ! ପୂର୍ବଶରୀର ପ୍ରାପ୍ତ କରାଇ ମୋତେ ମୋର ପ୍ରିୟତମ ସହିତ ମିଳାଇ ଦିଅନ୍ତୁ, ତା'ନହେଲେ ମୋତେ ମୃତ୍ୟୁ ଦିଅନ୍ତୁ । ଏ ଉଭୟ ବ୍ୟତୀତ ମୋର ତୃତୀୟ ଗତି ନାହିଁ ।' ଏହିପରି ପ୍ରାର୍ଥନା କରି ସେ ସଖୀମାନଙ୍କ ସହିତ ଆସି ମନ୍ଦିର ବାହାରେ ଠିଆ ହେଲେ ।

ଏଣେ ଗୌରୀ ମନ୍ଦିର ମଧ୍ୟରେ ପଦ୍ମାବତୀଙ୍କୁ ନଦେଖି ମୁକ୍ତାଫଳଧ୍ୱଜ ମଧ୍ୟ ଅଧୀର ହୋଇପଡ଼ିଲେ । ସେ ପୁଣି ସିଦ୍ଧୀଶ୍ୱର କ୍ଷେତ୍ରକୁ ଯିବାପାଇଁ ମିତ୍ରଙ୍କୁ ପ୍ରସ୍ତାବ ଦେଲେ । ଯଦି ସେଠାରେ ମଧ୍ୟ ପଦ୍ମାବତୀଙ୍କ ସହିତ ତାଙ୍କର ସାକ୍ଷାତ ନହୁଏ ତେବେ ଶରୀର ତ୍ୟାଗର ସଂକଳ୍ପ କରି ପୁଣି ବିମାନ ଆରୋହଣ କଲେ । ପଥ ମଧ୍ୟରେ ମିତ୍ର ତାଙ୍କୁ, ତାଙ୍କ କଲ୍ୟାଣ ହେବା ନିଶ୍ଚିତ, ଭଗବାନ ପାର୍ବତୀଶ୍ୱରଙ୍କ ବଚନ ଅନ୍ୟଥା ହେବା ସମ୍ଭବ ନୁହେଁ, ଇତ୍ୟାଦି କହି ସାନ୍ତ୍ୱନା ଦେଉଥାନ୍ତି । କାମଚାରୀ ବିମାନ ସିଦ୍ଧିକ୍ଷେତ୍ର ନିକଟରେ ଅବତରଣ କଲା । ତାଙ୍କୁ ଦେଖି ପଦ୍ମାବତୀ 'ଦେଖ, ସେ ଏଠାକୁ ମଧ୍ୟ ଆସିଗଲେ' କହି ସେଠାରୁ ଅଲକ୍ଷିତ ହୋଇଗଲେ ।

ମୁକ୍ତାଫଳଧ୍ୱଜ ମନ୍ଦିରର ଗର୍ଭ ଗୃହରେ ପ୍ରବେଶ କରି ଦେଖିଲେ ଯେ କେହି ଜଣେ ସେଇମାତ୍ର ଶିବଲିଙ୍ଗଙ୍କୁ ପୂଜା କରିଯାଇଛି । ସେ ମିତ୍ରଙ୍କୁ କହିଲେ, 'ମିତ୍ର, ଦେଖ, ଏବେଏବେ ଏଠି କେହି ପୂଜା କରିଛି । ନିଶ୍ଚିତ ଭାବେ ମୋର ପ୍ରିୟତମା ପଦ୍ମାବତୀ ହିଁ ଏହା କରିଛନ୍ତି । ସେ ନିଶ୍ଚିତ ଭାବେ ଏଠି କେଉଁଠି ଥିବେ ।' ଏହା କହି ସେ ମିତ୍ରଙ୍କ ସହିତ ତାଙ୍କୁ ଏଣେତେଣେ ଖୋଜିବାକୁ ଲାଗିଲେ । କିନ୍ତୁ ତାଙ୍କ ଚେଷ୍ଟା ବ୍ୟର୍ଥ ହେଲା । ସେ ପଦ୍ମାବତୀଙ୍କ ନାମ ଉଚ୍ଚାରଣ କରି କରି ଶୋକାକୁଳ କଣ୍ଠରେ ଇତସ୍ତତଃ ଦୌଡୁଥାନ୍ତି ।

କନ୍ଦର୍ପ ପୀଡ଼ାରେ ଜର୍ଜରିତ ହୋଇ ରାଜକୁମାର କୋକିଳର କୁହୁ ଧ୍ୱନିକୁ ପଦ୍ମାବତୀଙ୍କ କଣ୍ଠସ୍ୱର, ମୟୂରର ପିଛକୁ ତାଙ୍କର କେଶରାଶି ଏବଂ ପୁଷ୍ପିତ କମଳିନୀକୁ ପଦ୍ମାବତୀଙ୍କ ମୁଖମଣ୍ଡଳ ବୋଲି ମନେକରି ସେଗୁଡ଼ିକ ନିକଟକୁ ଚାଲିଯାଉଥାନ୍ତି । ମିତ୍ର ରାଜକୁମାରଙ୍କ ଏ ପ୍ରକାର ସ୍ଥିତି ଦେଖି ଆଶ୍ୱାସନା ପ୍ରଦାନ ପୂର୍ବକ ବୁଝାଉଥାନ୍ତି, 'ମିତ୍ର ! ନିରାହାର ରହି ତୁମର ଶରୀର ଅତ୍ୟନ୍ତ କ୍ଷୀଣ ହୋଇପଡ଼ିଛି । ଏଥିରେ ତୁମର ଏପରି ଦୌଡ଼ିବା ଉଚିତ ନୁହେଁ । ତୁମେ ମର୍ତ୍ତ୍ୟ ଓ ପାତାଳ ଲୋକକୁ ଜୟ କରିଛ । କିନ୍ତୁ ନିଜକୁ ସ୍ଥିର ରଖିନପାରିବା ବଡ଼ ଆଶ୍ଚର୍ଯ୍ୟର କଥା । ଶରୀର ପ୍ରତି ଟିକିଏ ଦୃଷ୍ଟିଦିଅ । ତୁମେ ରାଜଧାନୀକୁ ଯାଉନାହଁ ବୋଲି ପିତା ମେରୁଧ୍ୱଜ, ଶ୍ୱଶୁର ଅସୁରରାଜ ତ୍ରୈଲୋକ୍ୟମାଳୀ, ତୁମ ପ୍ରତି ନିବିଡ଼ ଭାବେ ଆସକ୍ତ ତାଙ୍କ କନ୍ୟା ତ୍ରୈଲୋକ୍ୟପ୍ରଭା, ମାତା ବିନୟବତୀ ଏବଂ ଭାଇ ମଳୟଧ୍ୱଜ ସମସ୍ତେ ତୁମର ଅମଙ୍ଗଳ ଆଶଙ୍କା କରି ଉପବାସରେ ଅଛନ୍ତି । ସେମାନେ ପ୍ରାଣତ୍ୟାଗ କରିବାପାଇଁ ପ୍ରସ୍ତୁତ । ତେଣୁ, ଚାଲ, ଶୀଘ୍ର ଯାଇ ସେମାନଙ୍କ ପ୍ରାଣରକ୍ଷା କରିବା । ଦିନ ଗଡ଼ିଯାଉଛି । ତୁମେ ଶୀଘ୍ର ଯାଇ ସେଠାରେ ନପହଞ୍ଚିଲେ ଅନିଷ୍ଟ ହୋଇପାରେ ।'

ମିତ୍ରଙ୍କଠାରୁ ଏହା ଶୁଣି ମୁକ୍ତାଫଳଧ୍ୱଜ ତାଙ୍କୁ ନିଜର ମୁନିଶିଷ୍ୟ ରୂପକ ବିମାନରେ ଯାଇ ସେମାନଙ୍କ ପ୍ରାଣରକ୍ଷା କରିବା ନିମିତ୍ତ ଅନୁରୋଧ ଜଣାଇଲେ । କିନ୍ତୁ ମିତ୍ର ଉତ୍ତର ଦେଲେ, 'ଦେଖନ୍ତୁ, ମୁନିଶିଷ୍ୟ ଶାପଗ୍ରସ୍ତ ହୋଇ ତୁମର ବାହନ ହୋଇଛନ୍ତି । ମୋତେ ନେବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ ।' ମୁକ୍ତାଫଳଧ୍ୱଜ ଦୀର୍ଘନିଃଶ୍ୱାସ ତ୍ୟାଗ କରି ଆଉ କିଛିଦିନ ସେଠାରେ ରହି କଣ ସବୁ ଘଟୁଛି ଦେଖିବା ନିମିତ୍ତ ଅନୁରୋଧ କଲେ । ମିତ୍ର ସଂଯତକଙ୍କ ଅପେକ୍ଷା କରିବା ବ୍ୟତୀତ ଅନ୍ୟଗତି ନଥିଲା ।

ଉଭୟ ମିତ୍ରଙ୍କ କଥାବାର୍ତ୍ତା ଶୁଣି ପଦ୍ମାବତୀ ସଖୀମାନଙ୍କୁ ଜଣାଇଲେ, 'ଦେଖ, ଏହି ପ୍ରଣୟବ୍ୟାକୁଳ ପୁରୁଷଟି ନିଶ୍ଚିତଭାବେ ମୋର ପ୍ରିୟତମ ମୁକ୍ତାଫଳକେତୁ । ଏହାଙ୍କର ପ୍ରତ୍ୟେକଟି କଥା ଓ ଆଚରଣରେ କିଛି ଅସାମଞ୍ଜସ୍ୟ ନାହିଁ । ଶାପଗ୍ରସ୍ତ ହୋଇ ସେ ମନୁଷ୍ୟ ଶରୀରରେ ଏପରି କଷ୍ଟ ଭୋଗୁଛନ୍ତି । ପୂର୍ବେ ଯେଉଁ ସିଦ୍ଧକନ୍ୟାଙ୍କୁ ମୁଁ ଉପହାସ କରି ଅଭିଶାପ ପାଇଥିଲି, ବର୍ତ୍ତମାନ ତା'ର ଫଳ ଭୋଗୁଛି ।' ଏହିପରି କଥାବାର୍ତ୍ତା କରୁକରୁ ଦିବସ ଶେଷ ହେଲା । ବିଚ୍ଛେଦରୂପ ଅରଣ୍ୟପାଇଁ ଦାବାନଳ ରୂପ ଚନ୍ଦ୍ରମା ରକ୍ତିମ ଆଭା ବିକିରଣ କରି ଉଦିତ ହେଲେ । ସମଗ୍ର ପୃଥିବୀ ଜ୍ୟୋତ୍ସ୍ନାସ୍ନାତ ହେଲା । ମୁକ୍ତାଫଳଧ୍ୱଜ ସେହି ଜ୍ୟୋତ୍ସ୍ନା ରୂପକ କନ୍ଦର୍ପାନଳରେ ଦଗ୍ଧୀଭୂତ ହେବାକୁ ଲାଗିଲେ । ଚକ୍ରବାକ ତୁଲ୍ୟ କରୁଣ ସ୍ୱର ପ୍ରକାଶ କରୁଥିବା ମୁକ୍ତାଫଳଧ୍ୱଜଙ୍କ ବେଦନା ସହ୍ୟ କରିନପାରି

ପ୍ରଚ୍ଛନ୍ନଭାବେ ରହିଥିବା ପଦ୍ମାବତୀ ତାଙ୍କୁ ଲକ୍ଷ୍ୟ କରି କହିଲେ, 'ରାଜକୁମାର ! ଆପଣ ମୋର ପୂର୍ବତନ ପ୍ରଣୟୀ ହୋଇଥିଲେ ସୁଦ୍ଧା ବର୍ତ୍ତମାନ ଅନ୍ୟ ଶରୀରରେ ଥିବା ଯୋଗୁଁ ମୋପାଇଁ ପରପୁରୁଷ ମାତ୍ର । ମୁଁ ମଧ ଆପଣଙ୍କପାଇଁ ପରସ୍ତ୍ରୀ । ଏଣୁ ଆପଣ ଏହି ପରିସ୍ଥିତିରେ ମୋତେ କାହିଁକି ଏପରି ବ୍ୟାକୁଳ ଭାବରେ ଡାକୁଛନ୍ତି ? ସେହି ମହର୍ଷିଙ୍କ କଥା ଯଦି ଅନ୍ୟଥା ହେବାର ନୁହେ, ତେବେ କିଛି ନା କିଛି ଉପାୟ ନିଶ୍ଚିତ ଭାବେ ବାହାରିବ ।'

ଗୁପ୍ତ ରୂପରେ ଥିବା ପଦ୍ମାବତୀଙ୍କ କଥା ଶୁଣି ମୁକ୍ତାଫଳଧ୍ୱଜ ଇତସ୍ତତଃ ଚାହିଁବାକୁ ଲାଗିଲେ । କିନ୍ତୁ ପ୍ରତ୍ୟକ୍ଷଭାବେ ନିଜର ପ୍ରଣୟିନୀକୁ ଦେଖିବା ସମ୍ଭବ ହେଲାନାହିଁ । ସେ ହର୍ଷ ଓ ବିଷାଦ ରୂପକ ବିଷମ ସ୍ଥିତିରେ ପଡ଼ିଗଲେ । ଉଚ୍ଚସ୍ୱରରେ କହିଲେ, 'ଦେବି ! ତୁମେ ତ ପୂର୍ବସ୍ଥିତିରେ ହିଁ ରହିଛ । ତେଣୁ ତୁମକୁ ଦେଖି ମୁଁ ସ୍ପଷ୍ଟ ଚିହ୍ନିପାରିଲି । ମୋର ପୂର୍ବଜନ୍ମ ସ୍ମୃତି ଜାଗ୍ରତ ହୋଇଛି । ତୁମେ ମୋତେ ବିଦ୍ୟାଧର ଶରୀରରେ ଥିବାବେଳେ ଦେଖିଥିଲ । ମୁଁ ଏବେ ମନୁଷ୍ୟ ଶରୀରରେ ରହିଛି । ତେଣୁ ମୋତେ ଚିହ୍ନିବାରେ ତୁମର ଭ୍ରମ ହେବା ସ୍ୱାଭାବିକ । ମୋର ଆଉ ଏହି ଶରୀରରେ ରହିବା ସମ୍ଭବ ନୁହେଁ । ଦେଖ, ମୁଁ ଏହାକୁ ତ୍ୟାଗ କରୁଛି ।'

ମୁକ୍ତାଫଳଧ୍ୱଜ ଏତିକି କହି ନୀରବ ହେବାରୁ ପଦ୍ମାବତୀ ସେଠାରୁ ଚାଲିଗଲେ । ରାତି ବଢ଼ିବାକୁ ଲାଗିଲା । ମିତ୍ରଙ୍କୁ ଟିକିଏ ଆଶ୍ୱସ୍ତ ଦେଖି ମହାବୁଦ୍ଧି ଅତ୍ୟଧିକ କ୍ଳାନ୍ତି ଯୋଗୁଁ ଗଭୀର ନିଦ୍ରାରେ ଅଭିଭୂତ ହେଲେ । ମିତ୍ରଙ୍କୁ ନିଦ୍ରିତ ଦେଖି ଏବଂ ଏହି ଶରୀରରେ ପଦ୍ମାବତୀଙ୍କୁ ଲାଭକରିବା ସମ୍ଭବ ନୁହେଁ ଜାଣି ମୁକ୍ତାଫଳଧ୍ୱଜ କାଷ୍ଠ ଖଣ୍ଡ ସଂଗ୍ରହ କରି ଚିତାଗ୍ନି ପ୍ରସ୍ତୁତ କଲେ । ବିନମ୍ର ଭାବେ 'ହେ ପ୍ରଭୁ ଅଗ୍ନିଦେବ ! ମୋର ଏହି ଶରୀର ତ୍ୟାଗ ପରେ ପୂର୍ବଶରୀରରେ ପଦ୍ମାବତୀଙ୍କୁ ଲାଭ କରିବାପାଇଁ ବର ପ୍ରଦାନ କରନ୍ତୁ' ବୋଲି ପ୍ରାର୍ଥନା ପୂର୍ବକ ମନ୍ଦିରସ୍ଥିତ ଶିବଲିଙ୍ଗଙ୍କୁ ପ୍ରଣାମ ଜଣାଇ ଚିତାଗ୍ନି ମଧ୍ୟରେ ପ୍ରବେଶ କଲେ । କିଛି ସମୟ ପରେ ମହାବୁଦ୍ଧି ଜାଗ୍ରତ ହୋଇ ଦେଖିଲେ ରାଜକୁମାର ମୁକ୍ତାଫଳଧ୍ୱଜ ସେଠାରେ ନାହାଁନ୍ତି । ସେ ଚତୁର୍ଦ୍ଦିଗ ଅନୁସନ୍ଧାନ କଲେ, କିନ୍ତୁ କୌଣସି ସ୍ଥାନରେ ରାଜକୁମାରଙ୍କ ସନ୍ଧାନ ମିଳିଲା ନାହିଁ । ସମ୍ମୁଖରେ ପ୍ରଜ୍ୱଳିତ ଅଗ୍ନିକୁ ଦେଖି, ମିତ୍ର କନ୍ଦର୍ପଜ୍ୱାଳା ସହ୍ୟ କରିନପାରି ତା' ମଧ୍ୟରେ ପ୍ରବେଶ କରିଥିବା ସମ୍ପର୍କରେ ସେ ନିଶ୍ଚିତ ହେଲେ । ତେଣୁ ମିତ୍ର ବିଚ୍ଛେଦ ଦୁଃଖ ଅସହ୍ୟଜାଣି ମହାବୁଦ୍ଧି ମଧ ସେହି ଚିତାଗ୍ନିରେ ନିଜକୁ ଆହୁତି ଦେଲେ ।

ଏସବୁ ପ୍ରତ୍ୟକ୍ଷ କରି ପଦ୍ମାବତୀ ଗଭୀର ଦୁଃଖରେ ଭାଙ୍ଗିପଡ଼ିଲେ । ସେ ମଧ୍ୟ ସଖୀମାନଙ୍କୁ କହିଲେ, 'ସଖି ! ନାରୀମାନଙ୍କ ହୃଦୟକୁ ଧିକ୍ । ତାହା ବଜ୍ରଠାରୁ ମଧ୍ୟ ଅଧିକ କଠୋର । ଏ ପ୍ରକାର ଭୀଷଣ ଦୃଶ୍ୟ ଦେଖି ମୋର ଜୀବନ ଯେ ଏପର୍ଯ୍ୟନ୍ତ ରହିଛି ତାହାହିଁ ଆଶ୍ଚର୍ଯ୍ୟ, କେତେଦିନ ଆଉ ଏହିପରି ଦୁର୍ବିସହ ଜୀବନ ଧାରଣ କରିଚାଲିବି । ଆଜିସୁଦ୍ଧା ମୋର ଦୁଃଖ ଦୂର ହେଲା ନାହିଁ । ଏହା ଯେପରି ଅନ୍ତଃହୀନ । ମୋର ଦୁର୍ଭାଗ୍ୟରୁ ମହର୍ଷିଙ୍କ ବଚନ ମଧ୍ୟ ମିଥ୍ୟା ହେଲା । ତେଣୁ ମୃତ୍ୟୁବରଣ କରିବା ବ୍ୟତୀତ ମୋର ଆଉ ଅନ୍ୟ ଗତି କଣ ଅଛି ? ଏହି ପ୍ରଜ୍ୱଳିତ ଚିତାଗ୍ନିରେ ପରପୁରୁଷ ସହିତ ପ୍ରବେଶ କରିବା ମୋ ପକ୍ଷରେ ଉଚିତ ହେବନାହିଁ । ତେଣୁ, ଦେଖ, ଆମର ବିନା ପ୍ରୟାସରେ ଲତାତନ୍ତୁଦ୍ୱାରା ନିର୍ମିତ ଏହି ପାଶ ହିଁ ମୋତେ ସମସ୍ତ ଦୁଃଖରୁ ମୁକ୍ତ କରିପାରିବ ।'

ସଖୀମାନଙ୍କୁ ଏପରି କହି ପଦ୍ମାବତୀ ମନ୍ଦିର ପ୍ରାଙ୍ଗଣରେ ଥିବା ଏକ ଅଶୋକ ବୃକ୍ଷ ନିକଟରେ ଆସି ପହଞ୍ଚିଲେ । ସଖୀମାନେ ତାଙ୍କୁ ଏଥିରୁ ନିବୃତ୍ତ କରିବାପାଇଁ ଯଥାସାଧ୍ୟ ବୁଝାଉଥାନ୍ତି । ସେ ପାଶଟିକୁ ଆଣି ନିଜ ଗଳାରେ ଲମ୍ବାଇବାପାଇଁ ଉଦ୍ୟତ ହେଲେ । ଏ ସମୟରେ ଆକସ୍ମିକ ଭାବେ ସେଠାରେ ମହର୍ଷି ତପୋଧନଙ୍କ ଆବିର୍ଭାବ ଘଟିଲା । ସେ ଆଶ୍ୱାସନା ଦେଇ କହିଲେ, 'ପୁତ୍ରି ! ଏପରି ଦୁଃସାହସ କରିବା ଉଚିତ ନୁହେଁ । ମୁଁ ଦେଇଥିବା ବଚନ କଦାପି ଅନ୍ୟଥା ହେବନାହିଁ । ତେଣୁ ଧୈର୍ଯ୍ୟଧର । ଦେଖ, ତୁମ ପ୍ରିୟତମ ଏଇମାତ୍ର ଆସି ପହଞ୍ଚୁଛନ୍ତି । ତୁମରି ତପସ୍ୟା ବଳରେ ଏବେ ସେ ଶାପମୁକ୍ତ । ତଥାପି ତପସ୍ୟା ପ୍ରତି ତୁମର ଏପରି ଅନାସ୍ଥାଭାବ କାହିଁକି ? ବିବାହର ସମୟ ନିକଟ ହୋଇ ଆସିବା ବେଳେ ତୁମେ ଏପରି ବିଷାଦିତ ହେବା ଉଚିତ ନୁହେଁ । ମୁଁ ଧ୍ୟାନ ବଳରେ ସବୁକଥା ଜାଣିପାରି ଏଠାରେ ଆସି ପହଞ୍ଚିଛି । ତେଣୁ ନିଜ ପ୍ରତିଜ୍ଞାରୁ କ୍ଷାନ୍ତ ହୁଅ ।'

ମୁନିଙ୍କ ଆଶ୍ୱାସନା ବାଣୀ ଶୁଣି ଏବଂ ତାଙ୍କୁ ସମ୍ମୁଖରେ ଦେଖି ପଦ୍ମାବତୀ ଦ୍ୱନ୍ଦ୍ୱରେ ପଡ଼ିଗଲେ । କିନ୍ତୁ ତାଙ୍କର ଏହି ନଯଯୌ ନତସ୍ଥୌ ଅବସ୍ଥା ବେଶି ସମୟ ରହିଲା ନାହିଁ । ମାନବଶରୀର ଦଗ୍ଧୀଭୂତ ହେବାରୁ ରାଜକୁମାର ମୁକ୍ତାଫଳଧ୍ୱଜ ବିଦ୍ୟାଧର ମୁକ୍ତାଫଳକେତୁ ରୂପରେ ଆସି ସେଠାରେ ଉପସ୍ଥିତ ହେଲେ । ମହାବୁଦ୍ଧି ମଧ୍ୟ ନିଜର ମାନବଶରୀର ତ୍ୟାଗ କରି ସଂଯତକ ରୂପେ ତାଙ୍କ ସହିତ ରହିଥାନ୍ତି । ନୂତନ ମେଘର ଦର୍ଶନରେ ଚକୋର ଏବଂ ପୂର୍ଣ୍ଣଚନ୍ଦ୍ର ଦର୍ଶନରେ କୁମୁଦିନୀ ପରି ପଦ୍ମାବତୀ ଆକାଶମାର୍ଗରୁ ଅବତରଣ କରୁଥିବା ନିଜର ପ୍ରିୟତମ ମୁକ୍ତାଫଳକେତୁଙ୍କୁ ଦେଖି ଉତ୍‌ଫୁଲ୍ଲିତ ହୋଇଉଠିଲେ । ତାଙ୍କ ହୃଦୟ

ଅବର୍ଣ୍ଣନୀୟ ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା । ଭୀଷଣ ମରୁସ୍ଥଳୀରେ ଶୀତଳ ଜଳସ୍ରୋତଟିଏ ପରି ପଦ୍ମାବତୀ ଚିର ପ୍ରଣୟତୃଷାର୍ତ୍ତୀ ମୁକ୍ତାଫଳକେତୁଙ୍କୁ ଆନନ୍ଦରେ ଆତ୍ମବିସ୍ମୃତ କରିଦେଲେ । ଅଭିଶାପ ରୂପକ ଅନ୍ଧକାର ରାତ୍ରି ଶେଷ ହେବାରୁ ଉଭୟଙ୍କର ମିଳନ ଘଟିଲା । ଚକ୍ରବାକ ଚକ୍ରବାକୀ ପରି ସେମାନେ ପୁନର୍ମିଳିତ ହେଲେ । ସୂର୍ଯ୍ୟପ୍ରଭ ତେଜସ୍ୱୀ ତପୋଧନ ତାଙ୍କ ଚରଣରେ ପ୍ରଣିପାତ କରୁଥିବା ପ୍ରଣୟୀ ଯୁଗଳକୁ ଆଶୀର୍ବାଦ ପ୍ରଦାନ କଲେ ।

ରାତ୍ରି ପ୍ରଭାତ ହେଲା । ମୁକ୍ତାଫଳଧ୍ୱଜଙ୍କ ଅନୁସନ୍ଧାନରେ ବାହାରି ପିତା ମେରୁଧ୍ୱଜ ଇନ୍ଦ୍ରପ୍ରଦତ୍ତ ହସ୍ତୀ ପୃଷ୍ଠରେ ଆରୋହଣ କରି ରାଣୀ ଓ କନିଷ୍ଠ ପୁତ୍ର ସହିତ ସେଠାରେ ଆସି ପହଞ୍ଚିଲେ । ବିମାନ ଆରୋହଣ ପୂର୍ବକ ଦୈତ୍ୟରାଜ ତ୍ରୈଲୋକ୍ୟମାଳୀ ମଧ୍ୟ କନ୍ୟା ତ୍ରୈଲୋକ୍ୟପ୍ରଭା ଓ ଅନ୍ୟାନ୍ୟ ପରିଜନମାନଙ୍କ ସହିତ ସେଠାରେ ଆସି ଅବତରଣ କଲେ । ମହର୍ଷି ତପୋଧନ ସମସ୍ତଙ୍କ ସମ୍ମୁଖରେ ନିର୍ଦ୍ଦିଷ୍ଟ କାର୍ଯ୍ୟସାଧନ ନିମିତ୍ତ ମୁକ୍ତାଫଳକେତୁ ଅଭିଶପ୍ତ ହୋଇଥିବା ବୃତ୍ତାନ୍ତ ବର୍ଣ୍ଣନା କରି ସମସ୍ତଙ୍କୁ ଶୁଣାଇଲେ । ମୁକ୍ତାଫଳକେତୁଙ୍କ ଶାପମୁକ୍ତି ସମସ୍ତଙ୍କୁ ଆନନ୍ଦ ପ୍ରଦାନ କଲା । ସେମାନେ ପ୍ରାଣ ବିସର୍ଜନ ସଙ୍କଳ୍ପରୁ ନିବୃତ୍ତ ହୋଇ ଶୋକରହିତ ହେଲେ ।

ଏ ସମୟରେ ତ୍ରୈଲୋକ୍ୟପ୍ରଭାଙ୍କ ମନରେ ତାଙ୍କର ପୂର୍ବଜନ୍ମ ସ୍ମୃତି ଜାଗ୍ରତ ହେଲା । ସେ ମନେମନେ ଭାବିଲେ 'ଆରେ ! ମୁଁ ତ ସେହି ସିଦ୍ଧ ରାଜକୁମାରୀ ଦେବପ୍ରଭା । ବିଦ୍ୟାଧର ଚକ୍ରବର୍ତ୍ତୀଙ୍କୁ ପତି ରୂପରେ ଲାଭ କରିବାପାଇଁ ଏହି ପଦ୍ମାବତୀ ମୋତେ ଉପହାସ କରିଥିଲେ । ପତିଙ୍କପାଇଁ ମୋ ପରି ତପସ୍ୟା କରିବାକୁ ପଡ଼ିବ ବୋଲି ମୁଁ ସେତେବେଳେ ତାଙ୍କୁ କହିଥିଲି । ବହୁଦିନ ଧରି ମୋର କାମନା ଫଳବତୀ ନହେବା ଯୋଗୁଁ ମୁଁ ଅଗ୍ନିରେ ଆତ୍ମ ବିସର୍ଜନ କରିଥିଲି । ଫଳରେ ଅସୁର କୁଳରେ ମୋର ଜନ୍ମ ହେଲା । ସେହି ଜନ୍ମରେ ମୁଁ ଯେଉଁ ପୁରୁଷ ମୁକ୍ତାଫଳଧ୍ୱଜଙ୍କ ପ୍ରତି ଆସକ୍ତ ଥିଲି ସେ ତ ଏହି ପୁରୁଷ । ବର୍ତ୍ତମାନ ସେ ନିଜର ପୂର୍ବ ବିଦ୍ୟାଧର ରୂପ ଫେରିପାଇଛନ୍ତି । ବର୍ତ୍ତମାନ ମୁଁ ଅସୁର ବଂଶଜାତ କନ୍ୟା ରୂପରେ ତାଙ୍କ ନିକଟକୁ ଯିବା ଉଚିତ ହେବ ନାହିଁ । ଏଥିପାଇଁ ମୋତେ ପୁଣି ଅଗ୍ନିରେ ଝାସ ଦେବାକୁ ପଡ଼ିବ । ତାହାହେଲେ ନୂତନ ଶରୀର ଧାରଣ ପୂର୍ବକ ମୁଁ ଏହି ବିଦ୍ୟାଧର ମୁକ୍ତାଫଳକେତୁଙ୍କୁ ଲାଭ କରିପାରିବି ।'

ପିତାମାତାଙ୍କୁ ନିଜର ପରିଚୟ ଓ ଅଭିଳାଷ ଜଣାଇ ତ୍ରୈଲୋକ୍ୟପ୍ରଭା ମୁକ୍ତାଫଳଧ୍ୱଜ ଆତ୍ମାହୂତି ଦେଇଥିବା ଚିତାଗ୍ନିରେ ପ୍ରବେଶ କରିବା ଫଳରେ ଅଗ୍ନିଦେବ ଅନୁଗ୍ରହ କରି

ତାଙ୍କୁ ପୂର୍ବ ଶରୀର ଫେରାଇ ଦେଲେ । କେବଳ ସେତିକି ନୁହେଁ, ସେ ନିଜେ ତାଙ୍କୁ ସଙ୍ଗରେ ଧରି ମୁକ୍ତାଫଳକେତୁଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ, 'ମୁକ୍ତାଫଳକେତୁ ! ଏହି ଦେବପ୍ରଭା ତୁମକୁ ଲାଭ କରିବା ଉଦ୍ଦେଶ୍ୟରେ ମୋ ମଧ୍ୟରେ ଆତ୍ମ ବିସର୍ଜନ ଦେଇଛନ୍ତି । ଏ ହେଉଛନ୍ତି ସିଦ୍ଧରାଜଙ୍କ କନ୍ୟା ଦେବପ୍ରଭା । ତୁମେ ତାଙ୍କୁ ପତ୍ନୀ ରୂପରେ ଗ୍ରହଣ କର ।' ଏହା କହି ଅଗ୍ନିଦେବ ଅନ୍ତର୍ହିତ ହେଲେ । ଏ ସମୟରେ ଦେବରାଜ ଇନ୍ଦ୍ର, ଅନ୍ୟାନ୍ୟ ଦେବତା ଓ ବ୍ରହ୍ମା ସେଠାରେ ଆସି ପହଞ୍ଚିଥାନ୍ତି । ବିଦ୍ୟାଧରରାଜ ଚନ୍ଦ୍ରକେତୁ ଏବଂ ଗନ୍ଧର୍ବରାଜ ପଦ୍ମଶେଖର ମଧ୍ୟ ଏକ ସମୟରେ ସେଠାରେ ଆସି ଉପସ୍ଥିତ ହେଲେ । ମୁକ୍ତାଫଳକେତୁ ସମସ୍ତଙ୍କୁ ଅଭିବାଦନ କରି ଯଥୋଚିତ ସତ୍କାର କରିବାରେ ଅବହେଳା କଲେ ନାହିଁ । ଦେବତାମାନଙ୍କ ସହିତ ପରିବାରର ସମସ୍ତ ସଦସ୍ୟଙ୍କୁ ସେଠାରେ ଉପସ୍ଥିତ ଦେଖି ବିଭୂତିବାନ୍ ଗନ୍ଧର୍ବରାଜ ପଦ୍ମଶେଖର ମୁକ୍ତାଫଳକେତୁଙ୍କ ହସ୍ତରେ ପଦ୍ମାବତୀଙ୍କୁ ଯଥାବିଧି ସମର୍ପଣ କଲେ ।

ରାଜକୁମାର ଚିରକାଳରୁ ଉତ୍ସୁକତା ସହିତ ପ୍ରତୀକ୍ଷା କରିଥିବା ପଦ୍ମାବତୀଙ୍କୁ ଲାଭ କରି ନିଜ ଜନ୍ମକୁ ସାର୍ଥକ ମନେକଲେ । ଅଗ୍ନିଦେବଙ୍କ ସାକ୍ଷାତରେ ସିଦ୍ଧକନା ଦେବପ୍ରଭାଙ୍କ ସହିତ ମଧ୍ୟ ତାଙ୍କର ବିବାହ ସମ୍ପନ୍ନ ହେଲା । ଅସୁରରାଜ କନ୍ୟା ତ୍ରିଭୁବନପ୍ରଭା ମଧ୍ୟ ପିତାଙ୍କ ସମ୍ମତିକ୍ରମେ କନିଷ୍ଠ ରାଜକୁମାର ମଳୟଧ୍ୱଜଙ୍କ ପାଣି ଗ୍ରହଣ କଲେ ।

ରାଜା ମେରୁଧ୍ୱଜ ପୁତ୍ରମାନଙ୍କ ଐଶ୍ୱର୍ଯ୍ୟ ଏବଂ ପୁତ୍ରବଧୂମାନଙ୍କ ସୌଭାଗ୍ୟରେ ଅତ୍ୟନ୍ତ ପ୍ରୀତ ହେଲେ । ସସାଗରା ପୃଥିବୀକୁ ସେ ପୁତ୍ର ମଳୟଧ୍ୱଜଙ୍କ ହସ୍ତରେ ସମର୍ପଣ କରି ତାଙ୍କୁ ରାଜପଦରେ ଅଭିଷିକ୍ତ କଲେ । ତାଙ୍କର ସମସ୍ତ ସାଂସାରିକ କାମନା ଚରିତାର୍ଥ ହେଲା । ସେ ପତ୍ନୀଙ୍କ ସହିତ ତପସ୍ୟା ଆଚରଣ କରିବା ନିମିତ୍ତ ସନ୍ନ୍ୟାସ ଗ୍ରହଣ କଲେ । ଅସୁରରାଜ ତ୍ରୈଲୋକ୍ୟମାଳୀ କନ୍ୟା ଓ ଜାମାତାଙ୍କଠାରୁ ବିଦାୟ ଗ୍ରହଣ କରି ନିଜର ପାତାଳ ଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ଦେବରାଜ ଇନ୍ଦ୍ର ମଧ୍ୟ ପ୍ରୀତ ହୋଇ ବିଦ୍ୟୁଦ୍‌ଧ୍ୱଜଙ୍କ ସାମ୍ରାଜ୍ୟଲକ୍ଷ୍ମୀ ମୁକ୍ତାଫଳକେତୁଙ୍କ ହସ୍ତରେ ନ୍ୟସ୍ତ କଲେ । ଏ ସମୟରେ ଆକାଶମାର୍ଗରୁ ଶୂନ୍ୟବାଣୀ ଶୁଣାଗଲା ଏହି ମୁକ୍ତାଫଳକେତୁ ଅସୁର ଓ ବିଦ୍ୟାଧରମାନଙ୍କ ସାମ୍ରାଜ୍ୟର ଅଧିପତି ହେବେ । ବର୍ତ୍ତମାନ ସ୍ୱର୍ଗରାଜ୍ୟ ବିପଦମୁକ୍ତ । ଦେବତାମାନେ ନିଜ ନିଜ ସ୍ଥାନକୁ ଫେରିଯାଆନ୍ତୁ ।

ଆକାଶବାଣୀ ଶୁଣି ଦେବତାମାନେ ବ୍ରହ୍ମା ଓ ଇନ୍ଦ୍ରଙ୍କ ସହିତ ସ୍ୱର୍ଗରାଜ୍ୟ ଅଭିମୁଖରେ ଅଗ୍ରସର ହେଲେ । ଶାପମୁକ୍ତ ଶିଷ୍ୟ ଦୃଢ଼ବ୍ରତ ସହିତ ମହର୍ଷି ତପୋଧନ ସ୍ୱ ଆଶ୍ରମରେ

ଯାଇ ନିର୍ବିଘ୍ନ ତପସ୍ୟାରେ ନିମଜ୍ଜିତ ରହିଲେ । ଉଭୟ ପତ୍ନୀଙ୍କଦ୍ୱାରା ଶୋଭାପାଉଥିବା ମୁକ୍ତାଫଳକେତୁଙ୍କୁ ସଙ୍ଗରେ ଧରି ରାଜା ଚନ୍ଦ୍ରକେତୁ ମଧ୍ୟ ବିଦ୍ୟାଧର ଲୋକକୁ ଫେରିଗଲେ । ସେଠାରେ ଚିରକାଳ ପର୍ଯ୍ୟନ୍ତ ବିଦ୍ୟାଧର ସାମ୍ରାଜ୍ୟଲକ୍ଷ୍ମୀ ଭୋଗକରି ସେ ପରିଣତ ବୟସରେ ପୁତ୍ର ମୁକ୍ତାଫଳକେତୁ ହସ୍ତରେ ରାଜ୍ୟଭାର ସମର୍ପଣ କରି ମହର୍ଷି ତପୋଧନଙ୍କ ଆଶ୍ରମକୁ ଚାଲିଗଲେ ।

ମୁକ୍ତାଫଳକେତୁ ଦେବରାଜ ଇନ୍ଦ୍ରଙ୍କଦ୍ୱାରା ପ୍ରାପ୍ତ ବିଦ୍ୟୁଦ୍‌ଧ୍ୱଜର ଅସୁର ସାମ୍ରାଜ୍ୟ ଲାଭ କରିଥିଲେ । ବର୍ତ୍ତମାନ ପିତାଙ୍କଠାରୁ ପ୍ରାପ୍ତ ବିଦ୍ୟାଧର ସାମ୍ରାଜ୍ୟ ସେଥିରେ ସଂଯୁକ୍ତ ହେଲା । ପଦ୍ମାବତୀ ତାଙ୍କ ପାରିବାରିକ ଜୀବନକୁ ସୁଖଶାନ୍ତିରେ ଭରିଦେଉଥାନ୍ତି । ରାଜଲକ୍ଷ୍ମୀ ଓ ଗୃହଲକ୍ଷ୍ମୀଙ୍କ ମଧ୍ୟରେ କାଳାତିପାତ କରି ସୌଭାଗ୍ୟଶାଳୀ ସମ୍ରାଟ ମୁକ୍ତାଫଳକେତୁ ଯଶସ୍ୱୀ ହେଲେ । ପରିଣତ ବୟସରେ ପାର୍ଥିବସୁଖ ସୌଭାଗ୍ୟ ପ୍ରତି ବିରକ୍ତି ଜାତ ହେବାରୁ ସେ ମୁନିରାଜ ତପୋଧନଙ୍କ ତପୋବନ ମଧ୍ୟକୁ ଚାଲିଗଲେ । ଦେବସେବା, ସ୍ୱାଧ୍ୟାୟ, ସତ୍‌ସଙ୍ଗଦ୍ୱାରା ସେଠାରେ କିଛିଦିନ କାଳାତିପାତ କରିବା ପରେ ଏକ ଦୀପ୍ତଜ୍ୟୋତିରେ ପରିଣତ ହୋଇ ଶେଷରେ ସେ ଭଗବାନ ଶଙ୍କରଙ୍କ ଶରୀରରେ ଲୀନ ହୋଇଗଲେ ।

ହଂସଯୁଗଳଙ୍କ ମୁଖରୁ ଏପ୍ରକାର ସରସ କଥା ଶ୍ରବଣ କରିବା ମାତ୍ରେ ରାଜା ବ୍ରହ୍ମଦତ୍ତଙ୍କ ପୂର୍ବଜନ୍ମ କଥା ସ୍ମରଣ ହେଲା । ସେ ନିଜର ପତ୍ନୀ ଏବଂ ସଚିବମାନଙ୍କ ସହିତ ହଂସଯୁଗଳକୁ ଧରି ସିଦ୍ଧୀଶ୍ୱର କ୍ଷେତ୍ରରେ ଯାଇ ଉପନୀତ ହେଲେ । କ୍ଷେତ୍ର ପ୍ରଭାବରୁ ସମସ୍ତଙ୍କର ପାପ କ୍ଷାଳିତ ହେଲା । ସେମାନେ ଅଭିଶପ୍ତ ଶରୀର ତ୍ୟାଗ କରି ଗଣରୂପରେ ପୁଣି ଶିବଲୋକ ପ୍ରାପ୍ତ ହେଲେ ।

ମଦନମଞ୍ଜୁକାଙ୍କ ବିରହରେ ମୁଁ ଯେତେବେଳେ ସନ୍ତପ୍ତ ଥିଲି ସେତେବେଳେ ଗୋମୁଖଙ୍କ ଏହି ସରସକଥା କିଛି ସମୟ ପାଇଁ ମୋତେ ବିରହଜ୍ୱାଳାରୁ ମୁକ୍ତ କରିଥିଲା ।

ଚକ୍ରବର୍ତ୍ତୀ ସମ୍ରାଟ ନରବାହନଦତ୍ତଙ୍କଠାରୁ ତାଙ୍କ ବିଚିତ୍ର ଅନୁଭୂତି ଶୁଣି ମହର୍ଷି କଶ୍ୟପଙ୍କ ଆଶ୍ରମରେ ଥିବା ମୁନି ଓ ମୁନିପତ୍ନୀ ଏବଂ ମାତୁଳ ଗୋପାଳକ ଅତ୍ୟନ୍ତ ଆନନ୍ଦିତ ହେଲେ ।





ଚନ୍ଦ୍ରାନନାର୍ଧଦେହାୟ ଚନ୍ଦ୍ରାଂଶୁସିତଭୂତୟେ
ଚନ୍ଦ୍ରାର୍କାନଲନେତ୍ରାୟ ଚନ୍ଦ୍ରାର୍ଧଶିରସେ ନମଃ ।
କରେଣ କୁଞ୍ଚିତାଗ୍ରେଣ ଲୀଲୟୋନ୍ନମିତେନ ଯଃ
ଭାତି ସିଦ୍ଧୀରିବ ଦଦସ୍ତ ପାୟାଦ୍‌ବୋ ଗଜାନନଃ ।



## ପ୍ରଥମ ତରଙ୍ଗ

## ନରବାହନଦତ୍ତଙ୍କ ବିରହାନୁଭୂତି

ଚତୁର୍ମାସ୍ୟା ଶେଷ ହୋଇନଥାଏ । ବିଦ୍ୟାଧର ସମ୍ରାଟ୍ ନରବାହନଦତ୍ତ ଅସିତ ଗିରି ଉପରେ ମହର୍ଷି କଶ୍ୟପଙ୍କ ଆଶ୍ରମ ମଧ୍ୟରେ କାଳାତିପାତ କରୁଥାନ୍ତି । ସେ ଗୋମୁଖଙ୍କଠାରୁ ଶୁଣିଥିବା ସରସ କଥାଟି ଶୁଣାଇବା ପରେ ପୁଣି ଦିନେ ମୁନି, ମୁନିପତ୍ନୀ ଓ ମାତୁଳ ଗୋପାଳକଙ୍କୁ ଏକତ୍ର ଦେଖି କହିବା ଆରମ୍ଭ କଲେ–

'ଦେବୀ ମଦନମଞ୍ଜୁକାଙ୍କ ବିରହରେ ମୁଁ ଦିନଯାପନ କରୁଥିବା ବେଳେ ମୋ ପ୍ରତି ଆସକ୍ତା ବେଗବତୀ ମୋତେ ବିଦ୍ୟାମାନଙ୍କ ହସ୍ତରେ ସମର୍ପଣ କଲେ । ପରଦେଶରେ ଜୀବନଯାପନ ଏବଂ ମଦନମଞ୍ଜୁକାଙ୍କଠାରୁ ବିରହ ମୋତେ ସର୍ବଦା ବ୍ୟଥିତ କରୁଥାଏ । ଏହିପରି ଚିନ୍ତାକୁଳ ଭାବରେ ମୁଁ ଅନିର୍ଦ୍ଦିଷ୍ଟଭାବେ ବନଭୂମିରେ ପଦଚାରଣା କରୁଥିବା ବେଳେ ଦିନେ ଆକସ୍ମିକ ଭାବରେ ମହର୍ଷି କଣ୍ୱଙ୍କ ଦର୍ଶନଲାଭ କଲି । ମୁଁ ତାଙ୍କ ଚରଣସ୍ପର୍ଶ କରି ପ୍ରଣିପାତ କରନ୍ତେ ସେ ଧ୍ୟାନବଳରେ ମୋ ସମ୍ପର୍କରେ ସବୁକିଛି ଜାଣିପାରିଲେ ଏବଂ ମୋତେ ଆଶୀର୍ବାଦ କରି ତାଙ୍କ ଆଶ୍ରମକୁ ନେଇଗଲେ । ମୁଁ ଆଶ୍ରମର ପବିତ୍ର ବାତାବରଣ ମଧ୍ୟରେ କିଛି ଆଶ୍ୱସ୍ତ ହେଲି । ସେ ମୋତେ ନିକଟରେ ବସାଇ କହିଲେ, 'ବତ୍ସ ! ତୁମେ ସୋମବଂଶରେ ଜନ୍ମଗ୍ରହଣ କରିଛ । ତୁମ ବୀରତ୍ୱର ପଟାନ୍ତର ନାହିଁ ତଥାପି ତୁମେ ଏପରି ମୋହଗ୍ରସ୍ତ ହୋଇପଡୁଛ ! ଏହା ତୁମ ପ୍ରତି ଶୋଭନୀୟ ନୁହେ । ଦେବତାମାନଙ୍କର କଥା କେବେ ଅନ୍ୟଥା ହୁଏ ନାହିଁ ତଥାପି ତୁମେ ସେଥିରେ ଅବିଶ୍ୱାସ କରି ବସୁଛ । ଏହି ସଂସାରରେ ଅସମ୍ଭବ ବୋଲି କିଛି ନାହିଁ । ଅଦ୍ଭୁତ ଭାବରେ ଏଠାରେ ବିରହ ଓ ମିଳନ ସମ୍ଭବ ହୋଇଥାଏ । ଏ ସମ୍ପର୍କରେ ବିକ୍ରମାଦିତ୍ୟଙ୍କ ଏପରି ଏକ କଥା ତୁମକୁ କହୁଛି, ଧ୍ୟାନଦେଇ ଶୁଣ–

## ବିକ୍ରମାଦିତ୍ୟ କଥା

'ଅବନ୍ତୀ ରାଜ୍ୟରେ ଉଜ୍ଜୟିନୀ ବୋଲି ଏକ ନଗରୀ ଅଛି । ଭଗବାନ ଶଙ୍କରଙ୍କ ଆବାସସ୍ଥଳୀ ହୋଇଥିବା ଯୋଗୁଁ ଏହା ବିଶ୍ୱବିଖ୍ୟାତ । ସୃଷ୍ଟିର ଆରମ୍ଭରେ ସ୍ୱୟଂ ବିଶ୍ୱକର୍ମା

ଏହାକୁ ନିର୍ମାଣ କରିଥିଲେ । ସତୀସାଧ୍ୱୀ ନାରୀ ପରପୁରୁଷଦ୍ୱାରା ଅଧର୍ଷଣୀୟା ହେବା ପରି ଶତ୍ରୁଦ୍ୱାରା ଏହା ଅଧୃଷ୍ୟା । ପଦ୍ମିନୀ ତୁଲ୍ୟ ଏହା ଲକ୍ଷ୍ମୀଙ୍କ ନିତ୍ୟ ଆବାସସ୍ଥଳୀ । ସଜ୍ଜନମାନଙ୍କ ଧୀଶକ୍ତି ତୁଲ୍ୟ ଏହା ଧର୍ମପ୍ରାଣ ନାଗରିକଙ୍କଦ୍ୱାରା ଅଧ୍ୟୁଷିତା । ପୁଣି ପୃଥିବୀ ତୁଲ୍ୟ ଏହା ବିଭିନ୍ନ କୌତୂହଳପୂର୍ଣ୍ଣ ପଦାର୍ଥଦ୍ୱାରା ପରିପୂର୍ଣ୍ଣ ।

ଏହି ନଗରୀରେ ମହେନ୍ଦ୍ରାଦିତ୍ୟ ବୋଲି ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଅମରାବତୀର ଦେବରାଜ ଇନ୍ଦ୍ରଙ୍କ ତୁଲ୍ୟ ପରାକ୍ରମ ଓ ବିଭବଶାଳୀ ଥିଲେ । ଶତ୍ରୁମାନେ ତାଙ୍କୁ ଦୂରରୁ ଭୟ କରୁଥିଲେ । ସେ ବୀରତ୍ୱରେ ଶସ୍ତ୍ରାୟୁଧ ଥିଲେ ମଧ୍ୟ ରୂପରେ ଥିଲେ କୁସୁମାୟୁଧ । ଦାନ ଦେବାରେ ତାଙ୍କର ହସ୍ତ ଯେପରି ମୁକ୍ତ ଥିଲା, ଖଡ୍‌ଗଧାରଣ ବେଳେ ମୁଷ୍ଟି ତାଙ୍କର ସେହିପରି ଦୃଢ଼ ଓ କଠୋର ଥିଲା । ସୌମ୍ୟଦର୍ଶନା ଥିଲେ ତାଙ୍କ ପଟ୍ଟମହିଷୀ । ଇନ୍ଦ୍ରଙ୍କ ସହିତ ଶଚୀ, ଶିବଙ୍କ ସହିତ ପାର୍ବତୀ ଏବଂ ବିଷ୍ଣୁଙ୍କ ସହିତ ଲକ୍ଷ୍ମୀପରି ସେ ଶୋଭାପାଉଥାନ୍ତି । ମହେନ୍ଦ୍ରାଦିତ୍ୟଙ୍କ ମହାମନ୍ତ୍ରୀ ଥିଲେ ସୁମତି । ପରମ୍ପରାଗତ ତାଙ୍କ ପ୍ରତିହାରର ନାମ ଥିଲା ବଜ୍ରାୟୁଧ । ଏମାନଙ୍କ ସହାୟତାରେ ରାଜ୍ୟ ସୁଶାସିତ ଥିଲା । ରାଜା ସନ୍ତାନହୀନ ଥିବା ଯୋଗୁଁ ପୁତ୍ରଟିଏ କାମନା କରି ସର୍ବଦା ଭଗବାନ ଶଙ୍କରଙ୍କ ଆରାଧନାରେ ନିମଜ୍ଜିତ ରହୁଥାନ୍ତି ।

ରାଜା ମହେନ୍ଦ୍ରାଦିତ୍ୟ ପୃଥିବୀରେ ରାଜତ୍ୱ କରୁଥିବାବେଳେ ସ୍ୱର୍ଗରାଜ୍ୟ ମ୍ଳେଚ୍ଛମାନଙ୍କଦ୍ୱାରା ଉପଦ୍ରୁତ ହେଉଥାଏ । ସେମାନଙ୍କଦ୍ୱାରା ଉତ୍ପୀଡ଼ିତ ହୋଇ ଦେବତାମାନେ ଇନ୍ଦ୍ରଙ୍କ ସହିତ ଯାଇ ଭଗବାନ ଶଙ୍କରଙ୍କୁ ସାକ୍ଷାତ କଲେ । ଦେବତାମାନଙ୍କ ଆବାସଭୂମି କୈଳାସଶିଖରୀ ଉତ୍ତରଦିକ୍‌ବଧୂର ନିର୍ମଳହାସ୍ୟ ପରି ଶୋଭା ପାଉଥାଏ । ଦେବତାମାନଙ୍କୁ ପ୍ରଣାମ କରୁଥିବା ଦେଖି କୈଳାସପତି ଶିବ ସେମାନଙ୍କୁ ଆସିବାର କାରଣ ଜିଜ୍ଞାସା କଲେ । ଦେବତାମାନେ ନିବେଦନ କଲେ, 'ଦେବ ! ଆପଣ ଏବଂ ଭଗବାନ ବିଷ୍ଣୁ ଯେଉଁ ଅସୁରମାନଙ୍କୁ ସଂହାର କରିଥିଲେ ସେ ସମସ୍ତେ ଏବେ ପୃଥିବୀ ପୃଷ୍ଠରେ ମ୍ଳେଚ୍ଛ ରୂପେ ପୁଣି ଜନ୍ମଗ୍ରହଣ କରିଛନ୍ତି । ଏମାନେ ବ୍ରାହ୍ମଣମାନଙ୍କୁ ହତ୍ୟା କରୁଛନ୍ତି, ଯଜ୍ଞ ଇତ୍ୟାଦି ମଙ୍ଗଳ କାର୍ଯ୍ୟରେ ବିଘ୍ନ ଘଟାଉଛନ୍ତି, ମୁନିକନ୍ୟାମାନଙ୍କୁ ବଳାତ୍କାରରେ ହରଣ କରିନେଉଛନ୍ତି, ଏପରି ଆହୁରି ବହୁ କୁକାର୍ଯ୍ୟରେ ସେମାନେ ଲିପ୍ତ । ବ୍ରାହ୍ମଣମାନେ ଦେଉଥିବା ଯଜ୍ଞର ଆହୁତିରେ ଦେବତାମାନେ ସର୍ବଦା ତୃପ୍ତ ହେବା କଥା । ଦେବଲୋକ ଭୂଲୋକଦ୍ୱାରା ତ ପରିପୋଷିତ । ବର୍ତ୍ତମାନ ମ୍ଳେଚ୍ଛମାନଙ୍କଦ୍ୱାରା ଏହା ଆକ୍ରାନ୍ତ ହେବାରୁ ବଷଟ୍‌କାର ରୂପକ ବେଦମନ୍ତ୍ର ଆଉ ଉଚ୍ଚାରିତ ହେଉନାହିଁ । ଯଜ୍ଞଭାଗ

ନ ପାଇ ଦେବତାମାନେ ଅବସନ୍ନ ହୋଇପଡ଼ିଲେଣି । ଏଥିପାଇଁ ଆପଣ କିଛି ଉପାୟ କରନ୍ତୁ । ପୃଥିବୀ ପୃଷ୍ଠରେ ଏପରି କୌଣସି ବୀରପୁରୁଷଙ୍କୁ ଅବତରଣ କରାନ୍ତୁ, ଯାହାଦ୍ୱାରା ମ୍ଳେଚ୍ଛମାନଙ୍କ ଉପଦ୍ରବ ଶାନ୍ତ ହେବ ।'

ଦେବଦେବ ମହାଦେବ ସେମାନଙ୍କ ପ୍ରାର୍ଥନା ଶୁଣି ପ୍ରସନ୍ନତା ପ୍ରଦର୍ଶନ ପୂର୍ବକ କହିଲେ, 'ଏବେ ତୁମେ ନିଜ ନିଜ ସ୍ଥାନକୁ ଫେରିଯାଅ । ଅଧିକ ବିଚଳିତ ହୁଅ ନାହିଁ । ଆଶ୍ୱସ୍ତ ହୋଇ ନିଜ ନିଜ କର୍ମ ସମ୍ପାଦନ କର । ମୁଁ ଏଥି ନିମିତ୍ତ କିଛି ଉପାୟ କରୁଛି ।' ଏହିପରି ଆଶ୍ୱାସନା ଦେଇ ଗୌରୀପତି ସେମାନଙ୍କୁ ବିଦାୟ ଦେଲେ ।

ଦେବତାମାନେ ଚାଲିଯିବା ପରେ ଦେବୀ ପାର୍ବତୀଙ୍କ ସହିତ ପରାମର୍ଶ କରି ସେ ନିଜର ବିଶ୍ୱସ୍ତ ଗଣ ମାଲ୍ୟବାନ୍‌କୁ ଡାକି ଆଦେଶ ଦେଲେ ଯେ ସେ ଯାଇ ପୃଥିବୀ ପୃଷ୍ଠରେ ଥିବା ଉଜ୍ଜୟିନୀ ନଗରୀରେ ରାଜା ମହେନ୍ଦ୍ରାଦିତ୍ୟଙ୍କ ପୁତ୍ର ରୂପେ ଅବତାର ଗ୍ରହଣ କରୁ । ରାଜା ମହେନ୍ଦ୍ରାଦିତ୍ୟ ତାଙ୍କ ନିଜ ଅଂଶରୁ ଏବଂ ତାଙ୍କ ପଟ୍ଟମହିଷୀ ଦେବୀ ପାର୍ବତୀଙ୍କ ଅଂଶରୁ ଜନ୍ମଗ୍ରହଣ କରିଥିବା ଯୋଗୁଁ ତା'ର କୌଣସି କ୍ଷତି ହେବ ନାହିଁ । ସେ ବୈଦିକ ଧର୍ମକୁ ନଷ୍ଟ କରୁଥିବା ସମସ୍ତ ମ୍ଳେଚ୍ଛଙ୍କୁ ସଂହାର କରି ଦେବକାର୍ଯ୍ୟ ସିଦ୍ଧ କରିବ ଏବଂ ତାଙ୍କ ଅନୁଗ୍ରହରୁ ସପ୍ତଦ୍ୱୀପମୟ ପୃଥିବୀରେ ଦୀର୍ଘକାଳ ରାଜତ୍ୱ କରି ପୁଣି ତାଙ୍କ ନିକଟକୁ ଫେରିଆସିବ । ପୃଥିବୀ ପୃଷ୍ଠରେ ଯକ୍ଷ, ରାକ୍ଷସ ଓ ବେତାଳମାନେ ତା'ର ବଶୀଭୂତ ହେବେ । ପ୍ରଭୁଙ୍କଠାରୁ ଏପରି ଆଦେଶ ପାଇ ମାଲ୍ୟବାନ୍ ଜଣାଇଲା, 'ଆପଣଙ୍କ ଆଦେଶ ମୋର ଶିରୋଧାର୍ଯ୍ୟ । କିନ୍ତୁ ମନୁଷ୍ୟ ଲୋକରେ ଉପଭୋଗ କରିବାର କଣ ଅଛି ? ସେଠାରେ ତ ସର୍ବଦା ବନ୍ଧୁ, ବାନ୍ଧବ, ସ୍ୱଜନ, ମିତ୍ର ଓ ଅନୁଚରମାନଙ୍କ ବିଚ୍ଛେଦଜନିତ ଦୁଃଖ ଲାଗି ରହିଛି । ଅର୍ଥହାନୀ, ବାର୍ଦ୍ଧକ୍ୟ, ରୋଗ ଇତ୍ୟାଦି ତ ମନୁଷ୍ୟମାନଙ୍କୁ ସର୍ବଦା ଦୁଃଖ ଦେଇଥାନ୍ତି ।' ପ୍ରିୟ ସେବକର ଏ ପ୍ରକାର ବିନତିରେ ମଙ୍ଗଳମୟ ଭଗବାନ କହିଲେ ଯେ ତାର ଅଖଣ୍ଡ ପୁଣ୍ୟ ଯୋଗୁଁ ସେ ମର୍ତ୍ତ୍ୟଲୋକରେ ଏପରି କୌଣସି ଦୁଃଖ ଭୋଗ କରିବ ନାହିଁ । ତାଙ୍କ ଅନୁଗ୍ରହରୁ ମନୁଷ୍ୟ ଶରୀରରେ ସେ କେବଳ ସୁଖ ହିଁ ଲାଭ କରିବ । ମହାଦେବଙ୍କଠାରୁ ଏପରି ଅଭୟବାଣୀ ଶୁଣି ମାଲ୍ୟବାନ୍ ସେଠାରୁ ନିଷ୍କ୍ରାନ୍ତ ହେଲା ।

ଏ ସମୟରେ ଉଜ୍ଜୟିନୀର ଅଧିପତି ମହେନ୍ଦ୍ରାଦିତ୍ୟଙ୍କ ରାଣୀ ଋତୁମତୀ ଥାନ୍ତି । ମାଲ୍ୟବାନ୍ ତାଙ୍କ ଗର୍ଭରେ ଯାଇ ପ୍ରବେଶ କଲା । ସେବକ ଆଦେଶ ପାଳନ କରିଥିବା ଦେଖି ଭକ୍ତବତ୍ସଳ ଶିବ ରାଜା ମହେନ୍ଦ୍ରାଦିତ୍ୟଙ୍କୁ ସ୍ୱପ୍ନରେ ଆଦେଶ ଦେଲେ, 'ବତ୍ସ ! ମୁଁ

ତୁମ ଉପରେ ସନ୍ତୁଷ୍ଟ । ନିକଟରେ ତୁମେ ଏକ ଅମିତ ପ୍ରଭାବଶାଳୀ ପୁତ୍ରଲାଭ କରିବ । ସେହି ପୁତ୍ର ସପ୍ତଦ୍ୱୀପା ପୃଥିବୀ ଉପରେ ନିଜର ଅଖଣ୍ଡ ଆଧିପତ୍ୟ ବିସ୍ତାର କରି ମ୍ଲେଚ୍ଛମାନଙ୍କୁ ସଂହାର କରିବ । ପାତାଳ ଓ ଆକାଶରେ ବିଚରଣ କରୁଥିବା ଯକ୍ଷ, ରାକ୍ଷସ, ପିଶାଚ, ବେତାଳ ପ୍ରଭୃତି ତା'ର ବଶତା ସ୍ୱୀକାର କରିବେ । ତା'ର ନାମକରଣ କରିବ ବିକ୍ରମାଦିତ୍ୟ । ଶତ୍ରୁମାନଙ୍କପାଇଁ ସେ ବିଷମ ସମସ୍ୟା ସୃଷ୍ଟି କରିବ ବୋଲି ବିଷମଶୀଳ ରୂପେ ମଧ୍ୟ ପରିଚିତ ହେବ ।'

ରାଜା ରାତ୍ରି ଶେଷ ହେଉଥିବା ଦେଖି ଶଯ୍ୟା ତ୍ୟାଗ କଲେ । ପ୍ରଭାତର ସ୍ୱପ୍ନ ବୃତ୍ତାନ୍ତ ଶୁଣି ରାଣୀ ଓ ସଚିବମାନଙ୍କର ମଧ୍ୟ ବିପୁଳ ଆନନ୍ଦ ଜାତ ହେଲା । ସେମାନେ ପୁତ୍ର ଲାଭ ହେବ ବୋଲି ଶିବଙ୍କଠାରୁ ସ୍ୱପ୍ନାଦେଶ ପାଇଥିବା କହି ରାଜା ଓ ରାଣୀଙ୍କୁ ଅଧିକ ଆନନ୍ଦିତ କଲେ । ଏ ସମୟରେ ଅନ୍ତଃପୁରରୁ ଜଣେ ଦାସୀ ଆସି ଗୋଟିଏ ସୁମିଷ୍ଟ ଫଳ ରାଜାଙ୍କୁ ଦେଖାଇଲା । କହିଲା ଯେ ଭଗବାନ୍ ଶଙ୍କର ନିଦ୍ରିତାବସ୍ଥାରେ ମହାରାଣୀଙ୍କୁ ଏହା ଦେଇଛନ୍ତି । ରାଜାଙ୍କ ଅଭ୍ୟୁଦୟରେ ମନ୍ତ୍ରୀମାନେ ତାଙ୍କୁ ଅଭିନନ୍ଦନ ଜଣାଇଲେ । ରାଜା ମଧ୍ୟ ନତମସ୍ତକରେ ଶିବଙ୍କୁ ପ୍ରଣିପାତ କରି ଶୁଭ ଅବସରର ପ୍ରତୀକ୍ଷା କରିବାକୁ ଲାଗିଲେ ।

କିଛିଦିନ ମଧ୍ୟରେ ରାଣୀଙ୍କର ଗର୍ଭୋଦୟ ହେଲା । ତାଙ୍କ ଶରୀରରୁ ଏକ ଦିବ୍ୟ ଜ୍ୟୋତି ବାହାରୁଥିବା ପରି ଜଣାଯାଉଥାଏ । ସେ ନବୋଦିତ ସୂର୍ଯ୍ୟର କିରଣଜାଳରେ ଅନୁରଞ୍ଜିତ ପ୍ରାଚୀ ଦିକ୍‌ବଧୂ ରୂପେ ଶୋଭାପାଉଥାଆନ୍ତି । ତାଙ୍କ ଚୂଚୁକଗୁଡ଼ିକ କୃଷ୍ଣବର୍ଣ୍ଣ ଧାରଣ କଲା; ଭାବୀ ସମ୍ରାଟଙ୍କ ପାନୀୟ ଦୁଗ୍ଧ ସୁରକ୍ଷିତ କରିବାପାଇଁ ବିଧାତା ସତେ ଯେପରି ମହାରାଣୀଙ୍କ ସ୍ତନଯୁଗଳକୁ ରକ୍ଷଣ ମୁଦ୍ରାଦ୍ୱାରା ଅଙ୍କିତ କଲା । ରାଣୀ ସ୍ୱପ୍ନରେ ଦେଖିଲେ ଯେ ସେ ସାତସମୁଦ୍ର ଡେଇଁ ଚାଲିଛନ୍ତି; ଏବଂ ସେ ଯାଉଥିବା ବେଳେ ଯକ୍ଷ, ରାକ୍ଷସ, ପିଶାଚ, ବେତାଳ ପ୍ରଭୃତି ଉଭୟ ପାର୍ଶ୍ୱରେ ଦଣ୍ଡାୟମାନ ରହି ନତମସ୍ତକରେ ତାଙ୍କୁ ପ୍ରଣାମ କରୁଛନ୍ତି ।

ନିର୍ଦ୍ଦିଷ୍ଟ ସମୟରେ ରାଣୀ ପୁତ୍ର ସନ୍ତାନଟିଏ ଜନ୍ମ ଦେଲେ । ନବୋଦିତ ସୂର୍ଯ୍ୟଙ୍କ କିରଣରେ ନଭୋମଣ୍ଡଳ ଯେପରି ଆଲୋକିତ ହୋଇଉଠେ, ପୁତ୍ରଟିର ଶାରୀରିକ ଦ୍ୟୁତିରେ ପ୍ରସୂତି ଗୃହ ସେହିପରି ଆଲୋକିତ ହୋଇଉଠିଲା । ଆକାଶରୁ ପୁଷ୍ପ ବୃଷ୍ଟି ହେବା ସହିତ ଦୁନ୍ଦୁଭିର ମଧୁର ନିନାଦ ଶୁଣାଗଲା । ସମଗ୍ର ନଗରୀ ଏପରି ଉତ୍ସବମୁଖର ହୋଇଉଠିଲା ଯେ ମନେହେଲା ଉଜ୍ଜୟିନୀ ମଧୁପାନରେ ଉନ୍ମତ୍ତା ହୋଇଉଠିଚି କିମ୍ବା

ପ୍ରେତଦ୍ୱାରା ଆବିଷ୍ଟ ହୋଇପଡ଼ିଛି, କିମ୍ବା ଘୂର୍ଣ୍ଣିବାତ୍ୟା ମଧ୍ୟରେ ପଡ଼ିଯାଇଛି । ରାଜା ମହେନ୍ଦ୍ରାଦିତ୍ୟ ରାଜ୍ୟରେ ଏପରି ଧନବୃଷ୍ଟି କଲେ ଯେ କେବଳ ସୌଗତ ବୁଦ୍ଧଙ୍କୁ ଛାଡ଼ି ସମସ୍ତେ ଧନୀଶ୍ୱର ହୋଇଗଲେ, ଅର୍ଥାତ୍ କାହାରି ଧନର ଅଭାବ ରହିଲା ନାହିଁ । ରାଜା ଆରାଧ୍ୟ ଦେବତାଙ୍କ ନିର୍ଦ୍ଦେଶ ଅନୁଯାୟୀ ପୁତ୍ରର ନାମକରଣ କଲେ ବିକ୍ରମାଦିତ୍ୟ ଓ ବିଷମଶୀଳ ।

କିଛିଦିନ ପରେ ମନ୍ତ୍ରୀ ସୁମତିଙ୍କ ଔରସରୁ ମଧ୍ୟ ଏକ ପୁତ୍ର ସନ୍ତାନ ଜନ୍ମ ନେଲା । ରାଜାଙ୍କ ପରାମର୍ଶ କ୍ରମେ ତା'ର ନାମ ରଖାଗଲା ମହାମତି । ପ୍ରତିହାର ବଜ୍ରାୟୁଧ ମଧ୍ୟ ଜଣେ ପୁତ୍ରର ଜନକ ହେଲେ । ତା'ର ନାମକରଣ କରାଗଲା ଭଦ୍ରାୟୁଧ । ସେହିପରି ରାଜପୁରୋହିତ ମହୀଧରଙ୍କଠାରୁ ଶ୍ରୀଧର ନାମରେ ଏକ ପୁତ୍ର ଜନ୍ମନେଲା । ରାଜକୁମାର ବିକ୍ରମାଦିତ୍ୟ ଅନ୍ୟ ବାଳକମାନଙ୍କ ସହିତ ବୃଦ୍ଧିଲାଭ କରିବାକୁ ଲାଗିଲେ । ବୟସ ସହିତ ତେଜ, ବୀରତ୍ୱ ଓ ସାମର୍ଥ୍ୟ ମଧ୍ୟ ବୃଦ୍ଧିଲାଭ କଲା । ରାଜକୁମାର ଉପନୀତ ହୋଇ ମିତ୍ରମାନଙ୍କ ସହିତ ଗୁରୁକୁଳାଶ୍ରମକୁ ଚାଲିଗଲେ । ଗୁରୁ ଅବଶ୍ୟ ତାଙ୍କ ବିଦ୍ୟାଲାଭପାଇଁ ନିମିତ୍ତ ମାତ୍ର ରହିଥାନ୍ତି । ଗୋଟିଏ ପରେ ଗୋଟିଏ ବିଦ୍ୟା ସ୍ୱୟଂ ଆସି ତାଙ୍କ ହୃଦୟରେ ପ୍ରକଟିତ ହେଉଥାନ୍ତି । ସେ ଅଧୀତ ବିଦ୍ୟାସବୁର ଯଥାର୍ଥ ପ୍ରୟୋଗ କରି ଯେଉଁ ଅପୂର୍ବ କୃତିତ୍ୱ ସବୁ ଦେଖାଉଥାନ୍ତି ତାହ ଅନ୍ୟମାନଙ୍କ ଦୃଷ୍ଟିରେ ଅଦ୍ୱିତୀୟ ମନେହେଉଥାଏ । ତାଙ୍କ ଦିବ୍ୟାସ୍ତ୍ର ପ୍ରୟୋଗ ଦେଖି ଉଜ୍ଜୟିନୀବାସୀ ରାମ, ଲକ୍ଷ୍ମଣ, ପଣ୍ଡୁ, ଅର୍ଜୁନ ପ୍ରଭୃତିଙ୍କ ପ୍ରଶଂସା ଆଉ କରିପାରିଲେ ନାହିଁ । ପରାଜିତ ରାଜାମାନେ ସେମାନଙ୍କ ରୂପବତୀ କନ୍ୟାମାନଙ୍କୁ ବିକ୍ରମାଦିତ୍ୟଙ୍କ ନିମିତ୍ତ ସମର୍ପଣ କଲେ । ରାଜା ମହେନ୍ଦ୍ରାଦିତ୍ୟ ସେମାନଙ୍କୁ ପୁତ୍ରର ସୌଭାଗ୍ୟ ଲକ୍ଷ୍ମୀପରି ସ୍ୱ ବାସଭବନରେ ଏକତ୍ର କରି ରଖିଥାନ୍ତି ।

କୁମାରମାନଙ୍କର ବିଦ୍ୟାଶିକ୍ଷା ଶେଷ ହେଲା । ବିକ୍ରମାଦିତ୍ୟ ରାଜକୁମାରୀମାନଙ୍କ ସହିତ ପରିଣୟ ସୂତ୍ରରେ ଆବଦ୍ଧ ହେଲେ । ରାଜା ମହେନ୍ଦ୍ରାଦିତ୍ୟ ନିଜ ବାର୍ଦ୍ଧକ୍ୟ ସମ୍ପର୍କରେ ସଚେତନ ହୋଇ ସମର୍ଥ ଯୁବରାଜଙ୍କୁ ରାଜସିଂହାସନରେ ଅଭିଷିକ୍ତ କରି ସ୍ୱୟଂ ପତ୍ନୀ ଓ ମନ୍ତ୍ରୀମାନଙ୍କ ସହିତ ବାରାଣସୀ ସ୍ଥିତ ବିଶ୍ୱନାଥଙ୍କ ନିକଟକୁ ଚାଲିଗଲେ ।

ବିକ୍ରମାଦିତ୍ୟ ପିତାଙ୍କଠାରୁ ରାଜ୍ୟଭାର ଗ୍ରହଣ କରି ପ୍ରବର୍ଦ୍ଧମାନ ସୂର୍ଯ୍ୟଙ୍କ ପରି ରାଜ୍ୟର ସମୃଦ୍ଧି ଏବଂ ନିଜର ଯଶଃ ଚତୁର୍ଦ୍ଦିଗରେ ବିସ୍ତାର କରିବାକୁ ଲାଗିଲେ । ତାଙ୍କ ନମ୍ରୀଭୂତ ଧନୁର୍ଗୁଣ ଚତୁର୍ଦ୍ଦିଗସ୍ଥ ରାଜାମାନଙ୍କ ଉନ୍ନତ ମସ୍ତକକୁ ନମନୀତ କଲା । ସେ ଉଦ୍ଧତ ବେତାଳ, ରାକ୍ଷସ ପ୍ରଭୃତିଙ୍କୁ ନିଜ ଦିବ୍ୟ ପ୍ରଭାବ ବଳରେ ଅନୁଶାସନ କଲେ ।

ତାଙ୍କ ସେନାବାହିନୀ ଅପ୍ରତିହତ ଗତି ସୂର୍ଯ୍ୟଦେବଙ୍କ ରଶ୍ମି ଜାଲ ପରି ଚତୁର୍ଦିଗରେ ବିଛାଇ ହୋଇ ପଡ଼ିଲେ । ରାଜା ବିକ୍ରମାଦିତ୍ୟ ମହାବୀର ହେଲେ ସୁଦ୍ଧା ପରଲୋକ ପ୍ରତି ତାଙ୍କର ଭୟ ଥାଏ, ମହୀଶୂର ହେଲେ ମଧ ପ୍ରଜାମାନଙ୍କ କରଭାର ପ୍ରତି ଉଦାର ଥିଲେ । ସାମ୍ରାଜ୍ୟଲକ୍ଷ୍ମୀ ଉପଭୋଗ କରୁଥିଲେ ସୁଦ୍ଧା ପତ୍ନୀମାନଙ୍କ ପ୍ରତି ତାଙ୍କ ଶ୍ରଦ୍ଧା କମ୍ ନଥିଲା । ସେ ଥିଲେ ପିତୃହୀନମାନଙ୍କ ପିତା, ବନ୍ଧୁହୀନମାନଙ୍କ ବନ୍ଧୁ ଏବଂ ଅନାଥମାନଙ୍କ ନାଥ । ପ୍ରଜାମାନଙ୍କପାଇଁ ସେ କଣ ବା ନଥିଲେ ? ଶ୍ୱେତଦ୍ୱୀପ, କ୍ଷୀରସମୁଦ୍ର, ତୁଷାରାବୃତ କୈଳାସ ଓ ହିମାଳୟର ନିର୍ମାଣନିମିତ୍ତ ରାଜା ବିକ୍ରମାଦିତ୍ୟଙ୍କ ଧବଳ କୀର୍ତ୍ତି ବିଧାତାଙ୍କପାଇଁ ଉପମାନ ସ୍ୱରୂପ ରହିଥିଲା ।

ଦିନେ ରାଜା ସଭାଗୃହରେ ବସିଥାନ୍ତି । ଏ ସମୟରେ ପ୍ରତିହାର ଭଦ୍ରାୟୁଧ ଆସି ଜଣାଇଲା ଯେ ଦାକ୍ଷିଣାତ୍ୟ ବିଜୟପାଇଁ ଶ୍ରୀ ବିକ୍ରମଶକ୍ତିଙ୍କ ନିକଟକୁ ସେନାବାହିନୀ ସହିତ ଯେଉଁ ଦୂତ ପ୍ରେରିତ ହୋଇଥିଲା, ସେହି ଅନଙ୍ଗଦେବ ଅନୁଚରମାନଙ୍କ ସହିତ ଆସି ଦ୍ୱାର ଦେଶରେ ଅପେକ୍ଷା କରୁଛନ୍ତି । ସେମାନଙ୍କ ପ୍ରସନ୍ନ ମୁଖମଣ୍ଡଳ ଦେଖିଲେ ଜଣାଯାଉଛି ସେମାନେ ଆପଣଙ୍କୁ କିଛି ଶୁଭ ସମ୍ବାଦ ଦେବେ । ରାଜାଙ୍କଠାରୁ ଆଦେଶ ପାଇ ଦ୍ୱାରପାଳ ଜଣେ ମାତ୍ର ଅନୁଚର ସହିତ ଅନଙ୍ଗଦେବଙ୍କୁ ଆଣି ରାଜାଙ୍କ ନିକଟରେ ଉପସ୍ଥାପନ କଲା । ଦୂତ ରାଜାଙ୍କୁ ପ୍ରଣାମ କରି ପ୍ରଥମେ ତାଙ୍କର ଜୟଘୋଷ କଲା । ରାଜା ତାକୁ ବସିବାପାଇଁ ନିର୍ଦ୍ଦେଶ ଦେଇ ଜିଜ୍ଞାସା କଲେ, 'ସେନାପତି ବିକ୍ରମଶକ୍ତିଙ୍କର ସମସ୍ତ କୁଶଳ ତ ? ବ୍ୟାଘ୍ରବଳ ପ୍ରଭୃତି ଅନ୍ୟ ରାଜାମାନେ କୁଶଳରେ ଅଛନ୍ତି ତ ? ତାଙ୍କ ସେନାବାହିନୀରେ ଯାଇଥିବା ଅନ୍ୟାନ୍ୟ ରାଜପୁତ୍ରମାନଙ୍କର କିଛି ଅନିଷ୍ଟ ହୋଇନାହିଁ ତ ? ଆମ ଗଜାରୋହୀ, ଅଶ୍ୱାରୋହୀ, ରଥାରୋହୀ ଓ ପଦାତିକ ସୈନ୍ୟମାନେ କୁଶଳରେ ଅଛନ୍ତି ତ ?'

ରାଜାଙ୍କ କୌତୂହଳ ଦମନ କରି ଅନଙ୍ଗଦେବ ଜଣାଇଲା 'ମହାରାଜ୍ ! ବିକ୍ରମଶକ୍ତିଙ୍କ ସହିତ ଆମର ସମସ୍ତ ସେନାବାହିନୀ କୁଶଳରେ ଅଛନ୍ତି । ଶ୍ରୀମାନ୍ ସେନାପତି ପଶ୍ଚିମ ସୀମାନ୍ତ ସହିତ ଦକ୍ଷିଣାପଥ ଜୟ କରିଛନ୍ତି । ସୌରାଷ୍ଟ୍ର ସହିତ ମଧ୍ୟପ୍ରଦେଶ ଏବଂ ଅଙ୍ଗବଙ୍ଗ ସହିତ ସମଗ୍ର ପୂର୍ବଦେଶ ଆମ ସେନାବାହିନୀଦ୍ୱାରା ପରାଜିତ ହୋଇଅଛି । କାଶ୍ମୀର ସହିତ ଉତ୍ତରସ୍ଥ ସମସ୍ତ ପ୍ରଦେଶ ଆମର କରଦ ରାଜ୍ୟରେ ପରିଣତ ହୋଇଛନ୍ତି । ଅନ୍ୟାନ୍ୟ ସମସ୍ତ ଦ୍ୱୀପ ଏବଂ ଦୁର୍ଗ ଶ୍ରୀମାନ୍‌ଙ୍କଦ୍ୱାରା ଆମର ହସ୍ତଗତ ହୋଇଛି । ମ୍ଳେଚ୍ଛମାନଙ୍କୁ ଶ୍ରୀମାନ୍ ବିକ୍ରମଶକ୍ତି ସଂହାର କରିଛନ୍ତି । ଯେଉଁମାନେ

ଜୀବନରକ୍ଷା କରିଛନ୍ତି ସେମାନେ ମଧ୍ୟ ଆମର କରଗତ । ସେମାନଙ୍କ ରାଜ୍ୟବାସୀ ଆମ ସେନାବାହିନୀରେ ଯୋଗ ଦେଇଛନ୍ତି । ବର୍ତ୍ତମାନ ସେନାପତି ବିକ୍ରମଶକ୍ତି ଅନ୍ୟାନ୍ୟ ରାଜା ଓ ସେନାବାହିନୀ ସହିତ ରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି ଆସୁଛନ୍ତି । ଦୁଇ ତିନିଦିନ ମଧ୍ୟରେ ସେମାନେ ଆସି ଏଠାରେ ଉପସ୍ଥିତ ହେବେ ।'

ଦୂତକୁ ରାଜା ବିକ୍ରମାଦିତ୍ୟ ବସ୍ତ୍ର, ଭୂଷଣ, ସ୍ୱର୍ଣ୍ଣମୁଦ୍ରା ଓ ଗ୍ରାମ ଦାନ କରି ସନ୍ତୁଷ୍ଟ କଲେ । କୌତୂହଳବଶତଃ ସେ ଦୂତଶ୍ରେଷ୍ଠ ଅନଙ୍ଗଦେବକୁ ପଚାରିଲେ, 'ତୁମେ ତ ବହୁ ଦୂରପଥ ଅତିକ୍ରମ କରି ଆସିଲ । ମାର୍ଗରେ କେଉଁ କେଉଁ ଦେଶ ତୁମର ଦୃଷ୍ଟିପଥାରୂଢ଼ ହୋଇଛି ? ସେସବୁ ଦେଶରେ କଣସବୁ କୌତୂହଳପ୍ରଦ ବସ୍ତୁ ତୁମ ଦୃଷ୍ଟିରେ ପଡ଼ିଛି ?' ରାଜା ଏବଂ ରାଜସଭାସ୍ଥିତ ଅନ୍ୟମାନଙ୍କ କୌତୂହଳ ପ୍ରଶମନପାଇଁ ଦୂତ ଅନଙ୍ଗଦେବ ନିଜର ଅନୁଭୂତି ଶୁଣାଇବା ଆରମ୍ଭ କଲା ।

## ଅନଙ୍ଗଦେବର ବିଚିତ୍ର ଅନୁଭୂତି

'ଦେବ ! ମୁଁ ଆପଣଙ୍କ ଆଦେଶରେ ଯାଇ ବିକ୍ରମଶକ୍ତିଙ୍କ ସେନାବାହିନୀ ନିକଟରେ ପହଞ୍ଚିଲି । ଦୂରରୁ ସେନାବାହିନୀ ଏକ ମହାସାଗର ପରି ମନେହେଉଥାଏ । ସାଗର ଯେପରି ଅନନ୍ତନାଗଙ୍କ ଦ୍ୱାରା ଅଧ୍ୟୁଷିତ ଏହି ସେନାବାହିନୀରେ ସେହିପରି ଅନନ୍ତ ନାଗେନ୍ଦ୍ର ଅର୍ଥାତ୍ ଅସଂଖ୍ୟ ଶ୍ରେଷ୍ଠ ଗଜରାଜି କ୍ରୀଡ଼ା କରୁଥାନ୍ତି, ସାଗର ଲକ୍ଷ୍ମୀନାରାୟଣଙ୍କ ବିଶ୍ରାମସ୍ଥଳ, ସେନାବାହିନୀ ବହୁଶ୍ରୀଯୁକ୍ତ ଅର୍ଥାତ୍ ଉତ୍ତମ ଲକ୍ଷଣଯୁକ୍ତ ହରି ଅର୍ଥାତ୍ ଅଶ୍ୱରାଜିଦ୍ୱାରା ପରିପୂର୍ଣ୍ଣ । ସେହିପରି ସାଗର ପକ୍ଷଯୁକ୍ତ ପର୍ବତମାନଙ୍କର ଆଶ୍ରୟସ୍ଥଳ, ସେନାବାହିନୀ ସପକ୍ଷ ଅର୍ଥାତ୍ ନିଜ ପକ୍ଷର କ୍ଷ୍ମାଭୃତ୍ ଅର୍ଥାତ୍ ରାଜନ୍ୟବୃନ୍ଦଙ୍କଦ୍ୱାରା ଶୋଭା ପାଉଥାଏ । ମୁଁ ତା' ମଧ୍ୟରେ ପ୍ରବେଶ କରି ବିକ୍ରମଶକ୍ତିଙ୍କ ନିକଟରେ ଯାଇ ଉପସ୍ଥିତ ହେଲି । ଶ୍ରୀମାନ୍‌ଙ୍କଦ୍ୱାରା ପ୍ରେରିତ ଜାଣି ସେ ମୋର ଆଦର ସତ୍କାର କଲେ । ସେମାନଙ୍କ ବିଜୟୋଲ୍ଲାସ ଲକ୍ଷ୍ୟ କରୁଥିବା ବେଳେ ସିଂହଳେଶ୍ୱରଙ୍କ ଦୂତ ଆସି ସେଠାରେ ପହଞ୍ଚିଲା । ସେ ମୋ ସମ୍ମୁଖରେ ହିଁ ନିଜ ପ୍ରଭୁଙ୍କ ସନ୍ଦେଶ ଜଣାଇ କହିଲା, 'ଆପଣଙ୍କ ଦ୍ୱାରା ପ୍ରେରିତ ଦୂତଠାରୁ ଜାଣିଲି ଯେ ରାଜା ବିକ୍ରମାଦିତ୍ୟଙ୍କ ବିଶ୍ୱସ୍ତ ଦୂତ ଅନଙ୍ଗଦେବ ଆପଣଙ୍କ ନିକଟରେ ଆସି ପହଞ୍ଚିଛନ୍ତି । ଆପଣ ମୋର ଅନୁରୋଧ ରକ୍ଷାକରି ତାଙ୍କୁ ଯଥାଶୀଘ୍ର ଏଠାକୁ ପଠାଇ ଦିଅନ୍ତୁ । ତାଙ୍କଦ୍ୱାରା ମହାରାଜ ବିକ୍ରମାଦିତ୍ୟଙ୍କ ନିକଟକୁ କିଛି ଶୁଭସମ୍ବାଦ ପଠାଇବାର ଅଛି ।' ଏହା ଶୁଣିବାମାତ୍ରେ ବିକ୍ରମଶକ୍ତି ସେଠାକୁ ତୁରନ୍ତ ଯିବାପାଇଁ ମୋତେ ନିର୍ଦ୍ଦେଶ ଦେଲେ ।

ସିଂହଳରୁ ଆସିଥିବା ରାଜଦୂତ ସହିତ ମୁଁ ସମୁଦ୍ରମାର୍ଗରେ ସିଂହଳଦ୍ୱୀପ ଯାତ୍ରା କଲି । ଏହି ଦ୍ୱୀପର ସମୁଚ୍ଚ ଅଟ୍ଟାଳିକାଗୁଡ଼ିକ ରତ୍ନନିର୍ମିତ ଥିଲା । ତାର ବୈଭବ ଦେଖିଲେ ମନରେ ସ୍ୱର୍ଗପୁରୀର ଭ୍ରମ ଜାତ ହେଉଥିଲା । ରାଜଭବନ ମଧ୍ୟରେ ସଚିବ ପରିବେଷ୍ଟିତ ସିଂହଳେଶ୍ୱର ବୀରସେନ ଦେବତାମାନଙ୍କ ଗହଣରେ ଦେବରାଜ ଇନ୍ଦ୍ରଙ୍କ ପରି ଶୋଭା ପାଉଥିଲେ । ମୁଁ ତାଙ୍କ ସହିତ ସାକ୍ଷାତ କରିବା ମାତ୍ରେ ସେ ମୋର ଯଥୋଚିତ ଆଦର ସତ୍କାର କରି ଶ୍ରୀମାନ୍‌ଙ୍କ କୁଶଳ ଜିଜ୍ଞାସା କଲେ । ତାଙ୍କର ଆତିଥ୍ୟ ଗ୍ରହଣ କରି ମୁଁ ସେହି ଦିନଟି ସେଠାରେ ବିଶ୍ରାମ କଲି । ଦ୍ୱିତୀୟ ଦିନ ରାଜସଭା ଆରମ୍ଭ ହେବାରୁ ମୋତେ ସେଠାକୁ ଯିବାପାଇଁ ଆମନ୍ତ୍ରଣ କରାଗଲା । ମୁଁ ଯାଇ ରାଜସଭାରେ ଉପସ୍ଥିତ ହେଲି । ସମସ୍ତଙ୍କ ସମ୍ମୁଖରେ ହିଁ ସେ ଶ୍ରୀମାନ୍‌ଙ୍କ ପ୍ରତି ଭକ୍ତିଭାବ ପ୍ରକାଶ ପୂର୍ବକ ମୋତେ କହିଲେ 'ମୋର ଏକ ଅବିବାହିତା କନ୍ୟା ଅଛି । ବର୍ତ୍ତମାନ ସେ ମର୍ତ୍ତ୍ୟଲୋକର ସର୍ବଶ୍ରେଷ୍ଠ ସୁନ୍ଦରୀ । ତାର ନାମ ମଦନଲେଖା । ମୁଁ ମୋର କନ୍ୟାକୁ ତୁମର ପ୍ରଭୁ ବିକ୍ରମାଦିତ୍ୟଙ୍କପାଇଁ ପ୍ରଦାନ କରୁଛି । ସେ ଯେପରି ତୁମ ରାଜାଙ୍କପାଇଁ ଏକାନ୍ତ ଯୋଗ୍ୟା ସେହିପରି ବିକ୍ରମାଦିତ୍ୟ ମଧ୍ୟ ତା'ର ଉପଯୁକ୍ତ ପତି । ଏଣୁ ତାଙ୍କ କଲ୍ୟାଣ କାମନା କରି ମୁଁ ତୁମକୁ ଏଠାକୁ ଆସିବା ନିମିତ୍ତ ଅନୁରୋଧ ଜଣାଇଥିଲି । ତୁମ ମହାରାଜାଙ୍କୁ ଏହା ଜଣାଇବା ନିମିତ୍ତ ତୁମେ ଆଗରେ ଯାଅ । ମୁଁ ପଛରେ ମୋର କନ୍ୟାକୁ ପଠାଉଛି ।'

ଏହା କହି ରାଜା ବୀରସେନ ତାଙ୍କ କନ୍ୟାକୁ ଆଣି ମୋତେ ଦେଖାଇଲେ । କନ୍ୟାଟିର ଶାରୀରିକ କାନ୍ତି ଏବଂ ଯୁବତୀ ସୁଲଭ ଆକୃତି ହିଁ ସେ ଧାରଣ କରିଥିବା ଅଳଙ୍କାରଗୁଡ଼ିକୁ ବିଭୂଷଣ କରିଥିଲା । ରାଜା କନ୍ୟାକୁ କୋଳରେ ଧାରଣ କରି କହିଲେ, 'ମୁଁ ତୁମ ପ୍ରଭୁଙ୍କୁ ଏହି କନ୍ୟାଟି ଦାନ କଲି । ତାଙ୍କ ପକ୍ଷରୁ ତୁମେ ଏହାକୁ ସ୍ୱୀକାର କର ।'

କନ୍ୟାଟିକୁ ଦେଖିବାମାତ୍ରେ ହିଁ ମୁଁ ବିସ୍ମିତ ହୋଇପଡ଼ିଥିଲି । ଆମ ମହାରାଣୀ ହେବାପାଇଁ ସେ ଯେ ଏକାନ୍ତ ଯୋଗ୍ୟା, ଏହା ମୋର କ୍ଷୁଦ୍ରବୁଦ୍ଧିରେ ନିଶ୍ଚୟ କରି କହିଲି, 'ଶ୍ରୀମାନ୍ ବିକ୍ରମାଦିତ୍ୟଙ୍କପାଇଁ ମୁଁ ଆପଣଙ୍କ କନ୍ୟାକୁ ସ୍ୱୀକାର କଲି ।' ଭାବିଲି ଆଶ୍ଚର୍ଯ୍ୟଜନକ ବସ୍ତୁସବୁ ନିର୍ମାଣ କରିବାରେ ବିଧାତାର କୃତିତ୍ୱ ଅଚିନ୍ତନୀୟ । ତା'ନହେଲେ ତିଲୋତ୍ତମାଙ୍କ ସୃଷ୍ଟି ପରେ ଏପରି ଏକ କନ୍ୟାକୁ ସୃଷ୍ଟି କରିବାର ଯଥାର୍ଥତା କେଉଁଠି ?

ରାଜା ବୀରସେନଙ୍କଦ୍ୱାରା ସତ୍‌କୃତ ହୋଇ ମୁଁ ତାଙ୍କ ଦୂତ ଧବଳସେନଙ୍କ ସହିତ ସିଂହଳଦ୍ୱୀପ ତ୍ୟାଗ କଲି । ଆମେ ଜାହାଜ ସାହାଯ୍ୟରେ ସମୁଦ୍ର ମଧ୍ୟରେ ଯାଉଥାଉ ।

ତା' ମଧ୍ୟରେ ଏକ ବିଶାଳ ବାଲୁକା ପ୍ରାନ୍ତର ଆମର ଦୃଷ୍ଟି ଆକର୍ଷଣ କଲା । ସେଠାରେ ଦୁଇଟି ଅଦ୍ଭୁତ ଦର୍ଶିନୀ ରୂପବତୀ କନ୍ୟା କ୍ରୀଡ଼ା କରୁଥାନ୍ତି । ଜଣେ ପ୍ରିୟଙ୍ଗୁଲତିକା ପରି ଶ୍ୟାମଳାଙ୍ଗୀ ଥିଲା ଏବଂ ଅନ୍ୟଜଣେ ଥିଲା ଚନ୍ଦ୍ରଙ୍କ ତୁଲ୍ୟ ବିମଳ କାନ୍ତିମତୀ । ସେମାନେ ନିଜନିଜ ବର୍ଣ୍ଣ ଅନୁରୂପ ବସ୍ତ୍ର ଓ ଆଭୂଷଣଦ୍ୱାରା ସୁଶୋଭିତା ଥିଲେ । ରତ୍ନଖଚିତ କଙ୍କଣଗୁଡ଼ିକୁ ବଜାଇ ବଜାଇ ସେମାନେ ସେଠାରେ କ୍ରୀଡ଼ା କରୁଥାନ୍ତି । କଙ୍କଣ ଧ୍ୱନିର ତାଳେ ତାଳେ ତାଙ୍କ ସମ୍ମୁଖରେ ଗୋଟିଏ ହରିଣ ଶାବକ ନୃତ୍ୟ କରୁଥାଏ । ମୃଗଶିଶୁଟି ରତ୍ନନିର୍ମିତ ପରି ଦେଖାଯାଉଥିଲେ ସୁଦ୍ଧା ବାସ୍ତବରେ ତାହା ସଜୀବ ଥିଲା । ଏହି ଅଦ୍ଭୁତ ଦୃଶ୍ୟ ଦେଖି ଆମେ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହେଲୁ ଯେ ଏହା କି ଆଶ୍ଚର୍ଯ୍ୟର କଥା ? ଏହା ଆମର ସ୍ୱପ୍ନ ନା ମାୟା ନା ଭ୍ରମ ? ସମୁଦ୍ର ମଧ୍ୟରେ ଏପରି ବାଲୁଚର ବା ସମ୍ଭବ ହେଲା କିପରି ? ସେଠାରେ ପୁଣି ଏପରି ଦୁଇଟି ଦିବ୍ୟ କନ୍ୟା, ସେମାନେ ପୁଣି ଖେଳାଉଥିବା ରତ୍ନ ନିର୍ମିତ ମୃଗଟି ସଜୀବ ।

ଆମେ ବିସ୍ମୟ ବିସ୍ଫାରିତ ନେତ୍ରରେ ସେହି ଦୃଶ୍ୟ ଦେଖୁଥାଉ । ଏ ସମୟରେ ଏକ ଭୟଙ୍କର ସାମୁଦ୍ରିକ ଝଡ଼ ଆମ ଆଡ଼କୁ ମାଡ଼ି ଆସିଲା । ସାଗର ପ୍ରଚଣ୍ଡ ଭାବରେ ବିକ୍ଷୁବ୍ଧ ହୋଇଉଠିଲା । ଉତ୍ତାଳ ତରଙ୍ଗରାଶି ମଧ୍ୟରେ ଆମ ଜାହାଜଟି ଜଳମଗ୍ନ ହେଲା । ନାବିକ ଓ ଅନୁଚରମାନେ ଜଳମଧ୍ୟରେ ମୃତ୍ୟୁବରଣ କଲେ କିମ୍ବା ମଗରମାନଙ୍କ ମୁହଁରେ ପଡ଼ିଲେ । ଆମେ ମଗରମାନଙ୍କଦ୍ୱାରା ଆକ୍ରାନ୍ତ ହେବା ପୂର୍ବରୁ ସେହି କନ୍ୟା ଦୁଇଟି ଆମର ବାହୁ ଧାରଣ ପୂର୍ବକ ସେହି ବାଲୁକା ଦ୍ୱୀପ ଉପରକୁ ଟାଣିନେଲେ । ଆମେ ସନ୍ତ୍ରସ୍ତ ହୋଇପଡ଼ିଥିଲୁ । ସେମାନେ ଧୈର୍ଯ୍ୟ ଓ ଆଶ୍ୱାସନା ଦେଇ ଆମକୁ ଏକ ସୁଡ଼ଙ୍ଗ ପଥରେ ସେମାନଙ୍କ ଅନୁଗମନ କରିବାପାଇଁ ନିର୍ଦ୍ଦେଶ ଦେଲେ । ସେଠାରେ ଆମକୁ ଅଧିକ ବିସ୍ମିତ କରି ପୁଷ୍ପିତ ବୃକ୍ଷଲତା ପରିପୂର୍ଣ୍ଣ ଏକ ଉପବନ ରହିଥାଏ । ଆମେ ସେଠାରେ ନା ସମୁଦ୍ର, ନା ବାଲୁକା ପ୍ରାନ୍ତର ନା ରତ୍ନମୟ ହରିଣ ଶାବକ ନା ସେହି କନ୍ୟାଯୁଗଳ କାହାକୁ ଦେଖିବାକୁ ପାଇଲୁ । ଆମେ ଏହାକୁ ଏକ ମାୟାଜାଲ ମନେକରି ସେଠାରେ ବିଚରଣ କରୁଥାଉ । ଏ ସମୟରେ ଏକ ବିଶାଳ ସରୋବର ଆମର ଦୃଷ୍ଟିଗୋଚର ହେଲା । ଆମେ ତା' ନିକଟକୁ ଅଗ୍ରସର ହେଲୁ । ସରୋବରଟି ମହାତ୍ମାମାନଙ୍କ ଆଶ୍ରୟ ତୁଲ୍ୟ ନିର୍ମଳ, ଗମ୍ଭୀର ଏବଂ ବିସ୍ତୀର୍ଣ୍ଣ ଥିଲା । ମୂର୍ତ୍ତିମାନ୍ ନିର୍ବାଣ ତୁଲ୍ୟ ଏହା ଦର୍ଶକର ତୃଷ୍ଣା ଓ ସନ୍ତାପ ଦୂର କରୁଥିଲା ।

ଆମେ ସରୋବର ନିକଟରେ ଠିଆ ହୋଇଥିବା ବେଳେ ସାକ୍ଷାତ୍ ବନଲକ୍ଷ୍ମୀଙ୍କ ସଦୃଶ ଜଣେ ରୂପବତୀ ରମଣୀ ଏକ କର୍ଣ୍ଣୀରଥରୁ ଅବତରଣ କଲେ । ସେ

ସହଚରୀମାନଙ୍କ ସହିତ ସରୋବରରେ ସ୍ନାନ କରି ପଦ୍ମଫୁଲ ଗୁଡ଼ିଏ ଚୟନ କଲେ । ସେଠାରେ ବସି ଭଗବାନ ଶଙ୍କରଙ୍କୁ ଧ୍ୟାନ କରନ୍ତେ, ଆମକୁ ହତଚକିତ କରି ସ୍ୱୟଂ ଶଙ୍କର ଏକ ରତ୍ନମୟ ଲିଙ୍ଗ ରୂପରେ ସରୋବର ମଧ୍ୟରୁ ଆବିର୍ଭୂତ ହେଲେ । ସୁନ୍ଦରୀ ନିଜର ବିଭବ ଅନୁରୂପ ବିଭିନ୍ନ ଉପଚାରରେ ତାଙ୍କୁ ଆରାଧନା କରି କର୍ଣ୍ଣୀରଥ ମଧ୍ୟରୁ ଏକ ବୀଣା ଉଠାଇ ଆଣିଲେ । ବୀଣାର ମଧୁର ନିକ୍ୱଣ ସହିତ ସୁନ୍ଦରୀଙ୍କ କଣ୍ଠ ସଙ୍ଗୀତ ଉପବନକୁ ଅନୁରଣିତ କଲା । ସେ ଦାକ୍ଷିଣାତ୍ୟ ଶୈଳୀରେ ଉପଯୁକ୍ତ ସ୍ୱର, ତାଳ ଓ ଚରଣ ବିନ୍ୟାସ ପୂର୍ବକ ଶିବସ୍ତୁତି ଗାନ କରୁଥାନ୍ତି । ତାଙ୍କ ସଙ୍ଗୀତ ଲହରୀ ଆକାଶ ମାର୍ଗରେ ଯାଉଥିବା ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର ପ୍ରଭୃତିଙ୍କୁ ଚିତ୍ରାର୍ପିତ ପରି ଗତିରହିତ କରିଦେଲା । ସ୍ତୁତି ଶେଷରେ ସେ ପୁଣି ଲିଙ୍ଗମୂର୍ତ୍ତି ଶଙ୍କରଙ୍କୁ ଆରାଧନା କରି ବିସର୍ଜନ କଲେ । ଲିଙ୍ଗଟି ସରୋବରର ଜଳରାଶି ମଧ୍ୟରେ ଅନ୍ତର୍ହିତ ହେଲା ।

ଏହାପରେ ସେହି ମୃଗନୟନୀ ସୁନ୍ଦରୀ ପରିଜନମାନଙ୍କ ସହିତ କର୍ଣ୍ଣୀରଥ ଆରୋହଣ ପୂର୍ବକ ଧୀରେ ଧୀରେ ପ୍ରତ୍ୟାବର୍ତ୍ତନ କଲେ । ଆମେ ରଥ ପଛରେ ଚାଲିବାକୁ ଲାଗିଲୁ । ତାଙ୍କ ପରିଚୟ ଜାଣିବାପାଇଁ ଆମେ ତାଙ୍କ ପରିଚାରିକାମାନଙ୍କୁ ଯେତେ ପଚାରିଲେ ସୁଦ୍ଧା ସେମାନେ କେହି କିଛି ଉତ୍ତର ଦେଲେନାହିଁ । ମୁଁ ଶେଷରେ ସିଂହଳ ରାଜଦୂତ ଧବଳସେନଙ୍କୁ ମୋର ପ୍ରଭୁ ବିକ୍ରମାଦିତ୍ୟଙ୍କ ପ୍ରଭାବ ଦେଖାଇବାକୁ ଯାଇ ଉଚ୍ଚସ୍ୱରରେ ସୁନ୍ଦରୀ ଶୁଣିପାରିବା ପରି କହିଲି 'ହେ କଲ୍ୟାଣମୟି ! ମୁଁ ରାଜା ବିକ୍ରମାଦିତ୍ୟଙ୍କ ଚରଣଯୁଗଳର ଶପଥ ନେଇ କହୁଛି, ତୁମେ ନିଜର ପରିଚୟ ନ ଦେଇ ଆଗକୁ ଅଗ୍ରସର ହୋଇପାରିବ ନାହିଁ ।'

ମୋର ଶପଥ ସୁନ୍ଦରୀଙ୍କ କର୍ଣ୍ଣଗୋଚର ହେଲା । ସେ ରଥକୁ ସେଠାରେ ରଖି ଅବତରଣ କଲେ । ମୋ ନିକଟକୁ ଆସି କୋମଳ ସ୍ୱରରେ କହିଲେ, 'ପ୍ରଭୁ ବିକ୍ରମାଦିତ୍ୟ କୁଶଳରେ ଅଛନ୍ତି ତ ? ହେ ଅନଙ୍ଗଦେବ, ମୁଁ ଏପରି ପଚାରିବାର କାରଣ ତୁମେ ଜାଣିବାକୁ ଚାହିଁପାର । ମୁଁ ସର୍ବଜ୍ଞାତା । ବିକ୍ରମାଦିତ୍ୟଙ୍କ ଗୋଟିଏ ନିର୍ଦ୍ଦିଷ୍ଟ କାର୍ଯ୍ୟସିଦ୍ଧିପାଇଁ ମୁଁ କୌଶଳ ପୂର୍ବକ ତୁମକୁ ଏଠାକୁ ନେଇ ଆସିଛି । ସେ ମୋତେ ଏକ ମହା ସଙ୍କଟରୁ ଉଦ୍ଧାର କରିଥିଲେ । ଏଣୁ ସେ ମୋର ପୂଜ୍ୟ । ବର୍ତ୍ତମାନ ତୁମେ ଆମ ସହିତ ମୋର ବାସଭବନକୁ ଚାଲ । ସେଠାରେ ମୁଁ ମୋର ପରିଚୟ, ମହାରାଜାଙ୍କ କାର୍ଯ୍ୟ ଏବଂ ତୁମକୁ ଏପରି ଆଣିବାର କାରଣ ଜଣାଇବି ।'

ଏହା କହି ସେହି ସୁନ୍ଦରୀ ଆମ ସହିତ ପଦବ୍ରଜରେ ହିଁ ଚାଲିବାକୁ ଲାଗିଲେ । ତାଙ୍କ ବିନମ୍ର ଆଚରଣ ଆମକୁ ବିସ୍ମିତ କରୁଥାଏ । ଆମେ ଦ୍ୱିତୀୟ ସ୍ୱର୍ଗ ତୁଲ୍ୟ ତାଙ୍କ

ନଗରରେ ଯାଇ ପହଞ୍ଚିଲୁ । ନଗରଟି ଥିଲା ସ୍ୱର୍ଣ୍ଣନିର୍ମିତ । ବହୁମୂଲ୍ୟ ରତ୍ନରାଜି ଏହାର ଶୋଭାକୁ ଶତଗୁଣିତ କରୁଥାନ୍ତି । ବିବିଧ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ବୀର ସୈନିକମାନଙ୍କ ଦ୍ୱାରା ନଗରୀଟି ସୁରକ୍ଷିତ ଥାଏ । ସ୍ନାନ, ଲେପନ, ପରିଧାନ ଓ ଆଭୂଷଣଦ୍ୱାରା ଆମର ଚର୍ଚ୍ଚା କରି ସୁନ୍ଦରୀ ଆମପାଇଁ ବିଶ୍ରାମର ବ୍ୟବସ୍ଥା କରିଦେଲେ । ବହୁ ରୂପବତୀ ରମଣୀ ଆମ ସେବାରେ ନିଯୁକ୍ତ ଥା'ନ୍ତି । ସ୍ୱର୍ଗୀୟ ଭୋଗ ଉପଭୋଗ କରି ଆମେ ସେଠାରେ ବିଶ୍ରାମ କଲୁ ।'

ସଭାଭବନରେ ବସିଥିବା ବିକ୍ରମାଦିତ୍ୟଙ୍କୁ ଏହିପରି ନିଜର ଅନୁଭୂତି ଶୁଣାଇ ଅନଙ୍ଗଦେବ କ୍ଷଣକପାଇଁ ବିଶ୍ରାମ ନେଲା ।

## ଦ୍ୱିତୀୟ ତରଙ୍ଗ

କିଛି ସମୟ ବିଶ୍ରାମ ନେଇ ଅନଙ୍ଗଦେବ ସଭା ମଧ୍ୟରେ ବସିଥିବା ବିକ୍ରମାଦିତ୍ୟଙ୍କୁ ପୁଣି କହିବା ଆରମ୍ଭ କଲା ।

ପରଦିନ ନିତ୍ୟକର୍ମ ଓ ପାନଭୋଜନ ଶେଷକରି ସେହି ଲାବଣ୍ୟମୟୀ ରମଣୀ ସଖୀମାନଙ୍କ ମଧ୍ୟରେ ବସି କହିଲେ, 'ଅନଙ୍ଗଦେବ ! ବର୍ତ୍ତମାନ ମୁଁ ତୁମକୁ ସମସ୍ତ ବୃତ୍ତାନ୍ତ ଶୁଣାଉଛି, ଶୁଣ' ।

## ମଦନମଞ୍ଜରୀ କଥା

ମୁଁ କୁବେରଙ୍କ ଭ୍ରାତା ମଣିଭଦ୍ରଙ୍କ ପତ୍ନୀ । ଯକ୍ଷରାଜ ଦୁନ୍ଦୁଭି ମୋର ପିତା । ମୋର ନାମ ମଦନମଞ୍ଜରୀ । ମୁଁ ନଦୀକୂଳରେ, ମନୋହର ପର୍ବତଗୁଡ଼ିକରେ ଏବଂ ଉପବନ ମଧ୍ୟରେ ପତିଙ୍କ ସହିତ ଆନନ୍ଦପୂର୍ବକ ବିହାର କରୁଥାଏ । ଦିନେ ଆମେ ଯାଇ ଉଜ୍ଜୟିନୀ ନଗରୀର ମକରନ୍ଦ ନାମକ ଉଦ୍ୟାନରେ ବିହାର କରୁଥାଉ । କ୍ରମେ କ୍ରମେ ଦିନ ଶେଷ ହୋଇ ରାତ୍ରି ହେଲା । ମୁଁ କ୍ଳାନ୍ତ ହୋଇ ସେଠାରେ ଶୋଇପଡ଼ିଲି ।

ପ୍ରଭାତରୁ ନିଦ୍ରାତ୍ୟାଗ କରି ଦେଖିଲି ଜଣେ ଭଣ୍ଡ କାପାଳିକ ନିର୍ନିମେଷ ନୟନରେ ମୋତେ ଚାହିଁ ରହିଛି । ମୁଁ ତା'ର କୁତ୍ସିତ ଅଭିଳାଷ ଜାଣିପାରି ଦୂରକୁ ଚାଲିଗଲି । ସେହି ଦୁଷ୍ଟାତ୍ମା ମୋତେ ପତ୍ନୀରୂପେ ଲାଭ କରିବା ନିମିତ୍ତ ଶ୍ମଶାନରେ ଯାଇ ମନ୍ତ୍ରପାଠ ଓ ହବନଦ୍ୱାରା ସାଧନା କରିବାକୁ ଲାଗିଲା । ବିଦ୍ୟା ପ୍ରଭାବରେ ମୁଁ ଏହା ଜାଣିପାରି ପତିଙ୍କ ନିକଟରେ ପ୍ରକାଶ କଲି । ସେ ଯାଇ ତାଙ୍କ ଜ୍ୟେଷ୍ଠଭ୍ରାତା କୁବେରଙ୍କୁ ଏହା ଜଣାଇଲେ । କୁବେର ତା'ର ସାଧନାକୁ ପ୍ରତିହତ କରିବାପାଇଁ ବ୍ରହ୍ମାଙ୍କ ନିକଟରେ ନିବେଦନ କଲେ । ବ୍ରହ୍ମା ଧ୍ୟାନ ବଳରେ ସବୁକିଛି ଜାଣିପାରି କୁବେରଙ୍କୁ କହିଲେ, 'ପ୍ରକୃତରେ ତୁମ ଭ୍ରାତୃବଧୂଙ୍କୁ ଅପହରଣ କରିନେବାପାଇଁ ସେହି ଦୁଷ୍ଟ କାପାଳିକ ସାଧନା କରୁଛି । ସେ ପାଠକରୁଥିବା ମନ୍ତ୍ରଦ୍ୱାରା ଯକ୍ଷମାନେ ବଶୀଭୂତ ହୋଇଥାନ୍ତି । କିନ୍ତୁ ମନ୍ତ୍ରଦ୍ୱାରା ସେ ଯେତେବେଳେ ତାଙ୍କୁ ଆକର୍ଷଣ କରିବା ଆରମ୍ଭ କରିବ, ସେତେବେଳେ ତାଙ୍କୁ କହ, ସେ ଉଚ୍ଚସ୍ୱରରେ

ରାଜା ବିକ୍ରମାଦିତ୍ୟଙ୍କ ସାହାଯ୍ୟ ଭିକ୍ଷା କରିବେ । ସେ ହିଁ ତୁମ ଭ୍ରାତୃଜାୟାଙ୍କୁ କାପାଳିକଠାରୁ ରକ୍ଷା କରିବାପାଇଁ ସମର୍ଥ ।'

କୁବେର ଆସି ମୋର ପତିଙ୍କୁ ବ୍ରହ୍ମାଙ୍କ ନିର୍ଦ୍ଦେଶ ଜଣାଇଲେ । ପତି ମୋ ନିକଟରେ ତାହା ପ୍ରକାଶ କରି ସେହି ଉପାୟ ଅବଲମ୍ବନ କରିବା ନିମନ୍ତେ ପରାମର୍ଶ ଦେଲେ । ମୁଁ ସେହି ଅନିଷ୍ଟକାରୀ ମନ୍ତ୍ରର ପ୍ରଭାବ କଥା ଚିନ୍ତାକରି ଆତଙ୍କିତ ହୋଇପଡ଼ିଥାଏ ।

ସେହି ଭଣ୍ଡ କାପାଳିକ ଶ୍ମଶାନରେ ବସି ମନ୍ତ୍ରସାଧନା ଆରମ୍ଭ କଲା । ତା'ର ମନ୍ତ୍ର ବଳରେ ମୁଁ ଧୀରେ ଧୀରେ ଶ୍ମଶାନ ଦିଗକୁ ଆକର୍ଷିତ ହୋଇଚାଲିଲି । ଅସ୍ଥି ଓ ନରକପାଳ ପୂର୍ଣ୍ଣ ଶ୍ମଶାନ ଭୂମି ଭୂତପ୍ରେତଙ୍କ ନୃତ୍ୟରେ ଭୟଙ୍କର ଦେଖାଯାଉଥାଏ । ମନ୍ତ୍ରଶକ୍ତି ମୋତେ ନେଇ ତା' ମଧ୍ୟରେ ପହଞ୍ଚାଇଲା । ମୁଁ ସେଠାରେ ସେହି ଭଣ୍ଡ କାପାଳିକକୁ ଦେଖିବାକୁ ପାଇଲି । ସେ ଅଗ୍ନିରେ ଆହୁତି ଦେଇ ଗୋଟିଏ ଶବ ଉପରେ ବସି ପରିକ୍ରମା ପୂର୍ବକ ମନ୍ତ୍ରଉଚ୍ଚାରଣ କରୁଥାଏ । ମୋତେ ଦେଖିବା ମାତ୍ରେ ସେ ନିଜର ମନ୍ତ୍ରଶକ୍ତିର ପ୍ରଭାବ ନିମିତ୍ତ ଗର୍ବରେ ଫାଟି ପଡ଼ିଲା ଏବଂ ପୂଜାର ଅବଶିଷ୍ଟଭାଗ ଶେଷ କରିବାପାଇଁ ନିକଟସ୍ଥ ନଦୀରେ ଆଚମନ କରିବା ନିମିତ୍ତ ଉଠି ଚାଲିଗଲା ।

ଏହା ଦୈବ ପ୍ରେରିତ ବୋଲି ମୁଁ ମନେକଲି । ପିତାମହ ବ୍ରହ୍ମାଙ୍କ ଉପଦେଶ ମୋର ସ୍ମରଣ ହେଲା । ରାଜା ବିକ୍ରମାଦିତ୍ୟ ରାଜ୍ୟ ରକ୍ଷାପାଇଁ ଗଭୀର ରାତ୍ରିରେ ନଗର ଭ୍ରମଣ କରୁଥିବା କଥା ଶୁଣିଥିଲି । ସେ ନିକଟରେ କେଉଁଠି ଥାଇପାରନ୍ତି ବୋଲି ଭାବି ଉଚ୍ଚସ୍ୱରରେ ଡାକିବାକୁ ଲାଗିଲି । 'ହେ ସଂସାର ତ୍ରାଣକର୍ତ୍ତା ବିକ୍ରମାଦିତ୍ୟ ! ମୁଁ କୁବେରଙ୍କ ଛୋଟଭାଇ ମଣିଭଦ୍ରଙ୍କ ପତ୍ନୀ, ଦୁନ୍ଦୁଭିଙ୍କ କନ୍ୟା ମଦନମଞ୍ଜରୀ ଆପଣଙ୍କ ସାହାଯ୍ୟପ୍ରାର୍ଥିନୀ । ଏହି ଦୁଷ୍ଟ କାପାଳିକ ଆପଣଙ୍କ ରାଜ୍ୟରେ ବଳାତ୍କାର ପୂର୍ବକ ମୋର ସତୀତ୍ୱ ହରଣ କରିବାପାଇଁ ଚେଷ୍ଟା କରୁଛି । ମୋତେ ରକ୍ଷା କରନ୍ତୁ ।'

ବାରମ୍ବାର ମୁଁ ବିକଳଭାବେ ଏପରି କହୁଥାଏ । କିଛି ସମୟ ମଧ୍ୟରେ ଦେଖିଲି ପ୍ରଚଣ୍ଡ ମାର୍ତ୍ତଣ୍ଡ ତୁଲ୍ୟ ରାଜା ବିକ୍ରମାଦିତ୍ୟ ହସ୍ତରେ ଉନ୍ମୁକ୍ତ ଖଡ୍‌ଗ ଧାରଣ କରି ସେଠାରେ ଆସି ପହଞ୍ଚିଲେ । ମୋତେ ଦେଖିବାମାତ୍ରେ କହିଲେ, 'ଭଦ୍ରେ ! ଭୟକର ନାହିଁ । ଚିନ୍ତା ତ୍ୟାଗ କର । ମୁଁ ଏହି କାପାଳିକଠାରୁ ତୁମକୁ ନିଶ୍ଚୟ ରକ୍ଷା କରିବି । ମୋ ରାଜ୍ୟରେ କିଏ ବା ଏପରି ଅଧର୍ମାଚରଣ କରିପାରେ ?'

ମୋତେ ଏପରି ଆଶ୍ୱାସନା ଦେଇ ସେ ତାଙ୍କଦ୍ୱାରା ସିଦ୍ଧ ଅଗ୍ନିଶିଖ ନାମକ ବେତାଳକୁ ସ୍ମରଣ କଲେ । ମୁହୂର୍ତ୍ତକ ମଧ୍ୟରେ ସେ ଆସି ଉପସ୍ଥିତ ହେଲା । ତା'ର

ଚକ୍ଷୁଗୁଡ଼ିକ ଜ୍ୱଳନ୍ତ ଅଗ୍ନିକୁଣ୍ଡ ପରି ଦେଖାଯାଉଥାଏ, ତାର ସୁଦୀର୍ଘ ଶରୀର ଉପରେ କେଶରାଶି ଊର୍ଦ୍ଧ୍ୱକୁ ଉଠି ରହିଥାନ୍ତି । ସେ ବିନମ୍ରଭାବେ ତାକୁ ସ୍ମରଣ କରିବାର କାରଣ ଜିଜ୍ଞାସା କରନ୍ତେ ରାଜା କହିଲେ, 'ପରସ୍ତ୍ରୀ ହରଣପାଇଁ ଉଦ୍ୟତ ଏହି ପାପିଷ୍ଠ କାପାଳିକକୁ ମାରି ଖାଇଯାଅ ।'

ନିର୍ଦ୍ଦେଶ ମାତ୍ରେ ବେତାଳ ହୋମକୁଣ୍ଡ ନିକଟରେ ଥିବା ଗୋଟିଏ ଶବ ଶରୀରରେ ପ୍ରବେଶ କଲା । ମୁଖବ୍ୟାଦାନ ଓ ବାହୁ ପ୍ରସାରଣ ପୂର୍ବକ ସେ ସେଠାରେ ଅପେକ୍ଷା କରିଥାଏ । କାପାଳିକ ସ୍ନାନଶେଷରେ ଆସି ତାକୁ ଦେଖିବା ମାତ୍ରେ ଊର୍ଦ୍ଧ୍ୱମୁଖରେ ସେଠାରୁ ଦୌଡ଼ିବାକୁ ଲାଗିଲା । କିନ୍ତୁ ବେତାଳଠାରୁ ନିଜକୁ ରକ୍ଷା କରିବା ତା' ପକ୍ଷରେ ସମ୍ଭବ ହେଲାନାହିଁ । ସେ ତାର ପାଦଦୁଇଟିକୁ ଧରି ଭୂମି ଉପରେ କଚାଡ଼ି ଦେଲା । ଫଳରେ ଦୁଷ୍ଟ ଭଣ୍ଡ କାପାଳିକର ଜୀବନ ସହିତ କୁତ୍ସିତ ଅଭିଳାଷର ମଧ୍ୟ ଅବସାନ ଘଟିଲା ।

କାପାଳିକକୁ ମୃତ ଦେଖି ତା'ର ମାଂସଲୋଭରେ ଅନ୍ୟ ଏକ ଉଦ୍ଧତ ବେତାଳ ସେଠାରେ ଆସି ଉପସ୍ଥିତ ହେଲା । ଆସିବାମାତ୍ରେ ସେ କାପାଳିକର ଶବଟିକୁ ଉଠାଇ ନେବାରୁ ଅଗ୍ନିଶିଖ ତାକୁ କହିଲା 'ଆରେ ! ମୁଁ ତ ରାଜା ବିକ୍ରମାଦିତ୍ୟଙ୍କ ଆଦେଶରେ ଏହି କାପାଳିକକୁ ହତ୍ୟା କରିଛି । ତୁ ପୁଣି କିଏ ? ଏହି କାପାଳିକ ସହିତ ତୋର ସମ୍ପର୍କ କଣ ?' ଏହା ଶୁଣି ଯମଶିଖ ରାଜା ବିକ୍ରମାଦିତ୍ୟଙ୍କ ପ୍ରଭାବ ସମ୍ପର୍କରେ ଜାଣିବାପାଇଁ ଚାହିଁଲା । ଅଗ୍ନିଶିଖ ନିଜ ପ୍ରଭୁଙ୍କ ଶକ୍ତି ଓ ସାମର୍ଥ୍ୟ ବର୍ଣ୍ଣନା କରିବାକୁ ଯାଇ ଆରମ୍ଭ କଲା—

## ଦ୍ୟୂତବିଳାସୀ ଡାକିନେୟ କଥା

ତୁ ଯଦି ବିକ୍ରମାଦିତ୍ୟଙ୍କ ପ୍ରଭାବ ଜାଣିନାହୁଁ ତାହାଲେ ମୁଁ ଶୁଣାଉଛି, ଧ୍ୟାନଦେଇ ଶୁଣ ।

ଏହି ନଗରରେ ଡାକିନେୟ ନାମକ ଜଣେ ମସ୍ତ ଜୁଆଡୀ ରହୁଥିଲେ । ଦିନେ ଅନ୍ୟ ଖେଳାଳିମାନେ କୌଶଳରେ ତାଙ୍କର ସମସ୍ତ ଧନ ସମ୍ପତ୍ତି ଜିଣିନେଲେ । କିନ୍ତୁ ସେ ହାରିଥିବା ଅର୍ଥପାଇଁ ତାହା ଯଥେଷ୍ଟ ନଥିବାରୁ ସେମାନେ ତାଙ୍କୁ ବାନ୍ଧିପକାଇଲେ । ଡାକିନେୟ ସର୍ବସ୍ୱ ହରାଇଥିବା ଯୋଗୁଁ ସେମାନଙ୍କ ଋଣ ପରିଶୋଧ କରିବା ସମ୍ଭବ ହେଲାନାହିଁ । ଏଥିରେ ଉତ୍ତ୍ୟକ୍ତ ହୋଇ ସେମାନେ ତାଙ୍କୁ ଯଥେଚ୍ଛ ପ୍ରହାର କଲେ । ସେ ସେମାନଙ୍କ ଆଘାତ କୌଣସିମତେ ସହ୍ୟକରି ମୁମୂର୍ଷୁ ତୁଲ୍ୟ ପଡ଼ିରହିଥାନ୍ତି । ସେ ବଞ୍ଚିଗଲେ ପ୍ରତିଶୋଧ ନେଇପାରନ୍ତି ଭାବି ଅନ୍ୟ ଜୁଆଡ଼ୀମାନେ ତାଙ୍କୁ ଗୋଟିଏ ଗଭୀର ଅନ୍ଧକାର କୂଅ ମଧ୍ୟରେ ନେଇ ନିକ୍ଷେପ କଲେ ।

କୂଅ ମଧ୍ୟରେ ଡାକିନେୟ ଦେଖିଲେ ଯେ ତାଙ୍କ ପୂର୍ବରୁ ସେଠାରେ ଆଉ ଦୁଇଜଣ ଉଗ୍ରଦର୍ଶନ ବିଶାଳ ପୁରୁଷ ରହିଛନ୍ତି । ସେମାନେ ତାଙ୍କୁ ଭୟଭୀତ ଓ କ୍ଷତବିକ୍ଷତ ଦେଖି ସ୍ନେହପୂର୍ବକ ପରିଚୟ ଜିଜ୍ଞାସା କଲେ । ଡାକିନେୟ କିଛି ପରିମାଣରେ ନିର୍ଭୟ ହୋଇ ତାଙ୍କୁ ନିଜର ପରିଚୟ ଦେଇ ସେ ଉଭୟଙ୍କ ପରିଚୟ ଜାଣିବାପାଇଁ ଚାହିଁବାରୁ ସେମାନେ କହିଲେ 'ଆମେ ଦୁହେଁ ଏହି ନଗରର ଶ୍ମଶାନରେ ବାସ କରୁଥିବା ଦୁଇଜଣ ବ୍ରହ୍ମରାକ୍ଷସ । ଆମେ ଏହି ନଗରୀର ଦୁଇଜଣ କୁମାରୀଙ୍କୁ କବଳିତ କରିଥିଲୁ । ସେମାନଙ୍କ ମଧ୍ୟରୁ ଜଣେ ମୁଖ୍ୟମନ୍ତ୍ରୀଙ୍କ କନ୍ୟା ଏବଂ ଅନ୍ୟଜଣକ ମୁଖ୍ୟ ବଣିକଙ୍କ କନ୍ୟା । ବିଭିନ୍ନ ସ୍ଥାନରୁ ମାନ୍ତ୍ରିକମାନଙ୍କୁ ଡକାଇ ଆଣି ପିତାମାନେ ତାଙ୍କ କନ୍ୟାମାନଙ୍କୁ ଆମଠାରୁ ମୁକ୍ତ କରାଇବାପାଇଁ ଚେଷ୍ଟାକଲେ । କିନ୍ତୁ ଆମକୁ ବଳିଯିବା ସେମାନଙ୍କ ପକ୍ଷରେ ସମ୍ଭବ ହେଲାନାହିଁ । ଉଭୟ କନ୍ୟା ଏକ ସଙ୍ଗରେ ରହୁଥାନ୍ତି । ମିତ୍ର କନ୍ୟାମାନଙ୍କ ଏ ପ୍ରକାର ଦୁର୍ଦ୍ଦଶା ଶୁଣି ଦିନେ ରାଜା ବିକ୍ରମାଦିତ୍ୟ ସେମାନଙ୍କ ନିକଟରେ ଆସି ପହଞ୍ଚିଲେ । ରାଜାଙ୍କୁ ଦେଖିବାମାତ୍ରେ ଆମେ ସେଠାରୁ ପଳାୟନ କରିବାପାଇଁ ଚେଷ୍ଟାକଲୁ, କିନ୍ତୁ ତାହା ସମ୍ଭବ ହେଲାନାହିଁ । ତାଙ୍କ ଶରୀରରୁ ନିର୍ଗତ ତେଜୋରାଶି ଦ୍ୱାରା ଚତୁର୍ଦିଗ ପ୍ରଜ୍ୱଳିତ ହେଉଥିଲା । ରାଜା ତାଙ୍କ ପ୍ରଭାବ ବଳରେ ଆମକୁ ବାନ୍ଧି ପକାଇଲେ । ଆମେ ଅତ୍ୟନ୍ତ ଭୟାର୍ତ୍ତ ଓ ବିକଳ ହୋଇପଡ଼ିଥିଲୁ । ସେ ଆମ ପ୍ରତି ଅନୁଗ୍ରହ କଲାପରି କହିଲେ, 'ରେ ପାପିଷ୍ଠ ! ତୁମେ ଦୁହେଁ ବର୍ଷେ ପର୍ଯ୍ୟନ୍ତ ଗୋଟିଏ ଅନ୍ଧକାର କୂଅ ମଧ୍ୟରେ ପଡ଼ିରହ । ସେଠାରୁ ବାହାରିବା ପରେ ତୁମେମାନେ ଆଉ କେବେ ଏପରି ପାପକର୍ମ କରିବ ନାହିଁ । ଯଦି କର ତା'ହେଲେ ମୁଁ ଏହା ଅପେକ୍ଷା ତୁମକୁ ଅଧିକ କଠୋର ଦଣ୍ଡ ଦେବି ।' ଏପରି ଆଦେଶ ଦେଇ ରାଜା ବିଷମଶୀଳ ଆମମାନଙ୍କୁ ଆଣି ଏହି ଅନ୍ଧକୂପ ମଧ୍ୟରେ ଛାଡ଼ିଦେଲେ । ତାଙ୍କ ଦୟାରୁ ଆମେ ବଞ୍ଚିଗଲୁ ।

ଗୋଟିଏ ବର୍ଷ ପୂର୍ଣ୍ଣ ହେବାପାଇଁ ଆମର ଆଉ ଆଠ ଦିନ ବାକି ଅଛି । ତା'ପରେ ଆମେ ଏଠାରୁ ମୁକ୍ତିଲାଭ କରିବୁ । ତେଣୁ, ମିତ୍ର, ତୁମେ ଯଦି ଏତିକ ଦିନ ଆମକୁ କିଛି ଆହାର ଯୋଗାଇ ପାରିବ ତେବେ ଆମେ ତୁମକୁ ଏଠାରୁ ମୁକ୍ତିଦେବୁ । ଯଦି ଏବେ ସ୍ୱୀକାର କରି ମୁକ୍ତିଲାଭ କରିବା ପରେ ଆମକୁ ଭୋଜନ ନଦିଅ ତେବେ ଜାଣିଥାଅ, ଆମେ ତୁମକୁ ମାରି ଖାଇବା ସୁନିଶ୍ଚିତ ।'

ଡାକିନେୟ ସମ୍ମତ ହେବାରୁ ବ୍ରହ୍ମରାକ୍ଷସମାନେ ତାଙ୍କୁ ସେହି ଅନ୍ଧକୂପ ମଧ୍ୟରୁ ଉପରକୁ ଉଠାଇ ଦେଲେ । କୂପ ମଧ୍ୟରୁ ମୁକ୍ତିଲାଭ କରି ଡାକିନେୟ ଭୋଜନ ସାମଗ୍ରୀର

ଯୋଗାଡ଼ କରିବାକୁ ଲାଗିଲେ । କିନ୍ତୁ ତାହା ସମ୍ଭବ ହେଲାନାହିଁ । ତେଣୁ ଅନ୍ୟ କୌଣସି ଉପାୟ ନଦେଖି ସେ ମହାମାଂସ (ନରମାଂସ) ବିକ୍ରୟ କରିବାପାଇଁ ଶ୍ମଶାନ ମଧ୍ୟରେ ଯାଇ ପ୍ରବେଶ କଲେ ।

ଏ ସମୟରେ ମୁଁ ସେଠାରେ ଉପସ୍ଥିତ ଥାଏ । ମୁଁ ଡାକିନେୟଙ୍କୁ ସେଠାରେ ଦେଖିବାକୁ ପାଇଲି । ସେ ଉଚ୍ଚସ୍ୱରରେ ଚିତ୍କାର କରି କହୁଥାନ୍ତି 'ମୁଁ ମହାମାଂସ ବିକ୍ରି କରୁଛି । କିଏ କିଣିବ ଆସ ।' ମୁଁ ନିକଟକୁ ଯାଇ କହିଲି 'ମୁଁ କିଣିବି, କେତେ ନବ କହ ?' ସେ ଜଣାଇଲେ, 'ମୋତେ ତମକୁ ତୁମର ରୂପ ଓ ପ୍ରଭାବ ଦେବାକୁ ପଡ଼ିବ ।' ମୁଁ ଏହାର କାରଣ ଜାଣିବାପାଇଁ ଚାହିଁବାରୁ ସେ ତାଙ୍କର ସମସ୍ତ ବୃତ୍ତାନ୍ତ ମୋତେ କହି ଶୁଣାଇଲେ । ଶେଷରେ ଜଣାଇଲେ 'ମୁଁ ତୁମର ରୂପ ଓ ପ୍ରଭାବ ବଳରେ ସେହି ଦୁର୍ବୃତ୍ତ କୁଆଡ଼ୀମାନଙ୍କୁ ଟାଣିଟାଣି ଆଣି ବ୍ରହ୍ମରାକ୍ଷସମାନଙ୍କୁ ଭୋଜନ ଦେବି ।' ଡାକିନେୟଙ୍କ ସାହସ, ବୁଦ୍ଧି ଓ ବୀରତ୍ୱ ଦେଖି ମୁଁ ସନ୍ତୁଷ୍ଟ ହେଲି ଏବଂ ସାତଦିନପାଇଁ ମୋର ରୂପ ଓ ପ୍ରଭାବ ପ୍ରଦାନ କଲି । ତାର ପ୍ରଭାବରେ ସେ ତାଙ୍କ ପ୍ରତି ଶତ୍ରୁତା ଆଚରଣ କରିଥିବା କୁଆଡ଼ୀମାନଙ୍କୁ ଗୋଟି ଗୋଟି କରି ଆଣି ସେହି ଅନ୍ଧକୂପ ମଧ୍ୟରେ ନିକ୍ଷେପ କରୁଥାନ୍ତି । ବ୍ରହ୍ମରାକ୍ଷସମାନେ ମଧ୍ୟ ସେମାନଙ୍କ ମନୋମତ ଆହାରଲାଭ କରି ସନ୍ତୁଷ୍ଟ ଥାନ୍ତି ।

ଅଷ୍ଟମ ଦିନ ମୁଁ ମୋର ରୂପ ଓ ପ୍ରଭାବ ଫେରାଇ ଆଣିଲି । ଏଥିରେ ଭୟଭୀତ ହୋଇ ସେହି ଦ୍ୟୂତବିଳାସୀ ଡାକିନେୟ କହିଲେ, 'ଆଜି ଅଷ୍ଟମ ଦିନରେ ମୁଁ ସେହି ବ୍ରହ୍ମ ପିଶାଚମାନଙ୍କୁ ଆହାର ଦେଇନାହିଁ । ସେମାନେ ନିଶ୍ଚୟ ମୋ ପ୍ରତି କ୍ରୋଧାନ୍ୱିତ ଥିବେ । ଅନ୍ଧକୂପରୁ ମୁକ୍ତି ପାଇବା ମାତ୍ରେ ସେମାନେ ଯେ ମୋତେ ଖାଇଯିବେ, ଏଥିରେ ସନ୍ଦେହ ନାହିଁ । କହନ୍ତୁ ମୁଁ କି ଉପାୟ କରିବି ? ବର୍ତ୍ତମାନ ଆପଣ ହିଁ ମୋର ଏକମାତ୍ର ସହାୟକ ମିତ୍ର ।' ମୁଁ ପରିଚୟ ଜନିତ ମିତ୍ରତା ଦୃଷ୍ଟିରୁ ତାଙ୍କୁ ଆଶ୍ୱାସନା ଦେଇ କହିଲି 'ତାହାହେଲେ, ମିତ୍ର, ମୁଁ ଗୋଟିଏ ଉପାୟ କହୁଛି ଶୁଣ । ତୁମେ ମୋତେ ସେ ଦୁଇଜଣ ବ୍ରହ୍ମପିଶାଚଙ୍କୁ ଦେଖାଇଦିଅ । ତୁମେ ଦେଉଥିବା ଅନ୍ୟ କୁଆଡ଼ୀମାନଙ୍କୁ ସେମାନେ ଯେପରି ଆହାର କରୁଥିଲେ, ମୁଁ ସେମାନଙ୍କୁ ସେହିପରି ଭାବରେ ଖାଇଯିବି ।' ଡାକିନେୟ ମୋତେ ସେହି ଅନ୍ଧକୂପ ନିକଟକୁ ନେଇଗଲା । ମୁଁ ତଳକୁ ମୁହଁ କରି ଅନ୍ଧକାର ମଧ୍ୟରେ ସେ ଦୁଇଜଣକୁ ଦେଖିବାପାଇଁ ଚେଷ୍ଟା କରୁଥିବାବେଳେ ସେ ମୋ ଗଳାରେ ଅର୍ଦ୍ଧଚନ୍ଦ୍ର ଦେଇ କୂପ ମଧ୍ୟରେ ନିକ୍ଷେପ କଲା । ମୁଁ କୂଅ ମଧ୍ୟରେ ଯାଇ ପଡ଼ିଲି । ସେଠାରେ ଥିବା ବ୍ରହ୍ମରାକ୍ଷସ ଦୁଇଜଣ ମୋତେ ଆହାର ମନେକରି ଖାଇବାପାଇଁ ଚେଷ୍ଟାକଲେ । କିନ୍ତୁ ମୁଁ ବାହୁଯୁଦ୍ଧରେ

ସେମାନଙ୍କୁ ପରାସ୍ତ କଲି । ସେମାନେ ଶାନ୍ତ ହୋଇ ମୋର ପରିଚୟ ଜିଜ୍ଞାସା କଲେ । ମୁଁ ତାକିନେୟ ସହିତ ସାକ୍ଷାତ ହେବାଠାରୁ ସମସ୍ତ ବୃତ୍ତାନ୍ତ କହି ଶୁଣାଇଲି । ସେମାନେ ମୋର ମିତ୍ରରେ ପରିଣତ ହେଲେ । କହିଲେ, 'ଦେଖ, ସେହି ଜୁଆଡ଼ୀ ତୁମର, ଆମ ଦୁଇଙ୍କର ଏବଂ ତାର ସମଧର୍ମାମାନଙ୍କର କି ଅବସ୍ଥା ନକରିଛି ! ଜୁଆଡ଼ୀମାନଙ୍କ ହୃଦୟ ସର୍ବଦା ଛଳନାପୂର୍ଣ୍ଣ । ସେଥିରେ ମିତ୍ରତା, ଘୃଣା କିମ୍ବା ପରୋପକାରର ଲେଶମାତ୍ର ସ୍ପର୍ଶ ନଥାଏ ।'

ବଳାତ୍କାର କରିବା ଏବଂ ଅନ୍ୟକୁ ଉପେକ୍ଷା କରିବା ଜୁଆଡ଼ୀମାନଙ୍କର ସାଧାରଣ ଗୁଣ । ଏ ସମ୍ପର୍କରେ ମୁଁ ତୁମକୁ ଠିଣ୍ଟାକରାଳର କାହାଣୀ ଶୁଣାଉଛି, ଶୁଣ–

## ଠିଣ୍ଟାକରାଳ କଥା

ପ୍ରାଚୀନ କାଳରେ ଉଜ୍ଜୟିନୀ ନଗର ମଧ୍ୟରେ ଠିଣ୍ଟାକରାଳ ନାମକ ଏକ ଦ୍ୟୂତକାର ବା ଜୁଆଡ଼ୀ ରହୁଥିଲା । ତାର ନାମ ଯେପରି, ବୁଦ୍ଧି ମଧ୍ୟ ସେପରି ଥିଲା କୁଟିଳ । ସେ ସର୍ବଦା ଜୁଆ ଖେଳରେ ହାରୁଥିଲା ଏବଂ ଯେଉଁ ଜୁଆଡ଼ୀମାନେ ହାରୁଥିଲେ ସେମାନେ ତାକୁ ପ୍ରତିଦିନ ଏକଶତ କପର୍ଦ୍ଦକ ଦେଉଥିଲେ । ଦିନଶେଷରେ ସେହି କପର୍ଦ୍ଦକ ଦ୍ୱାରା କିଛି ଗହମ ଅଟା ଖରିଦ କରି ସେ ଖପରାରେ ରୁଟି ପ୍ରସ୍ତୁତ କରୁଥିଲା । ଶ୍ମଶାନକୁ ଯାଇ ଚିତାଗ୍ନିରେ ରୁଟିଗୁଡ଼ିକୁ ସେକି ମହାକାଳଙ୍କ ସମ୍ମୁଖରେ ଜଳୁଥିବା ଦୀପାଳିରୁ ସେଥିରେ କିଛି ଘିଅ ଲଗାଇ ଖାଉଥାଏ । ରାତିରେ ମହାକାଳଙ୍କ ମନ୍ଦିର ସମ୍ମୁଖରେ ହାତକୁ ତକିଆ କରି ଭୂମି ଉପରେ ଶୋଇଯାଉଥାଏ ।

ଦିନେ ରାତିରେ ସେ ଦେଖିଲା ଯେ ମନ୍ତ୍ର ପ୍ରଭାବରେ ଭଗବତୀ ଗୌରୀଙ୍କ ସହିତ ମାତୃକା ଓ ଯକ୍ଷିଣୀ ମୂର୍ତ୍ତି ସବୁ ଦୋହଲୁଛନ୍ତି । ତାହା ଦେଖି ସେ ମନେମନେ ଅର୍ଥ ସଞ୍ଚୟ ପାଇଁ ଏକ କୌଶଳ ଚିନ୍ତାକଲା । ଭାବିଲା ଯେ ଯଦି ତାର କୌଶଳ ସଫଳ ହୁଏ ତାହାହେଲେ ସେ ଧନସମ୍ପତ୍ତିର ଅଧିକାରୀ ହେବ । ଯଦି ବିଫଳ ହୁଏ ସେଥିରେ ତା'ର କ୍ଷତିହେବାର କିଛି ନାହିଁ ।

ଏହିପରି ଚିନ୍ତାକରି ସେ ଦ୍ୟୂତକ୍ରୀଡ଼ାପାଇଁ ଆହ୍ୱାନ କରି କହିଲା 'ହେ ଦେବିମାନେ ! ଆସନ୍ତୁ, ମୁଁ ଆପଣମାନଙ୍କ ସହିତ ଜୁଆ ଖେଳିବାକୁ ଚାହେଁ । ମୁଁ ହିଁ ଏହି ଖେଳର ଅଧ୍ୟକ୍ଷ ହେବି ଏବଂ କଉଡ଼ି ପକାଇବି । ଯିଏ ଜିଣିବ ତାକୁ ସାଙ୍ଗେ ସାଙ୍ଗେ ପଣ ରଖିଥିବା ପଦାର୍ଥ ଦେଇଦିଆଯିବ ।' ଦେବୀମାନେ କିଛି ଉତ୍ତର ଦେଲେନାହିଁ ।

ଠିଣ୍ଢାକରାଳ ପଣରଖି ଚିତ୍ରିତ କଉଡ଼ିଗୁଡ଼ିଏ ପକାଇଲା । ସର୍ବତ୍ର ଓ ସର୍ବଦା ଏହାହିଁ ଜୁଆଖେଳର ନିୟମ । ଜୁଆ ଖେଳିବାପାଇଁ ଆହ୍ୱାନ କଲେ ଯଦି ପ୍ରତିପକ୍ଷ ମନା ନକରନ୍ତି ତେବେ ସେମାନେ ଖେଳିବାପାଇଁ ପ୍ରସ୍ତୁତ ବୋଲି ଧରି ନେବାକୁ ହେବ । ତେଣୁ ଦେବୀମୂର୍ତ୍ତି ଗୁଡ଼ିକ ମୌନ ରହିବାରୁ ଠିଣ୍ଢାକରାଳ ଖେଳିବା ଆରମ୍ଭ କଲା । ଏଥିରେ ସେ ବହୁ ଧନରତ୍ନ ଜିଣିଲା । କାରଣ ଦେବୀମାନେ ଜୁଆଖେଳର କୌଶଳ ଜାଣିନଥିଲେ ଏବଂ ସେଥିପାଇଁ ସେମାନଙ୍କ ଆଗ୍ରହ ମଧ୍ୟ ନଥିଲା ।

ଏହିପରି କିଛି ସମୟ ଖେଳିବା ପରେ ଠିଣ୍ଢାକରାଳ ସେମାନଙ୍କଠାରୁ ପ୍ରତିଜ୍ଞାନୁଯାୟୀ ଜିଣିଥିବା ଧନରାଶି ସଂଗ୍ରହ କରିବାପାଇଁ ଚାହିଁଲା, କିନ୍ତୁ ସେମାନଙ୍କଠାରୁ କୌଣସି ଉତ୍ତର ମିଳିଲା ନାହିଁ । ଜୁଆଡ଼ୀ ରୁଷ୍ଟ ହୋଇ କହିଲା, 'ଦେଖ, ତୁମେମାନେ ଯଦି ଏହିପରି ଚୁପ୍‌ଚାପ୍ ଠିଆ ହୋଇ ରହିବ ତେବେ ମୋତେ ସେହିପରି କରିବାକୁ ପଡ଼ିବ ଯେପରି ହାରିଯାଇ ସ୍ତବ୍ଧ ଭାବେ ଠିଆ ହୋଇଥିବା ଖେଳାଳି ପ୍ରତି ଯାହା ସାଧାରଣତଃ କରାଯାଇଥାଏ । ଦେଖ, ଯମରାଜଙ୍କ ଦନ୍ତପଂକ୍ତି ପରି ଏହି ତୀକ୍ଷ୍ଣଧାର କରତରେ ମୁଁ ତୁମ ଶରୀରକୁ ଚିରିଦେବି । କାହା ପ୍ରତି ମୋର ଭୟ ବା ପରବାୟ ନାହିଁ ।' ଏହା କହି ସେ ଅସ୍ତ୍ର ସହିତ ଯେତେବେଳେ ଦେବୀମାନଙ୍କ ଆଡ଼କୁ ଅଗ୍ରସର ହେଲା ସେତେବେଳେ ସେମାନେ ଭୟରେ ତାକୁ ସେ ଜିଣିଥିବା ଧନରତ୍ନ ଦେଇଦେଲେ ।

ପରଦିନ ପ୍ରଭାତରୁ ସେ ରାତିରେ ପାଇଥିବା ଧନରାଶି ସହିତ ଯାଇ ଖେଳିବା ଆରମ୍ଭ କଲା । କିନ୍ତୁ ଜିଣିବା ତ ତା' ଭାଗ୍ୟରେ ନାହିଁ । ଜୁଆ ଆଡ୍ଡାରେ ପାଇଥିବା ଧନରାଶି ହାରିଯାଇ ରାତିରେ ସେ ପୁଣି ମନ୍ଦିର ମଧ୍ୟକୁ ଫେରିଆସିଲା । ସେଠାରେ ପୁଣି ହଠ ପୂର୍ବକ ଦେବୀମାନଙ୍କ ସହିତ ଦ୍ୟୂତକ୍ରୀଡ଼ା କରି ବହୁ ଧନ ସଞ୍ଚୟ କଲା । କେବଳ ଗୋଟିଏ କିମ୍ବା ଦୁଇଟି ଦିନ ନୁହେଁ ଧୀରେଧୀରେ ପ୍ରତିଦିନ ଏପରି ଅର୍ଥ ସଂଗ୍ରହ କରିବା ତା'ର ଅଭ୍ୟାସରେ ପରିଣତ ହୋଇପଡ଼ିଲା । ମାତୃକା ଯକ୍ଷିଣୀଗଣ ବିବ୍ରତ ହୋଇପଡ଼ିଲେ । ସେମାନଙ୍କ ଦୁଃଖ ବଳିପଡ଼ିଲା ।

ପ୍ରଥମେ ପ୍ରଥମେ ମହାକାଳ ମନ୍ଦିରର ଅଧିଷ୍ଠାତ୍ରୀ ଦେବୀ ଏହାକୁ କୌତୁକ ଦୃଷ୍ଟିରେ ଲକ୍ଷ୍ୟ କରୁଥିଲେ, କିନ୍ତୁ ଠିଣ୍ଢାକରାଳର ଉପଦ୍ରବ ଅସହ୍ୟ ହୋଇପଡ଼ିବାରୁ ସେ ମାତୃକାମାନଙ୍କୁ ଡାକି କହିଲେ, 'ଦେଖ, ଦ୍ୟୂତକ୍ରୀଡ଼ାର ନିୟମ ହେଉଛି ଯେ ଗୋଟିଏ ଜୁଆଡ଼ୀ ଖେଳିବାପାଇଁ ଆମନ୍ତ୍ରଣ କଲେ ଯଦି ଅନ୍ୟମାନେ ଖେଳିବାପାଇଁ ଅନିଚ୍ଛୁକ ବୋଲି ପ୍ରକାଶ କରନ୍ତି ତେବେ ସେମାନେ ସେଥିରେ ଭାଗୀ ହୁଅନ୍ତି ନାହିଁ । ତେଣୁ ଏହି ଦୁଷ୍ଟ

ଜୁଆଡ଼ୀ ଆସି ତୁମମାନଙ୍କୁ ଜୁଆ ଖେଳିବାପାଇଁ ଡାକିବା ମାତ୍ରେ ତୁମେମାନେ ତାକୁ ତୁମର ଅନିଚ୍ଛା ଜଣାଇଦିଅ ।' ଦେବୀଙ୍କ ଉପଦେଶ ଅନୁଯାୟୀ ସେମାନେ ଠିଣ୍ଟାକରାଳ ଆମନ୍ତ୍ରଣ କରିବା ମାତ୍ରେ ଏକସ୍ୱରରେ ସେମାନଙ୍କ ଅନିଚ୍ଛା ଜଣାଇଦେଲେ ।

ଠିଣ୍ଟାକରାଳ ନିଜ ଆୟର ମାର୍ଗ ରୁଦ୍ଧ ହୋଇଯିବା ଦେଖି ସେ ଭଗବାନ ମହାକାଳଙ୍କୁ ଦ୍ୟୂତକ୍ରୀଡ଼ାପାଇଁ ଆହ୍ୱାନ କଲା । ସେ ମଧ୍ୟ ଏହି ଦ୍ୟୂତକାରକୁ ନିଜର ଅନିଚ୍ଛା ଜଣାଇଦେଲେ । ଯେଉଁମାନେ ପାପରାଶି ବୃଦ୍ଧିପାଇଁ ଭୟହୀନ, ଯେଉଁମାନେ କୁଟିଳ ଏବଂ ଇଷ୍ଟ ଓ ଅନିଷ୍ଟ ପ୍ରତି ଯେଉଁମାନଙ୍କର ଭୟ ନାହିଁ ସେହି ଦୁର୍ଜନମାନଙ୍କୁ ଦେବତାମାନେ ମଧ୍ୟ ଭୟ କରିଥାନ୍ତି । ସେମାନଙ୍କ ସମସ୍ତ ଶକ୍ତି ବିଫଳ ହୋଇଯାଇଥାଏ ।

'ଅକ୍ଷୀଣଦୋଷାଦ୍ୱିଷମାଦିଷ୍ଟାନିଷ୍ଟଭୟୋଜ୍‌ଝିତାତ୍
ଦୁର୍ଜନାଦ୍‌ବତ ଦେବା ଅପ୍ୟଶକ୍ତା ଇବ ବିଭ୍ୟତି'

ଠିଣ୍ଟାକରାଳ ଦେଖିଲା ତା'ର ସମସ୍ତ କୌଶଳ ବ୍ୟର୍ଥ ହୋଇଛି । ତେଣୁ ସେ ଦୁଃଖରେ ଭାଙ୍ଗିପଡ଼ିଲା । ଭାବିଲା, ଭଗବାନ ମହାକାଳଙ୍କ ଶରଣାଗତ ହେବା ହିଁ ତା' ପାଇଁ ବର୍ତ୍ତମାନ ଏକମାତ୍ର ପନ୍ଥା । ସେ ତାଙ୍କ ପଦଯୁଗଳକୁ ଦୃଢ଼ଭାବରେ ଧରି ସ୍ତୁତି କରିବାକୁ ଲାଗିଲା ।

'ହେ ମହାକାଳ ! ପାର୍ବତୀଙ୍କଠାରୁ ଦ୍ୟୂତକ୍ରୀଡ଼ାରେ ଚନ୍ଦ୍ର, ବୃଷଭ, ଗଜଚର୍ମ ହାରିଯାଇ ଉଲଗ୍ନ ଅବସ୍ଥାରେ ଦୁଇ ଆଣ୍ଠୁ ମଧ୍ୟରେ ମୁହଁ ଲୁଚାଇ ବସିଥିବା ତୁମକୁ ମୁଁ ପ୍ରଣାମ କରୁଛି । ତୁମେ ନିଷ୍କାମ ଭାବରେ ଜଟା, ଭସ୍ମ ଓ ନରକପାଳ ଧାରଣ କରିଥିଲେ ସୁଦ୍ଧା ଦେବତାମାନଙ୍କୁ ବିନା ଯାଚନାରେ ସେମାନଙ୍କ ଇଚ୍ଛାନୁରୂପ ଅନନ୍ତ ବିଭୂତି ପ୍ରଦାନ କରୁଛ । କିନ୍ତୁ ମୋ ପରି ଜଣେ ଅଭାଗାପାଇଁ ଆଜି ଆପଣ କିପରି ଏଡ଼େ କୃପଣ ହୋଇଯାଇଛନ୍ତି ? ସ୍ୱଳ୍ପ କିଛିମାତ୍ର ଧନଲାଭରୁ ମୋତେ ଏପରି ବଞ୍ଚିତ କରି ଆପଣ କି ଆନନ୍ଦଲାଭ କରୁଛନ୍ତି । ଅବଶ୍ୟ ଭାଗ୍ୟହୀନ ବ୍ୟକ୍ତିମାନଙ୍କର ଅଭିଳାଷ କଳ୍ପବୃକ୍ଷ ମଧ୍ୟ ପୂର୍ଣ୍ଣ କରିନଥାଏ । ସେଥିପାଇଁ ତୁମେ ସମଗ୍ର ବିଶ୍ୱକୁ ଭରଣପୋଷଣ କରୁଥିଲେ ସୁଦ୍ଧା ମୋ ପ୍ରତି ବୀତରାଗ ହୋଇପଡ଼ିଛ । ମୋର ଚିତ୍ତ ଦୁଃଖ ଓ ଦୁର୍ବ୍ୟସନରେ ଆସକ୍ତ । ହେ ମଙ୍ଗଳମୟ ! ଏଥିପାଇଁ ଆଜି ମୁଁ ତୁମ ଶରଣାଗତ । ତୁମେ ମୋର ଏହି ଅନୁଚିତ ଆଚରଣକୁ କ୍ଷମା କରିବା ହେବେ । ତୁମେ ତ୍ରିନେତ୍ର ବା ତ୍ର୍ୟକ୍ଷ । ମୁଁ ମଧ୍ୟ ତ୍ର୍ୟକ୍ଷ ଅର୍ଥାତ୍ ତିନୋଟି ପଶାକାଠି ମୋର ସମ୍ବଳ; ତୁମ ଅଙ୍ଗ ଭସ୍ମ ବିଲେପିତ, ମୋ ଶରୀର ଧୂଳି-ଧୂସରିତ; ତୁମେ ନରକପାଳରେ ଖାଦ୍ୟ ଗ୍ରହଣ କର, ମୋର ମଧ୍ୟ ସେହି ସ୍ଥିତି । ତେଣୁ

ହେ ମଙ୍ଗଳମୟ ! ମୋ ପ୍ରତି ଦୟାକର । ତୁମ ପରି ଦେବତାଙ୍କ ସହିତ ଆଳାପ କରିବା ପରେ ମୁଁ ପୁଣି ଜୁଆଡ଼ୀମାନଙ୍କ ସହିତ କିପରି ବାର୍ତ୍ତାଳାପ କରିବି । ତେଣୁ ହେ ଭୈରବ ! ହେ ମହାକାଳ ! ତୁମର ଶରଣାଗତ ଏହି ପାପୀକୁ ଉଦ୍ଧାର କର ।'

ଭଗବାନ ଶଙ୍କର ଯେପରି କ୍ଷଣକୋପୀ ସେହିପରି କ୍ଷଣତୁଷ୍ଟ । ସେ ଠିଣ୍ଠାକରାଳ ପ୍ରତି ଦୟାର୍ଦ୍ର ହୋଇପଡ଼ିଲେ । ତାକୁ ସାକ୍ଷାତ ଦର୍ଶନ ଦେଇ କହିଲେ, 'ବତ୍ସ ! ମୁଁ ତୋ ପ୍ରତି ପ୍ରସନ୍ନ । ତୁ ଆଉ ଅଧୀର ହୁଅ ନାହିଁ । ବର୍ତ୍ତମାନ ତୁ ସମସ୍ତ ସୁଖସୌଭାଗ୍ୟର ଅଧିକାରୀ ହେବୁ । ତୋର ଆଉ କୁଆଡ଼େ ଯିବାର ଆବଶ୍ୟକତା ନାହିଁ । ଆଜିଠାରୁ ତୁ ମୋ ନିକଟରେ ହିଁ ରହ ।' ମହାକାଳଙ୍କ ଅନୁଗ୍ରହ ଲାଭକରି ଦ୍ୟୂତକାର ଠିଣ୍ଠାକରାଳ ସେହି ମହାକାଳ ମନ୍ଦିର ମଧ୍ୟରେ ହିଁ ବାସ କରିବାକୁ ଲାଗିଲା । ଦ୍ୟୂତକ୍ରୀଡ଼ା ତ୍ୟାଗକରି ସେ ସେଠାରେ ପବିତ୍ର ଜୀବନଯାପନ କରୁଥାଏ ।

ଦିନେ ରାତିରେ ମହାକାଳ ତୀର୍ଥରେ ସ୍ନାନ କରିବାପାଇଁ ସ୍ୱର୍ଗ ରାଜ୍ୟରୁ ବହୁ ଅପ୍‌ସରା ଆସି ପହଞ୍ଚିଲେ । ସେମାନଙ୍କୁ ଦେଖି ମହାକାଳ ଠିଣ୍ଠାକରାଳକୁ ଡାକି କହିଲେ, 'ଦେଖ, ଏହି ଅପ୍‌ସରାମାନେ ନିଜ ନିଜର ପରିଧେୟ ବସ୍ତ୍ରସବୁ କୂଳରେ ରଖି ସ୍ନାନ କରିବାପାଇଁ ଜଳ ମଧ୍ୟରେ ପ୍ରବେଶ କରିଛନ୍ତି । ତୁ ଶୀଘ୍ରଯାଇ ସେମାନଙ୍କ ବସ୍ତ୍ରସବୁ ନେଇଆ' । ଯେତେବେଳ ପର୍ଯ୍ୟନ୍ତ ସେମାନେ ଅପ୍‌ସରା କନ୍ୟା କଳାବତୀକୁ ତୋ ହସ୍ତରେ ସମର୍ପଣ ନକରିଛନ୍ତି ସେତେବେଳ ପର୍ଯ୍ୟନ୍ତ ତୁ ସେମାନଙ୍କ ବସ୍ତ୍ର ଫେରାଇବୁ ନାହିଁ ।'

ମହାକାଳଙ୍କ ଆଦେଶ ଲାଭକରି ଠିଣ୍ଠାକରାଳ ସ୍ନାନରତା ଦିବ୍ୟାଙ୍ଗନାମାନଙ୍କର ବସ୍ତ୍ର ସବୁ ଅପହରଣ କରି ନେଇଆସିଲା । ସ୍ନାନ ଶେଷରେ ସେମାନେ ବିଚଳିତ ହୋଇ ବସ୍ତ୍ର ସବୁ ଫେରାଇଦେବା ନିମିତ୍ତ ତାକୁ ଆକୁଳ ପ୍ରାର୍ଥନା କଲେ । କିନ୍ତୁ ମହାକାଳଙ୍କ ବଳରେ ବଳୀୟାନ୍ ଠିଣ୍ଠାକରାଳ ଦୃଢ଼ସ୍ୱରରେ କହିଲା, 'ତୁମେ କୁମାରୀ କଳାବତୀଙ୍କୁ ମୋ ହସ୍ତରେ ସମର୍ପଣ ନ କରିବା ପର୍ଯ୍ୟନ୍ତ ମୁଁ ତୁମର ବସ୍ତ୍ରସବୁ ଫେରାଇ ପାରିବି ନାହିଁ ।' ଅପ୍‌ସରାମାନେ ଦେଖିଲେ ଠିଣ୍ଠାକରାଳ ଦୁରାଧର୍ଷ । କଳାବତୀ ମଧ୍ୟ ଦେବରାଜ ଇନ୍ଦ୍ରଙ୍କ ଠାରୁ ଏହିପରି ଅଭିଶାପ ପାଇଥିବା କଥା ସେମାନଙ୍କର ସ୍ମରଣ ହେଲା । ସେମାନେ ଠିଣ୍ଠାକରାଳର କଥା ମାନିନେଲେ । ନିଜ ନିଜର ବସ୍ତ୍ର ପରିଧାନ କରି ଅପ୍‌ସରା ଅଳମ୍ବୁଷାଙ୍କ କନ୍ୟା କଳାବତୀକୁ ସେମାନେ ଯଥାବିଧି ତା' ହସ୍ତରେ ସମର୍ପଣ କଲେ ।

ଅପ୍‌ସରାମାନେ ଚାଲିଗଲେ । ମହାକାଳ ସେମାନଙ୍କପାଇଁ ଏକ ବାସଗୃହର ବ୍ୟବସ୍ଥା କରାଇଦେବାରୁ କଳାବତୀ ସହିତ ଠିଣ୍ଠାକରାଳ ସେଠାରେ ବାସ କରିବାକୁ

ଲାଗିଲା । ଦିନସାରା କଳାବତୀ ଦେବରାଜ ଇନ୍ଦ୍ରଙ୍କ ସେବାରେ ଉପସ୍ଥିତ ରହିବାପାଇଁ ସ୍ୱର୍ଗପୁରକୁ ଚାଲିଯାଏ । ସନ୍ଧ୍ୟାରେ ସେ ପତିଙ୍କ ନିକଟକୁ ଫେରିଆସେ । ଦିନେ ପ୍ରଣୟମୁଗ୍ଧା କଳାବତୀ ସ୍ୱାମୀକୁ କହିଲା, 'ପ୍ରିୟତମ ! ଇନ୍ଦ୍ରଙ୍କ ଅଭିଶାପ ମୋପାଇଁ ବରଦାନ ସ୍ୱରୂପ ହେଲା । ତା'ନହେଲେ ମୁଁ ତୁମ ପରି ପତିଟିଏ ପାଇବା ସମ୍ଭବ ହୋଇନଥାନ୍ତା ।' ଇନ୍ଦ୍ରଙ୍କ ଅଭିଶାପର କାରଣ ଜାଣିବାପାଇଁ ସ୍ୱାମୀ ଆଗ୍ରହ ପ୍ରକାଶ କରିବାରୁ ଅପ୍‌ସରା ପୁତ୍ରୀ କଳାବତୀ କହିଲା—

'ଦିନେ ମୁଁ ଦେବତାମାନଙ୍କ ସହିତ ନନ୍ଦନବନରେ ରହିଥାଏ । କଥା ପ୍ରସଙ୍ଗରେ ମୁଁ ଦେବତାମାନଙ୍କ ଅପେକ୍ଷା ମର୍ତ୍ତ୍ୟବାସୀମାନଙ୍କ ଉପଭୋଗ ଶୈଳୀକୁ ପ୍ରଶଂସା କଲି । ଦେବତାମାନେ ତ କେବଳ ଦୃଷ୍ଟି ପ୍ରସାରଣ କରି ଉପଭୋଗ କରିବା ଜାଣନ୍ତି । କିନ୍ତୁ ସେଥିରେ ଶାରୀରିକ ଉପଭୋଗର ଆନନ୍ଦ କାହିଁ । ମୋ କଥା ଇନ୍ଦ୍ରଙ୍କ କର୍ଣ୍ଣଗୋଚର ହେବାରୁ ଇନ୍ଦ୍ର ସସ୍ନେହରେ କହିଲେ, 'ତା'ହେଲେ ତୁ ଯାଇ ମନୁଷ୍ୟକୁ ବିବାହ କର । କିଛିଦିନ ମର୍ତ୍ତ୍ୟଭୋଗ ଶେଷ କରି ପୁଣି ସ୍ୱର୍ଗଲୋକକୁ ଫେରିଆସିବୁ ।' ଇନ୍ଦ୍ରଙ୍କ ଏହି ଅଭିଶାପ ପ୍ରଭାବରୁ ଆମ୍ଭମାନଙ୍କର ଶୁଭମିଳନ ଘଟିପାରିଛି । ଆସନ୍ତାକାଲି ସ୍ୱର୍ଗରୁ ଫେରିବା ବିଳମ୍ବ ହେବ । ତୁମେ ମୋପାଇଁ ଅଧୀର ହେବନାହିଁ । ଭଗବାନ୍ ବିଷ୍ଣୁଙ୍କ ସମ୍ମୁଖରେ ପ୍ରଦର୍ଶନ କରିବାପାଇଁ ଦେବୀ ରମ୍ଭା ଏକ ନୂତନ ନୃତ୍ୟର ଆୟୋଜନ କରିଛନ୍ତି । ତାହା ଶେଷ ନହେବା ପର୍ଯ୍ୟନ୍ତ ଆମମାନଙ୍କୁ ସେଠାରେ ରହିବାକୁ ପଡ଼ିବ ।'

ପତ୍ନୀର କଥାଶୁଣି ପ୍ରେମପାଗଳ ଠିଣ୍ଟାକରାଳ କଳାବତୀକୁ ନିବେଦନ କଲା ଯେ ସେ ଏହି ନୃତ୍ୟ ଦେଖିବାପାଇଁ ଆଗ୍ରହୀ । ତେଣୁ ଗୋପନରେ ସେଠାକୁ ଯିବାପାଇଁ ସେ ଲାଳାୟିତ । କଳାବତୀ ଇନ୍ଦ୍ରଙ୍କ ଭୟ ଦେଖାଇ ତାକୁ ସେଥିରୁ କ୍ଷାନ୍ତ କରିବାପାଇଁ ଚେଷ୍ଟାକଲା । କିନ୍ତୁ ପତିଙ୍କ ବାରମ୍ବାର ଅନୁରୋଧ କ୍ରମେ ତାଙ୍କୁ ନିଜ ସହିତ ନେବା ନିମିତ୍ତ ସ୍ୱୀକାର କରିବା ପାଇଁ ବାଧ ହେଲା ।

ପରଦିନ ପ୍ରଭାତରୁ ବେଶଭୂଷାରେ ସୁସଜ୍ଜିତା ହୋଇ କଳାବତୀ ସ୍ୱର୍ଗପୁର ଯିବାନିମନ୍ତେ ପ୍ରସ୍ତୁତ ହେଲା । ଠିଣ୍ଟାକରାଳ ତାର ପ୍ରତିଶ୍ରୁତି ମନେପକାଇ ଦେବାରୁ କଳାବତୀ ନିଜର କର୍ଣ୍ଣୋତ୍ପଳ ମଧ୍ୟରେ ତାକୁ ଗୁପ୍ତ ଭାବରେ ରଖି ଇନ୍ଦ୍ରଲୋକରେ ଯାଇ ପହଞ୍ଚିଲା । ଇନ୍ଦ୍ରପୁରୀର ଦ୍ୱାରଦେଶ ଗଜରାଜ ଐରାବତଦ୍ୱାରା ଏବଂ ଅନ୍ତଃପୁର ନନ୍ଦନବନ ଦ୍ୱାରା ଶୋଭାପାଉଥାଏ । ଇନ୍ଦ୍ରଲୋକର ରମଣୀୟତାରେ ମୁଗ୍ଧ ହୋଇ ଦ୍ୟୂତକାର ଠିଣ୍ଟାକରାଳ ନିଜକୁ ଦେବତା ବୋଲି ମନେକଲା । ଦେବସଭା ମଧ୍ୟରେ ସୁର ସୁନ୍ଦରୀ

ରମ୍ଭା ନୃତ୍ୟ ପ୍ରଦର୍ଶନ କରିବ ବୋଲି ଅପୂର୍ବ ସମାରୋହ ହୋଇଥାଏ । ଅନ୍ୟାନ୍ୟ ଅପ୍‌ସରାମାନେ ମଣ୍ଡଳାକାରରେ ରହି ସଙ୍ଗୀତଗାନ କରୁଥାନ୍ତି । ନାରଦ, ତୁମ୍ବୁରୁ ପ୍ରଭୃତିଙ୍କ ବାଦ୍ୟନାଦରେ ସଭାସ୍ଥଳ ପୂରି ଉଠିଥାଏ । ପରମେଶ୍ୱର ପ୍ରୀତ ହେଲେ କେଉଁ କଥା ବା ନମିଳିବ ।

'ପ୍ରସନ୍ନେ ହି କିମପ୍ରାପ୍ୟମସ୍ତୀହ ପରମେଶ୍ୱରେ'

ଏହିପରି ରମ୍ଭାଙ୍କ ଆୟୋଜିତ ନବୀନ ନୃତ୍ୟ ଶେଷ ହେଲା । ଏ ସମୟରେ ସଭା ମଧ୍ୟରୁ ଜଣେ ହାସ୍ୟକାରୀ ଉଠିଆସି ଦିବ୍ୟ ଅଙ୍ଗଭଙ୍ଗୀ ପ୍ରଦର୍ଶନ ପୂର୍ବକ ନାଚିବା ଆରମ୍ଭ କଲା । ତାର ଆକୃତି ଛାଗଳ ପରି । ତା'ର ନୃତ୍ୟରେ ଦେବତା ଓ ଅପ୍‌ସରାମାନେ ଉଚ୍ଚ ହାସ୍ୟରୋଳ କରିବାକୁ ଲାଗିଲେ । ଠିଣ୍ଠାକରାଳ ତାକୁ ଚିହ୍ନିପାରି ଭାବିଲା, 'ଏହି ଛେଳିଟିକୁ ମୁଁ ତ ସବୁବେଳେ ଉଜ୍ଜୟିନୀରେ ଦେଖୁଛି । ଇଏ ପୁଣି ଇନ୍ଦ୍ରଙ୍କ ସଭାକୁ ଆସି ଏପରି ଅଦ୍ଭୁତ ନୃତ୍ୟ ପ୍ରଦର୍ଶନ କରିବା ବଡ଼ ବିଚିତ୍ର । ସ୍ୱର୍ଗର ମାୟା ଯେପରି ବିଚିତ୍ର ସେହିପରି ଅପରିକଳ୍ପନୀୟ ।' ସେ ଏପରି ଭାବୁଥିବା ବେଳେ ଛାଗଳରୂପୀ ଭଣ୍ଡ ନର୍ତ୍ତକର ନୃତ୍ୟ ଶେଷ ହେଲା । ଇନ୍ଦ୍ର ସଭା ଭଙ୍ଗ କଲେ । କଳାବତୀ ପ୍ରସନ୍ନଚିତ୍ତରେ ସ୍ୱାମୀକୁ ଧରି ନିଜ ବାସଭବନକୁ ଫେରିଆସିଲା ।

ଦିନେ ଠିଣ୍ଠାକରାଳ ଉଜ୍ଜୟିନୀର ମହାକାଳ ମନ୍ଦିର ନିକଟରେ ବୁଲୁଥିବା ବେଳେ ଦେବଦର୍ଶନପାଇଁ ଛାଗଳ ରୂପରେ ଆସିଥିବା ଦେବତାମାନଙ୍କ ସହିତ ସେହି ଭଣ୍ଡ ନର୍ତ୍ତକକୁ ଦେଖିବାକୁ ପାଇଲା । ଦେବସଭାର ନୃତ୍ୟ ସ୍ମରଣ କରି ସେ ଔଦ୍ଧତ୍ୟ ପ୍ରକାଶ ପୂର୍ବକ ତା' ନିକଟକୁ ଯାଇ କହିଲା 'ଦେଖ, ମୁଁ ତୁମକୁ ଚିହ୍ନିପାରିଛି । ଇନ୍ଦ୍ରଙ୍କ ସମ୍ମୁଖରେ ତୁମେ ଯେପରି ନୃତ୍ୟ କରୁଥିଲ ମୋ ସମ୍ମୁଖରେ ବର୍ତ୍ତମାନ ତୁମକୁ ସେପରି ନାଚିବାକୁ ପଡ଼ିବ । ତା' ନ ହେଲେ ମୁଁ ତୁମକୁ ଛାଡ଼ି ଦେବି ନାହିଁ ।' ଏଥିରେ ଛାଗଳରୂପୀ ଦେବହାସ୍ୟକାରୀ ବିସ୍ମିତ ହୋଇପଡ଼ିଲା । ମର୍ତ୍ତ୍ୟବାସୀ ହୋଇ ସୁଦ୍ଧା ତାକୁ ଜାଣିପାରିଥିବା ଯୋଗୁଁ ସବୁକିଛି ରହସ୍ୟମୟ ମନେହେଲା । କିଛି ନ ଜାଣିବା ପରି ସେ ଠିଆହୋଇ ରହିବାରୁ ଠିଣ୍ଠାକରାଳ ସେଠାରେ ପଡ଼ିଥିବା ଗୋଟିଏ ଦଣ୍ଡଧରି ତାର ମସ୍ତକରେ ପ୍ରହାର କଲା ।

ଠିଣ୍ଠାକରାଳର ଦୁର୍ବ୍ୟବହାରରେ କ୍ଷୁଣ୍ଣ ହୋଇ ଦେବଭାଣ୍ଡ ଇନ୍ଦ୍ରଙ୍କ ସମ୍ମୁଖରେ ଯାଇ ଉପସ୍ଥିତ ହେଲା । ତାର ମସ୍ତକରୁ ରକ୍ତସ୍ରାବ ହେଉଥାଏ । ସେ ଉଜ୍ଜୟିନୀର ସମସ୍ତ ବୃତ୍ତାନ୍ତ ତାଙ୍କ ନିକଟରେ ନିବେଦନ କଲା । ଇନ୍ଦ୍ର ମଧ୍ୟ ଏଥିରେ ବିସ୍ମିତ ହୋଇପଡ଼ିଲେ । ଧ୍ୟାନବଳରେ କଳାବତୀ ଗୋପନରେ ନିଜ ପତିକୁ ନେଇଆସିଥିବା କଥା ତାଙ୍କର ଆଉ

ଅଗୋଚର ରହିଲା ନାହିଁ । ସେ କଳାବତୀକୁ ଡକାଇଆଣି ଅଭିଶାପ ଦେଲେ, 'ପ୍ରେମବଶରୁ ତୁ ଯେଉଁ ପୁରୁଷକୁ ସ୍ୱର୍ଗୀୟ ନୃତ୍ୟ ଦେଖିବାପାଇଁ ଏଠାକୁ ନେଇଆସିଥିଲୁ ଏବଂ ଯେଉଁ ପୁରୁଷ ଆମ ସ୍ୱର୍ଗବାସୀ ଭାଣ୍ଡର ଏପରି ଦୁର୍ଦ୍ଦଶା କରିଛି ସେ ନିଶ୍ଚୟ ଅପରାଧୀ । ତାର ଏହି ଅପରାଧପାଇଁ ତୁ ହିଁ ଦାୟୀ । ତେଣୁ ତୁ ଯାଇ ନାଗପୁର ନଗରରେ ରାଜା ନରସିଂହଙ୍କ ନିର୍ମିତ ଦେବାଳୟରେ ଥିବା ସ୍ତମ୍ଭରେ ଶାଳଭଞ୍ଜିକା ହୋଇ ରହ ।'

ଇନ୍ଦ୍ରଙ୍କ ଅଭିଶାପ ଶୁଣି କଳାବତୀର ମାତା ଇନ୍ଦ୍ରଙ୍କୁ ବହୁ ପ୍ରକାର ସ୍ତୁତି କରି ସନ୍ତୁଷ୍ଟ କରିବାକୁ ଲାଗିଲା । ଶେଷରେ ଇନ୍ଦ୍ର ଶାପ ମୁକ୍ତିର ଅବଧି ନିର୍ଦ୍ଦେଶ କରି କହିଲେ, 'ବହୁବର୍ଷ ଧରି ନିର୍ମିତ ଏହି ମନ୍ଦିରଟି ଯଦି କେବେ ଭୂମିସାତ୍ ହୁଏ ତେବେ କଳାବତୀର ମୁକ୍ତି ହେବ ।' କଳାବତୀ ଏଥିରେ ଶୋକାକୁଳ ହୋଇ ଠିଣ୍ଠାକରାଳ ନିକଟକୁ ଫେରିଆସିଲା । ଇନ୍ଦ୍ରଙ୍କ ଅଭିଶାପ ଓ ଶାପମୁକ୍ତିର ଉପାୟ ପତି ନିକଟରେ ନିବେଦନ କରି ସେ ନିଜର ସମସ୍ତ ଆଭୂଷଣ ପ୍ରଦାନ ପୂର୍ବକ ନାଗପୁରର ସେହି ଦେବାଳୟରେ ଥିବା ଗୋଟିଏ ସ୍ତମ୍ଭର ଶୀର୍ଷଭାଗସ୍ଥିତ ଏକ ମୂର୍ତ୍ତି ମଧ୍ୟରେ ପ୍ରବେଶ କରିଗଲା ।

କଳାବତୀ ଚାଲିଯିବା ପରେ ଠିଣ୍ଠାକରାଳ ବିରହ ଜ୍ୱାଳାରେ ମୂର୍ଚ୍ଛିତ ହୋଇପଡ଼ିଲା । କିଛି ସମୟ ପରେ ଚେତନା ଫେରି ଆସିବାରୁ ସେ ନିଜକୁ ଧିକ୍କାର କରିବାକୁ ଲାଗିଲା । 'ମୋର ସ୍ୱର୍ଗପୁରକୁ ଯିବା ଅତ୍ୟନ୍ତ ଗୋପନୀୟ ଜାଣିସୁଦ୍ଧା ମୁଁ ମୂର୍ଖ ତାକୁ ପ୍ରଘଟ କରିଦେଲି । ମୋପରି ଚଞ୍ଚଳମତି ଜୁଆଡ଼ୀମାନଙ୍କର ଆତ୍ମସଂଯମ ବା ଆସିବ କୁଆଡୁ । ମୋର ମୂର୍ଖତାପାଇଁ କେବଳ ଏପରି କଷ୍ଟ ଭୋଗ କରିବାକୁ ପଡୁଛି ।' ଏହିପରି କିଛି ସମୟ ବିଳାପ କରି ସେ ଧୈର୍ଯ୍ୟ ସଞ୍ଚୟପୂର୍ବକ ପୁଣି ଚିନ୍ତା କଲା 'ବର୍ତ୍ତମାନ ବିଳାପର ସମୟ ନୁହେଁ । ମୋତେ ଧୈର୍ଯ୍ୟ ଧରି ଶାପମୁକ୍ତିର ଅବଧିକୁ ହ୍ରାସ କରିବାକୁ ପଡ଼ିବ ।'

ଏହିପରି ବିଚାର ବିବେଚନା କରି ସେ ରୁଦ୍ରାକ୍ଷମାଳ, ମୃଗଚର୍ମ ଓ ଜଟାଧାରଣ ପୂର୍ବକ ଏକ ପରିବ୍ରାଜକର ବେଶରେ ନାଗପୁର ଚାଲିଗଲା । ସେଠାରେ ଉପସ୍ଥିତ ହୋଇ ସେ ନଗର ବାହାରେ ନିଜର ଛଦ୍ମ ଆଶ୍ରମ ପ୍ରତିଷ୍ଠା କରି ବାସ କରିବାକୁ ଲାଗିଲା । ପ୍ରଥମେ ପତ୍ନୀ କଳାବତୀଠାରୁ ପାଇଥିବା ବହୁମୂଲ୍ୟ ରତ୍ନାଳଙ୍କାରଗୁଡ଼ିକର କିଛି ଅଂଶ ଚାରୋଟି ହାଣ୍ଡିରେ ଭରି କରି ନଗରର ଚାରିଦିଗରେ ପୋତିଦେଲା । ଅବଶିଷ୍ଟ କିଛି ଅଳଙ୍କାରକୁ ଅନ୍ୟ ଏକ ହାଣ୍ଡିରେ ରଖି ନଗର ମଧ୍ୟସ୍ଥ ଦେବାଳୟ ସମ୍ମୁଖରେ ଥିବା ବଜାର ମଧ୍ୟରେ ନେଇ ଗୋପନରେ ପୋତିଦେଲା । ଏହାପରେ ସେ ନିଜ ଆଶ୍ରମରେ ଜପ,

ଧ୍ୟାନ, ତପସ୍ୟା କରି ନଗରବାସୀମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଲାଗିଲା । ସେ ଦିନରେ ତିନିଥର ସ୍ନାନକରି ପୂଜା କରୁଥାଏ, ଭିକ୍ଷା କରି ଆଣୁଥିବା ଭୋଜନ ସାମଗ୍ରୀକୁ ନଦୀ ଜଳରେ ଧୋଇ ପଥର ଚଟାଣ ଉପରେ ରଖି ଖାଉଥାଏ । ଧୀରେ ଧୀରେ ଜଣେ ସିଦ୍ଧ ତପସ୍ୱୀ ଭାବେ ତାର ସୁଖ୍ୟାତି ଚତୁର୍ଦ୍ଦିଗରେ ପ୍ରଚାରିତ ହେଲା । ରାଜା ମଧ୍ୟ ଏହି ତପସ୍ୱୀ ସମ୍ପର୍କରେ ଜାଣିବାକୁ ପାଇଲେ । ରାଜାଙ୍କର ବାରମ୍ବାର ଅନୁରୋଧ ସତ୍ତ୍ୱେ ଛଦ୍ମ ତପସ୍ୱୀ ଠିଣ୍ଠାକରାଳ ତାଙ୍କ ନିକଟକୁ ଯାଉନଥାଏ । ଶେଷରେ ରାଜା ସ୍ୱୟଂ ତା'ର ଆଶ୍ରମରେ ଆସି ପହଞ୍ଚିଲେ । ଦୀର୍ଘ ସମୟ ଧରି ଉଭୟଙ୍କ ମଧ୍ୟରେ ବାର୍ତ୍ତାଳାପ ହେଲା ।

ସନ୍ଧ୍ୟା ହୋଇ ଆସିବାରୁ ରାଜ ଫେରିଯିବାପାଇଁ ଉଠି ଠିଆହେଲେ । ଏ ସମୟରେ ଦୂରରୁ ଗୋଟିଏ ଶୃଗାଳର ଚିତ୍କାର ଶୁଣାଗଲା । ତାହା ଶୁଣି ସେହି ଛଦ୍ମ ତପସ୍ୱୀ ହସିବାକୁ ଲାଗିଲା । ରାଜା ହସିବାର କାରଣ ଜାଣିବାପାଇଁ ଚାହିଁବାରୁ ସେ ତାହା ଏଡ଼ାଇଦେଇ କହିଲା ଯେ ତାଙ୍କର ସେଥିରେ ଜାଣିବାର କିଛି ନାହିଁ । ତଥାପି ରାଜା ଆଗ୍ରହୀ ହୋଇ ଉଠିବାରୁ ସେ କହିଲା, 'ଏହି ନଗରର ପୂର୍ବଦିଗରେ ଏକ ଅରଣ୍ୟ ଅଛି । ସେହି ଅରଣ୍ୟର ଗୋଟିଏ ବେତସ କୁଞ୍ଜ ମଧ୍ୟରେ ଏକ ରତ୍ନପୂର୍ଣ୍ଣ ହାଣ୍ଡି ପୋତାଯାଇଛି । ଶୃଗାଳଟି ମୋତେ ସେହି ହାଣ୍ଡିଟିକୁ ନେଇ ଆସିବାପାଇଁ ନିର୍ଦ୍ଦେଶ ଦେଉଛି । ମୁଁ ପଶୁପକ୍ଷୀମାନଙ୍କ ଭାଷା ଜାଣିପାରେ ବୋଲି ସେ ଶୃଗାଳ ଜାଣେ ।' ରାଜାଙ୍କୁ ଆଗ୍ରହୀ ଦେଖି ସେ ତାଙ୍କ ସହିତ ଯାଇ ପୂର୍ବୋକ୍ତ କୁଞ୍ଜ ନିକଟରେ ପହଞ୍ଚିଲା । ସେଠାରେ ଭୂମି ଖନନ କରିବାରୁ ଗୋଟିଏ ଅଳଙ୍କାରପୂର୍ଣ୍ଣ ମାଟିହାଣ୍ଡି ସେମାନେ ଦେଖିବାକୁ ପାଇଲେ । ଠିଣ୍ଠାକରାଳ ତାକୁ ଉଠାଇଆଣି ରାଜାଙ୍କ ହସ୍ତରେ ସମର୍ପଣ କଲା । ଏତେଗୁଡ଼ିଏ ରତ୍ନଲାଭ କରି ରାଜା ପ୍ରୀତ ହେଲେ । ତପସ୍ୱୀ ଯେ ଜଣେ ଜ୍ଞାନୀ, ସତ୍ୟବାଦୀ, ନିଷ୍କାମ ମହାପୁରୁଷ, ଏଥିରେ ତାଙ୍କର ବିଶ୍ୱାସ ହେଲା । ସେମାନେ ଆଶ୍ରମକୁ ଫେରିଆସିଲେ । ରାତି ବଢ଼ିଯାଇଥିବାରୁ ରାଜା ତପସ୍ୱୀଙ୍କ ପାଦରେ ଭୂମିଷ୍ଠ ପ୍ରଣାମ ଜଣାଇ ମନ୍ତ୍ରୀମାନଙ୍କ ସହିତ ସ୍ୱଭବନକୁ ପ୍ରତ୍ୟାବର୍ତ୍ତନ କଲେ । ସେ ସେହି ସମୟଠାରୁ ତପସ୍ୱୀଙ୍କ ଉଚ୍ଛ୍ୱସିତ ପ୍ରଶଂସା କରୁଥାନ୍ତି ।

ଛଦ୍ମ ତପସ୍ୱୀ ପ୍ରତି ଆକୃଷ୍ଟ ହୋଇ ରାଜା ସମୟେ ସମୟେ ତା'ର ଆଶ୍ରମରେ ଆସି ଭକ୍ତି ନିବେଦନ କରୁଥାନ୍ତି । ସେ ମଧ୍ୟ ଶୃଗାଳ ଧ୍ୱନିର ବାହାନାରେ ତାଙ୍କୁ ଅନ୍ୟ ତିନୋଟି ଅଳଙ୍କାରପୂର୍ଣ୍ଣ ଭାଣ୍ଡ ପ୍ରଦାନ କରିଥାଏ । ଦିନେ ରାଜା ତାକୁ ଧରି ଦେବାଳୟ ଦର୍ଶନପାଇଁ ବାହାରିଲେ । ଭଣ୍ଡ ତପସ୍ୱୀ ପ୍ରତି ରାଜାଙ୍କ ଅଚଳାଭକ୍ତି ଦେଖି ମନ୍ତ୍ରୀ ଓ

ନଗରବାସୀମାନେ ମଧ୍ୟ ତା'ର ଭକ୍ତ ହୋଇପଡ଼ିଥାନ୍ତି । ଦେବାଳୟ ଦର୍ଶନରେ ଯାଉଥିବା ବେଳେ ଏମାନେ ସମସ୍ତେ ତାର ଅନୁଗମନ କରୁଥାନ୍ତି । ବଜାର ମଧ୍ୟରେ ଗୋଟିଏ କୁଆ ରାବୁଥିବା ଶୁଣି ତପସ୍ୱୀ ହଠାତ୍ ସେଠାରେ ଠିଆ ହୋଇଗଲା । ରାଜାଙ୍କୁ ଲକ୍ଷ୍ୟକରି ସେ କହିଲା 'ରାଜନ୍ ! ଏ କୁଆର ରାବ ଶୁଣିଲେ ତ । ସେ କହୁଛି ଦେବାଳୟ ସମ୍ମୁଖସ୍ଥ ଏହି ବଜାରରେ ବହୁମୂଲ୍ୟ ରତ୍ନାଳଙ୍କାର ଭରା ଗୋଟିଏ ହାଣ୍ଡି ପୋତାଯାଇଛି । ତାକୁ ମଧ୍ୟ ନେବାପାଇଁ ସେ ମୋତେ ଅନୁରୋଧ ଜଣାଉଛି । ଚାଲନ୍ତୁ, ମୁଁ ଆପଣଙ୍କୁ ସେହି ବହୁମୂଲ୍ୟ ରତ୍ନସବୁ ପ୍ରଦାନ କରିବି । ରତ୍ନ, ଅଳଙ୍କାର ଇତ୍ୟାଦି ମୋର କ'ଣ ହେବ ?' ଏହା କହି ଠିଣ୍ଟାକରାଳ ରାଜାଙ୍କୁ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ନେଇ ପହଞ୍ଚାଇଲା । ଭୂମି ଖୋଦନ କରିବା ଫଳରେ ସେମାନେ ସେହି ମୃଣ୍ମୟ ପାତ୍ରଟିକୁ ପାଇଲେ । ତପସ୍ୱୀ ହସ୍ତରୁ ତାହା ଗ୍ରହଣ କରି ରାଜା ନିଜକୁ କୃତକୃତ୍ୟ ମନେକଲେ ।

ରାଜା ସେହି ସ୍ଥାନରୁ ତପସ୍ୱୀଙ୍କ ହସ୍ତଧାରଣ ପୂର୍ବକ ଦେବାଳୟ ପର୍ଯ୍ୟନ୍ତ ପଦବ୍ରଜରେ ଯିବାକୁ ଲାଗିଲେ । ଜନତା ତପସ୍ୱୀର ପ୍ରଭାବ ଦେଖି ଆଶ୍ଚର୍ଯ୍ୟଚକିତ ହୋଇପଡ଼ିଥାନ୍ତି । ଦେବାଳୟ ମଧ୍ୟରେ ପ୍ରବେଶ କରି ଠିଣ୍ଟାକରାଳ ପ୍ରତ୍ୟେକ ସ୍ତମ୍ଭକୁ ସ୍ପର୍ଶ କରୁଥାଏ । ଶେଷରେ ସେ ପ୍ରିୟତମା କଳାବତୀ ଥିବା ସ୍ତମ୍ଭ ନିକଟରେ ଯାଇ ପହଞ୍ଚିଲା । ପାଷାଣରୂପିଣୀ କଳାବତୀ ନିଜର ପ୍ରିୟତମ ପତିଙ୍କୁ ନିକଟରେ ଦେଖି ଶୋକବିହ୍ୱଳା ହୋଇପଡ଼ିଲା । ତା' ଚକ୍ଷୁରୁ ଅଶ୍ରୁଧାରା ସ୍ରାବିତ ହେଲା । ପାଷାଣରୁ ଜଳସ୍ରବୁ ଥିବା ଦେଖି ରାଜା ବିସ୍ମିତ ହୋଇପଡ଼ିଲେ । ସେ ମଧ୍ୟ ଦୁଃଖ ପ୍ରକାଶ କରି ସେହି ଛଦ୍ମ ତପସ୍ୱୀକୁ ଏହାର ରହସ୍ୟ ଜଣାଇବାପାଇଁ ପ୍ରାର୍ଥନା କଲେ । ଠିଣ୍ଟାକରାଳ ଅତ୍ୟନ୍ତ ଦୁଃଖିତ ଓ ବିବ୍ରତ ଥିବା ପରି ଅଭିନୟ କରି ରାଜାଙ୍କୁ କହିଲା 'ଆପଣ ପ୍ରଥମେ ରାଜଭବନକୁ ଫେରିଚାଲନ୍ତୁ । ଏହି ରହସ୍ୟ ସମ୍ପର୍କରେ ଆପଣଙ୍କୁ ଜଣାଇବା ଉଚିତ ନୁହେଁ । ତଥାପି ମୁଁ ସେଠାରେ ଆପଣଙ୍କୁ ସବୁକଥା କହିବି ।'

ଠିଣ୍ଟାକରାଳର କଥାରେ ରାଜା ତା' ସହିତ ଯାଇ ନିଜ ବାସଭବନରେ ପ୍ରବେଶ କଲେ । ସେ ରାଜାଙ୍କୁ ଏକାନ୍ତରେ କହିଲା, 'ଆପଣଙ୍କ ଏହି ଦେବାଳୟ ଅଶୁଭ ଓ ଅଶୁଭ ଲଗ୍ନରେ ନିର୍ମିତ ହୋଇଛି । ତେଣୁ ଆଜକୁ ତୃତୀୟ ଦିନରେ ଆପଣଙ୍କ ମୃତ୍ୟୁ ହେବ । ଏହା ଜାଣିପାରି ସେହି ଶାଳଭଞ୍ଜିକା ଦୁଃଖରେ ବିଳାପ କରୁଥିଲା । ଆପଣ ଯଦି ପ୍ରାଣରକ୍ଷା କରିବାପାଇଁ ଚାହାଁନ୍ତି ତେବେ ତୁରନ୍ତ ସେହି ଦେବାଳୟଟିକୁ ଭାଙ୍ଗି ମାଟିରେ ମିଶାଇ ଦିଅନ୍ତୁ । କୌଣସି ଶୁଭ ସ୍ଥାନ ଦେଖି ଶୁଭମୁହୂର୍ତ୍ତରେ ନୂତନ ମନ୍ଦିରଟିଏ ନିର୍ମାଣ କରାଇଲେ

ଆପଣଙ୍କ ପ୍ରାଣରକ୍ଷା ହେବ । ତା' ସହିତ ରାଷ୍ଟ୍ରର ମଧ୍ୟ ମଙ୍ଗଳ ହେବ ।' ଛଦ୍ମ ପରିବ୍ରାଜକର କଥାରେ ବିଶ୍ୱାସ ସ୍ଥାପନ କରି ରାଜା ସେହିଦିନ ହିଁ ରାଜ୍ୟବାସୀଙ୍କ ସାହାଯ୍ୟରେ ଦେବାଳୟଟିକୁ ଭୂମିସାତ୍ କରିଦେଲେ । ପୁଣି ସଙ୍ଗେସଙ୍ଗେ ଶୁଭମୁହୂର୍ତ୍ତ ଦେଖି ନୂତନ ମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ସାଧାରଣତଃ ଏହିପରି ହିଁ ଧନାଢ଼୍ୟ ବ୍ୟକ୍ତିମାନେ ଦୁଷ୍ଟବୁଦ୍ଧି ବ୍ୟକ୍ତିମାନଙ୍କଦ୍ୱାରା ବଞ୍ଚିତ ହୋଇଥାନ୍ତି ।

**'ଅହୋ ବିଶ୍ୱାସ୍ୟ ବଂଚ୍ୟନ୍ତେ ଧୂର୍ତ୍ତୈଃ ଛଦ୍ମଭିରୀଶ୍ୱରାଃ'**

ନିଜର ଅଭିଳଷିତ କାର୍ଯ୍ୟ ସିଦ୍ଧ ହେବାରୁ ସେହି ଦ୍ୟୂତକାର ଠିଣ୍ଟାକରାଳ ପରିବ୍ରାଜକ ବେଶ ପରିତ୍ୟାଗ କରି ସୁସ୍ଥ ମନରେ ଉଜ୍ଜୟିନୀ ଫେରିଚାଲିଲା । ଶାପମୁକ୍ତ କଳାବତୀ ମଧ୍ୟ ପଥ ମଧ୍ୟରେ ପତିଙ୍କ ସହିତ ଆସି ଯୋଗଦେଲା । ଉଭୟେ ଉଭୟଙ୍କୁ କୋଳାଗ୍ରତ କଲେ । ପତିଙ୍କୁ ଆଶ୍ୱାସନା ଦେଇ କଳାବତୀ ନିଜର ଶାପମୁକ୍ତି ଜଣାଇବା ନିମିତ୍ତ ଦେବରାଜ ଇନ୍ଦ୍ରଙ୍କ ନିକଟକୁ ଗମନ କଲା । ଅସମୟରେ ଅପ୍ସରା କନ୍ୟାକୁ ଦେଖି ଦେବରାଜ ବିସ୍ମିତ ହୋଇପଡ଼ିଲେ । ଠିଣ୍ଟାକରାଳର ଦୁଷ୍ଟବୁଦ୍ଧି ଓ ଉପସ୍ଥିତ ପ୍ରଜ୍ଞା ଦେଖି ସେ ନହସି ରହିପାରିଲେ ନାହିଁ । ତାଙ୍କୁ ପ୍ରସନ୍ନ ଥିବା ଦେଖି ପାର୍ଶ୍ୱରେ ବସିଥିବା ଦେବଗୁରୁ ବୃହସ୍ପତି ଜଣାଇଲେ—

'ଦେବରାଜ ! ଦ୍ୟୂତକାରମାନେ ସମୟେ ସମୟେ ଏହିପରି ବହୁ ବିଚିତ୍ର ମାୟା ରଚନା କରିଥାନ୍ତି । ଏହାର ଅନ୍ୟ ଏକ ଉଦାହରଣ ଶ୍ରବଣ କରନ୍ତୁ ।'

## ଚତୁର ଦ୍ୟୂତକାର ଓ ପ୍ରବଞ୍ଚିତ ଯମ କଥା

ପ୍ରାଚୀନ କାଳରେ କୌଣସି ଏକ ନଗରରେ ଜଣେ ଦ୍ୟୂତକାର ରହୁଥିଲା । ଦ୍ୟୂତକ୍ରୀଡ଼ାରେ ସେ ଅତ୍ୟନ୍ତ ପାରଙ୍ଗମ । ତା'ର ନାମ ଥିଲା କୁଟନୀକପଟ । ମୃତ୍ୟୁପରେ ସେ ଯାଇ ଯମଲୋକରେ ପହଞ୍ଚିଲା । ଚିତ୍ରଗୁପ୍ତଙ୍କ ପରାମର୍ଶ କ୍ରମେ ଧର୍ମରାଜ ତାକୁ ଜଣାଇଲେ ଯେ ଜୀବନରେ ବହୁପାପ କରିଥିବାଯୋଗୁଁ ତାକୁ ଗୋଟିଏ କଳ୍ପ ପର୍ଯ୍ୟନ୍ତ ନର୍କ ଭୋଗ କରିବାକୁ ପଡ଼ିବ । କିନ୍ତୁ ଯେହେତୁ ସେ ଦିନେ କୌଣସି ବେଦଜ୍ଞ ବ୍ରାହ୍ମଣକୁ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଦେଇଥିଲା, ସେହି ପୁଣ୍ୟ ବଳରେ ସେ ଗୋଟିଏ ଦିନପାଇଁ ଇନ୍ଦ୍ରପଦ ଲାଭ କରିପାରିବ । ଦେବରାଜ, ପ୍ରଥମେ ନା ପରେ ସେ ଇନ୍ଦ୍ରପଦ ଭୋଗ କରିବାପାଇଁ ଚାହୁଁଛି ବୋଲି ପଚାରିବାରୁ ଦ୍ୟୂତକାର ପ୍ରଥମେ ଇନ୍ଦ୍ରପଦ ଭୋଗ କରିବାପାଇଁ ଇଚ୍ଛା ପ୍ରକାଶ କଲା । ଧର୍ମରାଜ ଯମ ତାକୁ ସ୍ୱର୍ଗପୁରକୁ ପଠାଇଦେଲେ । ତାଙ୍କ ନିର୍ଦ୍ଦେଶରେ

ଦେବତାମାନେ ଗୋଟିଏ ଦିନପାଇଁ ଇନ୍ଦ୍ରଙ୍କୁ ସିଂହାସନ ଚ୍ୟୁତ କରି ତାକୁ ଇନ୍ଦ୍ରପଦରେ ଅଭିଷିକ୍ତ କରାଇଲେ ।

ଇନ୍ଦ୍ରପଦ ଲାଭ କରିବା ମାତ୍ରେ ଦ୍ୟୂତକାର ନିଜର ଅନ୍ୟ ଜୁଆଡ଼ୀ ବନ୍ଧୁ ଏବଂ ବେଶ୍ୟାମାନଙ୍କୁ ସ୍ୱର୍ଗପୁରକୁ ନେଇଆସିଲା । ନିଜର ପ୍ରଭୁତ୍ୱ ବିସ୍ତାର କରି ସେ ଦେବତାମାନଙ୍କୁ ଆଦେଶ ଦେଲା ଯେ ସେମାନେ ତାକୁ ଓ ତାର ବନ୍ଧୁମାନଙ୍କୁ ନେଇ, ଯେତେ ଶୀଘ୍ର ସମ୍ଭବ ସ୍ୱର୍ଗ, ମର୍ତ୍ତ୍ୟ ଓ ସପ୍ତଦ୍ୱୀପରେ ଥିବା ସମସ୍ତ ପବିତ୍ର ତୀର୍ଥରେ ସ୍ନାନ କରାଇ ଆଣିବେ । ପୁଣି ସେମାନେ ମର୍ତ୍ତ୍ୟଲୋକର ସମସ୍ତ ରାଜାଙ୍କ ଶରୀରରେ ପ୍ରବେଶ କରି ତାର କଲ୍ୟାଣ ନିମନ୍ତେ ସମଗ୍ର ଦିନଟି ମହାଦାନରେ ବିତାଇବେ । ଦ୍ୟୂତକାରର ଆଦେଶରେ ଦେବତାମାନେ ଯାଇ ବେଦ୍ ବେଦାଙ୍ଗ ନିଷ୍ଣାତ ବ୍ରାହ୍ମଣମାନଙ୍କୁ ପ୍ରଚୁର ଦାନ କରିବାକୁ ଲାଗିଲେ । ତୀର୍ଥସ୍ନାନ ଓ ମହାଦାନ ଫଳରେ ଦ୍ୟୂତକାରର ସମସ୍ତ ପାପ କ୍ଷାଳିତ ହେଲା । ସେ ଅନନ୍ତ ପୁଣ୍ୟର ଅଧିକାରୀ ହୋଇ ଇନ୍ଦ୍ରପଦରେ ସ୍ଥିର ହୋଇଗଲା । ତା'ର ମିତ୍ର ଓ ବେଶ୍ୟାମାନେ ମଧ୍ୟ ଇନ୍ଦ୍ରପଦରେ ଅଧିଷ୍ଠିତ ଦ୍ୟୂତକାରର ଅନୁଗ୍ରହରୁ ଦେବତ୍ୱପ୍ରାପ୍ତ ହୋଇ ସ୍ୱର୍ଗଲୋକରେ ବାସକଲେ । ପରଦିନ ଚିତ୍ରଗୁପ୍ତ ସେହି ଦ୍ୟୂତକାର ନିଜର ଚାତୁର୍ଯ୍ୟ ବଳରେ ଇନ୍ଦ୍ରପଦ ଲାଭ କରିଥିବା କଥା ଧର୍ମରାଜଙ୍କୁ ଜଣାଇଲେ । ଏଥିରେ ହାସ୍ୟ ଓ ବିସ୍ମୟ ପ୍ରକାଶ କରି ଧର୍ମରାଜ କହିଲେ 'ସେହି ଚତୁର ଦ୍ୟୂତକାର କେବଳ ଇନ୍ଦ୍ରଙ୍କୁ ନୁହେଁ, ଆମକୁ ମଧ୍ୟ ଠକିଦେଲା ।'

ତେଣୁ, ଦେବରାଜ ! ଦ୍ୟୂତବିଳାସୀମାନେ ଏହିପରି ଅତ୍ୟନ୍ତ ଚତୁର ।'

ବୃହସ୍ପତିଙ୍କଠାରୁ ବିଚିତ୍ର ଦ୍ୟୂତକାରର କଥା ଶୁଣି ଦେବରାଜ ଇନ୍ଦ୍ର କଳାବତୀକୁ ପଠାଇ ଠିଣ୍ଟାକରାଳକୁ ତାଙ୍କ ନିକଟକୁ ନେଇଆସିଲେ । ସେ ତାର ଉପସ୍ଥିତ ବୁଦ୍ଧି ଏବଂ ଚାତୁର୍ଯ୍ୟର ପ୍ରଶଂସା କରି ଉଭୟ ପତିପତ୍ନୀଙ୍କୁ ତାଙ୍କ ଅନୁଚର ରୂପେ ନିଯୁକ୍ତ କଲେ । ସେହିଦିନଠାରୁ ଦେବତାମାନଙ୍କ ତୁଲ୍ୟ ସ୍ଥିରବୁଦ୍ଧି ହୋଇ ଠିଣ୍ଟାକରାଳ ସ୍ୱର୍ଗସୁଖ ଭୋଗକରି ଦେବଲୋକରେ ବାସକଲା ।

ଦ୍ୟୂତକାରମାନଙ୍କ କୂଟବୁଦ୍ଧି ଓ ସ୍ଥିତପ୍ରଜ୍ଞତାର ଏହାହିଁ ପରିଣାମ । ତେଣୁ, ହେ ବେତାଳ ଅଗ୍ନିଶିଖ ! ଦ୍ୟୂତକାର ଡାକିନେୟ ଛଳନା କରି ତୁମକୁ ଏହି ଅନ୍ଧକୂପ ମଧ୍ୟକୁ ଠେଲିଦେବା କିଛି ଆଶ୍ଚର୍ଯ୍ୟର କଥା ନୁହେଁ । ବର୍ତ୍ତମାନ ତୁମେ ଏଠାରୁ ମୁକୁଳି ଯାଅ । ଆମେ ମଧ୍ୟ ଏହା ମଧ୍ୟରୁ ବର୍ତ୍ତମାନ ମୁକ୍ତ ହୋଇଯାଉଛୁ ।

ଏହା କହି ସେ ଉଭୟ ବ୍ରହ୍ମରାକ୍ଷସ ଅନ୍ଧକୂପରୁ ନିଷ୍କ୍ରାନ୍ତ ହେବାପାଇଁ ମୋତେ ସାହାଯ୍ୟ କଲେ । ମୁଁ ଉପରକୁ ଉଠିଆସିଲି । ସେତେବେଳେ ମୁଁ ଭୟଙ୍କର କ୍ଷୁଧାର୍ତ୍ତ ଥାଏ । ଦିନସାରା ଭ୍ରମଣ କରି କୌଣସି ଆହାର ଯୋଗାଡ଼ କରିପାରିଲି ନାହିଁ । ରାତ୍ରି ହେବାରୁ ନଗର ମଧ୍ୟରେ ଜଣେ ବ୍ରାହ୍ମଣ ପଥିକଙ୍କୁ ଦେଖିଲି । ମୁଁ ଧାଇଁଯାଇ ତାଙ୍କୁ ଧରିବାପାଇଁ ଉଦ୍ୟତ ହୁଅନ୍ତେ ସେ ଉଚ୍ଚସ୍ୱରରେ ତାଙ୍କୁ ରକ୍ଷା କରିବା ନିମିତ୍ତ ରାଜା ବିକ୍ରମାଦିତ୍ୟଙ୍କୁ ଡାକିବାକୁ ଲାଗିଲେ । ବ୍ରାହ୍ମଣଙ୍କ ଆର୍ତ୍ତଚିତ୍କାର ଶୁଣି ମୁହୂର୍ତ୍ତକ ମଧ୍ୟରେ ପ୍ରଚଣ୍ଡ ଅଗ୍ନିଜ୍ୱାଳା ତୁଲ୍ୟ ରାଜା ବିକ୍ରମାଦିତ୍ୟ ଆସି ସେଠାରେ ପହଞ୍ଚିଗଲେ । ସେ ଦୂରରୁ ବ୍ରାହ୍ମଣଙ୍କୁ ଆହାର ନ କରିବାପାଇଁ କହୁଥାନ୍ତି । କିନ୍ତୁ ମୋତେ ସେଥିରୁ ନିବୃତ୍ତ ନହେବା ଦେଖି ସେ ତାଙ୍କ ନିକଟରେ ଥିବା ଏକ ଚିତ୍ରପଟ ଉପରେ ଲିଖିତ ଗୋଟିଏ ପୁରୁଷର ମସ୍ତକ କର୍ତ୍ତନ କରିବାକୁ ଲାଗିଲେ । ଫଳରେ ମୋର କଣ୍ଠ କ୍ଷତବିକ୍ଷତ ହେଲା ଏବଂ ସେଥିରୁ ରକ୍ତଧାର ବୋହିବାକୁ ଲାଗିଲା । ମୁଁ ବ୍ରାହ୍ମଣଙ୍କୁ ମୁକ୍ତିଦେଇ ତାଙ୍କ ପାଦତଳେ ପଡ଼ିଗଲି । ସେ ଆଉକିଛି ଅନିଷ୍ଟ ନକରି ମୋତେ ଛାଡ଼ିଦେଲେ । ବିକ୍ରମାଦିତ୍ୟ ଏହିପରି ଜଣେ ଅପୂର୍ବ ଏବଂ ବିଚିତ୍ର ପ୍ରଭାବଶାଳୀ ରାଜା । ତାଙ୍କରି ଆଜ୍ଞାରେ ହିଁ ମୁଁ ଏହି ଭଣ୍ଡକାପାଳିକକୁ ହତ୍ୟା କରିଛି । ତେଣୁ, ଯମଶିଖ ! ଏହି ଶବପିଣ୍ଡ ମୋର ହିଁ ଭକ୍ଷ୍ୟ, ତୁମେ ତାକୁ ଛାଡ଼ିଦିଅ ।'

ଅଗ୍ନିଶିଖର ଅନୁରୋଧ ସତ୍ତ୍ୱେ ଉଦ୍ଧତ ଯମଶିଖ ସ୍ୱାଭିମାନବଶତଃ ସେହି ଭଣ୍ଡ କାପାଳିକର ମୃତ ଶରୀରକୁ ଟାଣିବାକୁ ଲାଗିଲା । ତା'ର ଏ ପ୍ରକାର ଅବିନୀତ ଆଚରଣ ଦେଖି ରାଜା ବିକ୍ରମାଦିତ୍ୟ ସେଠାରେ ଆସି ଉପସ୍ଥିତ ହେଲେ । ସେ ସେଠାରେ ମାଟିର ଏକ ପିତୁଳା ପ୍ରସ୍ତୁତ କରି ତା'ର ହାତ ଦୁଇଟିକୁ କାଟିଦେଲେ । ଫଳରେ ଯମଶିଖର ଦୁଇଟି ହାତ କଟିଗଲା । ସେ ଭଣ୍ଡକାପାଳିକର ମୃତପିଣ୍ଡଟିକୁ ଛାଡ଼ି ଦେଇ ପଳାୟନ କଲା । ଅଗ୍ନିଶିଖ ସେହି ମୃତପିଣ୍ଡର ମାଂସ ଭକ୍ଷଣ କରି ପରିତୃପ୍ତ ହେଲା ।

ମୁଁ ସେଠାରେ ଠିଆହୋଇ ଏସବୁ ବିସ୍ମୟକର ଘଟଣା ଦେଖୁଥାଏ ।'

ମହାରାଜ ! ଉକ୍ତ ଯକ୍ଷକନ୍ୟା ମଦନମଞ୍ଜରୀ ଏପରି ଭାବରେ ଆପଣଙ୍କ ଅସୀମ ପ୍ରଭାବ ବର୍ଣ୍ଣନା କରି ମୋତେ ପୁଣି କହିଲେ, 'ଅନଙ୍ଗଦେବ ! ମୋତେ ସପ୍ରଶଂସ ଦୃଷ୍ଟିରେ ଠିଆ ହୋଇଥିବା ଦେଖି ରାଜା କୋମଳ ସ୍ୱରରେ କହିଲେ, 'ଯକ୍ଷିଣି ! ବର୍ତ୍ତମାନ, ତୁମେ ମୁକ୍ତ, କାପାଳିକର ଭୟ ଆଉ ନାହିଁ । ତେଣୁ, ନିର୍ଭୟରେ ପତିଙ୍କ ନିକଟକୁ ଫେରିଯାଅ ।' ମୁଁ ମୋର ରକ୍ଷାକର୍ତ୍ତାଙ୍କୁ ପ୍ରଣାମ କରି ସ୍ୱଗୃହକୁ ଫେରିଆସିଲି । ତୁମର ପ୍ରଭୁ ବିକ୍ରମାଦିତ୍ୟ ଏହିପରି ଭାବରେ ମୋର ଜୀବନ, ପାତିବ୍ରତ୍ୟ ଏବଂ ମୋର ପତିଙ୍କୁ ରକ୍ଷା କରିଥିଲେ ।

ମୁଁ ସେହିଦିନଠାରୁ ତାଙ୍କ ପ୍ରତ୍ୟୁପକାର କଥା ଚିନ୍ତା କରୁଥାଏ । ତୁମେ ମୁଁ କହିଥିବା ବିଷୟ ତାଙ୍କ ନିକଟରେ ନିବେଦନ କଲେ ସେ ମୋତେ ମନେପକାଇ ପାରିବେ ।

ମୁଁ ଆଜି ସୂଚନା ପାଇଲି ଯେ ରାଜା ବିକ୍ରମାଦିତ୍ୟଙ୍କପାଇଁ ସିଂହଳାଧିପତି ତାଙ୍କ କନ୍ୟା ତ୍ରୈଲୋକ୍ୟସୁନ୍ଦରୀଙ୍କୁ ପ୍ରେରଣ କରିଛନ୍ତି । ଏଥିରେ ଈର୍ଷାନ୍ୱିତ ହୋଇ ଦୁଷ୍ଟବୁଦ୍ଧି ଶତ୍ରୁ ରାଜାମାନେ ବିକ୍ରମାଦିତ୍ୟଙ୍କୁ ହତ୍ୟାକରି ସ୍ୱୟଂବରା ତ୍ରୈଲୋକ୍ୟସୁନ୍ଦରୀଙ୍କୁ ଅପହରଣ କରିନେବା ନିମିତ୍ତ ଚକ୍ରାନ୍ତ କରୁଛନ୍ତି । ଏଣୁ ତୁମେ ଶୀଘ୍ର ଯାଇ ବିକ୍ରମଶକ୍ତିଙ୍କୁ ଏହି ସମ୍ବାଦ ଦିଅ । ଫଳରେ ସେ ଶତ୍ରୁ ରାଜାମାନଙ୍କ ସମ୍ମୁଖୀନ ହେବାପାଇଁ ସଦା ପ୍ରସ୍ତୁତ ରହିବେ । ମୁଁ ମଧ୍ୟ ବିକ୍ରମାଦିତ୍ୟଙ୍କ କଲ୍ୟାଣପାଇଁ କିଛି ଉପାୟ କରୁଛି ।

ଏହି କାର୍ଯ୍ୟପାଇଁ ତୁମକୁ ମାୟାବଳରେ ଏଠାକୁ ନେଇଆସିଛି । ବିକ୍ରମଶକ୍ତିଙ୍କୁ ପୂର୍ବରୁ ସାବଧାନ କରାଇଦେବା ହିଁ ମୋର ଅଭିଳାଷ । ମୁଁ ତୁମର ପ୍ରଭୁ ବିକ୍ରମାଦିତ୍ୟଙ୍କ ନିକଟକୁ ଏପରି କିଛି ଉପହାର ପଠାଇବି ଯାହାଦ୍ୱାରା ତାଙ୍କ ଋଣରୁ ମୋତେ କିଛି ପରିମାଣରେ ମୁକ୍ତି ମିଳିବ ।'

ଏ ସମୟରେ ସମୁଦ୍ର ମଧ୍ୟରେ ଦେଖିଥିବା ସେହି ଦୁଇଜଣ କନ୍ୟା ସ୍ୱର୍ଣ୍ଣମୃଗ ସହିତ ସେଠାରେ ଆସି ଉପସ୍ଥିତ ହେଲେ । ସେଥିରୁ ଜଣେ ଚନ୍ଦ୍ରବିମ୍ବ ତୁଲ୍ୟ ଗୌରବର୍ଣ୍ଣ ଏବଂ ଅନ୍ୟଜଣକ ପ୍ରିୟଙ୍ଗୁ ଲତାପରି ଶ୍ୟାମଳବର୍ଣ୍ଣ । ମନେହେଉଥିଲା, ସମୁଦ୍ରରୁ ଯେପରି ଗଙ୍ଗା ଓ ଯମୁନା ପ୍ରବାହିତ ହେଉଛନ୍ତି । ସେ ଉଭୟ କନ୍ୟା ସେଠାରେ ଆସନ ଗ୍ରହଣ କରନ୍ତେ ମୁଁ ଯକ୍ଷକନ୍ୟାଙ୍କଠାରୁ ସେମାନଙ୍କର ଏବଂ ସେହି ସୁବର୍ଣ୍ଣ ମୃଗର ପରିଚୟ ଓ ବୃତ୍ତାନ୍ତ ଜାଣିବାକୁ ଚାହିଁଲି । ମହାରାଜ ! ମୋ ଜିଜ୍ଞାସାର ଅବସାନପାଇଁ ମଦନମଞ୍ଜରୀ କହିଲେ—

'ଅନଙ୍ଗଦେବ ଏସବୁ କଥା ଜାଣିବାପାଇଁ ତୁମର ଯଦି ଆଗ୍ରହ ଥାଏ, ତେବେ ଶୁଣ—

## ଦୁଇ ଦେବକନ୍ୟା ଓ ସୁବର୍ଣ୍ଣ ମୃଗ କଥା

ପ୍ରାଚୀନ କାଳରେ ପ୍ରଜାପତି ବ୍ରହ୍ମା ଜୀବଜଗତ ସୃଷ୍ଟି କରୁଥାନ୍ତି । ସେଥିରେ ବିଘ୍ନ ସଂଘଟନ କରିବାପାଇଁ ଘଣ୍ଟ ଓ ନିଘଣ୍ଟ ନାମକ ଦୁଇଜଣ ରାକ୍ଷସ ଆସି ପହଞ୍ଚିଲେ । ସେମାନେ ଦେବତାମାନଙ୍କଦ୍ୱାରା ପରାଜିତ ହେବାର ନୁହେଁ । ସେହି ରାକ୍ଷସ ଦ୍ୱୟଙ୍କୁ ସଂହାର କରିବା ନିମିତ୍ତ ପ୍ରଜାପତି ଏ ଦୁଇଟି କନ୍ୟାଙ୍କୁ ସୃଷ୍ଟି କରିଥିଲେ । ଏମାନଙ୍କ ରୂପ ସମ୍ପଦ ଯେକୌଣସି ଦର୍ଶକକୁ ଉନ୍ମତ୍ତ କରିପାରେ । ଏହି ଅପୂର୍ବ ରୂପବତୀ କନ୍ୟା ଦୁଇଟିକୁ

ଦେଖି ରାକ୍ଷସମାନେ ସେମାନଙ୍କୁ ଉପଭୋଗ କରିବା ନିମିତ୍ତ ପରସ୍ପର ମଧ୍ୟରେ ବିବାଦ କରିବାକୁ ଲାଗିଲେ । ବିବାଦରୁ କଳହ, କଳହରୁ ଯୁଦ୍ଧ ଏବଂ ଯୁଦ୍ଧରୁ ଉଭୟଙ୍କ ବିନାଶ ଘଟିଲା ।

ଅସୁରମାନଙ୍କ ମୃତ୍ୟୁପରେ ପ୍ରଜାପତି ଏମାନଙ୍କୁ ଉପଯୁକ୍ତ ବରପାତ୍ର ହସ୍ତରେ ଅର୍ପଣ କରିବାପାଇଁ କୁବେରଙ୍କ ନିକଟକୁ ପଠାଇଦେଲେ । କୁବେର ବରପାତ୍ରଙ୍କ ଅନୁସନ୍ଧାନପାଇଁ କନିଷ୍ଠଭ୍ରାତା ମଣିଭଦ୍ରଙ୍କୁ ଅନୁରୋଧ ଜଣାଇବା ସଙ୍ଗେସଙ୍ଗେ କନ୍ୟା ଦୁଇଟିକୁ ତାଙ୍କ ନିକଟକୁ ପଠାଇ ଦେଇଛନ୍ତି । ସେ ଏମାନଙ୍କ ସୁରକ୍ଷାଭାର ମୋ ଉପରେ ଛାଡ଼ିଦେଇଥିବାରୁ ସେମାନେ ବର୍ତ୍ତମାନ ମୋ ନିକଟରେ ରହୁଛନ୍ତି । ମୁଁ ମନେମନେ ଶ୍ରୀ ବିକ୍ରମାଦିତ୍ୟଙ୍କୁ ଏମାନଙ୍କ ଉପଯୁକ୍ତ ପତି ବୋଲି ନିଶ୍ଚୟ କରିସାରିଛି । ସେ ଦେବଅଂଶରେ ଜାତ ହୋଇଥିବା ଯୋଗୁଁ ଏହି ଦେବକନ୍ୟାମାନଙ୍କ ଯୋଗ୍ୟ ବରପାତ୍ର । ଏହାହିଁ ଏହି କନ୍ୟାମାନଙ୍କ ପରିଚୟ ।

ବର୍ତ୍ତମାନ ଏହି ସୁବର୍ଣ୍ଣ ମୃଗର କଥା ଶୁଣ ।

ଦେବରାଜ ଇନ୍ଦ୍ରଙ୍କର ଜୟନ୍ତ ନାମରେ ଜଣେ ପୁତ୍ର ଅଛନ୍ତି । ସେ ପିତାଙ୍କର ଅତ୍ୟନ୍ତ ସ୍ନେହ ଓ ଆଦରପାତ୍ର । ଦିନେ ଅପ୍‌ସରାମାନେ ଶିଶୁପୁତ୍ରଟିକୁ ଧରି ଆକାଶରେ ଖେଳାଉଥାନ୍ତି । ସେ ସମୟରେ ପୃଥିବୀ ପୃଷ୍ଠର କୌଣସି ରାଜାଙ୍କ ପୁତ୍ର ଗୋଟିଏ ହରିଣ ଶିଶୁ ସହିତ ଖେଳୁଥାଏ । ତାକୁ ଦେଖିପାରି ଜୟନ୍ତ ସେହିପରି ଗୋଟିଏ ହରିଣ ଶିଶୁ ସହିତ ଖେଳିବାପାଇଁ ପିତାଙ୍କ ନିକଟରେ ଅଳି କଲେ । ଇନ୍ଦ୍ର ବାତ୍ସଲ୍ୟ ସ୍ନେହରୁ ସଙ୍ଗେସଙ୍ଗେ ବିଶ୍ୱକର୍ମାଙ୍କୁ ଡାକି ଗୋଟିଏ ସ୍ୱର୍ଣ୍ଣମୃଗ ପ୍ରସ୍ତୁତ କରାଇଲେ । ଅମୃତ ବୃଷ୍ଟିଦ୍ୱାରା ତା' ଦେହରେ ଜୀବନ୍ୟାସ କରାଗଲା । ଜୟନ୍ତ ଆନନ୍ଦରେ ସେହି ହରିଣ ଶାବକ ସହିତ ଖେଳିବାକୁ ଲାଗିଲେ । ଏହିପରି ସେହି ରତ୍ନନିର୍ମିତ ଜୀବଟି ସ୍ୱର୍ଗରେ ରହିଥାଏ । ବହୁଦିନ ପରେ ରାବଣର ପୁତ୍ର ମେଘନାଦ ସ୍ୱର୍ଗରାଜ୍ୟ ଜୟ କଲା । ଇନ୍ଦ୍ର ତା'ଦ୍ୱାରା ପରାଜିତ ହେଲେ । ସେ ହରିଣଟିକୁ ଧରି ଲଙ୍କାପୁରକୁ ନେଇଗଲା । ରାବଣର ଅନ୍ତଃପୁରରେ ତାହା କ୍ରୀଡ଼ା କରୁଥାଏ । କିଛି ସମୟ ପରେ ରାବଣ ସୀତାଙ୍କୁ ହରଣ କରିବାରୁ ରାମ ଓ ତାଙ୍କ ଭ୍ରାତା ଲକ୍ଷ୍ମଣ ରାବଣ ଓ ତାର ପୁତ୍ର ମେଘନାଦକୁ ବଧ କଲେ । ବିଭୀଷଣ ଲଙ୍କାର ସିଂହାସନରେ ଅଭିଷିକ୍ତ ହୋଇ ରାଜତ୍ୱ କଲେ । ସୁବର୍ଣ୍ଣହରିଣଟି ତାଙ୍କ ରାଜଭବନରେ ଶୋଭାପାଇଲା । ମୋର ପିତା ବିଭୀଷଣଙ୍କ ଅନ୍ତରଙ୍ଗ ମିତ୍ର । ତାଙ୍କ ନିମନ୍ତ୍ରଣ କ୍ରମେ କୌଣସି ଉତ୍ସବ ଦେଖିବା ନିମିତ୍ତ ପିତା ମୋତେ ଧରି ଲଙ୍କାପୁରୀ ଯାଇଥିଲେ ।

ସେତେବେଳେ ଲଙ୍କାଧିପତି ବିଭୀଷଣ ବାତ୍ସଲ୍ୟ ସ୍ନେହରେ ସ୍ୱର୍ଣ୍ଣମୃଗଟିକୁ ମୋତେ ଉପହାର ସ୍ୱରୂପ ପ୍ରଦାନ କରିଥିଲେ । ସେହିଦିନଠାରୁ ଏହି ଅପୂର୍ବ ସୁବର୍ଣ୍ଣ ମୃଗଟି ମୋ ନିକଟରେ ରହିଛି । ବର୍ତ୍ତମାନ ମୁଁ ଏହାକୁ ତୁମ ପ୍ରଭୁ ବିକ୍ରମାଦିତ୍ୟଙ୍କୁ ଦେବାପାଇଁ ନିଶ୍ଚୟ କରୁଛି ।

ଯକ୍ଷିଣୀ ଏହିପରି ତାଙ୍କ ଜୀବନ କାହାଣୀ କହୁଥିବା ବେଳେ ସୂର୍ଯ୍ୟ ଅସ୍ତମିତ ହେଲେ । ସନ୍ଧ୍ୟା ବନ୍ଦନା ଶେଷକରି ମୁଁ ସିଂହଳ ରାଜଦୂତ ଧବଳସେନଙ୍କ ସହିତ ଆମପାଇଁ ନିର୍ଦ୍ଦିଷ୍ଟ ଅତିଥି ଭବନ ମଧ୍ୟରେ ନିଦ୍ରା ଗଲି । ଦେବ ! ସକାଳୁ ଉଠି ମୁଁ ଦେଖିଲି ଯେ ଆମେ ବିକ୍ରମଶକ୍ତିଙ୍କ ସେନାବାହିନୀ ମଧ୍ୟରେ ପହଞ୍ଚିଯାଇଛୁ । ଏହା ଆପଣଙ୍କ ଭକ୍ତ ସେହି ଯକ୍ଷିଣୀର ହିଁ କୌତୁକ କ୍ରୀଡ଼ା ବୋଲି ଆମର ମନେହେଲା । ଆମେ ତୁରନ୍ତ ଯାଇ ସେନାପତି ବିକ୍ରମଶକ୍ତିଙ୍କ ନିକଟରେ ଉପସ୍ଥିତ ହେଲୁ । ସେ ଆମର ଏବଂ ସିଂହଳେଶ୍ୱରଙ୍କ କୁଶଳ ଜିଜ୍ଞାସା କରୁଥିବା ବେଳେ ଯକ୍ଷ ସେନାବାହିନୀ ସହିତ ସେହି ଉଭୟ ଦେବକନ୍ୟା ମୃଗଶାବକ ସହିତ ସେଠାରେ ଆସି ପହଞ୍ଚିଲେ । ବିକ୍ରମଶକ୍ତି ଏହା ଦୁଷ୍ଟ ଭୂତପ୍ରେତମାନଙ୍କ ମାୟା ବୋଲି ମନେକରି ମୋ ଆଡ଼କୁ ଚାହିଁଲେ । ମୁଁ ଧୀରେ ଧୀରେ ସିଂହଳେଶ୍ୱରଙ୍କ ଅଭିଳାଷ ସହିତ ଉଭୟ ଦେବକନ୍ୟା ଓ ମୃଗଶିଶୁର ବୃତ୍ତାନ୍ତ ତାଙ୍କ ନିକଟରେ ବ୍ୟକ୍ତ କଲି । ଯକ୍ଷିଣୀଠାରୁ ଶୁଣିଥିବା ଶତ୍ରୁରାଜାମାନଙ୍କ ଚକ୍ରାନ୍ତ କଥା ମଧ୍ୟ ତାଙ୍କ ନିକଟରେ ପ୍ରକାଶ କଲି । ସେ ପ୍ରସନ୍ନ ଚିତ୍ତରେ ଆମର ଏବଂ କନ୍ୟାମାନଙ୍କର ଯଥୋଚିତ ସତ୍କାର କରି ନିଜ ସେନାବାହିନୀକୁ ଯଥାଶୀଘ୍ର ପ୍ରସ୍ତୁତ ରହିବାପାଇଁ ଆଦେଶ ଦେଲେ ।

ମହାରାଜ ! ମୁହୂର୍ତ୍ତକ ମଧ୍ୟରେ ଆମ ସେନାବାହିନୀକୁ ପ୍ରବଳ ରଣହୁଙ୍କାର ଓ ବୀରବାଦ୍ୟ ଶୁଣାଗଲା । ଏ ସମୟରେ ଶତ୍ରୁପକ୍ଷୀୟ ରାଜାମାନଙ୍କ ସହିତ ମ୍ଲେଚ୍ଛ ସେନାବାହିନୀ ମଧ୍ୟ ଅଦୂରରେ ଦେଖାଦେଲେ । ଉଭୟ ପକ୍ଷର ଯୋଦ୍ଧାମାନେ ପରସ୍ପରକୁ ଦେଖି ଆକ୍ରମଣ ଆରମ୍ଭ କଲେ । ଉଭୟ ସେନା ମଧ୍ୟରେ ପ୍ରବଳ ଯୁଦ୍ଧ ଆରମ୍ଭ ହେଲା । ଯକ୍ଷିଣୀଦ୍ୱାରା ପ୍ରେରିତ ଯକ୍ଷ ସେନାବାହିନୀ ଆମର ପକ୍ଷଭୁକ୍ତ ହୋଇ ପ୍ରଚଣ୍ଡ ବେଗରେ ଶତ୍ରୁସେନାଙ୍କୁ ସଂହାର କରିବାକୁ ଲାଗିଲେ । ସୈନିକମାନଙ୍କ ପଦପାତଜନିତ ଧୂଳିପଟଳ ଆକାଶ ମାର୍ଗକୁ ଆଚ୍ଛାଦନ କଲା । ତୀକ୍ଷ୍ଣଧାର ଅସ୍ତ୍ରସବୁ ବର୍ଷାଧାର ପରି ଜଣାଯାଉଥାଏ । ବୀର ଯୋଦ୍ଧାମାନେ ନୂତନ ମେଘରାଶି ତୁଲ୍ୟ ଗର୍ଜନ କରୁଥାନ୍ତି । ଯୁଦ୍ଧଭୂମିରେ ଅସମୟରେ ବର୍ଷାଋତୁ ଆସି ପହଞ୍ଚିଥିବା ମନେହେଲା । କର୍ତ୍ତିତ ମସ୍ତକଗୁଡ଼ିକ ନାଚିନାଚି ଇତସ୍ତତଃ ବୁଲୁଥାନ୍ତି । ମନେହେଉଥାଏ ସତେ ଯେପରି ଆମର ବିଜୟଲକ୍ଷ୍ମୀ କନ୍ଦୁକକ୍ରୀଡ଼ା କରୁଅଛି ।

ଆମ ସେନାପତି ବିକ୍ରମଶକ୍ତିଙ୍କ ସୁନିପୁଣ ସୈନ୍ୟଚାଳନାଦ୍ୱାରା ମୁହୂର୍ତ୍ତକ ମଧ୍ୟରେ ଶତ୍ରୁପକ୍ଷୀୟ ରାଜାମାନେ ପରାଜିତ ହେଲେ । ସେମାନଙ୍କ ସେନାବାହିନୀ ନଷ୍ଟଭ୍ରଷ୍ଟ ହୋଇଗଲା । ସେମାନେ ବିନମ୍ର ଭାବରେ ଆପଣଙ୍କ ସେନାପତି ବିକ୍ରମଶକ୍ତିଙ୍କ ଶିବିରକୁ ଯାଇ ଶରଣାପନ୍ନ ହେଲେ । ଆପଣ ଏହିପରି ସପ୍ତଦ୍ୱୀପା ପୃଥିବୀ ଏବଂ ମ୍ଳେଚ୍ଛମାନଙ୍କ ସାମ୍ରାଜ୍ୟର ଅଧିପତି ହୋଇଛନ୍ତି ।

ପରାଜିତ ରାଜନ୍ୟ ବୃନ୍ଦ ଏବଂ ଆମ ସେନାବାହିନୀ ଆପଣଙ୍କ ଜୟଜୟକାର କରୁଥିବା ବେଳେ ପୂର୍ବୋକ୍ତ ଯକ୍ଷିଣୀ ନିଜ ସ୍ୱାମୀ ମଣିଭଦ୍ରଙ୍କ ସହିତ ସେଠାରେ ଆସି ଉପସ୍ଥିତ ହେଲେ । ସେ ମୋତେ ଲକ୍ଷ୍ୟକରି କହିଲେ, 'ଅନଙ୍ଗଦେବ ! ମୁଁ ତୁମ ପ୍ରଭୁ ବିକ୍ରମାଦିତ୍ୟଙ୍କ ଯତ୍‌କିଞ୍ଚିତ୍ ସେବାକରି ଧନ୍ୟ ହୋଇଛି । ତୁମେ ଏହା ତାଙ୍କୁ ଜଣାଇଦେବ ଏବଂ କହିବ ଯେ ସେ ଦେବକାର୍ଯ୍ୟ ନିମିତ୍ତ ଦେବାଂଶଜାତ ଏହି କନ୍ୟା ଦୁଇଟିକୁ ଗ୍ରହଣ କରି ଉପଯୁକ୍ତ ଭାବେ ଲାଳନପାଳନ କରିବେ । ଏହି ମୃଗଶିଶୁଟିକୁ ମଧ୍ୟ ତାଙ୍କ ହସ୍ତରେ ପ୍ରଦାନ କରି ଯତ୍ନର ସହିତ ପାଳନ କରିବାପାଇଁ ଅନୁରୋଧ ଜଣାଇବ । ତୁମ ପ୍ରଭୁଙ୍କପାଇଁ ଏହାହିଁ ମୋର ଭକ୍ତିପୂତ ଉପହାର ।' ଏହାକହି ଯକ୍ଷିଣୀ ପତି ଓ ଅନୁଚରମାନଙ୍କ ସହିତ ସେଠାରୁ ଅନ୍ତର୍ହିତା ହେଲେ ।

ପରଦିନ ବହୁ ପରିଚାରିକା ଓ ଧନରାଶି ସହିତ ସିଂହଳେଶ୍ୱରଙ୍କ କନ୍ୟା ମଦନଲେଖା ଆସି ଆମ ଶିବିରରେ ଉପସ୍ଥିତ ହେଲେ । ବିକ୍ରମଶକ୍ତି ବିନମ୍ରତାର ସହିତ ସେମାନଙ୍କୁ ସ୍ୱାଗତ କରି ଆନନ୍ଦର ସହିତ ଶିବିର ମଧ୍ୟକୁ ସ୍ୱାଗତ କରିନେଲେ ।

ପରଦିନ ମଦନଲେଖା, ଉଭୟ ଦିବ୍ୟକନ୍ୟା, ବିସ୍ମୟ ଉତ୍ପାଦକ ରତ୍ନମୟ ମୃଗଶିଶୁ ଏବଂ ବିଜିତ ରାଜନ୍ୟମଣ୍ଡଳୀଙ୍କୁ ଧରି ସେନାପତି ବିକ୍ରମଶକ୍ତି ଆପଣଙ୍କ ଚରଣକମଳ ଦର୍ଶନପାଇଁ ସେଠାରୁ ପ୍ରୟାଣ କରିଛନ୍ତି । ସେମାନେ ଆମ ରାଜଧାନୀର ନିକଟବର୍ତ୍ତୀ ହେଲେଣି । ଏ ସମ୍ବାଦ ଆପଣଙ୍କୁ ସୂଚିତ କରିବା ନିମିତ୍ତ ସେ ଆମ ଦୁହିଁଙ୍କୁ ପୂର୍ବରୁ ପଠାଇଛନ୍ତି । ତେଣୁ, ମହାରାଜ ! ସିଂହଳଶ୍ୱର ଓ ଯକ୍ଷିଣୀଙ୍କ ଅନୁରୋଧ ସ୍ୱୀକାର କରି ସେହି ତିନୋଟି କନ୍ୟା, ମୃଗଶିଶୁ ଏବଂ ଅନ୍ୟ ରାଜାମାନଙ୍କ ସହିତ ବିଜୟୀ ସେନାପତିଙ୍କୁ ସ୍ୱାଗତ କରିବା ନିମିତ୍ତ ଶ୍ରୀମାନ୍ ବିଜେ କରନ୍ତୁ ।

ଅନଙ୍ଗଦେବଙ୍କ କଥା ଶୁଣି ଯକ୍ଷିଣୀକୁ ଭଣ୍ଡକାପାଳିକ ହସ୍ତରୁ ରକ୍ଷା କରିଥିବା କଥା ବିକ୍ରମାଦିତ୍ୟଙ୍କ ସ୍ମରଣ ହେଲା । ସେ ତାଙ୍କର ଏହି ପ୍ରତ୍ୟୁପକାର ନିଜେ କରିଥିବା ଦୁଃସାଧ କାର୍ଯ୍ୟ ଅପେକ୍ଷା ବହୁ ଅଧିକ ବୋଲି ମନେକଲେ । ଉଦାର ଚରିତ ମହାପୁରୁଷମାନେ ବହୁ ଉପକାର କରି ସୁଦ୍ଧା ତାକୁ ତୃଣତୁଲ୍ୟ ମନେ କରିଥାନ୍ତି ।

**ବହୁ କୃତ୍ୱାପି ମନ୍ୟନ୍ତେ ସ୍ୱଳ୍ପମେବ ମହାଶୟାଃ**

ରାଜା ବିକ୍ରମାଦିତ୍ୟ ଅତ୍ୟନ୍ତ ଉଲ୍ଲସିତ ହୋଇ ସିଂହଳଦୂତ ଧବଳସେନ ଏବଂ ଅନଙ୍ଗଦେବଙ୍କୁ ବହୁ ଗଜ, ବାଜି, ଗ୍ରାମ ଓ ରତ୍ନରାଶିଦ୍ୱାରା ସମ୍ମାନିତ କଲେ ।

ପରଦିନ ରାଜା ସିଂହଳଶ୍ୱରଙ୍କ କନ୍ୟା ଏବଂ ପିତାମହ ବ୍ରହ୍ମାଙ୍କଦ୍ୱାରା ସୃଷ୍ଟ ଦିବ୍ୟକନ୍ୟାମାନଙ୍କ ସ୍ୱାଗତପାଇଁ ହସ୍ତୀ, ଅଶ୍ୱ, ରଥ ସମନ୍ୱିତ ସେନାବାହିନୀ ସହିତ ନିଜ ରାଜଧାନୀରୁ ପ୍ରୟାଣ କଲେ । ଦଣ୍ଡାଧିକାରୀମାନେ ଜୟବର୍ଦ୍ଧନଙ୍କୁ ଅଞ୍ଜନଗିରି ନାମକ ଉତ୍ତମ ହସ୍ତୀ, ରଣଭଟ୍ଟଙ୍କୁ କାଳମେଘ ନାମକ ମତ୍ତହସ୍ତୀ, ରିପୁ ରାକ୍ଷସ ତୁଲ୍ୟ ସଂଗ୍ରାମସିଦ୍ଧ ନାମକ ହସ୍ତୀକୁ ସିଂହତୁଲ୍ୟ ପରାକ୍ରମଶାଳୀ ବୀରବିକ୍ରମଙ୍କୁ, ଜୟକେତୁଙ୍କୁ ପବନଜବ ନାମକ ଅଶ୍ୱ, ବଲ୍ଲଭଶକ୍ତିଙ୍କୁ ସମୁଦ୍ରକଲ୍ଲୋଳ ନାମକ ଘୋଟକ, ବାହୁଙ୍କୁ ଶରବେଗ ନାମକ ଅଶ୍ୱ, ଗରୁଡ଼ବେଗ ନାମକ ଅଶ୍ୱକୁ ବାହୁଙ୍କୁ, କୀର୍ତ୍ତିବର୍ମାଙ୍କୁ କୋଙ୍କଣ ପ୍ରଦେଶରୁ ଆନୀତ ଶ୍ୟାମଳବର୍ଣ୍ଣ କୁବଳୟମାଳା ଅଶ୍ୱୀ ଏବଂ ଅମରସିଂହଙ୍କୁ ସିନ୍ଧୁ ପ୍ରଦେଶରୁ ଆନୀତ ଗଙ୍ଗାଲହରୀ ନାମକ ପ୍ରବଳ ପରାକ୍ରମଶାଳୀ ଘୋଟକୀକୁ ପ୍ରଦାନ କରିବାପାଇଁ ହସ୍ତୀ ଓ ଅଶ୍ୱପାଳମାନଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି ।

ସସାଗରା ଓ ସପ୍ତଦ୍ୱୀପା ପୃଥିବୀପତି ରାଜା ବିକ୍ରମାଦିତ୍ୟ ରାଜମାର୍ଗରେ ପ୍ରସ୍ଥାନ କରୁଥିବା ବେଳେ ଧରଣୀ ସୈନ୍ୟମୟୀ, ସେନାବାହିନୀର କୋଳାହଳରେ ଦଶଦିଗ ମହାଧ୍ୱନିମୟ, ସେନାବାହିନୀର ପଦୋତ୍‌ଥିତ ଧୂଳିରାଶିରେ ଆକାଶ ଧୂଳିମୟ ଏବଂ ରାଜାଙ୍କ ଗୁଣ ଓ ସୁଖ୍ୟାତି କୀର୍ତ୍ତନରେ ବାଣୀ ମହିମାମୟୀ ହୋଇଗଲା ।

## ତୃତୀୟ ତରଙ୍ଗ

## ମଳୟବତୀ କଥା

ସେନାପତି ବିକ୍ରମଶକ୍ତି ଶତ୍ରୁମାନଙ୍କୁ ଜୟ କରି ରାଜଧାନୀକୁ ଫେରିଆସିଥାନ୍ତି । ଦୂତ ଅନଙ୍ଗଦେବଙ୍କ ମୁଖରୁ ଏ ସମ୍ବାଦ ଲାଭ କରି ରାଜା ବିକ୍ରମାଦିତ୍ୟ ତାଙ୍କୁ ସ୍ୱାଗତ କରିବା ନିମିତ୍ତ ଉଜ୍ଜୟିନୀରୁ ନିଷ୍କ୍ରାନ୍ତ ହେଲେ । ଦୂରରୁ ରାଜା ଓ ଅନୁଚରମାନଙ୍କୁ ଦେଖି ବିକ୍ରମଶକ୍ତି ଉତ୍କଣ୍ଠାର ସହିତ ଆସି ରାଜାଙ୍କୁ ନିଜ ସେନାବାହିନୀ ମଧ୍ୟକୁ ପାଛୋଟି ନେଲେ । ବିଜୟୀ ସେନାଦ୍ୱାରା ଜୟଘୋଷରେ ଦିଗବିଦିଗ ପ୍ରକମ୍ପିତ ହେଲା । ସେ ଜୟଜୟକାର ମଧ୍ୟରେ ସେନାବାହିନୀରେ ପ୍ରବେଶ କରି ଦରବାରପାଇଁ ଆୟୋଜିତ ସଭା ମଞ୍ଚରେ ଆସନ ଅଳଙ୍କୃତ କଲେ । ଏ ସମୟରେ ପ୍ରତିହାର ଜଣେ ଜଣେ ରାଜାଙ୍କୁ ସେଠାରେ ପ୍ରବେଶ କରାଇ ଜଣାଇଲା, 'ମହାରାଜ୍ ! ଏ ହେଉଛନ୍ତି ଗୌଡ଼ଦେଶର ରାଜା ଶକ୍ତିକୁମାର, ଇଏ କର୍ଣ୍ଣାଟ ଦେଶର ରାଜା ଜୟଧ୍ୱଜ, ଏ ହେଉଛନ୍ତି ଲାଟଦେଶର ରାଜା ବିଜୟବର୍ମା ଇଏ କାଶ୍ମୀର ରାଜ ସୁନନ୍ଦନ, ଏ ସିନ୍ଧୁରାଜ ଗୋପାଳ, ଇଏ ହେଉଛନ୍ତି ବିନ୍ଧ୍ୟ ଦେଶର ରାଜା ଭିଲ୍ଲ ଏବଂ ଏ ହେଉଛନ୍ତି ପାରସ୍ୟ ଦେଶର ରାଜା ନିର୍ମୂକ । ଏମାନେ ଆପଣଙ୍କୁ ପ୍ରଣାମ ଜଣାଇବାପାଇଁ ଉପସ୍ଥିତ ହୋଇଛନ୍ତି । ଏହିପରି ପ୍ରତିହାରଦ୍ୱାରା ନିବେଦିତ ହୋଇ ରାଜା, ସାମନ୍ତ, ବୀର ଯୋଦ୍ଧାମାନେ ରାଜାଙ୍କଦ୍ୱାରା ସମ୍ମାନିତ ହୋଇ ଆସନ ଗ୍ରହଣ କଲେ ।

ବିକ୍ରମଶକ୍ତିଙ୍କ ସହିତ ଆସିଥିବା ସିଂହଳେଶ୍ୱରଙ୍କ କନ୍ୟା ମଦନଲେଖା, ପ୍ରଜାପତି ସୃଷ୍ଟ ଉଭୟ ଦେବକନ୍ୟା ଲଜ୍ଜାବନତ ମୁଖରେ ସଭାକକ୍ଷରେ ପ୍ରବେଶ କରନ୍ତେ ରାଜା ବିକ୍ରମାଦିତ୍ୟ ସେମାନଙ୍କୁ ଏବଂ ସେମାନଙ୍କ ସହିତ ଥିବା ସୁବର୍ଣ୍ଣ ମୃଗକୁ ସପ୍ରଣୟ ସ୍ୱାଗତ କଲେ । ସେମାନଙ୍କ ବିଶ୍ରାମପାଇଁ ଯଥୋଚିତ ବ୍ୟବସ୍ଥା କରାଗଲା ।

ପରଦିନ ବିଜୟୀ ସମ୍ରାଟ ସେଠାରୁ ଶିବିର ଉଠାଇ ସସୈନ୍ୟ ଉଜ୍ଜୟିନୀରେ ପହଞ୍ଚିଲେ । ତାଙ୍କ ସେନାବାହିନୀରେ ଯୋଗ ଦେଇଥିବା ଏବଂ ପରାଜିତ ହୋଇ ଅଧୀନତା

ସ୍ୱୀକାର କରିଥିବା ରାଜାମାନଙ୍କୁ ବିକ୍ରମାଦିତ୍ୟ ସମ୍ମାନର ସହିତ ବିଦାୟ ଦେଲେ । ବସନ୍ତ ଋତୁ ସମାଗତ ଦେଖି ରାଜ୍ୟରେ ବସନ୍ତ ଉତ୍ସବ ମହାସମାରୋହରେ ପାଳିତ ହେଲା । ଲତାମାନେ ପୁଷ୍ପ ଭୂଷଣରେ ନିଜନିଜ ଅଙ୍ଗକୁ ପ୍ରସାଧନ କଲେ, ଭ୍ରମରୀମାନେ ଗୁଞ୍ଜରଣ ମାଧ୍ୟମରେ ସଙ୍ଗୀତ ଗାନ କରିବାକୁ ଲାଗିଲେ, କୋକିଳମାନଙ୍କର କୁହୁତାନ ମାଙ୍ଗଳିକ ସଙ୍ଗୀତ ପରି ମନେହେଲା, ମନ୍ଦମଳୟାନିଳରେ ଉପବନ ନୃତ୍ୟ କରିବାକୁ ଲାଗିଲା । ସମ୍ରାଟ ବିକ୍ରମାଦିତ୍ୟ ଶୁଭଦିନ ଦେଖି ମଦନଲେଖା ଓ ଉଭୟ ଦିବ୍ୟକନ୍ୟାଙ୍କ ପାଣି ଗ୍ରହଣ କଲେ । ମଦନଲେଖାଙ୍କ ଜ୍ୟେଷ୍ଠଭ୍ରାତା କନ୍ୟାଦାନର ଦକ୍ଷିଣା ସ୍ୱରୂପ ପ୍ରଚୁର ଧନରାଶି ଅର୍ପଣ କଲେ । ଯକ୍ଷିଣୀ ମଦନମଞ୍ଜରୀ ମଧ୍ୟ ଉଭୟ ଦିବ୍ୟକନ୍ୟାଙ୍କ ଯୌତୁକ ସ୍ୱରୂପ ଅମାପ ଦିବ୍ୟ ରତ୍ନାଳଙ୍କାର ବିବାହ ବେଦୀରେ ଅର୍ପଣ କଲେ ।

ରାଜା ଯକ୍ଷପତ୍ନୀ ମଦନମଞ୍ଜରୀଙ୍କ ସତ୍କାର କରି ଅଭିବାଦନ ଜଣାନ୍ତେ ସେ ନମ୍ରତାର ସହିତ ନିବେଦନ କଲେ, 'ମହାରାଜ୍ ! ଆପଣ ମୋର ଯେଉଁ ଉପକାର କରିଛନ୍ତି ମୁଁ ସେହି ଋଣରୁ କଦାପି ମୁକ୍ତ ହୋଇପାରିବି ନାହିଁ । ଆପଣଙ୍କ ପ୍ରତି ମୋର ଆନ୍ତରିକ ଭକ୍ତି ଜଣାଇବାପାଇଁ ହିଁ ଏହିକିଛି ସମର୍ପଣ କରିଛି । ଏହି କନ୍ୟାମାନେ ସ୍ୱୟଂ ବିଧାତାଙ୍କ ମାନସ କନ୍ୟା । ମୃଗଟି ମଧ୍ୟ ବିଶ୍ୱକର୍ମାଙ୍କଦ୍ୱାରା ନିର୍ମିତ । ତେଣୁ ଏମାନଙ୍କ ପ୍ରତି ଆପଣ ସର୍ବଦା କୃପାଦୃଷ୍ଟି ରଖିଥିବେ ।' ଏହାକହି ସେ ସେଠାରୁ ବିଦାୟ ନେଲେ ।

ଏହିପରି ସସାଗରା ଓ ସପ୍ତଦ୍ୱୀପା ପୃଥିବୀ ଜୟକରି ରାଜା ବିକ୍ରମାଦିତ୍ୟ ସଚିବ, ସେନାପତି, ମହାରାଣୀମାନଙ୍କ ସହିତ ନିଷ୍କଣ୍ଟକ ଭାବେ ପ୍ରଜାପାଳନ କରୁଥାଆନ୍ତି । ବସନ୍ତ ଋତୁରେ ଉଦ୍ୟାନ ମଧ୍ୟରେ, ଗ୍ରୀଷ୍ମ ଋତୁରେ ସରୋବର ଏବଂ ଧାରାଯନ୍ତ୍ର ଗୃହରେ, ବର୍ଷାଋତୁରେ ସଙ୍ଗୀତ ଓ ମୃଦଙ୍ଗ ନିନାଦିତ ଅନ୍ତଃପୁର ମଧ୍ୟରେ, ଶରତ୍ ଋତୁରେ ଚନ୍ଦ୍ରଶାଳାପୁରର ପୃଷ୍ଠ ଦେଶରେ ଆୟୋଜିତ ପାନଗୋଷ୍ଠୀ ମଧ୍ୟରେ, ହେମନ୍ତ ଋତୁରେ ସୁବାସିତ ବହୁମୂଲ୍ୟ ଶଯ୍ୟା ସୁଶୋଭିତ ଶୟନକକ୍ଷ ମଧ୍ୟରେ ରାଜା ପ୍ରଣୟିନୀମାନଙ୍କ ସହିତ ବିହାର କରୁଥାନ୍ତି ।

ବିକ୍ରମାଦିତ୍ୟଙ୍କ ରାଜଧାନୀ ଉଜ୍ଜୟିନୀରେ ସେତେବେଳେ ନଗରସ୍ୱାମୀ ନାମରେ ଜଣେ ଚିତ୍ରକର ବାସ କରୁଥାନ୍ତି । ସେ ନିଜ ବିଦ୍ୟାରେ ବିଶ୍ୱକର୍ମାଙ୍କୁ ମଧ୍ୟ ବେଳେବେଳେ ବଳିଯାଉଥିଲେ । ରାଜା ତାଙ୍କୁ ଏକଶତ ଗ୍ରାମ ପ୍ରଦାନ କରି ସମ୍ମାନିତ କରିଥାନ୍ତି । ନଗରସ୍ୱାମୀ ମଧ୍ୟ ପ୍ରତି ଦୁଇଦିନରେ ଜଣେ ଜଣେ ଅପୂର୍ବ ରୂପବତୀ ସୁନ୍ଦରୀଙ୍କ ଚିତ୍ର ଅଙ୍କନ କରି ରାଜାଙ୍କୁ ଉପହାର ଦେଉଥାନ୍ତି । ବସନ୍ତ ଉତ୍ସବରେ ଉନ୍ମତ୍ତ ରହି ଥରେ ସେ ଚିତ୍ର କରିବା କଥା ଭୁଲିଗଲେ । ଉପହାର ପ୍ରଦାନ କରିବା ସମୟ ଉପଗତ ହେବାରୁ

ଚିତ୍ରକଥା ତାଙ୍କର ସ୍ମରଣ ହେଲା । ସେ ବ୍ୟାକୁଳ ହୋଇପଡ଼ିଲେ । ଏ ସମୟରେ ଦୈବପ୍ରେରିତ ପରି ଜଣେ ଦୂରଦେଶାଗତ ପଥିକ ତାଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲା । ସେ ଚିତ୍ରକରଙ୍କ ହସ୍ତରେ ଗୋଟିଏ ପୁସ୍ତକ ପ୍ରଦାନ କରି ବିନା ବାକ୍ୟବ୍ୟୟରେ ସେଠାରୁ ଚାଲିଗଲା । ନଗରସ୍ୱାମୀ କୌତୂହଳବଶତଃ ପୁସ୍ତକଟିର ପୃଷ୍ଠା ଉନ୍ମୋଚନ କଲେ । ଦେଖିଲେ, ଗୋଟିଏ ପୃଷ୍ଠାରେ ଏକ ଲାବଣ୍ୟମୟୀ ସୁନ୍ଦରୀର ଚିତ୍ର ଅଙ୍କିତ ଅଛି । ଚିତ୍ରକର ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇ ଏହାକୁ ଭଗବାନଙ୍କର କୃପା ବୋଲି ମନେକଲେ ଏବଂ ଯଥାଶୀଘ୍ର ରାଜାଙ୍କ ନିକଟକୁ ଯାଇ ଚିତ୍ରପଟଟିକୁ ଉପହାର ଦେଲେ । ରାଜା ବିକ୍ରମାଦିତ୍ୟ ଚିତ୍ରପଟଟି ଦେଖିବାମାତ୍ରେ କହିଲେ, 'ପ୍ରିୟ ନଗରସ୍ୱାମୀ ! ଏ ଚିତ୍ରର ରେଖାସବୁ ତୁମ ଦ୍ୱାରା ଅଙ୍କିତ ନୁହେଁ । ଏହା ଦେବଶିଳ୍ପି ବିଶ୍ୱକର୍ମାଙ୍କର । ଏପରି ଚିତ୍ର ଅଙ୍କନ କରିବା ମନୁଷ୍ୟ ପକ୍ଷରେ ସମ୍ଭବ ନୁହେଁ ।' ନଗରସ୍ୱାମୀ ଆମୂଳଚୂଳ ସମସ୍ତ ବୃତ୍ତାନ୍ତ ବର୍ଣ୍ଣନା କଲେ ।

ଚିତ୍ରାର୍ପିତ ସୁନ୍ଦରୀଙ୍କ ଅପରୂପ ଲାବଣ୍ୟରେ ରାଜା ବିମୁଗ୍ଧ ହୋଇଉଠୁଥାନ୍ତି । ପ୍ରତ୍ୟହ କିଛି ସମୟ ସେ ଚିତ୍ରପଟଟିକୁ ନିର୍ନିମେଷ ନୟନରେ ଚାହିଁ ରହୁଥାନ୍ତି । ଦିନେ ରାତ୍ରିଶେଷରେ ରାଜା କୌଣସି ଦୂର ଦ୍ୱୀପ ମଧ୍ୟରେ ଏ ପ୍ରକାର ଜଣେ ସୁନ୍ଦରୀଙ୍କୁ ସ୍ୱପ୍ନରେ ଦେଖିଲେ । ସେ ତାଙ୍କ ନିକଟକୁ ଅଗ୍ରସର ହେଲାବେଳେ ରାତ୍ରିଶେଷ ହେବାରୁ ବୈତାଳିକ ତାଙ୍କ ନିଦ୍ରା ଭଙ୍ଗ କରିଦେଲା । ରାଜା ସ୍ୱପ୍ନସଙ୍ଗମରୁ ବଞ୍ଚିତ ହେଲେ । ସ୍ୱପ୍ନ ଭଙ୍ଗ କରିଥିବା ଯୋଗୁଁ ବିଚାରା ବୈତାଳିକଟି ରାଜ୍ୟରୁ ନିର୍ବାସିତ ହେଲା ।

ରାଜା ଚିନ୍ତା କରୁଥାନ୍ତି ଯେ କାହିଁ ସେହି ଦୂରଦେଶାଗତ ପଥିକ, କେଉଁଠୁ ବା ଆଣିଥିଲା ସେ ସେହି ଦୁର୍ଲ୍ଲଭ ପୁସ୍ତିକା, ସେଥିରେ ଚିତ୍ରିତ ସୁନ୍ଦରୀ ବା କିଏ ଏବଂ ସେ ଦେଖିଥିବା ସ୍ୱପ୍ନଦୃଷ୍ଟ ସୁନ୍ଦରୀ କେଉଁ ଦ୍ୱୀପରେ ବା ଅବସ୍ଥାନ କରନ୍ତି ? ଏସବୁ ଘଟଣା ରାଜାଙ୍କୁ ଅଲୌକିକ ମନେହେଲା । ମନେହେଉଛି, ସେହି ଚିତ୍ରସୁନ୍ଦରୀ ଓ ସ୍ୱପ୍ନ ସୁନ୍ଦରୀ ଅଭିନ୍ନ । ସେ କଳ୍ପିତ ନୁହଁନ୍ତି ବାସ୍ତବ । ଏ ସମସ୍ତ ଘଟଣା କୌଣସି ନା କୌଣସି ଦ୍ୱୀପରେ ଏହି ରମଣୀୟ ରମଣୀଙ୍କ ଅବସ୍ଥିତିର ସୂଚନା ଦେଉଛି । ରାଜା ସେହି ସୁନ୍ଦରୀଙ୍କ ପ୍ରତି ଆକୃଷ୍ଟ ହୋଇ କନ୍ଦର୍ପ ଜ୍ୱାଳାରେ ପ୍ରପୀଡ଼ିତ ହୋଇପଡ଼ିଲେ । କୌଣସି ପଦାର୍ଥ ବା ରାଜକାର୍ଯ୍ୟରେ ମନଲାଗିଲା ନାହିଁ । ରାଜାଙ୍କର ଏହି ଅବସ୍ଥା ପରିଜନମାନଙ୍କୁ ବିଚଳିତ କଲା । ସେ କାହା ନିକଟରେ ନିଜର ମନୋବେଦନା ପ୍ରକାଶ କରିପାରୁ ନଥିଲେ । ଅନ୍ୟମାନେ ମଧ୍ୟ ଏ ସମ୍ପର୍କରେ ରାଜାଙ୍କୁ ଜିଜ୍ଞାସା କରିବାପାଇଁ ସାହସ ସଞ୍ଚୟ କରିପାରୁନଥାନ୍ତି ।

ଦିନେ ପ୍ରତିହାର ଭଦ୍ରାୟୁଧ ଏକାନ୍ତରେ ରାଜାଙ୍କ ମନୋବେଦନାର କାରଣ ଜିଜ୍ଞାସା କଲେ । ବିକ୍ରମାଦିତ୍ୟ କିଛି ସମୟ ମୌନରହି ଧୀରେ ଧୀରେ କହିଲେ, 'ମିତ୍ର ! ତାହାହେଲେ ଶୁଣ । ମୁଁ ତୁମକୁ ସବୁକିଛି କହୁଛି । ଚିତ୍ରକର ନଗର ସ୍ୱାମୀ ଯେଉଁ ଚିତ୍ରପୋଥି ଆଣି ଦେଇଥିଲେ ତାହା ତୁମେ ଦେଖିଛ । ମୁଁ ସେହି ସୁନ୍ଦରୀଙ୍କୁ ମନେମନେ ଧ୍ୟାନକରି ଶୋଇଗଲି । ସ୍ୱପ୍ନରେ ଦେଖିଲି ମୁଁ ସମୁଦ୍ର ପାର କରି କୌଣସି ଦ୍ୱୀପର ଏକ ଅତ୍ୟନ୍ତ ରମଣୀୟ ନଗରରେ ଯାଇ ପହଞ୍ଚିଛି । ସେଠାରେ ମୁଁ ଦେଖିଲି ଯେ ବହୁ ସୁନ୍ଦରୀ କନ୍ୟା ମୋତେ ଦେଖିବାମାତ୍ରେ 'ମାରମାର' କହି ମୋ ଆଡ଼କୁ ଦୌଡ଼ିଆସିଲେ । ସେମାନେ ମୋତେ ମାରିବାପାଇଁ ଉଦ୍ୟତ ଥାନ୍ତି । ସେମାନଙ୍କ କୋଳାହଳରେ ବିଚଳିତ ହୋଇ ସେ ସମୟରେ ଜଣେ ତପସ୍ୱିନୀ ଦୌଡ଼ିଆସି ମୋ ନିକଟରେ ପହଞ୍ଚିଲେ ଏବଂ ମୋତେ ଧରି ତାଙ୍କ ଗୃହ ମଧ୍ୟକୁ ଟାଣିନେଲେ । ସଂକ୍ଷେପରେ ସେ ମୋତେ ଜଣାଇଲେ ଯେ ମଳୟବତୀ ନାମକ କୌଣସି ସ୍ୱେଚ୍ଛାଚାରିଣୀ ରାଜକୁମାରୀ ସେଠାରେ ଆସି ପହଞ୍ଚିଛନ୍ତି । ସେ ଅତ୍ୟନ୍ତ ପୁରୁଷ-ଦ୍ୱେଷିଣୀ । କୌଣସି ପୁରୁଷକୁ ଦେଖିବାମାତ୍ରେ ସେ ଏହି କନ୍ୟାମାନଙ୍କଦ୍ୱାରା ତାକୁ ହତ୍ୟା କରାନ୍ତି । ତାଙ୍କଠାରୁ ବଞ୍ଚାଇବାପାଇଁ ମୁଁ ତୁମକୁ ଟାଣି ନେଇଆସିଲି । ରାଜକୁମାରୀଙ୍କ କୋପରୁ ରକ୍ଷା କରିବାପାଇଁ ତପସ୍ୱିନୀ ମୋତେ ନାରୀ ବେଶରେ ସଜ୍ଜିତ କରିଦେଲେ । ମୋତେ ମାରିବାପାଇଁ ଉଦ୍ୟମ କରୁଥିବା କନ୍ୟାମାନଙ୍କୁ ହତ୍ୟା କରିବା ମୋ ପକ୍ଷରେ ଅସାଧ୍ୟ ନଥିଲେ ସୁଦ୍ଧା ନାରୀ ଅବଧ୍ୟା ଭାବି ମୁଁ ନାରୀବେଶକୁ ସହ୍ୟ କରିଗଲି । ଏ ସମୟରେ ଅନୁଚରୀମାନଙ୍କ ସହିତ ସେହି ରାଜକନ୍ୟା ଗୃହ ମଧ୍ୟରେ ପ୍ରବେଶ କଲେ । ତାଙ୍କୁ ଦେଖିବାମାତ୍ରେ ମୁଁ ଜାଣିପାରିଲି ଯେ ସେ ଚିତ୍ରପଟ ସ୍ଥିତ ସୁନ୍ଦରୀ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ମୁଁ ନିଜକୁ ଧନ୍ୟ ମନେକଲି । ବହୁଦିନ ପରେ ଚିରଅଭିଳଷିତ ସୁନ୍ଦରୀଙ୍କୁ ଦେଖି ମୋର ଚିତ୍ତବୃତ୍ତି ଆନନ୍ଦସାଗରରେ ନିମଗ୍ନ ହେଲା । ମୁଁ ପଲକହୀନ ଦୃଷ୍ଟିରେ ତାଙ୍କୁ ଚାହିଁ ରହିଲି ।

ରାଜକୁମାରୀ ତାଙ୍କ ଅନୁଚରୀମାନଙ୍କ ସହିତ ଗୃହମଧ୍ୟକୁ ପଶିଆସି ରୁକ୍ଷ ସ୍ୱରରେ ତପସ୍ୱିନୀଙ୍କୁ ପ୍ରଶ୍ନ କଲେ, 'କୌଣସି ପୁରୁଷ ଏହି ଗୃହ ମଧ୍ୟରେ ପ୍ରବେଶ କରିଥିବା ଆମେ ଲକ୍ଷ୍ୟ କରିଛୁ । ତାକୁ କେଉଁଠି ରଖିଛ ?' ତାପସୀ କୋମଳସ୍ୱରରେ କହିଲେ, 'ମୋ ଘରେ ପୁରୁଷ ଆସିବ କୋଉଠୁ ? ଇଏ ମୋର ଭଉଣୀର କନ୍ୟା । କିଛିଦିନ ହେଲା ମୋ ସହିତ ରହୁଛି ।' ରାଜକୁମାରୀ ମଳୟବତୀ ମୋତେ ସ୍ତ୍ରୀବେଶରେ ଦେଖି ସୁଦ୍ଧା ପୁରୁଷ ବିଦ୍ୱେଷ ବିସ୍ମୃତ ହୋଇ ହଠାତ୍ କାମବିହ୍ୱଳା ହୋଇପଡ଼ିଲେ । ସେ କିଛି ଚିନ୍ତାକରି ହଠାତ୍ ନିଶ୍ଚଳ ହୋଇପଡ଼ିଲେ । ତାଙ୍କ ଶରୀର ରୋମାଞ୍ଚିତ ହୋଇଉଠିଲା । ମନେହେଲା,

ସୁଯୋଗ ଲାଭ କରି କାମଦେବ ଯେପରି ତାଙ୍କର ପ୍ରତ୍ୟେକ ଲୋମକୂପରେ ଶରବୃଷ୍ଟି କରୁଛନ୍ତି । ସେ ତପସ୍ୱିନୀଙ୍କୁ ଲକ୍ଷ୍ୟକରି କହିଲେ, 'ଆର୍ଯ୍ୟେ ! ତୁମ ଭଗିନୀଙ୍କ କନ୍ୟା କଣ କେବଳ ତୁମର ଅତିଥି । ସେ ଏଠାକୁ ଆସିଥିବା ଯୋଗୁଁ ମୋର ମଧ୍ୟ ଅତିଥି । ମୁଁ ତାଙ୍କୁ କିଛିଦିନପାଇଁ ମୋ ବାସଭବନକୁ ନେଇଯାଉଛି । ତାଙ୍କର ଆଦର ସତ୍କାର କରି ମୁଁ ପୁଣି ତାଙ୍କୁ ଆଣି ତୁମ ପାଖରେ ପହଞ୍ଚାଇଦେବି ।' ଏହା କହି ସେ ମୋର ହସ୍ତଧାରଣ ପୂର୍ବକ ତାଙ୍କ ଘରକୁ ନେଇଗଲେ ।

ମୁଁ ତାଙ୍କ ମନୋଭାବ ବୁଝିପାରିଲି । ଏଣୁ ତାଙ୍କ ଆଗ୍ରହକୁ ଉପେକ୍ଷା ନକରି ତପସ୍ୱିନୀଙ୍କଠାରୁ ବିଦାୟ ନେଲି । ଚତୁରୀ ତପସ୍ୱିନୀ ମଧ୍ୟ ଆମମାନଙ୍କ ମଧ୍ୟରେ ପ୍ରଣୟ ଭାବନା ଜାଗ୍ରତ ହୋଇଥିବା ଜାଣି ମୋତେ ଅନୁମତି ଦେଲେ ।

ମୁଁ ରାଜକୁମାରୀଙ୍କ ସହିତ ତାଙ୍କ ବାସଭବନରେ ରହିବାକୁ ଲାଗିଲି । ତାଙ୍କ ଅନୁଚରୀମାନଙ୍କୁ ଛଦ୍ମ ବିବାହ କରାଇ ଆମେ ନାନା କ୍ରୀଡ଼ା କୌତୁକ କରୁଥାଉ । ସେ ସର୍ବଦା ମୋତେ ନିଜ ନିକଟରେ ରଖିଥାନ୍ତି । ମୋ ବିନା କୌଣସି କାର୍ଯ୍ୟ ତାଙ୍କଦ୍ୱାରା ସମ୍ପାଦିତ ହେଉନଥାଏ । ଦିନେ ତାଙ୍କ ପରିଚାରିକାମାନେ ତାଙ୍କୁ କନ୍ୟା ଓ ମୋତେ ବର କରି ଆମର ବିବାହ କରାଇଲେ । ବିବାହ ପରେ ଆମେ ସେହି ରାତ୍ରିରେ ମଧୁଶଯ୍ୟା ଗୃହରେ ପ୍ରବେଶ କଲୁ । ସେ ନିଃଶଙ୍କ ଚିତ୍ତରେ ମୋତେ ନିବିଡ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ । ଏହାକୁ ଅପୂର୍ବ ସୁଯୋଗ ଜାଣି ମୁଁ ମୋର ନିଜ ରୂପ ତାଙ୍କ ଆଗରେ ପ୍ରକଟନ କଲି । ଦୁଇବାହୁରେ ଟୋଳି ଧରି ତାଙ୍କୁ ଆଲିଙ୍ଗନ କରିବାରୁ ମୋତେ ପତିରୂପରେ ଲାଭ କରି ସେ ଉଲ୍ଲସିତ ହୋଇଉଠିଲେ । ଲଜ୍ଜାରେ ତାଙ୍କ ମୁଖ ଆରକ୍ତ ହୋଇପଡ଼ିଲା । ମୁଁ ତାଙ୍କ ଲଜ୍ଜା ଦୂରକରି ସୁରତ କ୍ରୀଡ଼ା କରିବାପାଇଁ ଉଦ୍ୟତ ହେଲାବେଳେ ଦୁଷ୍ଟ ବୈତାଳିକ ମୋର ନିଦ୍ରାଭଙ୍ଗ କଲା ।

ଭଦ୍ରାୟୁଧ ! ତେଣୁ, ଚିତ୍ରପଟରେ ଓ ସ୍ୱପ୍ନରେ ଦେଖିଥିବା ସେହି ରାଜକୁମାରୀଙ୍କୁ ଲାଭ ନକଲେ ମୋର ଜୀବନ ଦୁର୍ବିସହ ହେବ ।'

ରାଜା ବିକ୍ରମାଦିତ୍ୟଙ୍କ ସ୍ୱପ୍ନବୃତ୍ତାନ୍ତ ଶୁଣି ପ୍ରତିହାର ଭଦ୍ରାୟୁଧ ଏହା କେବଳ ସ୍ୱପ୍ନ ନୁହେଁ ବାସ୍ତବରେ ଏପରି ଜଣେ ରାଜକୁମାରୀ ନିଶ୍ଚିତ ଭାବେ କେଉଁଠାରେ ଅଛନ୍ତି ବୋଲି ନିଶ୍ଚିତ ହେଲେ । ରାଜାଙ୍କୁ ଆଶ୍ୱାସନା ଦେଇ କହିଲେ, 'ମହାରାଜ୍ ! ଆପଣ ସ୍ୱପ୍ନରେ ଦେଖିଥିବା ଘଟଣା ସବୁ ସତ୍ୟ ବୋଲି ମନେହେଉଛି । ଯଦି ସ୍ୱପ୍ନ ବୃତ୍ତାନ୍ତ ଆପଣଙ୍କର ସମ୍ପୂର୍ଣ୍ଣ ମନେଅଛି ତେବେ ସେହି ନଗରର ଏକ ସମ୍ପୂର୍ଣ୍ଣ ଚିତ୍ରପଟ ପ୍ରସ୍ତୁତ କରାନ୍ତୁ । ତା'ପରେ ସେଠାରେ ପହଞ୍ଚିବାପାଇଁ ମୁଁ କିଛି ଉପାୟ କରିବି ।'

ଭଦ୍ରାୟୁଧର ପରାମର୍ଶ କ୍ରମେ ରାଜା ନିଜେ ତୁରନ୍ତ ସେହି ନଗରର ଏକ ନକ୍ସା ଅଙ୍କନ କଲେ । ତା' ତଳେ ସମଗ୍ର ସ୍ୱପ୍ନ ବୃତ୍ତାନ୍ତ ମଧ୍ୟ ଲେଖିଦିଆଗଲା । ଭଦ୍ରାୟୁଧ ଉଜ୍ଜୟିନୀର କେନ୍ଦ୍ରସ୍ଥଳରେ ଏକ ମଠ ନିର୍ମାଣ କଲେ ଏବଂ ତା'ର ଦ୍ୱାରଦେଶରେ ଏହି ଚିତ୍ରପଟଟିକୁ ଝୁଲାଇଦେଲେ । ମଠରେ ଦୂରଦେଶାଗତ ପଥିକ ଓ ପରିବ୍ରାଜକମାନଙ୍କ ପାଇଁ ଅଭ୍ୟାଗତର ବ୍ୟବସ୍ଥା କରାଗଲା । ଆଗନ୍ତୁକମାନଙ୍କୁ ଏକ ହଳ ବସ୍ତ୍ର ଏବଂ କିଛି ରତ୍ନାଳଙ୍କାର ଦେବାର ବ୍ୟବସ୍ଥା ମଧ୍ୟ ହେଲା । ମଠର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଥିବା କର୍ମଚାରୀମାନଙ୍କୁ ଆଦେଶ ଦିଆଗଲା ଯେ ଚିତ୍ରପଟ ସ୍ଥିତ ନଗରୀକୁ ଜାଣିଥିବା କୌଣସି ବ୍ୟକ୍ତି ଯଦି ଆସି ପହଞ୍ଚନ୍ତି ତେବେ ସେମାନେ ସଙ୍ଗେସଙ୍ଗେ ଭଦ୍ରାୟୁଧଙ୍କୁ ଜଣାଇବେ ।

ଏ ସମୟରେ ଗ୍ରୀଷ୍ମଋତୁର ପୁଷ୍ପିତ ମଲ୍ଲିବଲ୍ଲୀ ସବୁର ସୁଗନ୍ଧରେ ଚତୁର୍ଦିଗ ସୁରଭିତ ହୋଇଉଠିଲା । ପୁଷ୍ପିତ ପାଟଳୀ ବୃକ୍ଷସବୁ ଜ୍ୱଳନ୍ତ ଅଗ୍ନିଶିଖାପରି ମନେହେଲେ । ପଥିକମାନେ ଆଶ୍ରୟ ନେବାପାଇଁ ବୃକ୍ଷଲତା ସବୁ ଖୋଜିବୁଲିଲେ । ଏହା ଦେଖି ବର୍ଷାଋତୁ ରୂପକ ମତ୍ତହସ୍ତୀ ପୃଥିବୀ ପୃଷ୍ଠରେ ଅବତରଣ କଲା । ନୂତନ ମେଘର ଶ୍ୟାମଳିମାରେ ତା'ର ଶରୀର କାନ୍ତି ଉଦ୍ଭାସିତ ହୋଇଉଠୁଥାଏ । ସେ ବଜ୍ରଗମ୍ଭୀର ସ୍ୱରରେ ଗର୍ଜନ କରୁଥିଲା । କେତକୀ ପୁଷ୍ପରୂପ ତା'ର ଦୀର୍ଘ ଦନ୍ତପଂକ୍ତି ଉଜ୍ଜ୍ୱଳ ଦେଖାଯାଉଥିଲା । ବର୍ଷାଋତୁ ଆରମ୍ଭ ହେବାମାତ୍ରେ ଶୀତଳ ପବନ ସ୍ପର୍ଶରେ ବିକ୍ରମାଦିତ୍ୟଙ୍କ ହୃଦୟସ୍ଥିତ କନ୍ଦର୍ପଜ୍ୱାଳା ରୂପକ ଦାବାନଳ ପ୍ରଚଣ୍ଡ ଭାବରେ ଉଦ୍ଦୀପ୍ତ ହେବାକୁ ଲାଗିଲା । ଅନ୍ତଃପୁରରେ ପରିଚାରିକାମାନଙ୍କଠାରୁ 'ହାରଲତା ! ତୁଷାରବାରି ସିଞ୍ଚନ କର, ଚିତ୍ରାଙ୍ଗି ! ଚନ୍ଦନ ଲେପନ କର, ପତ୍ରଲେଖା ! ପଦ୍ମପତ୍ରର ଶଯ୍ୟା ପ୍ରସ୍ତୁତ କର, କନ୍ଦର୍ପସେନା ! କଦଳୀପତ୍ରରେ ବ୍ୟଜନ କର' ଇତ୍ୟାଦି କୋଳାହଳ ଶୁଣାଗଲା । ବିଜୁଳିର ଘନଘନ ପ୍ରକାଶରେ ଦୁଃସହ ବର୍ଷାଋତୁ ବିଦାୟ ନେଲା, କିନ୍ତୁ ବିକ୍ରମାଦିତ୍ୟଙ୍କ କନ୍ଦର୍ପପୀଡ଼ାରୂପ ଦାବାଗ୍ନି ପ୍ରଶମିତ ହେଲାନାହିଁ ।

ବର୍ଷା ପରେ କାଶତଣ୍ଡି ପୁଷ୍ପରେ ହାସ୍ୟ ପ୍ରକାଶ କରି କଳହଂସମାନଙ୍କ ମଧୁର କୂଜନ ସହିତ ଶରତଋତୁ ଆସି ପହଞ୍ଚିଲା । ସତେ ଯେପରି ସେ ପ୍ରବାସୀମାନଙ୍କୁ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନପାଇଁ, ପ୍ରଣୟ ଚିଟାଉ ପ୍ରେରଣ ନିମିତ୍ତ କିମ୍ବା ଦୂତଦ୍ୱାରା ଆଗମନ ବାର୍ତ୍ତା ଜଣାଇବା ସକାଶେ ନିର୍ଦ୍ଦେଶ ଦେଉଥାଏ । ପରିବ୍ରାଜକମାନେ ଚାତୁର୍ମାସ୍ୟା ବ୍ରତ ଉଦ୍‌ଯାପନ କରି ପୁଣି ପରିଭ୍ରମଣରେ ବହିର୍ଗତ ହେଲେ । ଏହିପରି ଜଣେ ପରିବ୍ରାଜକ ଉଜ୍ଜୟିନୀସ୍ଥିତ ମଠର ସୁଖ୍ୟାତି ଶୁଣି କିଛିଦିନ ସେଠାରେ ବିତାଇବାନିମିତ୍ତ ଆସି ପହଞ୍ଚିଲେ । ତାଙ୍କ ନାମ ଶମ୍ବରସିଦ୍ଧି । ସେ ଭୋଜନ କରି ହଳେ ବସ୍ତ୍ର ଓ କିଛି ଭୂଷଣ

ଗ୍ରହଣ କଲେ । ଚିତ୍ରପଟରେ ଅଙ୍କିତ ନଗରଟିକୁ ଦେଖି ସେ କର୍ମଚାରୀମାନଙ୍କୁ କହିଲେ, 'ଏହି ନଗରର ଚିତ୍ରକର କିଏ ? ଏହି ନଗରକୁ ମୋ ବ୍ୟତୀତ ଏହି ଚିତ୍ରକର ବୋଧହୁଏ କେବଳ ଦେଖିଛନ୍ତି । ମୁଁ ଦମ୍ଭର ସହିତ କହିପାରେ ଯେ ଆମ ଦୁଇଜଣଙ୍କ ବ୍ୟତୀତ ତୃତୀୟ ବ୍ୟକ୍ତି ଏହାକୁ ଦେଖିବାର ସୌଭାଗ୍ୟ ଏ ପର୍ଯ୍ୟନ୍ତ ଲାଭ କରିନାହାନ୍ତି ।' କର୍ମଚାରୀମାନେ ତତ୍‌କ୍ଷଣାତ୍ ଯାଇ ଭଦ୍ରାୟୁଧଙ୍କୁ ଏ ସମ୍ବାଦ ଜଣାଇଲେ । ସେ ମଧ୍ୟ ମୁହୂର୍ତ୍ତେ ମାତ୍ର କାଳବିଳମ୍ବ ନକରି ମଠରେ ଥିବା ପରିବ୍ରାଜକଙ୍କ ସହିତ ଆସି ସାକ୍ଷାତ କଲେ । ତାଙ୍କଠାରୁ ନଗରୀର ବୃତ୍ତାନ୍ତ ଶୁଣି କାର୍ଯ୍ୟସିଦ୍ଧିର ସୂଚନା ଦେଖାଗଲା । ଆନନ୍ଦୋତ୍‌ଫୁଲ୍ଲ ମନରେ ସେ ତାଙ୍କ ସହିତ ଯାଇ ରାଜା ବିକ୍ରମାଦିତ୍ୟଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ।

ବିକ୍ରମାଦିତ୍ୟଙ୍କ ସାଗ୍ରହ ଜିଜ୍ଞାସା କ୍ରମେ ଶମ୍ବରସିଦ୍ଧି ଉକ୍ତ ନଗର ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିବାକୁ ଯାଇ ଜଣାଇଲେ, 'ମହାରାଜ୍ ! ମୁଁ ସମଗ୍ର ସଂସାର ପରିକ୍ରମା କରିଛି । ଏ ସମୟରେ ସମୁଦ୍ରର ପରପାରରେ ଥିବା ଏହି ମହାନଗରୀ ମଧ୍ୟରେ ଯାଇ ମୁଁ ପହଞ୍ଚିଥିଲି । ଏହା ଏକ ଅଜ୍ଞାତ ଦ୍ୱୀପ ମଧ୍ୟରେ ଅବସ୍ଥିତ । ନଗରଟିର ନାମ ମଳୟପୁର । ଏଠାରେ ମଳୟସିଂହ ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ମଳୟବତୀ ବୋଲି ତାଙ୍କର ଏକ ଅପୂର୍ବ ସୁନ୍ଦରୀ କନ୍ୟା ଅଛନ୍ତି । ସେ ପୁରୁଷଦ୍ୱେଷିଣୀ; କୌଣସି ପୁରୁଷକୁ ସେ ସହ୍ୟ କରିପାରନ୍ତି ନାହିଁ । ଏକଦା ସେ ଉପବନ ବିହାର ସାରି ଫେରିବା ପରେ ସ୍ୱପ୍ନରେ କୌଣସି ମହାପୁରୁଷଙ୍କୁ ଦେଖିଲେ । ତାଙ୍କୁ ଦେଖିବା ମାତ୍ରେ, ବୋଧହୁଏ ତାଙ୍କ ପ୍ରଭାବ ଭୟରେ, ମଳୟବତୀଙ୍କ ମନରୁ ପୁରୁଷଦ୍ୱେଷ ରୂପକ ଦୁର୍ଗ୍ରହ ହଠାତ୍ ଅପସାରିତ ହେଲା । ସ୍ୱପ୍ନରେ ହିଁ ସେ ତାଙ୍କୁ ନିଜ ବାସଭବନକୁ ନେଇଗଲେ । ସେଠାରେ ତାଙ୍କ ସହିତ ସେହି ମହାପୁରୁଷଙ୍କ ସ୍ୱପ୍ନବିବାହ ସମ୍ପନ୍ନ ହେଲା । ସେ ତାଙ୍କ ସହିତ ବାସର ଗୃହରେ ପ୍ରବେଶ କଲେ । ରତିକେଳିରେ ପ୍ରମତ୍ତ ହୋଇଉଠୁଥିବା ବେଳେ ରାତ୍ରି ଶେଷ ହେଲା । ପରିଚାରିକା ତାଙ୍କୁ ଜାଗ୍ରତ କରାଇଦେଲା । କ୍ରୋଧାନ୍ୱିତ ହୋଇ ମଳୟବତୀ ସେହି ଦାସୀକୁ ଦେଶାନ୍ତର ଦଣ୍ଡ ଦେବା ସହିତ ନିଜେ ସେହି ସ୍ୱପ୍ନଦୃଷ୍ଟ ବିଦେଶାଗତ ମହାପୁରୁଷଙ୍କ ସ୍ମରଣରେ ବ୍ୟାକୁଳ ହୋଇଉଠିଲେ । ବିରହାଗ୍ନି ତାଙ୍କୁ ସନ୍ତପ୍ତ କରିବାକୁ ଲାଗିଲା । ନିଦ୍ରା ତାଙ୍କ ଚକ୍ଷୁକୁ ସ୍ପର୍ଶ କଲା ନାହିଁ । ପୀଡ଼ା ଅଧିକ ହେଲେ ସେ ଶଯ୍ୟା ଉପରେ ଉଠି ବସୁଥାନ୍ତି ଏବଂ ଶାନ୍ତ ହେଲେ ପୁଣି ଶଯ୍ୟା ଉପରେ ପଡ଼ି ଯାଉଥାନ୍ତି । ଭୂତାକ୍ରାନ୍ତ କିମ୍ବା ମୂକ କିମ୍ବା ବାତରୋଗ ପ୍ରପୀଡ଼ିତା ପରି ସେ ସଖୀ ଓ ପରିଚାରିକାମାନଙ୍କ ପ୍ରଶ୍ନର କୌଣସି ଉତ୍ତର ଦେଉନଥାନ୍ତି । ପିତାମାତା କନ୍ୟାର ଏପରି ଅବସ୍ଥା ଦେଖି ମ୍ରିୟମାଣ ହୋଇପଡ଼ିଲେ । ବାରମ୍ବାର ଜିଜ୍ଞାସା କରିବାରୁ ସେ ଅତିକଷ୍ଟରେ ସଖୀଦ୍ୱାରା ତାଙ୍କ ସ୍ୱପ୍ନବୃତ୍ତାନ୍ତ ପିତାମାତାଙ୍କୁ କହି ଶୁଣାଇଲେ । ପିତା ଆଶ୍ୱାସନା ଦେଇ କହିଲେ ଯେ ସେ ଛଅମାସ ମଧ୍ୟରେ ନିଶ୍ଚିତ ଭାବେ ସେହି

ମହାପୁରୁଷଙ୍କ ସନ୍ଧାନ କରିବେ । ମଳୟବତୀ ପ୍ରତିଜ୍ଞା କଲେ ଛଅମାସ ଶେଷ ସୁଦ୍ଧା ସେ ଯଦି ସେହି ସ୍ୱପ୍ନଦୃଷ୍ଟ ମହାପୁରୁଷଙ୍କୁ ପତିରୂପେ ଲାଭ ନ କରନ୍ତି, ତେବେ ସେ ଅଗ୍ନିରେ ପ୍ରବେଶ କରି ପ୍ରାଣ ବିସର୍ଜ୍ଜନ କରିବେ । ଏହା ମଧ୍ୟରେ ପାଞ୍ଚମାସ ବିତିଗଲାଣି । ମଳୟବତୀଙ୍କ ଭାଗ୍ୟରେ କଣ ଅଛି କିଏ କହିବ ? ଏହାହିଁ ସେହି ନଗରୀର ଘଟଣା କ୍ରମ ।'

ଶମ୍ବରସିଦ୍ଧିଙ୍କଠାରୁ ଏହା ଶୁଣି ରାଜାଙ୍କ ଶରୀର ପୁଲକିତ ହୋଇଉଠିଲା । ସେ ରାଜକୁମାରୀଙ୍କ ପ୍ରକୃତ ସ୍ଥିତି ଜ୍ଞାତ ହୋଇ ଆଶ୍ୱସ୍ତ ହେଲେ । ଭଦ୍ରାୟୁଧ ତାଙ୍କୁ ଲକ୍ଷ୍ୟ କରି କହିଲେ, 'ମହାରାଜ୍ ! ଆମ କାର୍ଯ୍ୟ ସିଦ୍ଧ ହେଲା ବୋଲି ଜାଣନ୍ତୁ । ମଳୟପୁର ଆମ ରାଜ୍ୟର ଅଧୀନ । ମଳୟସିଂହ ମଧ୍ୟ ଆମର ସାମନ୍ତ ରାଜା । ଚାଲନ୍ତୁ, ଛ'ମାସ ପୂରିବା ପୂର୍ବରୁ ଆମେ ଯାଇ ସେଠାରେ ପହଞ୍ଚିବା ।' ପ୍ରତିହାରଠାରୁ ଏହା ଶୁଣି ରାଜା ବିକ୍ରମାଦିତ୍ୟ ଶମ୍ବରସିଦ୍ଧିଙ୍କ ନିକଟରୁ ମଳୟପୁର ମାର୍ଗର ବିସ୍ତୃତ ବିବରଣୀ ସଂଗ୍ରହ କଲେ । ପ୍ରଭୂତ ଧନରାଶିଦ୍ୱାରା ସନ୍ତୁଷ୍ଟ କରି ପରିବ୍ରାଜକଙ୍କ ସତ୍କାର କରାଗଲା ।

ରାଜା ବିରହଜନିତ ସନ୍ତାପକୁ ସୂର୍ଯ୍ୟଙ୍କଠାରେ ଅର୍ପଣ କରି ଏବଂ ନିଜର ପାଣ୍ଡୁର ବର୍ଣ୍ଣ ଅରଣ୍ୟ ଓ କୃଶତା ନଦୀମାନଙ୍କୁ ପ୍ରଦାନ ପୂର୍ବକ ନିଃଶଙ୍କଚିତ୍ତରେ ସ୍ୱଳ୍ପମାତ୍ର ସୈନିକଙ୍କ ସହ ମଳୟପୁର ପ୍ରତି ଅଗ୍ରସର ହେଲେ । କିଛିଦିନ ମଧ୍ୟରେ ତାଙ୍କ ସାମୁଦ୍ରିକ ପୋତ ଲକ୍ଷ୍ୟସ୍ଥଳରେ ଯାଇ ପହଞ୍ଚିଲା । ସେ ବେଳାଭୂମିରେ ଅବତରଣ କଲାବେଳେ ନଗରବାସୀ ସେଠାରେ ରୁଣ୍ଡ ହୋଇ କୋଳାହଳ କରୁଥାନ୍ତି । ଉଦ୍‌ବିଗ୍ନ ଚିତ୍ତରେ ସେ ପ୍ରଶ୍ନ କରିବାରୁ ଜଣେ ନାଗରିକ କହିଲା ଯେ ରାଜକୁମାରୀ ମଳୟବତୀ ପ୍ରତିଜ୍ଞା କରିଥିଲେ ଯେ ଛଅମାସ ମଧ୍ୟରେ ସେ ତାଙ୍କ ପ୍ରିୟତମଙ୍କୁ ଲାଭ ନକଲେ ଅଗ୍ନିରେ ପ୍ରବେଶ କରି ପ୍ରାଣ ବିସର୍ଜନ କରିବେ । ଆଜି ଛଅମାସ ପୂରିଗଲା । ତେଣୁ ସେ ଅଗ୍ନିରେ ପ୍ରବେଶ କରିବାପାଇଁ ଉଦ୍ୟତା । ବିକ୍ରମାଦିତ୍ୟ ଦ୍ରୁତ ପଦକ୍ଷେପରେ ଯାଇ ଚିତାଗ୍ନି ନିକଟରେ ପହଞ୍ଚିଲେ ।

ଏପରି ଦ୍ରୁତ ବେଗରେ ଆସୁଥିବା ଜଣେ ପୁରୁଷଙ୍କୁ ଦେଖି ନାଗରିକମାନେ ତାଙ୍କ ରାସ୍ତାରୁ ଦୂରେଇ ଯାଉଥାଆନ୍ତି । ସେ ଚିତାଗ୍ନି ନିକଟରେ ରାଜକୁମାରୀଙ୍କୁ ବିଷଣ୍ଣ ବଦନରେ ଠିଆ ହୋଇଥିବା ଦେଖି ନିଜର ମନୋରଥ ପୂର୍ଣ୍ଣ ହେଲା ବୋଲି ମନେକଲେ । ରାଜକୁମାରୀଙ୍କ ଦର୍ଶନ ହିଁ ଅମୃତ ବୃଷ୍ଟିପରି ତାଙ୍କ ହୃଦୟକୁ ଶୀତଳ କଲା ।

ରାଜକୁମାରୀ ମଧ୍ୟ ବିକ୍ରମାଦିତ୍ୟଙ୍କୁ ଦର୍ଶନ କରି ସଖୀମାନଙ୍କୁ କହିଲେ, 'ଦେଖ ଏ ମହାପୁରୁଷଙ୍କୁ ହିଁ ମୁଁ ସ୍ୱପ୍ନରେ ଦେଖିଥିଲି । ଏ ହିଁ ହେଉଛନ୍ତି ମୋର ପ୍ରାଣେଶ୍ୱର । ତୁମେ ଶୀଘ୍ର ଯାଇ ପିତାଙ୍କୁ ଏ ସମ୍ବାଦ ଦିଅ ।'

ସଖୀମାନେ ଯଥାଶୀଘ୍ର ମଳୟସିଂହଙ୍କ ନିକଟରେ ଏ ସମ୍ବାଦ ପହଞ୍ଚାଇଲେ । ପିତାଙ୍କ ମନରୁ ସମସ୍ତ ଦୁଃଖ ଦୂର ହେଲା । ସେ କନ୍ୟା ନିକଟକୁ ଦୌଡ଼ି ଆସିଲେ । ତାଙ୍କୁ ଦେଖିବାମାତ୍ରେ ଉପସ୍ଥିତବୁଦ୍ଧି ଶମ୍ବରସିଦ୍ଧି ହସ୍ତ ଉତ୍ତୋଳନ କରି ବିକ୍ରମାଦିତ୍ୟଙ୍କ ବିରୁଦାବଳୀ ଉଚ୍ଚାରଣ କରିବାକୁ ଲାଗିଲେ । ନିଜ ତେଜରେ ପିଶାଚମାନଙ୍କୁ ସିଦ୍ଧ କରିଥିବା ରାଜାଙ୍କର ଜୟ ହେଉ । ମ୍ଳେଚ୍ଛମାନଙ୍କ ଦାବାଗ୍ନିଙ୍କ ଜୟ ହେଉ । ସପ୍ତଦ୍ଵୀପା ଧରଣୀରାଣୀଙ୍କ ଅଭିମାନ ଭଞ୍ଜନ କରୁଥିବା ପୃଥିବୀପତିଙ୍କ ଜୟ ହେଉ । ସମସ୍ତ ବିଜିତ ରାଜାମାନଙ୍କର ମସ୍ତକସ୍ଥିତ ମୁକୁଟର ମଣିମାଣିକ୍ୟର ଜ୍ୟୋତିକୁ ନିଜ ଶରୀରର କାନ୍ତିଦ୍ଵାରା ପରାଜିତ କରୁଥିବା ସମ୍ରାଟଙ୍କର ଜୟ ହେଉ । ସ୍ଵୀୟ ପରାକ୍ରମରେ ସମୁଦ୍ରକୁ ପରାଭୂତ କରୁଥିବା ରାଜା ବିଷମଶୀଳ ବିକ୍ରମାଦିତ୍ୟଙ୍କ ଜୟ ହେଉ ।' ଶମ୍ବରସିଦ୍ଧିଙ୍କ ଜୟ ଧ୍ଵନିରୁ ମଳୟସିଂହ ବିକ୍ରମାଦିତ୍ୟଙ୍କ ପ୍ରକୃତ ପରିଚୟ ଲାଭ କରିବା ମାତ୍ରେ ତାଙ୍କ ପାଦତଳେ ପଡ଼ିଗଲେ । ଅଜସ୍ର ଭକ୍ତି ଓ ଅମାପ ଆଗ୍ରହରେ ମହାରାଜାଙ୍କ ସ୍ଵାଗତ ସତ୍କାର କରି ସେ ତାଙ୍କୁ ଓ ମୃତ୍ୟୁମୁଖରୁ ମୁକ୍ତିଲାଭ କରିଥିବା କନ୍ୟା ସହିତ ସ୍ଵୀୟ ରାଜଭବନରେ ଯାଇ ଉପସ୍ଥିତ ହେଲେ । ବିକ୍ରମାଦିତ୍ୟଙ୍କ ସହିତ ମଳୟବତୀଙ୍କ ବିବାହ ଉତ୍ସବ ମହାସମାରୋହରେ ଅନୁଷ୍ଠିତ ହେଲା । ସମ୍ରାଟ୍ ବିକ୍ରମାଦିତ୍ୟଙ୍କୁ ଜାମାତା ରୂପେ ଲାଭ କରି ମଳୟ ସିଂହ କୃତକୃତ୍ୟ ହେଲେ ।

ରାଜା ବିକ୍ରମାଦିତ୍ୟ ଚିତ୍ରପଟରେ ଦେଖିଥିବା ସୁନ୍ଦରୀଙ୍କୁ ସ୍ଵପ୍ନରେ ଦର୍ଶନ କରିଥିଲେ । ସ୍ଵପ୍ନରେ ଦେଖିଥିବା କୋଳାଗ୍ରତ ସୁନ୍ଦରୀଙ୍କୁ ବର୍ତ୍ତମାନ ପ୍ରତ୍ୟକ୍ଷ ଭାବେ ନିଜ କୋଳରେ ଧାରଣ କରି ଏହାକୁ ଭଗବାନ ଶଙ୍କରଙ୍କ ଅନୁଗ୍ରହରୂପୀ କଳ୍ପବୃକ୍ଷର ଅଦ୍ଭୁତ ଫଳ ବୋଲି ମନେକଲେ । ଦୀର୍ଘଦିନର ବିରହତପ୍ତ ହୃଦୟ ଶାନ୍ତ ହେଲା । ରାଜା ଅପ୍ରତ୍ୟାଶିତ ଭାବରେ ବିରହ ସାଗରକୁ ଉତ୍ତୀର୍ଣ୍ଣ ହେଲେ । ଶ୍ଵଶୁରାଳୟରେ ସେ କିଛିଦିନ ଅବସ୍ଥାନ କଲାପରେ ସାଗର ଲଙ୍ଘନ କରି ଉଜ୍ଜୟିନୀ ପ୍ରତ୍ୟାବର୍ତ୍ତନ କରୁଥାନ୍ତି । ମାର୍ଗ ମଧ୍ୟରେ ସାମନ୍ତ ଓ ମିତ୍ରରାଜାମାନଙ୍କ ପ୍ରଣାମ ଓ ଉପହାରରେ ରାଜପଥ ଅବରୁଦ୍ଧ ହୋଇପଡୁଥାଏ ।

ଚିତ୍ରପଟର ସୁନ୍ଦରୀଙ୍କୁ ବାସ୍ତବରେ ମହାରାଜ ବିକ୍ରମାଦିତ୍ୟଙ୍କ ସହିତ ଦେଖି କିଏ ବା ବିସ୍ମିତ ନହେବ । ତାଙ୍କର ଏହି ଅପୂର୍ବ ସାଫଲ୍ୟ କାହାକୁ ବା ଆନନ୍ଦରେ ଉନ୍ମତ୍ତ ନକରିବ । କିଏ ବା ନିଜ ରାଜାଙ୍କ ଏ ପ୍ରକାର ସୌଭାଗ୍ୟରେ ମହୋତ୍ସବ ପାଳନ ନକରି ରହିବ । ସମଗ୍ର ରାଜ୍ୟ ଉତ୍ସବମୁଖର ହୋଇଉଠିଲା ।

# ଚତୁର୍ଥ ତରଙ୍ଗ

ସମ୍ରାଟ ବିକ୍ରମାଦିତ୍ୟ ଆନନ୍ଦଉତ୍ସବ ମଧ୍ୟରେ ପ୍ରଜାପାଳନ କରୁଥାନ୍ତି । ରାଣୀମାନଙ୍କ ଗହଣରେ ତାଙ୍କ ଦିନଗୁଡ଼ିକ ନିତ୍ୟନୂତନ ଭୋଗବିଳାସ ମଧ୍ୟରେ ବିତିଯାଉଥାଏ ।

ଦିନେ ରାଣୀ କଳିଙ୍ଗସେନା ବିଶ୍ରମ୍ଭାଳାପ ମଧ୍ୟରେ ସପତ୍ନୀମାନଙ୍କୁ କହିଲେ, 'ଭଗିନୀ ମଳୟବତୀଙ୍କୁ ଲାଭ କରିବାପାଇଁ ରାଜା ଯେଉଁ କଷ୍ଟ ସ୍ୱୀକାର କଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏପରି ଅଦ୍ଭୁତ କାର୍ଯ୍ୟ ସମ୍ପାଦନ କରିବାରେ ବିକ୍ରମାଦିତ୍ୟଙ୍କ ସୁଖ୍ୟାତି ସର୍ବଜନବିଦିତ । ମୋ ରୂପ ସହିତ ସାମ୍ୟ ଥିବା ଗୋଟିଏ ପ୍ରତିମାକୁ ଦେଖି କନ୍ଦର୍ପ ପୀଡ଼ିତ ରାଜା ଆମ ରାଜ୍ୟ ଆକ୍ରମଣ କରି ମୋତେ କଣ ବିବାହ କରିନାହାଁନ୍ତି କି ? ଏ ସମ୍ପର୍କରେ କାର୍ପଟିକ ଦେବସେନ ଯେଉଁ କାହାଣୀ ମୋତେ କହିଥିଲେ ତାହା ମୁଁ ତୁମମାନଙ୍କ ନିକଟରେ ପ୍ରକାଶ କରୁଛି, ଶୁଣ–

## କଳିଙ୍ଗସେନା ବିବାହ ବୃତ୍ତାନ୍ତ

ମୁଁ ବିବାହ କରି ରାଜ ଅନ୍ତଃପୁରକୁ ଆସିଲି । କିନ୍ତୁ ରାଜା ବଳାତ୍କାରରେ ମୋତେ ବିବାହ କରିଥିବାରୁ ମୁଁ ସର୍ବଦା ଅସନ୍ତୁଷ୍ଟ ଥାଏ । ରାଜାଙ୍କ ଅନୁଚିତ ଆଚରଣ ମୋତେ ଦୁଃଖ ଦେଉଥାଏ । ଏ ସମୟରେ କାର୍ପଟିକ ଦେବସେନ ମୋ ନିକଟକୁ ଆସି କହିଲେ, 'ମହାରାଣି ! ଆପଣ ଦୁଃଖ କରିବା ଉଚିତ ନୁହେଁ । ଆପଣଙ୍କୁ ଯଥାଶୀଘ୍ର ବିବାହ କରିବାପାଇଁ ରାଜା ଉତ୍ସୁକ ଥିବାରୁ ଏପରି ଆଚରଣ କରିଛନ୍ତି । ସେ ଆପଣଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାବାନ୍ । ଏ ସମ୍ପର୍କରେ ଆପଣ ଯଦି ଜାଣିବାକୁ ଚାହାଁନ୍ତି ତେବେ ମୂଳରୁ ଶୁଣନ୍ତୁ ।

ମୁଁ ଆପଣଙ୍କ ସ୍ୱାମୀ ରାଜା ବିକ୍ରମାଦିତ୍ୟଙ୍କ ସେବାରେ ନିଯୁକ୍ତ ଥାଏ । ଦିନେ ଅରଣ୍ୟ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ବନ୍ୟଶୂକର ମୋର ଦୃଷ୍ଟିଗୋଚର ହେଲା ।

ତୀକ୍ଷ୍ଣଦନ୍ତପଂକ୍ତିଦ୍ୱାରା ତାର ମୁଖ ଭୟଙ୍କର ଦେଖାଯାଉଥାଏ । ତା' ଶରୀରର ଗାଢ଼ କୃଷ୍ଣବର୍ଣ୍ଣ ଦେଖିଲେ ମନେହେଉଥାଏ ସତେ ଯେପରି ସମଗ୍ର ଚନ୍ଦ୍ରକଳାକୁ କବଳିତ କରି ସ୍ୱୟଂ ଅମାବାସ୍ୟା ଶରୀର ପରିଗ୍ରହ କରିଛି । ମୁଁ ତା' ସମ୍ପର୍କରେ ରାଜାଙ୍କୁ ଆସି ଜଣାଇଲି । ରାଜା ତା'ର ଶିକାରପାଇଁ ଉତ୍କଣ୍ଠିତ ହୋଇପଡ଼ିଲେ । ଆମେ ଅରଣ୍ୟ ମଧ୍ୟରେ ପ୍ରବେଶ କଲୁ । ହିଂସ୍ର ବ୍ୟାଘ୍ର ଓ ନିରୀହ ମୃଗମାନଙ୍କୁ ଶିକାର କରି ରାଜା ଦୂରରୁ ଏହି ବନ୍ୟଶୂକରକୁ ଦେଖିବାକୁ ପାଇଲେ । କୌଣସି କାରଣବଶତଃ ଅନ୍ୟ ଏକ ପ୍ରାଣୀ ଏପରି ଅଦ୍ଭୁତ ଶୂକରରୂପ ପରିଗ୍ରହ କରିଥିବା ତାଙ୍କର ମନେହେଲା । ରାଜା ତା'ର ଶିକାରପାଇଁ ନିଜର ପ୍ରବଳ ବେଗବାନ୍ ଅଶ୍ୱ ଉଚ୍ଚୈଃଶ୍ରବାପୁତ୍ର ରତ୍ନାକର ଉପରେ ଆରୋହଣ କଲେ ।

ପ୍ରତିଦିନ ସୂର୍ଯ୍ୟଦେବ ମଧ୍ୟାହ୍ନରେ କିଛି ମୁହୂର୍ତ୍ତପାଇଁ ଆକାଶ ମାର୍ଗରେ ଅଟକି ଯାନ୍ତି । ସେ ସମୟରେ ତାଙ୍କ ସାରଥି ରଥରୁ ଅଶ୍ୱମାନଙ୍କୁ ଖୋଲିଦେଇ ଜଳପାନପାଇଁ ଛାଡ଼ି ଦେଇଥାନ୍ତି । ଦିନେ ମଧ୍ୟାହ୍ନରେ ଅରୁଣ ସୂର୍ଯ୍ୟଙ୍କ ରଥରୁ ଉଚ୍ଚୈଃଶ୍ରବାକୁ ଖୋଲିଦେଲେ । ଏ ସମୟରେ ବିକ୍ରମାଦିତ୍ୟଙ୍କ ଘୋଟକୀ ଭୂପୃଷ୍ଠରେ ଚରୁଥାଏ । ଉଚ୍ଚୈଃଶ୍ରବା ତା' ସହିତ ସଙ୍ଗମ କରି ଏହି ରତ୍ନାକର ନାମକ ଅଶ୍ୱକୁ ଜନ୍ମଦେଇଥିଲା । ଏହାର ବେଗ ପବନ ଅପେକ୍ଷା ମଧ୍ୟ ଅଧିକ ଦ୍ରୁତତର ।

ରାଜା ଏହି ଦିବ୍ୟ ଅଶ୍ୱ ଆରୋହଣ କରି ବରାହର ପଶ୍ଚାତ୍‌ଧାବନ କଲେ । ବରାହର ବେଗ ଦ୍ରୁତରୁ ଦ୍ରୁତତର ହେଲା । ସେ ଉଚ୍ଚୈଃଶ୍ରବା ପୁତ୍ରର ଗତି ଅପେକ୍ଷା ଅଧିକ ବେଗରେ ପଳାୟନ କରି ଚକ୍ଷୁ ସମ୍ମୁଖରୁ ଅନ୍ତର୍ହିତ ହେଲା । ରାଜା ବିକ୍ରମାଦିତ୍ୟ ସ୍ତମ୍ଭିତ ହୋଇଗଲେ । ସେ ସଚେତନ ହୋଇ ଦେଖିଲେ ଯେ ତାଙ୍କର ଦେହରକ୍ଷୀମାନେ ବହୁପଛରେ ରହିଯାଇଛନ୍ତି । ନିକଟରେ ମୋତେ ଦେଖି ସେ କେତେଦୂର ଚାଲି ଆସିଛନ୍ତି ଜାଣିବାପାଇଁ ପ୍ରଶ୍ନ କଲେ । ଆମେ ତିନିଶହ ଯୋଜନ ଚାଲି ଆସିଥିବା କଥା ମୁଁ ତାଙ୍କୁ ଜଣାଇଲି । ରାଜା ବିସ୍ମୟର ସହିତ ମୋତେ ପୁଣି ପଚାରିଲେ 'କାର୍ପଟିକ ! ମୁଁ ତ ରତ୍ନାକର ପୃଷ୍ଠରେ ଏତେଦୂର ଆସିଗଲି । ତୁମେ ପଦବ୍ରଜରେ ମୋ ସହିତ କିପରି ଆସିପାରିଲ ?' ରାଜାଙ୍କ ବିସ୍ମୟଭାବ ଦୂରକରି ମୁଁ ଉତ୍ତର ଦେଲି, 'ମହାରାଜ୍ ! ମୁଁ ପାଦରେ ଏକପ୍ରକାର ପ୍ରଲେପ ଲେପନ କରିଛି । ତା'ର ପ୍ରଭାବରେ ମୁଁ ଆପଣଙ୍କ ସହିତ ଆସିବାପାଇଁ ସମର୍ଥ ହୋଇପାରିଛି । ସେହି ପ୍ରଲେପର କଥା ଆପଣ ଶୁଣିପାରନ୍ତି ।

ଯୌବନରେ ମୁଁ ବିପତ୍ନୀକ ହୋଇପଡ଼ିଲି । ପତ୍ନୀ ବିଚ୍ଛେଦ ଦୁଃଖରୁ ମୁକ୍ତି ପାଇବାପାଇଁ ମୁଁ ତୀର୍ଥ ଭ୍ରମଣରେ ଗୃହତ୍ୟାଗ କରିଥାଏ । ପଥ ମଧ୍ୟରେ ଦିନେ ସନ୍ଧ୍ୟା

ହୋଇଆସିଲା । ମୁଁ ନିକଟରେ ଥିବା ଏକ ରମଣୀୟ ଉଦ୍ୟାନ ମଧ୍ୟସ୍ଥିତ ଦେବାଳୟ ମଧ୍ୟରେ ରାତ୍ରିଟି କଟାଇ ଦେବାପାଇଁ ପ୍ରବେଶ କଲି । ସେଠାରେ ଜଣେ ରମଣୀ ଏକାକିନୀ ରହୁଥାନ୍ତି । ସେ ମୋର ଅତିଥି ସତ୍କାର କଲେ । ମୁଁ ସେଠାରେ ବିଶ୍ରାମ ନେଲି । ରାତ୍ରିର ଦ୍ୱିତୀୟ ପ୍ରହରରେ ମୋତେ ବିସ୍ମିତ କରି ସେହି ରମଣୀ ତାଙ୍କ ମୁଖ ବ୍ୟାଦାନ କଲେ । ତାଙ୍କ ଅଧର ପୃଥିବୀ ସ୍ପର୍ଶ କରୁଥାଏ ଏବଂ ଓଷ୍ଠ ଆକାଶକୁ ଲାଗିଥାଏ । ମୋତେ ଦେଖି ସେ ପ୍ରଶ୍ନ କଲେ, 'ଏପରି ମୁଖମଣ୍ଡଳ ପୂର୍ବରୁ ତମେ କେବେ ଦେଖିଛ ?' ମୁଁ ଭୟଭୀତ ନହୋଇ ମୋର ଖଡ଼୍‌ଗକୁ କୋଷମୁକ୍ତ କଲି । ଭ୍ରୂକୁଞ୍ଚନ କରି ମୋ ପରି ବୀରପୁରୁଷକୁ ସେ ପୂର୍ବରୁ କେବେ ଦେଖିଛନ୍ତି କି ବୋଲି ଓଲଟା ପ୍ରଶ୍ନ ପଚାରିଲି । ମୋର ପ୍ରଶ୍ନ ଶୁଣି ତାଙ୍କ ରୂପ ବଦଳିଗଲା । ସେ ଜଣେ ରୂପବତୀ ନାରୀରେ ରୂପାନ୍ତରିତ ହେଲେ ଏବଂ କହିଲେ 'ଭଦ୍ର ! ମୁଁ ରାକ୍ଷସୀ ନୁହେଁ । ମୁଁ ଜଣେ ଯକ୍ଷିଣୀ । ମୋର ନାମ ଚଣ୍ଡୀ । ତୁମର ସାହସ ଓ ନିର୍ଭୀକତାରେ ମୁଁ ପ୍ରୀତ ହୋଇଛି । ବର୍ତ୍ତମାନ କହ ମୁଁ ତୁମର କି ପ୍ରକାର କଲ୍ୟାଣ ସାଧନ କରିପାରିବି ?' ଯକ୍ଷିଣୀଙ୍କ ପ୍ରସନ୍ନତା ଦେଖି ମୁଁ ନିବେଦନ କଲି, 'ଭଦ୍ରେ ! ଆପଣ ଯଦି ପ୍ରକୃତରେ ମୋ ପ୍ରତି ପ୍ରସନ୍ନ, ତେବେ ଏପରି କିଛି ଉପାୟ କରନ୍ତୁ ଯାହା ଫଳରେ ମୁଁ ଅନାୟାସରେ ସମସ୍ତ ତୀର୍ଥ ପରିକ୍ରମା କରିପାରିବି ।' ଯକ୍ଷିଣୀ ପାଦରେ ଲଗାଇବାପାଇଁ ମୋତେ ଏକ ପ୍ରଲେପ ପ୍ରଦାନ କଲେ । ତା'ରି ପ୍ରଭାବରେ ମୁଁ ବିନା ପରିଶ୍ରମରେ ମୋର ତୀର୍ଥ ଭ୍ରମଣ ଶେଷକଲି । ଆଜି ମଧ୍ୟ ତା'ରି ପ୍ରଭାବ ଯୋଗୁଁ ହିଁ ଆପଣଙ୍କ ସହିତ ଆସିପାରିଛି । ମୁଁ ଏହି ପ୍ରଲେପ ଗ୍ରହଣ କରି ପ୍ରତିଦିନ ମୋର ଆହାରଯୋଗ୍ୟ ଫଳମୂଳ ସଂଗ୍ରହ ନିମିତ୍ତ ଏହି ଅରଣ୍ୟକୁ ଆସିଥାଏ ଏବଂ କ୍ଷଣକ ମଧ୍ୟରେ ଭୋଜନ ଶେଷକରି ଆପଣଙ୍କ ସେବାରେ ଉପସ୍ଥିତ ହୋଇଥାଏ ।'

ମହାରାଣି ! ଏହି ପ୍ରଲେପ ପ୍ରାପ୍ତି ବୃତ୍ତାନ୍ତ ଶୁଣି ରାଜାଙ୍କର ଆଦର ମୋ ପ୍ରତି ବଢ଼ିଗଲା । ସେ ମନେମନେ ମୋତେ ତାଙ୍କର ସର୍ବଶ୍ରେଷ୍ଠ ଅନୁଚର ବୋଲି ନିଶ୍ଚୟ କରିଥିବା, ତାଙ୍କ ଦୃଷ୍ଟିଭଙ୍ଗୀରୁ ଅନୁମାନ କଲି । ଅରଣ୍ୟରୁ ତାଙ୍କପାଇଁ କିଛି ଆହାରଯୋଗ୍ୟ ଫଳ ସଂଗ୍ରହ କରି ଆଣିବା ନିମିତ୍ତ ଅନୁମତି ଭିକ୍ଷା କରନ୍ତେ ରାଜା ସେଥିରେ ଅସମ୍ମତି ପ୍ରକାଶ କରି କହିଲେ, 'କାର୍ପଟିକ ! ମୁଁ କିଛି ଖାଇବି ନାହିଁ । ଏଠାରେ ଥିବା କୌଣସି ଫଳ ମୋର ଆହାର ଉପଯୋଗୀ ବୋଲି ମନେହେଉନାହିଁ । ପଦବ୍ରଜରେ ଆସି ତୁମେ ବହୁତ ଥକିଯାଇଛ । ଏଣୁ କିଛି ଫଳ ଭକ୍ଷଣ କରି ବିଶ୍ରାମ ନିଅ ।' ରାଜାଙ୍କ ନିର୍ଦ୍ଦେଶରେ ମୁଁ ଚତୁର୍ଦ୍ଦିଗକୁ ଦୃଷ୍ଟିପାତ କଲି । ନିକଟରେ ଗୋଟିଏ କାକୁଡ଼ି ମୋ ଆଖିରେ ପଡ଼ିଲା । ମୁଁ ତାକୁ ଭକ୍ଷଣ କଲି କିନ୍ତୁ ଆଶ୍ଚର୍ଯ୍ୟର କଥା, କାକୁଡ଼ିଟିକୁ ପାଟିରେ ଦେବାମାତ୍ରେ ମୁଁ

ଗୋଟିଏ ଅଜଗର ସର୍ପରେ ପରିଣତ ହୋଇଗଲି । ରାଜା ମୋର ଏହି ପରିବର୍ତ୍ତନ ଦେଖି ଯେତିକି ବିସ୍ମିତ ହେଲେ ତା' ଅପେକ୍ଷା ଅଧିକ ଦୁଃଖିତ ହୋଇପଡ଼ିଲେ । ବର୍ତ୍ତମାନ ସେ ଏକାକୀ, ତେଣୁ ସହାୟତାପାଇଁ ସେ ତାଙ୍କ ପୂର୍ବସିଦ୍ଧ ବେତାଳ ଭୂତକେତୁକୁ ସ୍ମରଣ କଲେ । ରାଜା ବିକ୍ରମାଦିତ୍ୟଙ୍କ ଦର୍ଶନ ମାତ୍ରେ ପୂର୍ବେ ବେତାଳ ନେତ୍ର ରୋଗରୁ ମୁକ୍ତିଲାଭ କରିଥିଲା ।

ସ୍ମରଣମାତ୍ରେ ଭୂତକେତୁ ସେଠାରେ ଉପସ୍ଥିତ ହୋଇ ରାଜାଙ୍କ ନିର୍ଦ୍ଦେଶକୁ ଅପେକ୍ଷା କଲା । ରାଜା କହିଲେ 'ଦେଖ, ମୋର ଏହି ବିଶ୍ୱସ୍ତ ଅନୁଚର ଫଳଟିଏ ଭକ୍ଷଣ କରି ଅଜଗରରେ ରୂପାନ୍ତରିତ ହୋଇଯାଇଛି । ତୁମେ ତାର ପୂର୍ବରୂପ ଫେରାଇଆଣ ।' ବେତାଳ କହିଲା 'ରାଜନ୍ ! ମୋଠାରେ ଏପରି ଶକ୍ତି ନାହିଁ । ପ୍ରତ୍ୟେକଙ୍କ ଶକ୍ତି ସୀମିତ । ଜଳ ବିଜୁଳିର ଅଗ୍ନିକଣାକୁ ଲିଭାଇପାରେ ନାହିଁ ।' ରାଜା ପ୍ରସ୍ତାବ କଲେ 'ତାହାହେଲେ, ମିତ୍ର, ଚାଲ ଆମେ ଏହି ନିକଟସ୍ଥ ଗାଁକୁ ଯିବା । ସେଠାରେ ଥିବା ଭୀଲ୍‌ମାନେ ଏହାର କିଛି ଉପାୟ କରିପାରନ୍ତି ।'

ବେତାଳ ସହିତ ରାଜା ବିକ୍ରମାଦିତ୍ୟ ନିକଟସ୍ଥ ଭୀଲ୍ ବସ୍ତିରେ ଯାଇ ପହଞ୍ଚିଲେ । ରାଜା ବହୁମୂଲ୍ୟ ଅଳଙ୍କାର ଧାରଣ କରିଥିବା ଦେଖି ଭୀଲ୍‌ମାନେ ତାଙ୍କୁ ଚତୁର୍ଦ୍ଦିଗରୁ ଘେରିଗଲେ । ବେତାଳ ରାଜାଙ୍କୁ ରକ୍ଷାକରିବାପାଇଁ ଯାଇ ପାଞ୍ଚଶହ ଭୀଲ୍ ସୈନିକଙ୍କୁ ଏକସଙ୍ଗରେ ଗିଳି ପକାଇଲା । ଏଥିରେ ଭୟଭୀତ ହୋଇ ଅବଶିଷ୍ଟ ଭୀଲ୍ ସେନା ଗ୍ରାମ ମୁଖ୍ୟ ନିକଟକୁ ପଳାୟନ କଲେ । ଭୀଲ୍ ଅଧିପତି ଏକାକୀ କେଶରୀ ଏହି ସମ୍ବାଦରେ କ୍ରୋଧାନ୍ୱିତ ହୋଇ ଆକ୍ରମଣପାଇଁ ବାହାରିଲା । କିନ୍ତୁ ଜଣେ ସେବକଠାରୁ ବିକ୍ରମାଦିତ୍ୟଙ୍କ ପରିଚୟ ଲାଭ କରି ସେ ତାଙ୍କ ପାଦତଳେ ପଡ଼ିଗଲା । ରାଜା ଅଭୟ ଦେବାରୁ ସେ ଉଠି ନିଜର ପରିଚୟ ପ୍ରଦାନପୂର୍ବକ ସସୈନ୍ୟ ଅଭିବାଦନ ଜଣାଇଲା । ରାଜା ତା'ର କୁଶଳ ଜିଜ୍ଞାସା କରି କହିଲେ, 'ମୋର ଜଣେ କାର୍ପଟିକ ଅରଣ୍ୟ ମଧ୍ୟରେ କାକୁଡ଼ିଟିଏ ଖାଇ ଅଜଗରରେ ପରିଣତ ହୋଇଯାଇଛି । ତୁମେ ତାକୁ ବଞ୍ଚାଇବାପାଇଁ କିଛି ଉପାୟ କର ।' ରାଜାଙ୍କ କଥାରେ ଭୀଲ୍‌ମୁଖ୍ୟ ଜଣେ ରାଜ ଅନୁଚର ସହ ତା'ର ପୁତ୍ରକୁ ପ୍ରେରଣ କଲା । ବେତାଳ ସହିତ ଆସି ଭୀଲ୍‌ପୁତ୍ର ମୋ ନାକରେ କିଛି ପତ୍ରରସ ଚିପୁଡ଼ିବାରୁ ମୁଁ ପୁଣି ମନୁଷ୍ୟରୂପ ଫେରିପାଇଲି । ଆନନ୍ଦିତ ମନରେ ସେମାନଙ୍କ ସହିତ ରାଜାଙ୍କ ନିକଟରେ ଆସି ପହଞ୍ଚିବାରୁ ସେ ସମସ୍ତ କଥା ମୋ ନିକଟରେ ପ୍ରକାଶ କଲେ । ଭୀଲ୍ ମୁଖ୍ୟ ଆମ୍ଭମାନଙ୍କୁ ସ୍ୱାଗତ କରି ତା' ଗୃହକୁ ନେଇଗଲା । ଆମେ ଯାଇ ଭୀଲ୍‌ମୁଖ୍ୟର ବାସଭବନରେ ପହଞ୍ଚିଲୁ ।

ଭୀଲ୍‌ର ଗୃହ ଶବରୀମାନଙ୍କଦ୍ୱାରା ଚଳଚଞ୍ଚଳ ଥିଲା । ତା'ର ପ୍ରାଚୀର ଓ ଭିତ୍ତିଗୁଡ଼ିକ ହାତୀଦାନ୍ତରେ ନିର୍ମିତ ହୋଇ ବ୍ୟାଘ୍ରଚର୍ମଦ୍ୱାରା ଆଚ୍ଛାଦିତ ଥିଲା । ଭୀଲ୍ ରମଣୀମାନେ ମୟୂରପିଚ୍ଛକୁ ବସ୍ତ୍ର ରୂପେ ଧାରଣ କରିଥିଲେ । ସେମାନଙ୍କ କଣ୍ଠରେ କାଇଁଚର ମାଳି ଶୋଭା ପାଉଥିଲା । ଉନ୍ମତ୍ତ ହସ୍ତୀମାନଙ୍କର ମଦଜଳ ସେମାନଙ୍କ ପ୍ରସାଧନ ସାମଗ୍ରୀ ଥିଲା । ଭୀଲ୍‌ମୁଖ୍ୟର ପତ୍ନୀ ନିଜେ ରାଜାଙ୍କ ପରିଚର୍ଯ୍ୟାପାଇଁ ଆସି ଉପସ୍ଥିତ ହେଲା । ତାର ଶରୀର କସ୍ତୁରୀ ଗନ୍ଧରେ ସୁରଭିତ ହେଉଥାଏ । କଣ୍ଠରେ ତାର ଗଜମୁକ୍ତାର ମାଳା । ରାଜା ସ୍ନାନ ଭୋଜନ ଶେଷକରି ବିଶ୍ରାମ କଲେ । ଅପରାହ୍ନରେ ଭୀଲ୍‌ମାନଙ୍କ ଗ୍ରାମସଭା ଆରମ୍ଭ ହେଲା । ସେଠାରେ ବିଚାର-ଆଲୋଚନା ଚାଲିଥିବା ବେଳେ ରାଜା ବିକ୍ରମାଦିତ୍ୟ ବିସ୍ମୟ ପ୍ରକାଶ ପୂର୍ବକ ଏକାକୀ କେଶରୀକୁ ପଚାରିଲେ, 'ମିତ୍ର ! ତୁମକୁ ଦେଖିବା ବେଳୁ ମୋ ମନରେ ବିଶେଷ କୌତୂହଳ ଜାତ ହେଉଛି । ଆଶ୍ଚର୍ଯ୍ୟର କଥା ତୁମେ ଯୁବକ ଥିଲାବେଳେ ତୁମ ପୁତ୍ର ବାର୍ଦ୍ଧକ୍ୟରେ ଉପନୀତ ହେଲାଣି । ଏହା କିପରି ସମ୍ଭବ ମୁଁ ବୁଝିପାରୁନାହିଁ ।' ରାଜାଙ୍କ କୌତୂହଳ ଦେଖି ଭୀଲ୍‌ମୁଖ୍ୟ ବିନମ୍ର ଭାବରେ ନିବେଦନ କଲା, 'ଦେବ ! ଏହା ଏକ ଦୀର୍ଘ କାହାଣୀ । ଆପଣଙ୍କର ଯଦି ଆଗ୍ରହ ଥାଏ, ତାହେଲେ ଶୁଣନ୍ତୁ ।

## ଏକାକୀକେଶରୀର ଚିରଯୌବନ ଲାଭ ରହସ୍ୟ

ଅତୀତରେ ମୁଁ ଜଣେ ବ୍ରାହ୍ମଣ ଥିଲି । ମୋର ନାମ ଥିଲା ଚନ୍ଦ୍ରସ୍ୱାମୀ । ମୁଁ ସେତେବେଳେ ମାୟାପୁରୀରେ ରହୁଥାଏ । ଦିନେ ପିତାଙ୍କ ଆଦେଶକ୍ରମେ ମୁଁ କିଛି ଜାଳେଣି ଆଣିବାପାଇଁ ଅରଣ୍ୟ ମଧ୍ୟରେ ପ୍ରବେଶ କଲି । ରାସ୍ତାରେ ଗୋଟିଏ ମର୍କଟ ମୋର ପଥରୋଧ କଲା । ସେ ମୋର କିଛି ଅନିଷ୍ଟ ନକରି ଅନ୍ୟ ମାର୍ଗରେ ଯିବାପାଇଁ ଇଙ୍ଗିତ ଦେଉଥାଏ । ମୁଁ ତା'ର ଏ ପ୍ରକାର ଆଚରଣରେ କୌତୂହଳୀ ହୋଇଉଠିଲି । ଭାବିଲି ଏହାର ହାବଭାବରୁ ସେ ମୋର କିଛି ଅନିଷ୍ଟ କରିବା ପରି ମନେହେଉନାହିଁ । ଦେଖେ, ସେ ଦେଖାଉଥିବା ମାର୍ଗରେ କଣ ସବୁଅଛି । ଏପରି ଚିନ୍ତାକରି ମୁଁ ସେହି ମର୍କଟଦ୍ୱାରା ସୂଚିତ ମାର୍ଗରେ ଚାଲିବା ଆରମ୍ଭ କଲି । ସେ ମୋ ଆଗେ ଆଗେ ଚାଲିଲା । କାଳେ ମୁଁ ତାକୁ ଅବିଶ୍ୱାସ କରି ଫେରିଯିବି ସେଥିପାଇଁ ସେ ବାରମ୍ବାର ପଛକୁ ଫେରି ଚାହୁଁଥାଏ ।

ଆମେ କିଛି ଦୂର ଯିବାପରେ ମର୍କଟଟି ଲମ୍ଫ ପ୍ରଦାନ କରି ଗୋଟିଏ ଜାମୁକୋଳି ଗଛ ଉପରକୁ ଚଢ଼ିଗଲା । ସେ ଯାଇ ଯେଉଁଠି ବସିଲା ମୁଁ ସେଠାକୁ ଚାହିଁ ଦେଖିଲି ସେହି ସ୍ଥାନରେ ବୃକ୍ଷ ଉପରକୁ ମାଡ଼ିଥିବା ଲତାତନ୍ତୁ ଦ୍ୱାରା ଗୋଟିଏ ଜଟିଳ ପାଶ ସୃଷ୍ଟି ହୋଇଛି

ଏବଂ ତା' ମଧ୍ୟରେ ବାନରୀଟିଏ ବାନ୍ଧି ହୋଇଯାଇ ଛଟପଟ ହେଉଛି । ମୁଁ ବାନରର ଅଭିପ୍ରାୟ ବୁଝିପାରିଲି । ସଙ୍ଗେସଙ୍ଗେ ବୃକ୍ଷ ଉପରକୁ ଚଢ଼ିଯାଇ ସେହି ଲତା ତନ୍ତୁଗୁଡ଼ିକୁ ଛୁରୀକା ଦ୍ୱାରା କାଟିଦେବା ଫଳରେ ବାନରୀଟି ମୁକ୍ତିଲାଭ କଲା । ବୃକ୍ଷରୁ ଓହ୍ଲାଇବା ପରେ ଉଭୟେ ମୋର ପାଦତଳେ ପଡ଼ିଗଲେ । ବାନର ବାନରୀକୁ ମୋ ପାଦତଳେ ଛାଡ଼ିଦେଇ ସେଠାରୁ ଅନ୍ୟତ୍ର ଚାଲିଗଲା । ମୁଁ ଦେଖିଲି କ୍ଷଣକ ମଧ୍ୟରେ ସେ ଫେରିଆସିଲା ବେଳେ ତା' ହାତରେ ଥିଲା ଏକ ଅଲୌକିକ ଫଳ । ମୁଁ ଫଳଟିକୁ ଧରି ଏବଂ କିଛି ଜାଳେଣି ଯୋଗାଡ଼ କରି ଘରକୁ ଫେରିଆସିଲି । ମୁଁ ଓ ମୋର ପତ୍ନୀ ଉଭୟେ ଫଳଟିକୁ ଦୁଇଫାଳ କରି ଖାଇଲୁ । ଆଶ୍ଚର୍ଯ୍ୟର କଥା ଫଳଟିକୁ ଖାଇବା ମାତ୍ରେ ଆମର ସମସ୍ତ ରୋଗ ଦୂରୀଭୂତ ହେଲା । କେବଳ ସେତିକି ନୁହେଁ ଆମର ବାର୍ଦ୍ଧକ୍ୟ ପରିବର୍ତ୍ତେ ଆମେ ନବଯୌବନ ଫେରିପାଇଲୁ ।

କିଛିଦିନ ପରେ ରାଜ୍ୟରେ ଘୋର ଦୁର୍ଭିକ୍ଷ ଦେଖାଦେଲା । ଲୋକମାନେ ଦେଶଛାଡ଼ି ପଳାୟନ କଲେ । ମୁଁ ମଧ୍ୟ ପତ୍ନୀ ସହିତ ବାହାରି ଏଠାରେ ଆସି ପହଞ୍ଚିଲି । ସେତେବେଳେ ଏଠାରେ କାଞ୍ଚନଦଂଷ୍ଟ୍ର ନାମରେ ଜଣେ ଶବରାଧିପତି ରାଜତ୍ୱ କରୁଥିଲେ । ଅସ୍ତ୍ରଶସ୍ତ୍ର ଧାରଣ କରି ମୁଁ ତାଙ୍କର ଭୃତ୍ୟ ରୂପରେ ସେବା କଲି । ବିଭିନ୍ନ ଅସ୍ତ୍ରବିଦ୍ୟାରେ କୁଶଳୀ ଦେଖି କାଞ୍ଚନଦଂଷ୍ଟ୍ର ମୋତେ ସେନାପତି ପଦରେ ନିଯୁକ୍ତ କଲେ । ମୋର ଅନନ୍ୟ ଭକ୍ତି ଓ ବିଶ୍ୱସ୍ତତା ଦେଖି ସେ ଅତ୍ୟନ୍ତ ପ୍ରୀତ ଥାନ୍ତି । ସେ ପୁତ୍ରହୀନ । ଜୀବନର ଅନ୍ତିମ ସମୟରେ ସେ ମୋତେ ନିଜ ରାଜ୍ୟ ସମର୍ପଣ କରି ଦେହ ତ୍ୟାଗ କଲେ । ମୁଁ ଏଠାରେ ସତେଇଶ ଶହ ବର୍ଷ ରହିଲିଣି । କିନ୍ତୁ ସେହି ଅଦ୍ଭୁତ ଫଳ ପ୍ରଭାବରେ ମୋତେ ଏ ପର୍ଯ୍ୟନ୍ତ ବାର୍ଦ୍ଧକ୍ୟ ସ୍ପର୍ଶ କରିନାହିଁ ।'

## ବିକ୍ରମାଦିତ୍ୟ ଓ ମଦନସୁନ୍ଦରୀ ବିବାହ କଥା

ଭୀଲ୍‌ମୁଖ୍ୟ ଏକାକୀ କେଶରୀ ଆଶ୍ଚର୍ଯ୍ୟଚକିତ ଭାବେ ଶୁଣୁଥିବା ରାଜା ବିକ୍ରମାଦିତ୍ୟଙ୍କୁ ଏହିପରି ନିଜ ଚିରଯୌବନ ଲାଭର କାହାଣୀ ଶୁଣାଇ ନିବେଦନ କଲା, 'ମହାରାଜ୍ ! ସେହି ବାନନର ଫଳ ଭକ୍ଷଣ କରି ମୋତେ ଚିରଯୌବନ ମିଳିଥିଲା । ଆଜି ଆପଣଙ୍କ ଚରଣ ଦର୍ଶନ କରି କୃତକୃତ୍ୟ ହୋଇପାରିଛି । ତେଣୁ ମହାରାଜ୍ ! ଆପଣ ଏଠାକୁ ଆସି ମୋ ପ୍ରତି ଯେଉଁ ଅନୁଗ୍ରହ କରିଛନ୍ତି, ମୋର ଗୃହରେ ପ୍ରବେଶ କରି ତା'ର ସୁଫଳ ଗ୍ରହଣ କରନ୍ତୁ । ଏହାଦ୍ୱାରା ମୋର ଜୀବନ ସାର୍ଥକ ହେବ ।

ରାଜନ୍ ! ଜଣେ କ୍ଷତ୍ରିୟ ଜାତୀୟା ସ୍ତ୍ରୀଠାରୁ ମୋର ଗୋଟିଏ କନ୍ୟା ଅଛି । ସେ ରୂପରେ ଅତୁଳନୀୟା । ମୁଁ ତାର ନା ରଖିଛି ମଦନସୁନ୍ଦରୀ । ମହାରାଜ୍ ! ଆପଣଙ୍କ ବ୍ୟତୀତ ସେ ଅନ୍ୟ କାହା ନିକଟରେ ଶୋଭା ପାଇବ ନାହିଁ । ଏଣୁ ମୁଁ ତାକୁ ଆପଣଙ୍କ ହସ୍ତରେ ସମର୍ପଣ କରୁଛି । ଯଥାବିଧି ତା'ସହିତ ବିବାହ କଲେ କୃତାର୍ଥ ହେବି । ମହାରାଜ୍ ! ମୁଁ ଦୁଇଲକ୍ଷ ଧନୁର୍ଦ୍ଧର ଭୀଲ୍‌ସେନାଙ୍କ ସହିତ ଆପଣଙ୍କ ଅନୁସରଣ କରିଆସୁଛି । ମୋର ଏହି ବିନୀତ ପ୍ରାର୍ଥନା ଆପଣ ପ୍ରତ୍ୟାଖ୍ୟାନ କରିବେ ନାହିଁ ବୋଲି ଦୃଢ଼ ବିଶ୍ୱାସ ।'

ରାଜା ବିକ୍ରମାଦିତ୍ୟ ଭୀଲ୍‌ମୁଖ୍ୟର ପ୍ରାର୍ଥନା ସ୍ୱୀକାର କଲେ । ଶୁଭଲଗ୍ନରେ ମଦନସୁନ୍ଦରୀ ସହ ତାଙ୍କର ବିବାହ ହେଲା । ଯୌତୁକ ସ୍ୱରୂପ ଶବରମୁଖ୍ୟ ଗଜମୁକ୍ତା ଓ କସ୍ତୁରୀ ଭାର ସହିତ ଏକଶହ ଉଷ୍ଟ୍ର ଜାମାତାଙ୍କୁ ପ୍ରଦାନ କଲେ । ରାଜା ସେଠାରେ ସାତଦିନ ରହି ଭୀଲ୍‌ସେନା ଓ ମଦନସୁନ୍ଦରୀଙ୍କ ସହିତ ବିଦାୟ ଗ୍ରହଣ କଲେ ।

ଏଣେ ରାଜା ଅଶ୍ୱଶ୍ରେଷ୍ଠ ରତ୍ନାକର ପୃଷ୍ଠରେ ଆରୋହଣ କରି ଯେତେବେଳେ ଶୂକରର ପଶ୍ଚାତ୍‌ଧାବନ ପୂର୍ବକ ଦୃଷ୍ଟି ଅନ୍ତରାଳକୁ ଚାଲିଗଲେ ସେତେବେଳେ ସୈନିକମାନେ ବିଚଳିତ ହୋଇପଡ଼ିଲେ । କିନ୍ତୁ ପ୍ରତିହାର ଭଦ୍ରାୟୁଧ ଆଶ୍ୱାସନା ଦେଇ ସେମାନଙ୍କୁ କହିଲେ, 'ତୁମେମାନେ ଆଦୌ ଚିନ୍ତା କରନାହିଁ । ଆମ୍ଭମାନଙ୍କ ମହାରାଜ୍ ବିକ୍ରମାଦିତ୍ୟ ଶୀଘ୍ର ଆସି ଏଠାରେ ଉପସ୍ଥିତ ହେବେ । ସେ ଅଲୌକିକ ପ୍ରଭାବଶାଳୀ, ତାଙ୍କର କୌଣସି ପ୍ରକାର ଅମଙ୍ଗଳ ହେବା ସମ୍ଭବ ନୁହେଁ । ସେ କିପରି ଏକାକୀ ଯାଇ ନାଗକନ୍ୟା ସୁରୂପାଙ୍କୁ ବିବାହ କରି ଆସିଥିଲେ, ତାହା କଣ ତୁମେ ସବୁ ଭୁଲିଗଲଣି । ପୁଣି ଗନ୍ଧର୍ବଲୋକରୁ ସେ ଗନ୍ଧର୍ବ ରାଜପୁତ୍ରୀ ତାରାବଳୀଙ୍କୁ ତ ବିବାହ କରି ଆଣିଥିଲେ ।' ଭଦ୍ରାୟୁଧଙ୍କଦ୍ୱାରା ଆଶ୍ୱାସିତ ହୋଇ ସୈନିକ ଓ ପରିଚାରକମାନେ ଅରଣ୍ୟ ପ୍ରାନ୍ତରେ ରାଜାଙ୍କ ଆସିବା ପଥକୁ ଚାହିଁ ରହିଲେ ।

ଏଣେ ରାଜା ବିକ୍ରମାଦିତ୍ୟ ଶବରସେନା ଏବଂ ମଳୟସୁନ୍ଦରୀଙ୍କୁ ଧରି ମୋ ସହିତ ମାର୍ଗ ଅତିକ୍ରମ କରୁଥାନ୍ତି । ଆମେ ଧୀରେଧୀରେ ସେହି ଅଦ୍ଭୁତ ବନ୍ୟଶୂକରକୁ ଦେଖିଥିବା ଅରଣ୍ୟ ମଧ୍ୟରେ ଆସି ପ୍ରବେଶ କଲୁ । ରାଜା ପତ୍ନୀ ଓ ସେନାଙ୍କୁ ଦୂରରେ ସୁରକ୍ଷିତ ରଖି ବେତାଳ ଭୂତକେତୁ ଓ ମୋ ସହିତ ସେହି ଶୂକରର ଅନୁସନ୍ଧାନରେ ବାହାରିଲେ । କିଛିକ୍ଷଣ ମଧ୍ୟରେ ଶୂକରଟି ପୁଣି ଆମର ଦୃଷ୍ଟିପଥାରୂଢ଼ ହେଲା । ରାଜା ପାଞ୍ଚୋଟି ଶର ପ୍ରୟୋଗ କରି ତାକୁ ବଧ କଲେ । ତା'ଶରୀରରୁ ପ୍ରାଣବାୟୁ ଉଡ଼ିଯିବା ମାତ୍ରେ ବେତାଳ ଭୂତକେତୁ ଦ୍ରୁତ ପଦକ୍ଷେପରେ ଯାଇ ତା'ର ପେଟଟିକୁ ଚିରିଦେଲେ ।

ମହାରାଣୀ କଳିଙ୍ଗସେନା ! ଆପଣଙ୍କ ପାଇଁ ଏହା ଏକ କଳ୍ପିତ କଥା ମନେହୋଇପାରେ, କିନ୍ତୁ ମୋ ପାଇଁ ଏହା ଥିଲା ଏକ ବାସ୍ତବ ଘଟଣା । ବରାହଟିର ଉଦର ବିଦାରିତ ହେବାମାତ୍ରେ ତାହା ମଧ୍ୟରୁ ଏକ ସୁନ୍ଦର ପୁରୁଷ ବାହାରି ରାଜାଙ୍କ ସମ୍ମୁଖରେ ଦଣ୍ଡାୟମାନ ହେଲା । ରାଜା ଏହି ଆକସ୍ମିକ ଘଟଣାରେ ବିସ୍ମିତ ହୋଇ ତା'ର ପରିଚୟ ଜାଣିବାକୁ ଚାହୁଁଛନ୍ତି, ଏ ସମୟରେ ଚଳମାନ ପର୍ବତ ତୁଲ୍ୟ ଏକ ବିଶାଳକାୟ ହସ୍ତୀ ଆସି ସେଠାରେ ପହଞ୍ଚିଗଲା । ସେ ଉନ୍ମତ୍ତ ଭାବରେ ଆସୁଥିବା ଦେଖି ରାଜା ଗୋଟିଏମାତ୍ର ଶରରେ ତାକୁ ହତ୍ୟା କଲେ । ବେତାଳ ହାତୀର ମଧ୍ୟ ଉଦର ବିଦାରଣ କରିବାରୁ ତା' ମଧ୍ୟରୁ ଏକ ଦିବ୍ୟପୁରୁଷ ଏବଂ ଜଣେ ସର୍ବାଙ୍ଗସୁନ୍ଦରୀ ରମଣୀ ବାହାରି ଆସିଲେ । ରାଜା ସେମାନଙ୍କ ପରିଚୟ ପଚାରିବାପାଇଁ ଯାଉଛନ୍ତି, ତାଙ୍କ ମନୋଭାବ ଜ୍ଞାତ ହୋଇ ବରାହ ଉଦରରୁ ବାହାରିଥିବା ପୁରୁଷ ଜଣକ କହିବା ଆରମ୍ଭ କଲେ, 'ମହାରାଜ୍ ! ମୁଁ ଆପଣଙ୍କ ଆଗ୍ରହ ଜାଣିପାରୁଛି । ବର୍ତ୍ତମାନ ମୋର ନିଜ କାହାଣୀ ଶୁଣନ୍ତୁ ।

## ଭଦ୍ର ଓ ଶୁଭ କଥା

ଆମେ ଦୁଇଜଣ ଦେବତାମାନଙ୍କଠାରୁ ଜାତ । ମୋର ନାମ ଭଦ୍ର ଏବଂ ଏହାଙ୍କ ନାମ ଶୁଭ । ଏକଦା ଆମେ ବିଭିନ୍ନ ସ୍ଥାନ ଭ୍ରମଣ କରୁଥିବାବେଳେ ମହର୍ଷି କଣ୍ୱଙ୍କୁ ଧ୍ୟାନସ୍ଥ ଥିବା ଦେଖିଲୁ । କୌତୁକବଶତଃ ଆମେ ଦୁହେଁ ହସ୍ତୀ ଓ ବରାହ ରୂପ ଧାରଣ କରି ମହର୍ଷିଙ୍କୁ ଡରାଇବାପାଇଁ ଚେଷ୍ଟାକଲୁ । ମହର୍ଷି ଆମକୁ ଅଭିଶାପ ଦେଲେ ଯେ ଆମେ ସେହି ରୂପରେ ହିଁ ଅରଣ୍ୟ ମଧ୍ୟରେ ରହିବୁ ଏବଂ ମହାରାଜା ବିକ୍ରମାଦିତ୍ୟଙ୍କ ହସ୍ତରେ ମୃତ୍ୟୁବରଣ କଲେ ଆମର ଶାପମୁକ୍ତି ହେବ । ଏହିପରି ଆମେ ମହର୍ଷି କଣ୍ୱଙ୍କ ଅଭିଶାପରୁ ହସ୍ତୀ ଓ ବରାହ ରୂପରେ ଏହି ଅରଣ୍ୟ ମଧ୍ୟରେ ବିଚରଣ କରୁଥିଲୁ । ଆପଣ ଆଜି ଆମମାନଙ୍କୁ ମୁକ୍ତି ଦେଇଛନ୍ତି । ଏହି ନାରୀ ତାଙ୍କ ନିଜକଥା ଆପଣଙ୍କୁ ସ୍ୱୟଂ କହି ଶୁଣାଇବେ । ଆପଣ ଏହି ବରାହର କଣ୍ଠ ଏବଂ ହସ୍ତୀର ପୃଷ୍ଠ ସ୍ପର୍ଶ କରନ୍ତୁ । ଏମାନେ ଆପଣଙ୍କ ପାଇଁ ଦିବ୍ୟ ଖଡ୍ଗ ଏବଂ ଢାଲରେ ପରିଣତ ହେବେ ।'

ଏହାକହି ସେ ଅନ୍ୟ ମିତ୍ରଙ୍କ ସହିତ ସେଠାରୁ ଅନ୍ତର୍ହିତ ହେଲେ । ରାଜା ବିକ୍ରମାଦିତ୍ୟ ମଧ୍ୟ ସେମାନଙ୍କ ନିର୍ଦ୍ଦେଶ ଅନୁଯାୟୀ ହସ୍ତୀ ଓ ଶୂକରକୁ ସ୍ପର୍ଶ କରି ଖଡ୍ଗ ଓ ଢାଲ ପ୍ରାପ୍ତ ହେଲେ ।

ନାରୀଜଣକ ଅବନତ ମୁଖରେ ସେଠାରେ ଠିଆ ହୋଇଥାନ୍ତି । ରାଜା ବିକ୍ରମାଦିତ୍ୟଙ୍କ ଜିଜ୍ଞାସା କ୍ରମେ ସେ ନିଜର ବୃତ୍ତାନ୍ତ ଶୁଣାଇବା ଆରମ୍ଭ କଲେ ।

ଉଜ୍ଜୟିନୀ ନଗରୀରେ ଧନଦତ୍ତ ନାମକ ଜଣେ ବଣିକ ମୁଖ୍ୟ ବାସ କରୁଥିଲେ । ମୁଁ ତାଙ୍କର ପତ୍ନୀ । ଦିନେ ମୁଁ ଆମଘରର ଛାତ ଉପରେ ଶୋଇଥିବା ବେଳେ ଏହି ହାତୀ ଆସି ମୋତେ ଗିଳିଦେଲା । ସେତେବେଳେ ତା' ପେଟରେ କୌଣସି ପୁରୁଷ ଥିବା ମୁଁ ଦେଖିନଥିଲି । କିନ୍ତୁ ହାତୀଟିର ପେଟ ଚିରିବା ଫଳରେ ତା' ମଧ୍ୟରୁ ଏଠାରେ ମୋ ସହିତ ତାର ଆବିର୍ଭାବ ଘଟିଲା ।

ରାଜା ସେହି ବିଷଣ୍ଣମନା ନାରୀଟିକୁ ଲକ୍ଷ୍ୟ କରି କହିଲେ 'ତୁମେ ଅଧୀର ହୁଅନାହିଁ । ମୁଁ ତୁମକୁ ତୁମ ପତିଙ୍କ ଗୃହକୁ ପଠାଇଦେବି । ତୁମେ ମୋର ରାଣୀ ଓ ପରିଚାରିକାମାନଙ୍କ ସହ ନିର୍ଭୟରେ ପ୍ରସ୍ଥାନ କର ।' ଏହା କହି ରାଜା ବିକ୍ରମାଦିତ୍ୟ ତାକୁ ବେତାଳ ସହିତ ଅନ୍ୟ ମାର୍ଗରେ ଯାଉଥିବା ରାଣୀ ମଦନସୁନ୍ଦରୀଙ୍କ ନିକଟକୁ ପଠାଇଦେଲେ ।

ବେତାଳ ଫେରିଆସିବା ପରେ ଆମେ ଦୁହେଁ ସେହି ବନ ମଧ୍ୟରେ ଅକସ୍ମାତ୍ ଦୁଇଜଣ ରାଜକନ୍ୟାଙ୍କୁ ଦେଖିବାକୁ ପାଇଲୁ । ସେମାନେ ବହୁ ସୁନ୍ଦରୀ ପରିଚାରିକାଙ୍କଦ୍ୱାରା ପରିବେଷ୍ଟିତା ଥିଲେ । ରାଜା ମୋତେ ନିର୍ଦ୍ଦେଶ ଦେବାରୁ ମୁଁ ଯାଇ ସେହି କନ୍ୟାମାନଙ୍କ ଜଣେ ପରିଚାରିକାକୁ ସଙ୍ଗରେ ନେଇ ଆସିଲି । ରାଜାଙ୍କ ଜିଜ୍ଞାସାକ୍ରମେ ସେ କନ୍ୟାମାନଙ୍କ ପରିଚୟ ଓ ସେଠାକୁ ଆସିବାର କାରଣ ଜଣାଇ କହିଲା—

## ଗୁଣବତୀ ଓ ଚନ୍ଦ୍ରାବତୀ କଥା

'କଟାହ ନାମରେ ଏକ ଐଶ୍ୱର୍ଯ୍ୟସମ୍ପନ୍ନ ଦ୍ୱୀପ ଅଛି । ସେଠାରେ ଗୁଣସାଗର ନାମରେ ଜଣେ ରାଜା ରାଜତ୍ୱ କରନ୍ତି । ସେ ତାଙ୍କ ନାମାନୁଯାୟୀ ସର୍ବଗୁଣସମ୍ପନ୍ନ । ଗୁଣବତୀ ନାମରେ ତାଙ୍କର ଗୋଟିଏ କନ୍ୟା ଜନ୍ମ ହେଲା । କନ୍ୟାଟି ନିଜ ରୂପ ବିଭବରେ ତା'ର ସ୍ରଷ୍ଟା ପ୍ରଜାପତି ବ୍ରହ୍ମାଙ୍କୁ ମଧ୍ୟ ବିସ୍ମିତ କରିଦେଉଥିଲା । ତା'ର ଜନ୍ମ ସମୟରେ ସିଦ୍ଧମାନେ କହିଥିଲେ ଯେ ସେ ସପ୍ତଦ୍ୱୀପା ପୃଥିବୀର ଅଧିପତିଙ୍କୁ ପତି ରୂପରେ ଲାଭ କରିବ । ଏହା ଶୁଣି ପିତା ସଚିବମାନଙ୍କ ସହ ପରାମର୍ଶ କରି ନିର୍ଣ୍ଣୟ କଲେ ଯେ ସମ୍ରାଟ ବିକ୍ରମାଦିତ୍ୟ ହିଁ ଏହାର ସ୍ୱାମୀ ହେବେ । ତେଣୁ କନ୍ୟାଟିକୁ ତାଙ୍କ ନିକଟକୁ ପଠାଇଦେବା ଉଚିତ ହେବ । ଏହିପରି ନିଶ୍ଚୟ କରି ରାଜା ଗୁଣସାଗର ବହୁ ଧନରତ୍ନ ଓ ପରିଚାରିକା ସହିତ ନିଜ କନ୍ୟାକୁ ଏକ ସାମୁଦ୍ରିକ ପୋତ ସାହାଯ୍ୟରେ ପଠାଇଦେଲେ । ଜାହାଜଟି ସୁବର୍ଣ୍ଣଦ୍ୱୀପ ନିକଟରେ ପହଞ୍ଚିବା ବେଳେ ଏକ ବିରାଟକାୟ ମତ୍ସ୍ୟ ପରିଜନ ଓ ରାଜକନ୍ୟା

ସମେତ ଜାହାଜଟିକୁ ଗିଳିଦେଲା । ବିଧାତାର ବିଧାନକ୍ରମେ ମତ୍ସ୍ୟଟି ଆଉ ଚଳପ୍ରଚଳ କରିନପାରି ସମୁଦ୍ର ତରଙ୍ଗରେ ତାଡ଼ିତ ହୋଇଆସି ଏହି ଦ୍ୱୀପ କୂଳରେ ନିଶ୍ଚଳ ହୋଇ ପଡ଼ିରହିଲା । ଦ୍ୱୀପବାସୀ ଏହି ଆଶ୍ଚର୍ଯ୍ୟଜନକ ମହାମତ୍ସ୍ୟଟିକୁ ଦେଖିବାପାଇଁ ସେଠାରେ ରୁଣ୍ଡୀଭୂତ ହେଲେ । ସେମାନଙ୍କ ଅସ୍ତ୍ରଶସ୍ତ୍ର ପ୍ରହାରରେ ତା'ର ମୃତ୍ୟୁ ଘଟିଲା । ଲୋକମାନେ ତାର ଉଦର ଚିରିବାରୁ ତା' ମଧ୍ୟରୁ ସେହି ବିଶାଳ ଜାହାଜଟି ବାହାରକୁ ଚାଲିଆସିଲା । ଏହି ସମ୍ବାଦ ପାଇ ଉକ୍ତ ଦ୍ୱୀପର ରାଜା ସେଠାରେ ଆସି ପହଞ୍ଚିଲେ ।

ରାଜାଙ୍କ ନାମ ଥିଲା ଚନ୍ଦ୍ରଶେଖର । ସେ ରାଜା ଗୁଣସାଗରଙ୍କ ଶାଳକ ଥିଲେ । ଲୋକମାନଙ୍କଠାରୁ ଏହି ଆଶ୍ଚର୍ଯ୍ୟଜନକ ଘଟଣାର ସମସ୍ତ ବୃତ୍ତାନ୍ତ ଶୁଣି ସେ ଗୁଣବତୀଙ୍କୁ ନିଜର ଭାଣିଜୀ ବୋଲି ଜାଣି ଆଦରର ସହିତ ରାଜଭବନକୁ ନେଇଗଲେ । ଅଦ୍ଭୁତ ଭାବରେ ନିଜର ଭାଗିନେୟୀ ମୃତ୍ୟୁମୁଖରୁ ବଞ୍ଚିଥିବା ଯୋଗୁଁ ରାଜ୍ୟରେ ଆନନ୍ଦୋତ୍ସବ ପାଳିତ ହେଲା ।

ପରଦିନ ରାଜା ଚନ୍ଦ୍ରଶେଖର ନିଜ କନ୍ୟା ଚନ୍ଦ୍ରାବତୀ ସହିତ ଗୁଣବତୀଙ୍କୁ ଅନ୍ୟ ଏକ ଜାହାଜ ସାହାଯ୍ୟରେ ବିକ୍ରମାଦିତ୍ୟଙ୍କ ନିକଟକୁ ପଠାଇଦେଲେ । ଚନ୍ଦ୍ରଶେଖର ମଧ୍ୟ ପୂର୍ବରୁ ଜାଣିଥିଲେ ଯେ ତାଙ୍କ କନ୍ୟା ମହାରାଜ ବିକ୍ରମାଦିତ୍ୟଙ୍କ ସହିତ ବିବାହ କରିବ । ଏ ଦୁଇଜଣ ହେଉଛନ୍ତି ସେହି ରାଜକନ୍ୟା । ରାଜା ବିକ୍ରମାଦିତ୍ୟଙ୍କ ନିକଟକୁ ଯିବା ପଥରେ ଆସି ସେମାନେ ଏଠାରେ ପହଞ୍ଚିଛନ୍ତି । ମୁଁ ତାଙ୍କର ଅନ୍ୟତମ ଅଙ୍ଗରକ୍ଷକ । ଆମେ ଏହି ଅରଣ୍ୟ ମଧ୍ୟରେ ପ୍ରବେଶ କରିବା ମାତ୍ରେ ଏକ ବିଶାଳ ବରାହ ଏବଂ ଏକ ବିରାଟକାୟ ହସ୍ତୀ ଆମକୁ ଆକ୍ରମଣ କଲେ । ଆମେ ବିକଳରେ ଚିତ୍କାର କଲୁ, 'ହେ ଦିଗପାଳ ବୃନ୍ଦ ! ମହାରାଜ ବିକ୍ରମାଦିତ୍ୟଙ୍କୁ ସ୍ୱୟଂବରଣ କରିବାପାଇଁ ଯାଉଥିବା ଏହି ରାଜକନ୍ୟାମାନଙ୍କୁ ଆପଣମାନେ ରକ୍ଷା କରନ୍ତୁ । ଆପଣମାନଙ୍କୁ ରାଜା ବିକ୍ରମାଦିତ୍ୟଙ୍କ ରାଣ ।' ଏହା ଶୁଣି ସେହି ବରାହ ଓ ହସ୍ତୀ ସାଧାରଣ ମନୁଷ୍ୟ ତୁଲ୍ୟ ସ୍ପଷ୍ଟ ଭାଷାରେ ଆମକୁ କହିଲେ, 'ଅଧୀର ହୁଅ ନାହିଁ । ମହାରାଜ ବିକ୍ରମାଦିତ୍ୟଙ୍କ ନାମ ଉଚ୍ଚାରଣ କରିଥିବା ଯୋଗୁଁ ତୁମର ସମସ୍ତ ଭୟ ଦୂରୀଭୂତ ହେଲା । ନିର୍ଭୟରେ ଅଗ୍ରସର ହୁଅ । ମହାରାଜ ବିକ୍ରମାଦିତ୍ୟ ମଧ୍ୟ ଏଠାକୁ ଆସୁଛନ୍ତି । ତାଙ୍କ ସହିତ ତୁମମାନଙ୍କ ଅବିଳମ୍ବେ ସାକ୍ଷାତ ହେବ ।' ଏହା କହି ସେହି ଅଦ୍ଭୁତ ବରାହ ଓ ହସ୍ତୀ କେଉଁଆଡ଼େ ଚାଲିଗଲେ ଆମେ ଜାଣିପାରିଲୁ ନାହିଁ ।

ସେହି କନ୍ୟାମାନଙ୍କ ସେବକ ଜଣକ ଏପରି କହୁଥିବା ବେଳେ ମୁଁ ତାକୁ ରାଜା ବିକ୍ରମାଦିତ୍ୟଙ୍କ ପରିଚୟ ଦେଲି । ସେ ଉଚ୍ଚସ୍ୱରରେ ମହାରାଜାଙ୍କ ଜୟଘୋଷ କଲା ।

ମହାରାଜାଙ୍କ ପରିଚୟ ପାଇବା ମାତ୍ରେ ପରିଚାରିକା ଓ ଦେହରକ୍ଷୀମାନେ ଆସି ଆମ ମହାରାଜାଙ୍କ ଚରଣ ପ୍ରାନ୍ତରେ ପ୍ରଣିପାତ କଲେ । ସେମାନେ ଆଉ ବିଳମ୍ବ ନକରି ଉଭୟ ଗୁଣବତୀ ଓ ଚନ୍ଦ୍ରବତୀଙ୍କୁ ମହାରାଜାଙ୍କ ହସ୍ତରେ ସମର୍ପଣ କରିଦେଲେ । ରାଜା ବିକ୍ରମାଦିତ୍ୟ ବେତାଳ ସହିତ ସେହି କନ୍ୟାମାନଙ୍କୁ ଅନ୍ୟମାର୍ଗରେ ଯାଉଥିବା ମଦନସୁନ୍ଦରୀଙ୍କ ନିକଟକୁ ପଠାଇଦେଇ ସେ ତିନିହେଁ ଏକତ୍ର ଯେପରି ପ୍ରସ୍ଥାନ କରିବେ, ତା'ର ବ୍ୟବସ୍ଥା କରିଦେଲେ ।

ମହାରାଣୀ କଳିଙ୍ଗସେନା ! ବେତାଳ ରାଜା ବିକ୍ରମାଦିତ୍ୟଙ୍କ ଆଦେଶ ପାଳନ କରି ଫେରିଆସିବା ପରେ ମୁଁ, ବେତାଳ ଭୂତକେତୁ ଏବଂ ରାଜା ବିକ୍ରମାଦିତ୍ୟ ଅନ୍ୟମାର୍ଗରେ ପ୍ରସ୍ଥାନ କଲୁ ।

ଆମ୍ଭେମାନେ ଅରଣ୍ୟ ପଥ ଅତିକ୍ରମ କରୁଥାଉ । ଧୀରେଧୀରେ ସୂର୍ଯ୍ୟାସ୍ତ ହେଲା । ଏ ସମୟରେ ମଧୁର ମୃଦଙ୍ଗ ଧ୍ୱନି ଆମର କର୍ଣ୍ଣଗୋଚର ହେବାରୁ ରାଜା ବିକ୍ରମାଦିତ୍ୟ ଏହା କେଉଁଠାରୁ ଆସୁଛି ଜାଣିବାପାଇଁ ଚାହିଁଲେ । ବେତାଳ ଭୂତକେତୁ ଏ ସମ୍ପର୍କରେ ଜଣାଇଲେ, 'ମହାରାଜ୍ ! ଏହି ନିକଟରେ ଏକ ଦେବାଳୟ ଅଛି । ଏହା ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ । ଦେବାଳୟଟି ଅଲୌକିକ ଓ ଅତ୍ୟନ୍ତ କୌତୂହଳୋଦ୍ଦୀପକ । ବର୍ତ୍ତମାନ ସାନ୍ଧ୍ୟ ଆଳତି ଚାଲିଥିବାରୁ ଏହି ମୃଦଙ୍ଗ ଧ୍ୱନି ଶୁଣାଯାଉଛି ।' ବେତାଳର ନିର୍ଦ୍ଦେଶ କ୍ରମେ ଆମେ ତିନିହେଁ ସେହି ମନ୍ଦିର ନିକଟକୁ ଗଲୁ । ରାଜା ଅଶ୍ୱ ପୃଷ୍ଠରୁ ଅବତରଣ କଲେ । ମୁଁ ତାକୁ ନେଇ ନିକଟସ୍ଥ ଏକ ବୃକ୍ଷରେ ବାନ୍ଧିଦେଲି । ଆମେ ଦେବାଳୟ ମଧ୍ୟରେ ପ୍ରବେଶ କଲୁ । ଗର୍ଭଗୃହ ମଧ୍ୟରେ ବୈଦୂର୍ଯ୍ୟ ନିର୍ମିତ ଏକ ବିଶାଳ ଶିବଲିଙ୍ଗ ପୂଜା ପାଉଥାନ୍ତି । ତାଙ୍କ ସମ୍ମୁଖରେ ଏକ ଉଜ୍ଜ୍ୱଳ ଦୀପଦ୍ୱାରା ଆଳତି ଚାଲିଥାଏ । ଚତୁର୍ବିଧ ବାଦ୍ୟର ତାଳେ ତାଳେ ଦିବ୍ୟସୁନ୍ଦରୀ ରମଣୀମାନେ ନୃତ୍ୟ କରୁଥାନ୍ତି । ଆଳତି ଶେଷ ହେବାପରେ ଆମ ବିସ୍ମୟର ସୀମା ରହିଲା ନାହିଁ । ଆମ ଚକ୍ଷୁ ସମ୍ମୁଖରେ ହିଁ ନର୍ତ୍ତକୀମାନେ ମନ୍ଦିର ମଧ୍ୟସ୍ଥିତ ସ୍ତମ୍ଭମାନଙ୍କରେ ଖୋଦିତ ନାରୀମୂର୍ତ୍ତିମାନଙ୍କ ମଧ୍ୟରେ ପ୍ରବେଶ କରି ଲୀନ ହୋଇଗଲେ । ବାଦ୍ୟବାଦନ କରୁଥିବା ପୁରୁଷମାନେ ମଧ୍ୟ ଭୀତ୍ତିଗାତ୍ରରେ ଚିତ୍ରିତ ପୁରୁଷ ଚିତ୍ରମାନଙ୍କ ମଧ୍ୟରେ ବିଲୀନ ହେଲେ । ଏହାଦେଖି ବେତାଳ କହିଲେ 'ଏସବୁ ବିଶ୍ୱକର୍ମାଙ୍କ ନିପୁଣ ହସ୍ତର ଦିବ୍ୟମାୟା । ଏ ସବୁର କ୍ଷୟ ନାହିଁ । ପ୍ରଭାତ ଓ ସନ୍ଧ୍ୟାରେ ପ୍ରତ୍ୟହ ଏ ପ୍ରକାର ଆଳତି ହୁଏ ।'

ବେତାଳଙ୍କଠାରୁ ଏହା ଶୁଣି ଆମେ ଆଶ୍ଚର୍ଯ୍ୟଚକିତ ଭାବେ ମନ୍ଦିରର କାରୁକାର୍ଯ୍ୟ ଲକ୍ଷ୍ୟ କରୁଥାଉ । ଗୋଟିଏ ସ୍ତମ୍ଭରେ ଖୋଦିତ ଏକ ଦିବ୍ୟ ରୂପସମ୍ପନ୍ନା ନାରୀ ମୂର୍ତ୍ତି ରାଜାଙ୍କ

ଦୃଷ୍ଟି ଆକର୍ଷଣ କଲା । ରାଜା ତାକୁ ଦେଖି ମୋହିତ ହୋଇପଡ଼ିଲେ । ସେ ମଧ୍ୟ କିଛିକ୍ଷଣ ପାଇଁ ସେହି ପ୍ରସ୍ତର ମୂର୍ତ୍ତି ପରି ସ୍ତମ୍ଭୀଭୂତ ହୋଇଗଲେ । ସେ ଆମକୁ ଲକ୍ଷ୍ୟକରି କହିଲେ 'ଏହିପରି ରୂପମୟୀ ନାରୀକୁ ଯଦି ମୁଁ ଜୀବନ୍ତ ଭାବେ ନପାଏ, ତେବେ ମୋର ରାଜ୍ୟ କିମ୍ବା ଜୀବନରେ କଣ ବା ପ୍ରୟୋଜନ ଅଛି ?' ରାଜାଙ୍କ ଅଭିଳାଷ ଜ୍ଞାତ ହୋଇ ବେତାଳ ଜଣାଇଲେ 'ଏହା ବା କି ବଡ଼କଥା । ସେହି ନାରୀ ଦୁର୍ଲ୍ଲଭ୍ୟା ନୁହେଁ । କଳିଙ୍ଗାଧିପତିଙ୍କର ଏକ କନ୍ୟା ଅଛି । ତାର ନାମ କଳିଙ୍ଗସେନା । କନ୍ୟାଟିକୁ ଦେଖି ତା'ର ଏକ ମୂର୍ତ୍ତି ନିର୍ମାଣ କରିବ ବୋଲି ବର୍ଦ୍ଧମାନପୁରର ଜଣେ ନିପୁଣ ଶିଳ୍ପୀ ଏହି ସ୍ତମ୍ଭ ମୂର୍ତ୍ତିକୁ ରୂପ ଦେଇଛନ୍ତି । ତେଣୁ ଆପଣ ଉଜ୍ଜୟିନୀ ଫେରିଯାଇ କଳିଙ୍ଗର ରାଜାଙ୍କ ନିକଟକୁ ବିବାହ ପ୍ରସ୍ତାବ ପ୍ରେରଣ କରନ୍ତୁ, କିମ୍ବା ନିଜର ପରାକ୍ରମ ବଳରେ କନ୍ୟାଟିକୁ ଅପହରଣ କରିଆଣନ୍ତୁ ।' ବେତାଳଙ୍କ କଥାରେ ରାଜା ଆଶ୍ୱସ୍ତ ହେଲେ । ସେହି ଦେବାଳୟ ମଧ୍ୟରେ ରାତ୍ରିଯାପନ କରି ପ୍ରଭାତରୁ ଆମେ ପୁଣି ଚାଲିବାକୁ ଲାଗିଲୁ ।

କିଛି ଦୂର ଯିବା ପରେ ଗୋଟିଏ ଅଶୋକ ବୃକ୍ଷର ଛାୟାରେ ବସିଥିବା ଦୁଇଜଣ ସୁନ୍ଦର ପୁରୁଷ ଆମର ଦୃଷ୍ଟିଗୋଚର ହେଲେ । ରାଜା ବିକ୍ରମାଦିତ୍ୟଙ୍କୁ ଦେଖିବା ମାତ୍ରେ ସେମାନେ ଉଠି ଆସି ପ୍ରଣାମ ଜଣାଇଲେ । ରାଜା ସେମାନଙ୍କ ପରିଚୟ ଏବଂ ଅରଣ୍ୟରେ ବାସ କରୁଥିବା କାରଣ ସମ୍ପର୍କରେ ଜାଣିବାପାଇଁ ଚାହିଁବାରୁ ସେମାନଙ୍କ ମଧ୍ୟରୁ ଜଣେ କହିଲା—

## ଧନଦତ୍ତ କଥା

'ମହାରାଜ୍ ! ମୁଁ ଉଜ୍ଜୟିନୀରେ ବାସ କରୁଥିବା ଜଣେ ବଣିକଙ୍କ ପୁତ୍ର । ମୋର ନାମ ଧନଦତ୍ତ । ଦିନେ ନିଜର ପତ୍ନୀ ସହିତ ମୁଁ ଆମଘରର ଛାତ ଉପରେ ଶୋଇଥାଏ । ପ୍ରଭାତରୁ ଯେତେବେଳେ ମୋର ନିଦ୍ରାଭଙ୍ଗ ହେଲା ସେତେବେଳେ ଦେଖିଲି ଯେ ମୋର ପତ୍ନୀ ସେଠାରେ ନାହାଁନ୍ତି । ମୁଁ ଗୃହ, ପ୍ରାଙ୍ଗଣ, ଉପବନ ସର୍ବତ୍ର ତାଙ୍କର ସନ୍ଧାନ କଲି । କିନ୍ତୁ କୌଣସି ସ୍ଥାନରେ ତାଙ୍କର ଦେଖା ମିଳିଲା ନାହିଁ । ତାଙ୍କ ମନରେ ଅନ୍ୟ ପୁରୁଷ ପ୍ରତି ଆସକ୍ତି ଥିବା ମୁଁ ଜାଣିନଥିଲି । ତାଙ୍କ ଉପରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ଥିଲା । ସେ ମୋତେ ଗୋଟିଏ ପୁଷ୍ପମାଳା ଦେଇଥିଲେ । କହିଥିଲେ ଯେ ତାଙ୍କ ସତୀତ୍ୱ ନଷ୍ଟ ନହେବା ପର୍ଯ୍ୟନ୍ତ ମାଳାଟି ମଉଳିବ ନାହିଁ । ଏ ପର୍ଯ୍ୟନ୍ତ ସେହି ପୁଷ୍ପମାଳାଟି ଅମ୍ଳାନ ରହିଛି । ତେଣୁ, ସେ କିପରି ସେଠାରୁ ଅନ୍ତର୍ହିତା ହୋଇଗଲେ ମୁଁ ଚିନ୍ତା କରିପାରୁନାହିଁ । ଭୂତ କିମ୍ବା ପ୍ରେତ ତାଙ୍କୁ ଉଠାଇନେଇ ଯାଇପାରିଥାନ୍ତି । ମୁଁ ବିଭିନ୍ନ ସ୍ଥାନରେ ତାଙ୍କର ଅନୁସନ୍ଧାନ କଲି,

ଚିତ୍କାର କରି ଡାକିଲି, ବିଳାପ କଲି ଏବଂ ଶେଷରେ ନିଦ୍ରା ଓ ଆହାର ପରିତ୍ୟାଗ କରି ତାଙ୍କ ବିରହ ଜ୍ୱାଳାରେ ଦଗ୍ଧୀଭୂତ ହେବାକୁ ଲାଗିଲି । ମିତ୍ର ଓ ସ୍ୱଜନମାନେ ଆଶ୍ୱାସନା ଦେବାରୁ ମୁଁ କିଛି ମାତ୍ର ଖାଦ୍ୟ ଗ୍ରହଣ କରି ସନ୍ନ୍ୟାସ ବ୍ରତ ଆଚରଣପୂର୍ବକ ଦେବାଳୟ ମଧ୍ୟରେ ବାସ କରିବାକୁ ଲାଗିଲି । ସେଠାରେ ମୁଁ ବ୍ରାହ୍ମଣମାନଙ୍କୁ ଅନ୍ନଦାନ କରୁଥାଏ ।

ଏହିପରି ଦିନଯାପନ କରୁଥିବା ସମୟରେ ଦିନେ ବିଦେଶାଗତ ଜଣେ ବ୍ରାହ୍ମଣ ଶ୍ରାନ୍ତକ୍ଳାନ୍ତ ହୋଇ ମୋ ନିକଟରେ ପହଞ୍ଚିଲେ । ମୁଁ ତାଙ୍କ ସ୍ନାନପାନର ବ୍ୟବସ୍ଥା କରି ସୁମିଷ୍ଟ ଭୋଜନଦ୍ୱାରା ତାଙ୍କର ପଥକ୍ଳାନ୍ତି ଦୂର କଲି । ସେ ବିଶ୍ରାମ କରି ଆଶ୍ୱସ୍ତ ହେବାରୁ ତାଙ୍କ ଯାତ୍ରାର ଉଦ୍ଦେଶ୍ୟ ସମ୍ପର୍କରେ ଜିଜ୍ଞାସା କରନ୍ତେ, ସେ ବାରାଣସୀ ନିକଟସ୍ଥ ଏକ ଗ୍ରାମରୁ ଆସୁଥିବା ଜଣାଇଲେ । ମୋର ଭୃତ୍ୟମାନଙ୍କଠାରୁ ମୋ ସମ୍ପର୍କରେ ସମସ୍ତ କଥା ଶୁଣି ବ୍ରାହ୍ମଣ ମୋତେ ଲକ୍ଷ୍ୟ କରି କହିଲେ, 'ମିତ୍ର ! କୌଣସି ଉଦ୍ୟମ ନକରି ତୁମେ ନିଜକୁ ସନ୍ତପ୍ତ କରିବାରେ ଲାଭ କଣ ? ଉଦ୍‌ଯୋଗୀ ପୁରୁଷମାନେ ହିଁ ଦୁଷ୍ପ୍ରାପ୍ୟ ବସ୍ତୁ ଲାଭ କରିଥାନ୍ତି ।

'ବ୍ୟବସାୟୀ ହି ଦୁଷ୍ପ୍ରାପମପି ପ୍ରାପ୍ନୋତି ତତ୍‌ସଖେ'

ତେଣୁ, ମିତ୍ର ! ତୁମେ ମୋ ସହିତ ଆସ । ମୁଁ ବର୍ତ୍ତମାନ ତୁମର ମିତ୍ର । ଆମେ ଉଭୟ ତୁମ ପତ୍ନୀଙ୍କ ସନ୍ଧାନ କରିବା । ମୁଁ କିନ୍ତୁ ତାଙ୍କ ପ୍ରସ୍ତାବରେ ସମ୍ମତ ହୋଇନପାରି କହିଲି 'ମିତ୍ର ! ଆମେ ତାଙ୍କୁ ଖୋଜିବା କେଉଁଠି । ସେ କେଉଁଦିଗକୁ ଯାଇଛନ୍ତି ମୁଁ ଜାଣେ ନାହିଁ । ତେଣୁ, ତୁମର ଏହି ପ୍ରସ୍ତାବ ନିରର୍ଥକ ମାତ୍ର ।' ମୋ କଥାଶୁଣି ବ୍ରାହ୍ମଣ ସ୍ନେହସିକ୍ତ ସ୍ୱରରେ ମୋତେ ଆଶ୍ୱାସିତ କରିବାପାଇଁ କହିଲେ, 'ମିତ୍ର ! ଏପରି ନିରାଶ ହୁଅ ନାହିଁ । ଅତୀତରେ କେସଟ କଣ ତାଙ୍କ ହଜିଯାଇଥିବା ପତ୍ନୀଙ୍କୁ ଲାଭ କରିନଥିଲେ । ସେମାନଙ୍କ ମିଳନ ତ ଅସମ୍ଭବ ଥିଲା । ତୁମେ ଯଦି ସେକଥା ନ ଜାଣିଛ, ତେବେ ଶୁଣ—

## ବ୍ରାହ୍ମଣପୁତ୍ର କେସଟ କଥା

ପାଟଳିପୁତ୍ରରେ କେସଟ ନାମକ ଜଣେ ଧନୀ ବ୍ରାହ୍ମଣକୁମାର ରହୁଥିଲେ । ସେ ରୂପରେ ଥିଲେ କନ୍ଦର୍ପ ତୁଲ୍ୟ । ନିଜର ଅନୁରୂପ ପତ୍ନୀଟିଏ ଲାଭ କରିବାପାଇଁ ସେ ପିତାମାତାଙ୍କୁ ତୀର୍ଥଯାତ୍ରାରେ ଯିବେ ବୋଲି କହି ଦେଶଦେଶାନ୍ତର ଭ୍ରମଣରେ ବାହାରିଲେ । ବିଭିନ୍ନ ସ୍ଥାନ ଭ୍ରମଣ କରି ଏକ ସମୟରେ କେସଟ ଯାଇ ନର୍ମଦା ନଦୀତୀରରେ ପହଞ୍ଚିଲେ । ସେଠାରେ ଏକ ବରଯାତ୍ରୀ ଦଳ ନଦୀପାର ହେବାପାଇଁ

ପ୍ରସ୍ତୁତ ହେଉଥାନ୍ତି । କେସଟଙ୍କୁ ଦୂରରୁ ଦେଖି ବରଯାତ୍ରୀଦଳ ମଧ୍ୟରୁ ଜଣେ କୁଳୀନ ବୃଦ୍ଧ ବ୍ରାହ୍ମଣ ତାଙ୍କ ନିକଟରେ ଆସି ପହଞ୍ଚିଲେ । ସେ ତାଙ୍କୁ ଏକାନ୍ତରେ ପ୍ରୀତିପୂର୍ବକ କହିଲେ, 'ହେ ବ୍ରାହ୍ମଣ ! ମୁଁ ତମକୁ କିଛି ମାଗିବା ପାଇଁ ଆସିଛି । ମୋର ଭିକ୍ଷା ତୁମେ ଅନାୟାସରେ ପୂରଣ କରିପାରିବ । ଏହାଦ୍ୱାରା ମୋର ପ୍ରଭୂତ ଉପକାର ହେବ । ଯଦି ତୁମେ ଦେବାପାଇ ସମ୍ମତ ହୁଅ, ତା'ହେଲେ ମୁଁ ମୋର ଅଭିଳାଷ ଜଣାଇବି ।' ବୃଦ୍ଧଙ୍କ କଥାଶୁଣି କେସଟ ଦ୍ୱିଧାହୀନ ଭାବେ କହିଲେ 'ଆର୍ଯ୍ୟ ! ଆପଣଙ୍କ ଅଭିଳାଷ ପୂରଣ କରିବା ମୋପକ୍ଷରେ ଯଦି ସମ୍ଭବ ଏବଂ ତାହାଦ୍ୱାରା ଆପଣଙ୍କର ଯଦି କିଛି ଉପକାର ହୁଏ, ତେବେ ମୁଁ ନିଶ୍ଚିତ ଭାବେ ତାହା ପୂରଣ କରିବି ।'

ବୃଦ୍ଧ ଜଣାଇଲେ, 'ପୁତ୍ର ! ମୋର ଏକ ପୁତ୍ର ଅଛି । ତୁମେ ଯେପରି ରୂପବାନ୍‌ମାନଙ୍କ ମଧ୍ୟରେ ଅଗ୍ରଣୀ, ସେହିପରି କୁରୂପମାନଙ୍କ ମଧ୍ୟରେ ମୋର ପୁତ୍ରଟି ମଧ୍ୟ ଅଗ୍ରଣୀ । ସେ କୁତ୍ସିତ ଦନ୍ତଯୁକ୍ତ, ତା'ର ନାକଟି ଚେପଟା, ଶରୀରର ବର୍ଣ୍ଣ ଅଙ୍ଗାର ପରି କଳା, ଆଖିଗୁଡ଼ିକ ଛୋଟଛୋଟ, ଉଦର ପୃଥୁଳ, କାନଦୁଇଟି ସୂର୍ପାକୃତି ଏବଂ ଗୋଡ଼ଗୁଡ଼ିକ ଅସମାନ । ମୁଁ ମିଥ୍ୟାରେ ପୁତ୍ରର ରୂପସମ୍ପର୍କରେ ଧାରଣା ଦେଇ ରତ୍ନଦତ୍ତ ନାମକ ଜଣେ ବ୍ରାହ୍ମଣଙ୍କ କନ୍ୟାକୁ ତା'ର ପତ୍ନୀ ରୂପେ ନିର୍ବାଚନ କରିଛି । ସେ ମଧ୍ୟ ଏଥିରେ ରାଜି ଅଛନ୍ତି । କନ୍ୟାଟିର ନାମ ରୂପବତୀ । ସେ ନିଜ ନାମ ଅନୁରୂପ ଲାବଣ୍ୟମୟୀ । ଆଜି ସେମାନଙ୍କ ବିବାହ ଅନୁଷ୍ଠିତ ହେବ । ଏଥିପାଇଁ ଆମେ ବରଯାତ୍ରୀ ନେଇଯାଉଛୁ ।

ମୁଁ ନିଶ୍ଚିତ ଭାବେ ଜାଣିପାରୁଛି ଯେ ମୋର ପୁତ୍ରକୁ ଦେଖିବା ପରେ ରତ୍ନଦତ୍ତ କନ୍ୟାଦାନପାଇଁ କଦାପି ସମ୍ମତ ହେବେ ନାହିଁ । ମୋର ସମସ୍ତ ପ୍ରଯତ୍ନ ବ୍ୟର୍ଥ ହେବ । ମୁଁ ଏପରି ଦୁଶ୍ଚିନ୍ତା ମଧ୍ୟରେ ପଡ଼ିଥିବାବେଳେ ଦୂରରୁ ତୁମକୁ ଦେଖିଲି । ମୋର କାର୍ଯ୍ୟ ସିଦ୍ଧ ହେବ ବୋଲି ମନେହେଲା । ତୁମେ ମୋର ଅଭିଳାଷ ପୂରଣ କରିବ ବୋଲି ପ୍ରତିଶ୍ରୁତି ଦେଇଛ । ତେଣୁ, ଆମ ସହିତ ଆସି ତୁମେ କନ୍ୟାଟିକୁ ବିବାହ କର । କନ୍ୟାଟି ତୁମର ଅନୁରୂପିଣୀ । କିନ୍ତୁ ବିବାହ ପରେ ତୁମେ ତାକୁ ମୋ ପୁତ୍ର ହସ୍ତରେ ଟେକିଦେବ ।' କେସଟ ଏଥିରେ ସମ୍ମତ ହେଲେ । ବ୍ରାହ୍ମଣ ତାଙ୍କୁ ଧରି ବରଯାତ୍ରୀ ସହିତ ନର୍ମଦାର ଅପର ତଟରେ ଯାଇ ପହଞ୍ଚିଲେ । ନଗର ବାହାରେ ବରଯାତ୍ରୀମାନଙ୍କ ରହିବା ବ୍ୟବସ୍ଥା କରାଗଲା ।

ଧୀରେ ଧୀରେ ସନ୍ଧ୍ୟାହେଲା । ଦିନପତି ସୂର୍ଯ୍ୟ ଅସ୍ତାଚଳଗାମୀ ହେଲେ । କେସଟ ସନ୍ଧ୍ୟାଉପାସନା ନିମିତ୍ତ ଏକାକୀ ଯାଇ ନର୍ମଦା ତୀରରେ ପହଞ୍ଚିଲେ । ସେଠାରେ ଏକ

ଭୀଷଣାକୃତି ରାକ୍ଷସ ଠିଆ ହୋଇଥାଏ । କେସଟକୁ ଦେଖିବା ମାତ୍ରେ ତାଙ୍କୁ ଖାଇବ ବୋଲି ରାକ୍ଷସ ମାଡ଼ିଆସିଲା । କିନ୍ତୁ କେସଟ ତାକୁ ପ୍ରତିଶ୍ରୁତି ଦେଇ କହିଲେ, 'ଦେଖ, ବର୍ତ୍ତମାନ ତୁମେ ମୋତେ ଖାଅ ନାହିଁ । ମୁଁ କୌଣସି କାର୍ଯ୍ୟସିଦ୍ଧିପାଇଁ ଜଣେ ବ୍ରାହ୍ମଣଙ୍କ ନିକଟରେ ବଚନବଦ୍ଧ । ତାଙ୍କ କାର୍ଯ୍ୟ ଶେଷ କରି ମୁଁ ନିଶ୍ଚୟ ତୁମ ନିକଟକୁ ଫେରିଆସିବି । ସେତେବେଳେ ତୁମେ ମୋତେ ଖାଇପାରିବ ।' କେସଟଙ୍କ ଆକୃତି ଓ ଆଚରଣରୁ ରାକ୍ଷସ ମନରେ ବିଶ୍ୱାସ ଜାତ ହେଲା । ସେ ତାଙ୍କୁ ପ୍ରତିଜ୍ଞାବଦ୍ଧ କରାଇ ମୁକ୍ତି ଦେଲା । କେସଟ ବରଯାତ୍ରୀ ଦଳ ମଧ୍ୟକୁ ଫେରିଆସିଲେ ।

ପରଦିନ ବୃଦ୍ଧବ୍ରାହ୍ମଣ କେସଟଙ୍କୁ ବର ବେଶରେ ସଜ୍ଜିତ କଲେ । ବର ସହିତ ବରଯାତ୍ରୀମାନେ ନଗର ମଧ୍ୟରେ ପ୍ରବେଶ କରିବାରୁ ବାଦ୍ୟ ନାଦରେ ବିବାହ ମଣ୍ଡପ ଶବ୍ଦାୟିତ ହୋଇଉଠିଲା । କେସଟ ରତ୍ନଦତ୍ତଙ୍କଦ୍ୱାରା ନିର୍ମିତ ବିବାହ ବେଦୀ ଉପରେ ଯାଇ ପହଞ୍ଚିଲେ । ରୂପବତୀଙ୍କ ସହିତ ତାଙ୍କ ବିବାହ ସମ୍ପନ୍ନ ହେଲା । ଦକ୍ଷିଣା ସ୍ୱରୂପ ବ୍ରାହ୍ମଣଶ୍ରେଷ୍ଠ ରତ୍ନଦତ୍ତ ବହୁ ଧନସମ୍ପତ୍ତି ଦାନ କଲେ । ବର ଓ କନ୍ୟାଙ୍କୁ ପରସ୍ପରର ଅନୁରୂପ ଦେଖି ମହିଳାମାନେ ଆନନ୍ଦିତ । ରୂପବତୀ ମଧ୍ୟ ନିଜ ରୂପ ସାର୍ଥକ ହେଲା ବୋଲି ମନେକଲେ । ତାଙ୍କ ସଖୀମାନଙ୍କ ମନରେ ମଧ୍ୟ କନ୍ଦର୍ପପୀଡ଼ା ଜାତ ହେଲା । କିନ୍ତୁ କେସଟଙ୍କ ମନରେ ଆନନ୍ଦ ନଥାଏ । ସେ ଦ୍ୱନ୍ଦ୍ୱରେ ପଡ଼ିଥାନ୍ତି । ରାତ୍ରି ଉପଗତ ହେବାରୁ ସେ ଯାଇ ମଧୁଶଯ୍ୟା ଗୃହରେ ପ୍ରବେଶ କଲେ । ରୂପବତୀଙ୍କ ଅଲୌକିକ ରୂପରାଶି ତାଙ୍କୁ ଆନନ୍ଦ ଦେଇପାରୁ ନଥାଏ । ସେ ଚିନ୍ତାନ୍ୱିତ ଓ ବିଷଣ୍ଣ ଭାବରେ ରୂପବତୀଙ୍କୁ ପଛକରି ଶଯ୍ୟାଉପରେ ଶୋଇଗଲେ ।

ଚତୁରୀ ରୂପବତୀ ପତିଙ୍କ ଅନ୍ୟମନସ୍କତା ଓ ମନୋବେଦନା ଲକ୍ଷ୍ୟକରି ତାଙ୍କ ମନୋରଞ୍ଜନପାଇଁ ଚେଷ୍ଟା କଲେନାହିଁ, ବରଂ କପଟ ନିଦ୍ରାରେ ଶୋଇଗଲେ ।

ରାତ୍ରି କ୍ରମଶଃ ଦୀର୍ଘୀଭୂତ ହେଲା । କେସଟ ମଧ୍ୟରାତ୍ରିରେ ରୂପବତୀଙ୍କୁ ନିଦ୍ରାଭିଭୂତା ମନେକରି ଶଯ୍ୟାରୁ ଉଠିଲେ । ଅନ୍ୟମାନଙ୍କ ଅଜ୍ଞାତସାରରେ ନିଜର ପ୍ରତିଶ୍ରୁତି ରକ୍ଷା କରିବାପାଇଁ ସେ ରାକ୍ଷସ ନିକଟରେ ଯାଇ ପହଞ୍ଚିଲେ । ପତିବ୍ରତା ରୂପବତୀ ପତିଙ୍କ ଏ ପ୍ରକାର ଆଚରଣର ରହସ୍ୟ ଜାଣିବାପାଇଁ ଅଲକ୍ଷିତ ଭାବେ ତାଙ୍କର ଅନୁଗମନ କରିବାକୁ ଲାଗିଲେ ।

ରାକ୍ଷସ କେସଟଙ୍କୁ ଯଥାସମୟରେ ଦେଖି ସପ୍ରଶଂସ ସ୍ୱରରେ କହିଲା, 'ବ୍ରାହ୍ମଣ ! ତୁମେ ଧନ୍ୟ । ତୁମର ସତ୍ୟ ତୁମେ ପାଳନ କରିଛ । ତେଣୁ ତୁମେ ନିଶ୍ଚୟ ଜଣେ ମହାନ୍

ପୁରୁଷ । ଜନ୍ମଭୂମି ପାଟଳିପୁତ୍ର ଏବଂ ଜନ୍ମଦାତା ଦେସଟଙ୍କୁ ତୁମେ ଧନ୍ୟ କରିଛ । ଆସ, ତୁମପରି ଜଣେ ସତ୍ତ୍ୱଶାଳୀ ବ୍ରାହ୍ମଣ ଯୁବକଙ୍କୁ ଆହାର କରି ଆନନ୍ଦଲାଭ କରିବି ।'

ଏହାଶୁଣି ରୂପବତୀ ନିଜକୁ ସେଠାରେ ପ୍ରକଟନ କଲେ । କହିଲେ 'ରାକ୍ଷସ ଶ୍ରେଷ୍ଠ ! ତୁମେ ମୋତେ ଖାଅ । ପତିଙ୍କୁ ଆହାର କଲେ ମୋର ଗତି କଣ ହେବ ?' ଆହାର ବେଳେ ପ୍ରତିବନ୍ଧକ ସୃଷ୍ଟି ହେବା ଦେଖି ରାକ୍ଷସ ରୁଷ୍ଟ କଣ୍ଠରେ କହିଲା, 'ତୋର ଗତି ଭିକ୍ଷା ହେବ ।' କିନ୍ତୁ ଚତୁରୀ ରୂପବତୀ ଏଥିରେ ବିଚଳିତ ନହୋଇ ସାହସର ସହିତ କହିଲେ, 'ମହାତ୍ମନ୍ ! ବିଧବା ହେବାପରେ ମୋତେ କିଏ ଭିକ୍ଷା ଦେବ ?' ରାକ୍ଷସ ତ ରୁଷ୍ଟ ଥିଲା, ତେଣୁ ସେ ବିଚାରହୀନ ଭାବେ କହିଲା 'ତୁ ମାଗିଲେ ଯିଏ ଭିକ୍ଷା ଦେବନାହିଁ ତାର ମସ୍ତକ ଶତଧା ବିଦୀର୍ଣ୍ଣ ହେବ ।' ଚତୁରୀ ରାକ୍ଷସ ସମ୍ମୁଖରେ ବସ୍ତ୍ରାଞ୍ଚଳ ପ୍ରସାରଣ କରି କହିଲେ, 'ରାକ୍ଷସରାଜ ! ମୁଁ ପ୍ରଥମେ ତୁମଠାରୁ ହିଁ ଭିକ୍ଷା ମାଗିବା ଆରମ୍ଭ କରୁଛି । ତୁମେ ଭିକ୍ଷା ସ୍ୱରୂପ ମୋର ପତିଙ୍କୁ ପ୍ରଦାନ କର ।' ରାକ୍ଷସ, କିନ୍ତୁ, ଏଥିରେ ସମ୍ମତ ହେଲାନାହିଁ; ଫଳରେ ତାର ମସ୍ତକ ଚୂର୍ଣ୍ଣ ହେଲା ।

କେସଟ ଆଶ୍ଚର୍ଯ୍ୟ ଚକିତ ଭାବରେ ରୂପବତୀଙ୍କ ଚାତୁର୍ଯ୍ୟ ଲକ୍ଷ୍ୟ କରୁଥାନ୍ତି । ପତିବ୍ରତା ରୂପବତୀ ହର୍ଷିତ ମନରେ ପତିଙ୍କ ସହିତ ସ୍ୱଗୃହକୁ ଫେରିଗଲେ । ଏ ସମୟରେ ରାତ୍ରି ମଧ୍ୟ ଶେଷ ହେଲା ।

ପ୍ରଭାତରୁ ବରଯାତ୍ରୀମାନଙ୍କୁ ପାନ ଭୋଜନାଦିଦ୍ୱାରା ଚର୍ଚ୍ଚା କରି ବୃଦ୍ଧ ବ୍ରାହ୍ମଣ ବରକନ୍ୟାଙ୍କ ସହିତ ନର୍ମଦା ତଟରେ ଆସି ପହଞ୍ଚିଲେ । ରତ୍ନଦତ୍ତଙ୍କଠାରୁ ବିଦାୟ ନେଇ ସେ ରୂପବତୀଙ୍କୁ ଗୋଟିଏ ନୌକାରେ ଆରୋହଣ କରାଇ ନିଜେ ଅନ୍ୟ ଏକ ନୌକାରେ ଯାଇ ବସିଲେ । ପୂର୍ବରୁ ସେ ଧନ ଓ ଅଳଙ୍କାରର ଲୋଭ ଦେଖାଇ ନାବିକମାନଙ୍କୁ ବଶୀଭୂତ କରାଇଥାନ୍ତି । ସେମାନେ ବୃଦ୍ଧଙ୍କ ଉପଦେଶ ଅନୁଯାୟୀ କେସଟଙ୍କପାଇଁ ଅନ୍ୟ ଏକ ତୃତୀୟ ନୌକାର ବ୍ୟବସ୍ଥା କରିଥାନ୍ତି ।

ରୂପବତୀ ଓ ବରଯାତ୍ରୀମାନଙ୍କ ନୌକା ଯାଇ ନର୍ମଦାର ପରପାରରେ ପହଞ୍ଚିଲା । କିନ୍ତୁ ନାବିକମାନେ କେସଟଙ୍କ ନୌକାକୁ ଦୂରକୁ ନେଇଗଲେ । ମାର୍ଗରେ ସ୍ରୋତର ପ୍ରଖରତା ଲକ୍ଷ୍ୟ କରି ସେମାନେ ନୌକାଟିକୁ ସେଠାରେ ବୁଡ଼ାଇଦେଇ ନଦୀପାର ହୋଇଗଲେ । ଧନଲୋଭରେ କେବଳ ସେମାନଙ୍କଦ୍ୱାରା ଏପ୍ରକାର କୁକାର୍ଯ୍ୟ ସମ୍ପାଦିତ ହେଲା ।

ନର୍ମଦାର ଉତ୍ତାଳ ତରଙ୍ଗରାଶି କେସଟଙ୍କୁ ନେଇ ସମୁଦ୍ର ମଧ୍ୟରେ ନିକ୍ଷେପ କଲା । ସମୁଦ୍ରର ଉତ୍ତାଳ ତରଙ୍ଗାବଳୀ କେସଟଙ୍କୁ ନେଇ ତୀରରେ ପହଞ୍ଚାଇ ଦେଲେ । ଶୀତଳ ସାମୁଦ୍ରିକ ବାୟୁର ସ୍ପର୍ଶରେ ବ୍ରାହ୍ମଣ କୁମାରଙ୍କ ଚେତନା ଫେରିଆସିବାରୁ ସେ ମନେମନେ ଭାବିଲେ, 'ଆହା ! ବ୍ରାହ୍ମଣ ମୋର ବଡ଼ ପ୍ରତ୍ୟୁପକାର କଲେ । ଅବଶ୍ୟ ଅନ୍ୟପୁରୁଷ ସହିତ ବିବାହ କରାଇ ଗୋଟିଏ କନ୍ୟାକୁ ନିଜର ପୁତ୍ରବଧୂ ରୂପେ ଗ୍ରହଣ କରୁଥିବା ବ୍ରାହ୍ମଣଙ୍କ ଅଧାର୍ମିକତା ଓ ମୂର୍ଖତା ସମ୍ପର୍କରେ ପୂର୍ବରୁ ସଚେତନ ହେବା ମୋର ଉଚିତ ଥିଲା । ଏହିପରି ଚିନ୍ତାନ୍ୱିତ ଭାବରେ ସେ ସମୁଦ୍ର ତୀରରେ ବସିଥାନ୍ତି । ତାଙ୍କ ସମ୍ମୁଖରେ ସୂର୍ଯ୍ୟଦେବ ପଶ୍ଚିମ ସାଗରରେ ନିମଜ୍ଜିତ ହେଲେ । ରାତ୍ରି ଗଭୀର ହେଲା । ଦିବ୍ୟାଙ୍ଗନାମାନେ ଆକାଶରେ ବିଚରଣ କରିବାକୁ ଲାଗିଲେ ।

ରାତ୍ରିର ଚତୁର୍ଥ ପ୍ରହରରେ ଆକାଶରୁ ପ୍ରବଳ କୋଳାହଳ ଶୁଣାଗଲା । ସେଥିରେ ତାଙ୍କର ନିଦ୍ରାଭଙ୍ଗ ହେବାରୁ ସେ ଉଠି ବସିଲେ । ଜଣେ ସୌମ୍ୟଦର୍ଶନ ପୁରୁଷ ଆକାଶ ମାର୍ଗରୁ ଛିଟିକି ଆସି ତାଙ୍କ ସମ୍ମୁଖରେ ପଡ଼ିଲେ । କେସଟ ଡରିଗଲେ । କିନ୍ତୁ କିଛି ସମୟ ପର୍ଯ୍ୟନ୍ତ ସେହି ପୁରୁଷ ଜଣକ ନିଶ୍ଚଳ ଭାବେ ବସି ରହିବାରୁ ସେ ନିକଟକୁ ଯାଇ ତା'ର ପରିଚୟ ଜିଜ୍ଞାସା କଲେ । ପୁରୁଷଟି ପ୍ରଥମେ ତାଙ୍କ ପରିଚୟ ପାଇଲେ ନିଜ ପରିଚୟ ଦେବ ବୋଲି କହିଲା । କେସଟ ଆମୂଳଚୂଳ ତାଙ୍କ ବୃତ୍ତାନ୍ତ କହି ଶୁଣାଇଲେ । ସବୁ ଶୁଣିସାରି ସେ କହିଲା 'ତାହାହେଲେ ତୁମେ ମୋର ମିତ୍ର ହେଲ । ଆମ ଉଭୟଙ୍କ ଦୁର୍ଦ୍ଦଶା ସମାନ । ମୁଁ ବର୍ତ୍ତମାନ ମୋ ସମ୍ପର୍କରେ କହୁଛି ଶୁଣ ।

## ବ୍ରାହ୍ମଣପୁତ୍ର କନ୍ଦର୍ପ କଥା

ବେଣା ନଦୀତୀରରେ ରତ୍ନପୁର ବୋଲି ଏକ ନଗର ଅଛି । ସେଠାରେ ଜଣେ ଧନିକ ବ୍ରାହ୍ମଣ ବାସ କରୁଥିଲେ । ମୁଁ ତାଙ୍କର ପୁତ୍ର କନ୍ଦର୍ପ । ଦିନେ ସନ୍ଧ୍ୟାବେଳେ ମୁଁ ଜଳ ଆଣିବାପାଇଁ ବେଣାନଦୀକୁ ଯାଇଥାଏ । ଅନ୍ଧକାର ମଧ୍ୟରେ ମୋର ଗୋଡ଼ ଖସିଗଲା । ମୁଁ ଜଳସ୍ରୋତରେ ଭାସିଗଲି । ରାତିସାରା ନଦୀ ସ୍ରୋତରେ କେତେଦୂର ଗଲି ମୁଁ ଜାଣେ ନାହିଁ । କିନ୍ତୁ ଆୟୁଷ ଶେଷ ହୋଇ ନଥିବାରୁ ପ୍ରଭାତରେ ମୁଁ ଗୋଟିଏ ବୃକ୍ଷଶାଖା ଜଳସ୍ରୋତ ଉପରକୁ ଲମ୍ବି ଆସିଥିବା ଲକ୍ଷ୍ୟ କଲି । ତାହା ମୋତେ କୂଳକୁ ଆସିବାପାଇଁ ସାହାଯ୍ୟ କଲା । ମୁଁ କିଛି ପରିମାଣରେ ଆଶ୍ୱସ୍ତ ହେବାପରେ ଆଶ୍ରୟପାଇଁ ଇତସ୍ତତଃ ଦୃଷ୍ଟି ଫେରାଇଲି । ନିକଟରେ ଏକ ଦେବୀମନ୍ଦିର ଆଖିରେ ପଡ଼ିଲା । ବିଶ୍ରାମ ନିମିତ୍ତ ମୁଁ ତା'

ମଧ୍ୟରେ ପ୍ରବେଶ କଲି । ସେଠାରେ ବହୁ ଦେବୀ ପ୍ରତିମା ରହିଥାନ୍ତି । ସେମାନଙ୍କ ଶରୀରରୁ ଉଜ୍ଜ୍ୱଳ ତେଜୋରାଶି ନିର୍ଗତ ହେଉଥାଏ । ମୁଁ ନିର୍ଭୟ ଚିତ୍ତରେ ସେମାନଙ୍କୁ ପ୍ରଣାମ ଜଣାଇ ପ୍ରାର୍ଥନା କଲି, 'ହେ ମାତୃଗଣ ! ଏହି ଅଧମକୁ ଆପଣମାନେ ପରିତ୍ରାଣ କରନ୍ତୁ । ମୁଁ ଆଜି ଆପଣମାନଙ୍କ ଶରଣାଗତ ।' ଏହିପରି ପ୍ରାର୍ଥନା କରି ମୁଁ ଜଳସ୍ରୋତରେ ଭାସି ଆସିଥିବା କଷ୍ଟ ଦୂର କରିବାପାଇଁ ସେଠାରେ ଶୋଇଗଲି । ଧୀରେ ଧୀରେ ଦିନନାଥ ସୂର୍ଯ୍ୟଦେବ ମଧ୍ୟ ଅସ୍ତାଚଳ ପରପାରରେ ବିଶ୍ରାମ ନେଲେ । ତାରା ରୂପୀ ଅସ୍ଥିମୟ ମାଳା ଧାରଣ ପୂର୍ବକ ଜ୍ୟୋସ୍ନାରୂପ ଭସ୍ମ ବିଲେପିତା, ଚନ୍ଦ୍ରରୂପୀ କପାଳହସ୍ତା ରାତ୍ରି ରୁଦ୍ରଉପାସିକା ତାପସୀ ପରି ଧରାପୃଷ୍ଠରେ ଅବତରଣ କଲା । ମାତୃକାମାନଙ୍କ ଶରୀରରୁ ଯୋଗିନୀମାନେ ନିର୍ଗତ ହୋଇ ପରସ୍ପର ମଧ୍ୟରେ କଥା ହେଉଥିବା ଶୁଣାଗଲା । ମୁଁ କାନପାତି ଶୁଣିଲି ସେମାନଙ୍କ ମଧ୍ୟରୁ ଜଣେ କହୁଥାନ୍ତି, 'ଆଜି ତ ଚକ୍ରମେଳକ (ଚକ୍ରାକାର ନୃତ୍ୟ ବା ରାସନୃତ୍ୟ)ରେ ଯୋଗ ଦେବାପାଇଁ ଆମ୍ଭମାନଙ୍କୁ ଚକ୍ରପୁର ଯିବାକୁ ପଡ଼ିବ । ଏହି ହିଂସ୍ରଜନ୍ତୁପୂର୍ଣ୍ଣ ସ୍ଥାନରେ ଶରଣାଗତ ଏହି ବ୍ରାହ୍ମଣଙ୍କୁ ରକ୍ଷା କରିବା ଆମ ପକ୍ଷରେ ସମ୍ଭବ ନୁହେଁ । ତେଣୁ ଚାଲ, ଏହାଙ୍କୁ ନେଇ କୌଣସି ଏକ ନିରାପଦ ସ୍ଥାନରେ ରଖି ତାଙ୍କର କଲ୍ୟାଣ କରିବାପାଇଁ ଚେଷ୍ଟା କରିବା । ଆମେ ଫେରିଆସିଲା ବେଳେ ପୁଣି ତାଙ୍କୁ ନେଇଆସିବା । ସେ ଆମର ଶରଣାପନ୍ନ ଥିବା ଯୋଗୁଁ ତାଙ୍କ ସୁରକ୍ଷା ଦାୟିତ୍ୱ ଆମର ।' ସେମାନଙ୍କ କଥାଶୁଣି ମୋ ମନରୁ ସମସ୍ତ ଭୟ ଦୂର ହେଲା; ନିଜକୁ ନିରାପଦ ମନେକଲି ।

ଯିବା ସମୟ ହେବାରୁ ଯୋଗିନୀମାନେ ମୋତେ ବେଶଭୂଷାରେ ବିଭୂଷିତ କରି ଆକାଶ ମାର୍ଗରେ ନେଇଗଲେ । ଆମେ ଦୂରବର୍ତ୍ତୀ ଗୋଟିଏ ଗାଁରେ ଯାଇ ପହଞ୍ଚିଲୁ । ସେଠାରେ ଜଣେ ଧନିକ ବ୍ରାହ୍ମଣ ଗୃହରେ ମୋତେ ଛାଡ଼ିଦେଇ ସେମାନେ ଗନ୍ତବ୍ୟ ପଥରେ ଚାଲିଗଲେ ।

ମୁଁ ସେଠାରେ ଉପସ୍ଥିତ ହୋଇ ଦେଖିଲି ସେହି ବ୍ରାହ୍ମଣଙ୍କ କନ୍ୟାର ବିବାହପାଇଁ ଆୟୋଜନ ଚାଲିଛି । କନ୍ୟାଟି ବିବାହ ବେଦୀକୁ ଯିବାପାଇଁ ବେଶଭୂଷା ଧାରଣ କରି ବସିଥାଏ । ପୁରୋହିତମାନେ ବେଦୀ ଉପରେ ଅପେକ୍ଷା କରିଥାନ୍ତି । ବିବାହଲଗ୍ନ ଗଡ଼ିଯାଉଥାଏ । କିନ୍ତୁ ବରଯାତ୍ରୀଙ୍କ ଦେଖାନାହିଁ । ମୋତେ ଦିବ୍ୟ ବେଶଭୂଷାରେ ଭୂଷିତ ଦେଖି ବର ଆସିଗଲା ବୋଲି ସମସ୍ତେ ଆନନ୍ଦିତ ହୋଇଉଠିଲେ । ଗୃହସ୍ୱାମୀ ଯଥୋଚିତ ସତ୍କାର କରି ମୋତେ ବେଦୀ ଉପରକୁ ନେଇଗଲେ । ତାଙ୍କ କନ୍ୟା ସହିତ ମୋର ବିବାହ ସମ୍ପନ୍ନ ହେଲା । ଉପସ୍ଥିତ ସ୍ତ୍ରୀମାନେ କୁହାକୁହି ହେଉଥାନ୍ତି ଯେ ଏପରି ରୂପବାନ ପତିଟିଏ

ଲାଭକରି ସେମାନଙ୍କ ସୁମନାର ଜୀବନ ସାର୍ଥକ ହେଲା । ବିବାହ ପରେ ଆମେ ଶୟନ କକ୍ଷରେ ଯାଇ ପ୍ରବେଶ କଲୁ । ସେ ପର୍ଯ୍ୟନ୍ତ ମୋର ବିସ୍ମୟଭାବ କଟିନଥାଏ । ମୁଁ ଶଯ୍ୟା ଉପରେ ଗାଢ଼ ନିଦ୍ରାରେ ଅଭିଭୂତ ହୋଇପଡ଼ିଲି । ମଧ୍ୟରାତ୍ରିରେ ଯୋଗିନୀମାନେ ଚକ୍ରମେଳକରୁ ପ୍ରତ୍ୟାବର୍ତ୍ତନ କରିବା ବେଳେ କୌଶଳକ୍ରମେ ମୋତେ ସେଠାରୁ ନେଇ ଚାଲିଲେ । ସେମାନେ ଆକାଶମାର୍ଗରେ ଯାଉଥିବା ବେଳେ ମୋର ରୂପରେ ମୁଗ୍ଧ ହୋଇ ଅନ୍ୟ ଦଳେ ଯୋଗିନୀ ମୋତେ ଅପହରଣ କରିନେବାପାଇଁ ସେଠାରେ ଆସି ପହଞ୍ଚିଲେ । ଉଭୟଙ୍କ ମଧ୍ୟରେ ଯୁଦ୍ଧ ସଂଘଟିତ ହେଲା । ତା' ଭିତରେ ମୁଁ ଯୋଗିନୀମାନଙ୍କ ହସ୍ତରୁ ଛିଟିକି ଯାଇ ଏଠାରେ ଆସି ପଡ଼ିଲି । ଯେଉଁ ନଗରରେ ମୁଁ ସୁମନାଙ୍କୁ ବିବାହ କରିଥିଲି ତା'ର ନାମ ସୁଦ୍ଧା ମୁଁ ଜାଣେ ନାହିଁ । ଭବିଷ୍ୟତରେ ମୋ ପାଇଁ କଣ ଅଛି ତାହା ମଧ୍ୟ ମୋର ଅଜ୍ଞାତ । ବିଧାତା ମୋର ସମସ୍ତ ଦୁଃଖ ମଧ୍ୟରେ ଆପଣଙ୍କ ସହିତ ମିଳନ କରାଇ ପରିଣାମରେ ମୋତେ ସୁଖୀ କରାଇଛି ।'

କନ୍ଦର୍ପଙ୍କ କଥା ଶୁଣି କେସଟ ତାଙ୍କୁ ଅଭୟ ଦେଇ କହିଲେ, 'ମିତ୍ର ! ତୁମେ ଆଉ ଭୟ କର ନାହିଁ । ସେହି ଦୁଷ୍ଟ ଯୋଗିନୀମାନେ ତୁମର ଆଉ କିଛି କ୍ଷତି କରିବା ସମ୍ଭବ ନୁହେଁ । ମୋର ଏପରି ଏକ ଅସାଧାରଣ ଶକ୍ତି ଅଛି ଯାହା ଫଳରେ ସେମାନେ ମୋ ନିକଟକୁ ଆସିବାପାଇଁ ସାହସ କରିପାରିବେ ନାହିଁ । ଚାଲ, ଦୁହେଁ ସାଙ୍ଗ ହୋଇ ବିଭିନ୍ନ ସ୍ଥାନରେ ଅନୁସନ୍ଧାନ କରିବା । ବିଧାତା ନିଶ୍ଚୟ ଆମର କଲ୍ୟାଣ କରିବେ ।'

ଏହିପରି ବାର୍ତ୍ତାଳାପ ମଧ୍ୟରେ ରଜନୀ ପ୍ରଭାତ ହେଲା । ସେମାନେ ସମୁଦ୍ର ତୀର ଦେଇ ଚାଲିବାକୁ ଲାଗିଲେ ।

କିଛି ଦୂର ଯିବାପରେ ଉଭୟେ ରତ୍ନନଦୀ ତୀରବର୍ତ୍ତୀ ଭୀମପୁର ନଗରରେ ଆସି ଉପସ୍ଥିତ ହେଲେ । ନଦୀ ତୀରରେ ସେତେବେଳେ ଲୋକମାନେ ରୁଣ୍ଡ ହୋଇ ପ୍ରବଳ ପାଟିତୁଣ୍ଡ କରୁଥାନ୍ତି । କୌତୂହଳବଶତଃ ଏମାନେ ଯାଇ ସେଠାରେ ପହଞ୍ଚିଲେ । ସମୁଦ୍ରର ଜୁଆରରେ ଗୋଟିଏ ବିଶାଳକାୟ ମାଛ ଆସି ନଦୀ ଭିତରେ ପଶିଯାଇଥାଏ । ତା'ର ଶରୀର ନଦୀର ଗୋଟିଏ ତଟରୁ ଆର ତଟ ପର୍ଯ୍ୟନ୍ତ ଦୀର୍ଘ ଥିବାରୁ ଚଳପ୍ରଚଳ ହେବା ତା' ପକ୍ଷରେ ସମ୍ଭବ ହେଉନଥାଏ । ଲୋକମାନେ ବିଭିନ୍ନ ପ୍ରକାର ଅସ୍ତ୍ରଶସ୍ତ୍ର ଧରି ତା' ଦେହରୁ ମାଂସ କାଟୁଥାନ୍ତି । ଶେଷରେ ତାକୁ ଦୁଇଫାଳ କରିଦେବାରୁ ତା'ମଧ୍ୟରୁ ଜଣେ ସୁନ୍ଦରୀ ଯୁବତୀ ବାହାରି ଆସିଲେ । ସୁନ୍ଦରୀଙ୍କୁ ଜୀବିତ ଥିବା ଦେଖି ଉପସ୍ଥିତ ସମସ୍ତେ ତାଙ୍କୁ ବିସ୍ମୟ ବିସ୍ଫାରିତ ନେତ୍ରରେ ଚାହିଁଥାନ୍ତି । ସୁନ୍ଦରୀ ଲଜ୍ଜାରେ ଧୀରେ ଧୀରେ କୂଳ ଉପରକୁ ଉଠିଆସିଲେ ।

ସୁନ୍ଦରୀଙ୍କୁ ଦେଖିବା ମାତ୍ରେ କନ୍ଦର୍ପ କେସଟଙ୍କ ହସ୍ତ ଧାରଣ କରି କହିଲେ, 'ମିତ୍ର ! ଏହି ସୁନ୍ଦରୀ ହିଁ ମୁଁ ବିବାହ କରିଥିବା ସୁମନା । କିନ୍ତୁ ଏହି ମାଛ ପେଟକୁ ସେ କିପରି ଆସିଲା, ତାହା ଜଣାଯାଉନାହିଁ । ତାଙ୍କ ପରିଚୟ ସମ୍ପର୍କରେ ନିଶ୍ଚିତ ନହେବା ପର୍ଯ୍ୟନ୍ତ ସମ୍ମୁଖକୁ ଯିବା ଉଚିତ ହେବ ନାହିଁ । ତେଣୁ ଧୈର୍ଯ୍ୟଧରି ରହସ୍ୟ ଉଦ୍‌ଘାଟିତ ହେବା ପର୍ଯ୍ୟନ୍ତ ଆମେ ଏଠାରେ ଅପେକ୍ଷା କରିବା ।' ସେମାନେ ଜନଗହଳି ମଧ୍ୟରେ ନିଜକୁ ଗୁପ୍ତ ରଖି ସୁଯୋଗର ପ୍ରତୀକ୍ଷା କଲେ ।

ଉପସ୍ଥିତ ଜନତା ତାଙ୍କ ପରିଚୟ ଏବଂ ଏପରି ଅଭୂତପୂର୍ବ ଘଟଣା ସମ୍ପର୍କରେ ବାରମ୍ବାର ପ୍ରଶ୍ନ କରିବାରୁ ଯୁବତୀ ଜଣକ ବହୁକଷ୍ଟରେ କହିବା ଆରମ୍ଭ କଲେ,

'ରତ୍ନାକର ନଗରରେ ଜୟଦତ୍ତ ବୋଲି ଜଣେ କୁଳୀନ ବ୍ରାହ୍ମଣ ବାସ କରନ୍ତି । ମୁଁ ତାଙ୍କର କନ୍ୟା ସୁମନା । ଦିନେ ରାତିରେ ମୋର ରୂପ ଅନୁରୂପ ଜଣେ ବ୍ରାହ୍ମଣ କୁମାରଙ୍କ ସହିତ ମୋର ବିବାହ ହୋଇଥିଲା । ସେହି ରାତ୍ରିରେ ହିଁ ମୁଁ ନିଦ୍ରିତ ଥିବା ବେଳେ ପତିଦେବ ମଧୁଶଯ୍ୟା ଗୃହରୁ କେଉଁ ଆଡ଼କୁ ଚାଲିଗଲେ । ପିତା ତାଙ୍କ ସନ୍ଧାନ ପାଇବାପାଇଁ ବହୁ ଚେଷ୍ଟା କଲେ, କିନ୍ତୁ ସମସ୍ତ ପ୍ରଯତ୍ନ ବ୍ୟର୍ଥ ହେଲା । ମୁଁ ତାଙ୍କର ଦୁଃଖ ଏବଂ ମୋର ବିରହ ଜ୍ୱାଳା ଦୂର କରିବାପାଇଁ ଏହି ନଦୀ ଗର୍ଭରେ ଝାସଦେଲି । ଏହି ବିଶାଳକାୟ ମତ୍ସ୍ୟ ସଙ୍ଗେସଙ୍ଗେ ମୋତେ ଗିଳି ପକାଇଲା । ବିଧାତା ଏହିପରି ମୋତେ ଆଣି ଏଠାରେ ପହଞ୍ଚାଇଛି ।

ସୁମନାଙ୍କ ଆତ୍ମ ବିବୃତ୍ତି ଶେଷ ନହେଉଣୁ ଜନଗହଳି ମଧ୍ୟରୁ ଯଜ୍ଞସ୍ୱାମୀ ନାମକ ଜଣେ ବ୍ରାହ୍ମଣ ବାହାରି ଆସି ତାଙ୍କୁ କୋଳାଗ୍ରତ କଲେ । କହିଲେ, 'ପୁତ୍ରି ! ତୁ ମୋର ଭଉଣୀର ଝିଅ । ତୋ ମା' ମୋର ସହୋଦରା ଭଗିନୀ । ମୁଁ ତୋର ମାମୁ ଯଜ୍ଞସ୍ୱାମୀ ।' ସୁମନା ମୁହଁ ଉଠାଇ ମାମୁଙ୍କୁ ଚିହ୍ନିପାରିଲେ । କାନ୍ଦି କାନ୍ଦି ସେ ତାଙ୍କ ଗୋଡ଼ ତଳେ ପଡ଼ି କହିଲେ, 'ମାମୁ ! ତୁମେ କେବଳ ମୋର ସମସ୍ତ ଦୁଃଖ ଦୂର କରିପାର । ମୋ ପାଇଁ କିଛି କାଠ ଆଣିଦେଲେ ମୁଁ ଚିତାଗ୍ନି ପ୍ରସ୍ତୁତ କରି ତା ମଧ୍ୟରେ ପ୍ରବେଶ କରିବି । ଏହା ବ୍ୟତୀତ ମୋର ଅନ୍ୟ ଗତି ନାହିଁ ।' ମାମୁ ଓ ଲୋକମାନେ ତାଙ୍କୁ ବିଭିନ୍ନ ଭାବରେ ବୁଝାଇବାକୁ ଲାଗିଲେ । ତଥାପି ସେ ନିଜ ପ୍ରତିଜ୍ଞାରେ ଅଟଳ ରହିବା ଦେଖି କନ୍ଦର୍ପ ଜନଗହଳି ମଧ୍ୟରୁ ଆସି ତାଙ୍କ ସମ୍ମୁଖରେ ଠିଆହେଲେ । ସୁମନା ପତିଙ୍କୁ ସମ୍ମୁଖରେ ଦେଖି ଆନନ୍ଦ ଓ ବିସ୍ମୟରେ ବିହ୍ୱଳ ହୋଇପଡ଼ିଲେ । ତାଙ୍କ ଚକ୍ଷୁରୁ ଆନନ୍ଦାଶ୍ରୁ ପ୍ରବାହିତ ହେଲା । ସେ ପତିଙ୍କ ପାଦତଳେ ପ୍ରଣିପାତ କଲେ । ଯଜ୍ଞସ୍ୱାମୀ ଓ ଉପସ୍ଥିତ ଜନତା

ପତିପତ୍ନୀଙ୍କ ଏହି ଅପୂର୍ବ ମିଳନ ଦେଖି ପ୍ରହୃଷ୍ଟ ଚିତ୍ତରେ ସେଠାରୁ ଫେରିଚାଲିଲେ । ସୁମନା କନ୍ଦର୍ପ ଓ କେସଟଙ୍କ ସହିତ ମାମୁଙ୍କ ଗୃହରେ ଯାଇ ପ୍ରବେଶ କଲେ । ପ୍ରତ୍ୟେକେ ନିଜ ନିଜ ଜୀବନର ଅଦ୍ଭୁତ ଘଟଣାବଳୀ ବର୍ଣ୍ଣନା କରିବାରୁ ପରିବାରବର୍ଗଙ୍କ ବିସ୍ମୟର ସୀମା ରହିଲା ନାହିଁ । ଯଜ୍ଞସ୍ୱାମୀଙ୍କ ସ୍ନେହ ଓ ଆଦର ପାଇ ଏମାନେ ପୂର୍ବର କଷ୍ଟ ସବୁ ଭୁଲିଗଲେ ।

କିଛିଦିନ ସେଠାରେ ଅବସ୍ଥାନ କରିବା ପରେ ଦିନେ କନ୍ଦର୍ପଙ୍କୁ ଲକ୍ଷ୍ୟ କରି କେସଟ ଏକାନ୍ତରେ କହିଲେ 'ମିତ୍ର ! ତୁମେ ତ ତୁମ ବିବାହିତା ପତ୍ନୀଙ୍କୁ ଲାଭ କରିବାରେ ସଫଳକାମ ହେଲ । ବର୍ତ୍ତମାନ ତାଙ୍କ ସହିତ ତୁମେ ରତ୍ନପୁର ଫେରିଯାଅ । ମୁଁ ଏପର୍ଯ୍ୟନ୍ତ ସଫଳତା ଲାଭ କରିନାହିଁ । ତେଣୁ, ନିଜ ଗୃହକୁ ଫେରିଯିବା ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ତୀର୍ଥାଟନ କରି ସମୟକ୍ରମେ ଶରୀର ତ୍ୟାଗ କରିବି ।'

ଯଜ୍ଞସ୍ୱାମୀ ଏହା ଜାଣିପାରି କେସଟଙ୍କୁ କହିଲେ 'ତୁମେ ଦୁଃଖରେ ଏପରି ଭାଙ୍ଗିପଡ଼ିବା ଉଚିତ ନୁହେଁ । କିସ ପୁଣି ଦେଖାନଯାଏ ଯଦି ଥାଇ ଜୀବନେ । ଏ ସମ୍ପର୍କରେ ମୁଁ ତୁମକୁ କୁସୁମାୟୁଧଙ୍କ ବୃତ୍ତାନ୍ତ ଶୁଣାଉଛି; ଶୁଣ–

## କମଳଲୋଚନା ଓ କୁସୁମାୟୁଧ କଥା

ଚଣ୍ଡପୁର ନଗରରେ ଦେବସ୍ୱାମୀ ବୋଲି ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କର ଏକ ପରମ ରୂପବତୀ କନ୍ୟା ଥିଲା । ବ୍ରାହ୍ମଣ ତାର ନାମକରଣ କରିଥିଲେ କମଳଲୋଚନା । ବ୍ରାହ୍ମଣଙ୍କ ଗୃହରେ କୁସୁମାୟୁଧ ବୋଲି ଜଣେ ବ୍ରାହ୍ମଣ ସନ୍ତାନ ବିଦ୍ୟାଧ୍ୟୟନ କରୁଥାଏ । କମଳଲୋଚନା ଓ କୁସୁମାୟୁଧ ପରସ୍ପରକୁ ଭଲପାଇ ବସିଥାନ୍ତି । କନ୍ୟାର ବିବାହ ସମୟ ଉପସ୍ଥିତ ଦେଖି ପିତା ଅନ୍ୟଜଣେ ବ୍ରାହ୍ମଣ ପୁତ୍ର ସହିତ ତାର ବିବାହ ସ୍ଥିର କଲେ । ଏଥିରେ ବିଚଳିତ ହୋଇ କମଳଲୋଚନା ସଖୀଦ୍ୱାରା କୁସୁମାୟୁଧଙ୍କୁ ଜଣାଇଲା ଯେ ପିତା ଯେହେତୁ ତାକୁ ଅନ୍ୟ ହସ୍ତରେ ପ୍ରଦାନ କରିବାପାଇଁ ନିଶ୍ଚୟ କରିଛନ୍ତି, ତେଣୁ ସେ କୌଣସି ଉପାୟରେ ତାକୁ ସେଠାରୁ ଅପହରଣ କରି ନେଇଯାଆନ୍ତୁ । କୁସୁମାୟୁଧ ସଖୀଠାରୁ ଏହାଶୁଣି ଏକ ଚକ୍ରାନ୍ତ ରଚନା କଲେ । ଦେବସ୍ୱାମୀଙ୍କ ଗୃହର ପଶ୍ଚାତ୍‌ଦେଶରେ ଗୋଟିଏ ବେଗବତୀ ଘୋଟକୀ ସହିତ ଜଣେ ସେବକକୁ ରଖାଗଲା । ମଧ୍ୟରାତ୍ରିରେ କମଳଲୋଚନା ସେହି ଘୋଟକୀ ଆରୋହଣ କରି ଭୃତ୍ୟ ସାହାଯ୍ୟରେ ନଗର ବାହାରେ ଅପେକ୍ଷା କରିଥିବା କୁସୁମାୟୁଧ ସହିତ ମିଳିତ ହେବାର ଯୋଜନା କରାଗଲା । ମଧ୍ୟରାତ୍ରିରେ

ଭୃତ୍ୟ ସହିତ କମଳଲୋଚନା ଆସି ଅଶ୍ୱପୃଷ୍ଠରେ ଆରୋହଣ କଲେ । କିନ୍ତୁ ଭୃତ୍ୟ ତାଙ୍କୁ ନିଜେ ବିବାହ କରିବ ବୋଲି କୁସୁମାୟୁଧଙ୍କ ନିକଟକୁ ଯିବା ପରିବେର୍ତ୍ତ ଅନ୍ୟ ପଥରେ ନେଇଚାଲିଲା ।

ପରଦିନ ପ୍ରଭାତରେ ସେମାନେ ବହୁଦୂରବର୍ତ୍ତୀ ଏକ ନଗରରେ ପହଞ୍ଚିଲେ । କମଳଲୋଚନା ମନରେ ସନ୍ଦେହଜାତ ହେଲା । ସେ ଭୃତ୍ୟଠାରୁ ତାଙ୍କ ପତିଙ୍କ ବିଷୟରେ ଜାଣିବାକୁ ଚାହିଁଲେ । ବିଦେଶରେ ତାଙ୍କୁ ଏକାକିନୀ ଦେଖି ଦୁଷ୍ଟ ଭୃତ୍ୟ କହିଲା, 'ମୁଁ ତ ତୁମକୁ ବିବାହ କରିବି । ତାଙ୍କଠାରେ ତୁମର ଆଉ କି କାର୍ଯ୍ୟ ଅଛି ? ଏବେ ଆଉ ତାଙ୍କୁ ବା କୋଉଠି ପାଇବା ? ସେ କୁଆଡ଼େ ରହିଲେଣି ।' କମଳଲୋଚନା ଦେଖିଲେ ଭୃତ୍ୟକୁ କୌଶଳରେ ହିଁ ଦୂରେଇବାକୁ ପଡ଼ିବ । ସେ ନିଜର ଚାତୁରୀ ପ୍ରୟୋଗ କରି କହିଲେ, 'ଆରେ ! ମୁଁ ତ ତୋତେ ତାଙ୍କ ଅପେକ୍ଷା ଅଧିକ ଭଲପାଉଥିଲି । ତୁ କେବଳ ମୋତେ ଦୂରେଇ ଦେଉଥିଲୁ । ସେ କାଳେ ଆସି ପହଞ୍ଚିଗଲେ ଆମ ମିଳନରେ ବାଧା ସୃଷ୍ଟି ହୋଇପାରେ । ଚାଲ, ଆମେ ଯଥାଶୀଘ୍ର ବିବାହ କରିନେବା ।' ଦୁଷ୍ଟବୁଦ୍ଧି ଭୃତ୍ୟଟି କମଳଲୋଚନାଙ୍କ ଚାତୁରୀରେ ଭଳିଗଲା । ସେ ତାଙ୍କୁ ନେଇ ଏକ ଉପବନ ମଧ୍ୟରେ ରଖି ବିବାହ ସାମଗ୍ରୀ ଯୋଗାଡ଼ କରିବାପାଇଁ ବଜାରକୁ ଚାଲିଗଲା ।

କମଳଲୋଚନା ଏହାକୁ ହିଁ ସୁଯୋଗ ମନେକଲେ । ସେ ଘୋଟକୀ ଆରୋହଣ କରି ସେଠାରୁ ପଳାୟନ କଲେ । ନଗର ମଧ୍ୟରେ ଥିବା ଜଣେ ବୃଦ୍ଧ ମାଳାକାରର ଗୃହଦ୍ୱାରରେ ଉପସ୍ଥିତ ହୋଇ ସେ ଆଶ୍ରୟ ଭିକ୍ଷା କଲେ । ମାଳାକାର ତାଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ନିଜ ଗୃହରେ ଆଶ୍ରୟ ଦେଲା । ସେ ଗୋପନରେ ସେଠାରେ ରହିବାକୁ ଲାଗିଲେ ।

ଏଣେ ସେହି ଦୁଷ୍ଟ ଭୃତ୍ୟ ବିବାହ ସାମଗ୍ରୀ ସହିତ ଆସି ଦେଖିଲା କମଳଲୋଚନା ସେଠାରୁ କେଉଁଆଡ଼େ ଚାଲିଯାଇଛନ୍ତି । ସେ ନିରାଶ ହୋଇ ସ୍ୱଗୃହକୁ ଫେରିଗଲା । ତାକୁ ଦେଖି କୁସୁମାୟୁଧ ତାଙ୍କ ପ୍ରଣୟିନୀ କଥା ପଚାରିଲେ । ଦୁଷ୍ଟ ମିଥ୍ୟାରେ କହିଲା, 'ଆପଣ ସରଳ ମଣିଷ, ନାରୀମାନଙ୍କ କୁଟିଳତା ଆପଣ ଜାଣନ୍ତି ନାହିଁ । ମୁଁ ଗୃହର ପଛପଟେ ତାଙ୍କୁ ଅପେକ୍ଷା କଲି । ସେ ବହୁବିଳମ୍ବରେ ଘରୁ ବାହାରିଲେ । ସେତେବେଳକୁ କେତେଜଣ ଆମକୁ ଦେଖିସାରିଥାନ୍ତି । ସେମାନେ ମୋତେ ସେଠାରେ ବାନ୍ଧିଦେଇ ବ୍ରାହ୍ମଣକନ୍ୟାଙ୍କ ସହିତ କେଉଁଆଡ଼େ ଚାଲିଗଲେ । ମୋର ସୌଭାଗ୍ୟ ବଳରୁ ବନ୍ଧନମୁକ୍ତ ହୋଇ ବର୍ତ୍ତମାନ ଆପଣଙ୍କ ପାଖକୁ ଆସିପାରିଛି ।' କୁସୁମାୟୁଧ ହଠାତ୍ ତା କଥାରେ ବିଶ୍ୱାସ କରିପାରିଲେ ନାହିଁ । ସେ କେବଳ ଗମ୍ଭୀର ହୋଇ ରହିଲେ ।

ଏହିପରି କିଛିଦିନ ବିତିଗଲା । ପିତା ଅନ୍ୟତ୍ର କୁସୁମାୟୁଧଙ୍କ ବିବାହ ସ୍ଥିର କରି ତାଙ୍କୁ ସେଠାକୁ ପଠାଇଲେ । ଯାଉଥିବା ବେଳେ ବିଧି ପ୍ରେରିତ ପରି ସେ ସେହି ବୃଦ୍ଧ ମାଳାକାର ରହୁଥିବା ନଗର ମଧ୍ୟରେ ଆସି ଉପସ୍ଥିତ ହେଲେ । କମଳଲୋଚନା ମାଳାକାରର ଗୃହରୁ ବରଯାତ୍ରୀମାନଙ୍କୁ ଲକ୍ଷ୍ୟ କରୁଥାନ୍ତି । ସେମାନଙ୍କଠାରୁ ଦୂରେଇ ଯାଇ ନିକଟସ୍ଥ ଉପବନ ମଧ୍ୟରେ ଏକାକୀ ବୁଲୁଥିବା କୁସୁମାୟୁଧଙ୍କ ଉପରେ ତାଙ୍କ ଦୃଷ୍ଟି ସ୍ଥିର ହେଲା । ସେ ସଙ୍ଗେ ସଙ୍ଗେ ମାଳାକାରକୁ ଏ ବିଷୟରେ ଅବଗତ କରାଇଲେ । ମାଳାକାର ଏଥିରେ ଆନନ୍ଦ ପ୍ରକାଶ କରି କୁସୁମାୟୁଧଙ୍କ ନିକଟକୁ ଯାଇ ତାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇବା ସହିତ ନିଜ ଗୃହକୁ ନେଇଆସିଲା । କୁସୁମାୟୁଧ ବରବେଶରେ ଥିଲେ । ମାଳାକାର ଅବିଳମ୍ବେ ବିବାହ ସାମଗ୍ରୀ ଓ ପୁରୋହିତଙ୍କୁ ଯୋଗାଡ଼ କରି ଆଣିଲା । ଉଭୟେ ତା' ଗୃହରେ ହିଁ ବିବାହ ବନ୍ଧନରେ ଆବଦ୍ଧ ହେଲେ ।

ବିବାହ ସମ୍ପନ୍ନ ହେବାପରେ କୁସୁମାୟୁଧ ଯାଇ ବରଯାତ୍ରୀମାନଙ୍କୁ ଏହି ବିଷୟ ଜଣାଇଦେଲେ । ଭୃତ୍ୟଟିର କଠୋର ଦଣ୍ଡବିଧାନ କରାଗଲା । ଯେଉଁ କନ୍ୟା ସହିତ ସେ ବିବାହ କରିବାପାଇଁ ଯାଉଥିଲେ ତା' ପ୍ରତି ଅବିଚାର କରିବା ଉଚିତ ହେବନାହିଁ ଭାବି ତା'ର ମଧ୍ୟ ପାଣିଗ୍ରହଣ କଲେ । ପ୍ରକୃତରେ ସେହି କନ୍ୟା ହିଁ ଥିଲା କୁସୁମାୟୁଧ ଓ କମଳଲୋଚନାଙ୍କ ମିଳନର ନିମିତ୍ତ କାରଣ । କୁସୁମାୟୁଧ ଉଭୟ ପତ୍ନୀଙ୍କ ସହିତ ନିଜ ରାଜ୍ୟକୁ ଫେରିଗଲେ । ଏହିପରି ସୌଭାଗ୍ୟଶାଳୀ ବ୍ୟକ୍ତିମାନଙ୍କ ପାଇଁ ଅଚିନ୍ତିତ ବସ୍ତୁ ମଧ୍ୟ ସୁଲଭ ହୋଇଥାଏ ।

**'ଇତ୍ଥଂ ଭବତି ଭବ୍ୟାନାମଚିନ୍ତ୍ୟୋଽପି ସମାଗମଃ'**

ତେଣୁ, ପ୍ରିୟ କେସଟ ! ତୁମେ ମଧ୍ୟ ଏହିପରି ଆକସ୍ମିକ ଭାବେ ତୁମ ପ୍ରିୟତମା ପତ୍ନୀକୁ ଲାଭ କରିବ ।' ଯଜ୍ଞସ୍ୱାମୀଙ୍କ କଥା ତାଙ୍କୁ ଆଶ୍ୱାସନା ଦେଲା । କନ୍ଦର୍ପ ଓ ସୁମନାଙ୍କ ସହିତ କେସଟ ତାଙ୍କ ଗୃହରେ ରହିବାକୁ ଲାଗିଲେ ।

ସେଠାରେ କିଛିଦିନ ବିତାଇବା ପରେ ମାମୁଙ୍କ ଠାରୁ ବିଦାୟ ଗ୍ରହଣ କରି ସେମାନେ ନିଜ ଜନ୍ମଭୂମି ପ୍ରତି ଅଗ୍ରସର ହେଲେ । ପଥ ମଧ୍ୟରେ ଏକ ନିଘଞ୍ଚ ଅରଣ୍ୟ ଅତିକ୍ରମ କରୁଥିବା ବେଳେ ଏକ ମତ୍ତହସ୍ତୀ ଯୂଥ ସେମାନଙ୍କ ଆଡ଼କୁ ମାଡ଼ି ଆସିଲା । ପ୍ରାଣ ରକ୍ଷାପାଇଁ ସେମାନେ ଇତସ୍ତତଃ ଦୌଡ଼ିଚାଲିଲେ । ଅରଣ୍ୟ ମଧ୍ୟରେ ପଥହରା ହୋଇ ସେମାନଙ୍କ ମିଳନ ଆଉ ସମ୍ଭବ ହେଲାନାହିଁ ।

କେସଟ ମନଦୁଃଖରେ ଯାଇ କାଶୀରେ ପହଞ୍ଚିଲେ । ସେଠାରେ ମିତ୍ର କନ୍ଦର୍ପଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଉଭୟେ ନିଜ ଜନ୍ମଭୂମି ପାଟଳିପୁତ୍ରରେ ଯାଇ ପିତାଙ୍କୁ ସାକ୍ଷାତ କଲେ । ପୁତ୍ରଠାରୁ ରୂପବତୀ ସହିତ ବିବାହ, କନ୍ଦର୍ପଙ୍କ ସହିତ ମିତ୍ରତା ଇତ୍ୟାଦି ବୃତ୍ତାନ୍ତ ଶୁଣି ସେ କନ୍ଦର୍ପଙ୍କ ସ୍ୱାଗତ ସତ୍କାର କଲେ । ଉଭୟ ମିତ୍ର ପାଟଳିପୁତ୍ରରେ ଦୈବୀ ଅନୁକୂଳତାର ପ୍ରତୀକ୍ଷା କରୁଥାନ୍ତି ।

ଏଣେ ସୁମନା ହସ୍ତୀ ଭୟରେ ଅରଣ୍ୟର ଗଭୀରତମ ପ୍ରଦେଶ ଆଡ଼କୁ ପଳାୟନ କରିଥାନ୍ତି । ସନ୍ଧ୍ୟା ହୋଇଗଲା । ରାତ୍ରିର ଅନ୍ଧକାର ମଧ୍ୟରେ ସେ ଶୋକବିହ୍ୱଳତା ହୋଇ କେବଳ ପିତା, ମାତା ଓ ପ୍ରିୟତମଙ୍କୁ ଉଚ୍ଚସ୍ୱରରେ ଡାକୁଥାନ୍ତି । କେହି ତାଙ୍କ ଆର୍ତ୍ତଚିତ୍କାର ନଶୁଣିବା ଦେଖି ସେ ଶେଷରେ ପ୍ରଜ୍ୱଳିତ ଅଗ୍ନିରେ ଦେହତ୍ୟାଗ କରିବାପାଇଁ ସ୍ଥିର କଲେ ।

ଏଣେ କନ୍ଦର୍ପ ପ୍ରତି ଅନୁଗ୍ରହ କରିଥିବା ଯୋଗିନୀମାନେ ଚକ୍ରମେଳକ ନୃତ୍ୟ ଶେଷକରି ଏବଂ ଅନ୍ୟ ଯୋଗିନୀମାନଙ୍କୁ ପରାଜିତ କରି ଦେବାଳୟ ମଧ୍ୟକୁ ଫେରିଆସିଲେ । ସେଠାରେ କନ୍ଦର୍ପର କଥା ସେମାନଙ୍କ ସ୍ମରଣ ହେଲା । ସେମାନେ ନିଜର ବିଦ୍ୟା ପ୍ରଭାବରେ ସମସ୍ତ ବିଷୟ ଜାଣିପାରିଲେ । କନ୍ଦର୍ପ ନିଜ ସ୍ତ୍ରୀକୁ ଅରଣ୍ୟ ମଧ୍ୟରେ ହଜାଇ ଦେଇଥିବା କଥା ସେମାନଙ୍କ ଅଗୋଚର ରହିଲା ନାହିଁ । ସେମାନେ ପରସ୍ପର ମଧ୍ୟରେ ବିଚାର କଲେ ଯେ କନ୍ଦର୍ପ ତ ପୁରୁଷ । ସେ ନିଜ ଶକ୍ତି ଓ ପ୍ରତିଭା ବଳରେ ନିଜର କାର୍ଯ୍ୟ ସିଦ୍ଧ କରିପାରିବ । କିନ୍ତୁ ତାର ସ୍ତ୍ରୀ ଅବଳାଟିଏ । ସେ ଅନ୍ୟଗତି ନଦେଖି ପ୍ରାଣତ୍ୟାଗ କରିବ । ତେଣୁ, ଚାଲ, ତାକୁ ନେଇ ରତ୍ନପୁରରେ ଛାଡ଼ିଦେବା । ତା'ହେଲେ ସେ କନ୍ଦର୍ପର ପିତୃଗୃହରେ ସୁରକ୍ଷିତା ରହିପାରିବ । ଏହିପରି ବିଚାର କରି ସେମାନେ ଶରୀର ତ୍ୟାଗପାଇଁ ପ୍ରସ୍ତୁତ ହେଉଥିବା ସୁମନା ନିକଟକୁ ଯାଇ ତାକୁ ଆଶ୍ୱାସନା ଦେଲେ । ଯୋଗିନୀମାନଙ୍କ ମାୟା ବଳରେ ସେ ଯାଇ ରତ୍ନପୁରରେ ପହଞ୍ଚିଲା ।

ପ୍ରଭାତରୁ ସେ ରାଜପଥରେ ଚାଲୁଥାଏ । ଦେଖିଲା ଲୋକମାନେ ଗୋଟିଏ ଦିଗକୁ ଦୌଡୁଛନ୍ତି । ଜଣେ ନାଗରିକଙ୍କୁ ପଚାରି ଜାଣିପାରିଲା ଯେ ସେଠାରେ କନ୍ଦର୍ପ ନାମରେ ଜଣେ ବ୍ରାହ୍ମଣ ରହୁଥିଲେ । ତାଙ୍କ ସତୀସାଧ୍ୱୀ ପତ୍ନୀ ଅନଙ୍ଗବତୀ । ପତି କେଉଁଆଡ଼େ ଚାଲିଯିବା ପରେ ପୁନର୍ମିଳନର ଆଶାଧରି ସେ ଦୀର୍ଘଦିନ ଅପେକ୍ଷା କଲେ । କିନ୍ତୁ ତାଙ୍କ ଆଶା ଫଳବତୀ ହେଲାନାହିଁ । ସେ ନିରାଶ ହୋଇ ଆଜି ଅଗ୍ନିରେ ପ୍ରବେଶ କରିବା ନିମିତ୍ତ ପ୍ରସ୍ତୁତ ହେଉଛନ୍ତି । ଶାଶୁ ଓ ଶ୍ୱଶୁର ତାଙ୍କୁ ବୁଝାଇସୁଝାଇ ଏଥିରୁ ନିବୃତ୍ତ କରିବା ନିମିତ୍ତ ତାଙ୍କ ସହିତ ଚାଲିଛନ୍ତି । ଏହା ଶୁଣିବା ମାତ୍ରେ ସୁମନା ସେହି ଚିତାଗ୍ନି ନିକଟରେ

ଯାଇ ପହଞ୍ଚିଲେ । ସେ ଦୂରରୁ 'ସଖି ! ରହ, ରହ । ଅବିଚାରିତ କାର୍ଯ୍ୟରୁ ନିବୃତ୍ତ ହୁଅ, ତୁମର ପତି ଜୀବିତ ଅଛନ୍ତି ।' କହି ସେ ଅନଙ୍ଗବତୀଙ୍କ ହାତ ଦୁଇଟିକୁ ଧରିନେଲେ । ଅନଙ୍ଗବତୀ ଏହି ସମ୍ପୂର୍ଣ୍ଣ ଅପରିଚିତା ସୁନ୍ଦରୀଙ୍କୁ ଦେଖି ପ୍ରଥମେ କିଛି ବୁଝିପାରିଲେ ନାହିଁ । କିନ୍ତୁ ତାଙ୍କଠାରୁ କନ୍ଦର୍ପଙ୍କ ସମଗ୍ର ବୃତ୍ତାନ୍ତ ଶୁଣି ଏବଂ ସୁମନାଙ୍କ ଅଙ୍ଗୁଳିରେ ନିଜ ପ୍ରଦତ୍ତ କନ୍ଦର୍ପଙ୍କ ମୁଦ୍ରିକା ଦେଖି ସେ ତାଙ୍କୁ ନିଜର ସପତ୍ନୀ ବୋଲି ବିଶ୍ୱାସ କଲେ । କନ୍ଦର୍ପଙ୍କ ପିତା ପୁତ୍ରର ସମ୍ବାଦଲାଭ କରି ସହର୍ଷଚିତ୍ତରେ ଉଭୟ ପୁତ୍ରବଧୂ ଅନଙ୍ଗବତୀ ଓ ସୁମନାଙ୍କୁ ସମାଦର ପୂର୍ବକ ସ୍ୱଗୃହକୁ ନେଇଗଲେ ।

ଏଣେ କନ୍ଦର୍ପ ସୁମନାଙ୍କୁ ଖୋଜିବାପାଇଁ ମିତ୍ର କେସଟଙ୍କ ଅଜ୍ଞାତସାରରେ ପାଟଳିପୁତ୍ର ନଗର ତ୍ୟାଗ କଲେ । ଯୋଗିନୀମାନଙ୍କ ଭୟରେ କେସଟ ମିତ୍ରଙ୍କୁ ଏକାକୀ ଛାଡ଼ିବାପାଇଁ ପ୍ରସ୍ତୁତ ନଥିବାଯୋଗୁଁ କନ୍ଦର୍ପ ନିଜ ଯିବା କଥା ତାଙ୍କୁ ଜଣାଇ ନଥିଲେ । ମିତ୍ର ଚାଲିଯିବାପରେ କେସଟ ମଧ୍ୟ ରୂପବତୀଙ୍କ ବିରହରେ ବିଷଣ୍ଣ ହୋଇ ପିତାମାତାଙ୍କ ଅଜ୍ଞାତସାରରେ ଗୃହତ୍ୟାଗ କଲେ ।

ବିଭିନ୍ନ ସ୍ଥାନ ଭ୍ରମଣ କରି କନ୍ଦର୍ପ ଦୈବକ୍ରମେ କେସଟ ରୂପବତୀଙ୍କୁ ବିବାହ କରିଥିବା ନଗରରେ ଆସି ପହଞ୍ଚିଲେ । ସେଠାରେ ନାଗରିକମାନେ କୋଳାହଳ କରୁଥାଆନ୍ତି । ଜଣେ ନାଗରିକଙ୍କୁ ତା'ର କାରଣ ଜିଜ୍ଞାସା କରନ୍ତେ ସେ ରୂପବତୀ ସହିତ କେସଟଙ୍କ ବିବାହ ଏବଂ ରାକ୍ଷସର କୌତୂହଳୋଦ୍ଦୀପକ ବୃତ୍ତାନ୍ତ ଶୁଣାଇ କହିଲା, 'ସେହି ବୃଦ୍ଧ ବ୍ରାହ୍ମଣ କେସଟଙ୍କୁ ଏହିପରି ପ୍ରବଞ୍ଚିତ କରି ସ୍ୱଗୃହ ଅଭିମୁଖରେ ଚାଲିଲା । କିନ୍ତୁ କେସଟ କେଉଁଆଡ଼େ ଗଲେ ଜଣାଗଲା ନାହିଁ । ରୂପବତୀ ପତିଙ୍କୁ ସେମାନଙ୍କ ମଧ୍ୟରେ ନଦେଖି ତାଙ୍କ ସମ୍ପର୍କରେ ଜାଣିବାକୁ ଚାହିଁବାରୁ ସେହି ବୃଦ୍ଧବ୍ରାହ୍ମଣ ତାଙ୍କୁ ନିଜ ପୁତ୍ରକୁ ଦେଖାଇ କହିଲା, 'ପୁତ୍ରି ! ଦେଖ, ମୋର ଏହି ପୁତ୍ର ହିଁ ତୁମର ପ୍ରକୃତ ପତି ।' ଏଥିରେ ରୂପବତୀ କ୍ରୋଧାନ୍ୱିତ ହୋଇଉଠିଲେ । ରୁକ୍ଷସ୍ୱରରେ ବୃଦ୍ଧକୁ କହିଲେ, 'ଏହି କଦାକାର ଯୁବକ ମୋର ପତି ନୁହେଁ ? ତା'ହେଲେ ମୁଁ କାଲି ଯାହାଙ୍କୁ ବିବାହ କରିଥିଲି ସେ କିଏ ? ତାଙ୍କୁ କୋଉଠି ରଖିଛ ? ତୁମେ ତାଙ୍କୁ ଆଣି ଏଠାରେ ନପହଞ୍ଚାଇଲେ ମୁଁ ପ୍ରାଣତ୍ୟାଗ କରିବା ନିଶ୍ଚିତ ।' ରୂପବତୀ ସେହି ସମୟଠାରୁ ଖାଇବାପିଇବା ଛାଡ଼ିଦେଲେ । ବୃଦ୍ଧ ବ୍ରାହ୍ମଣ ରାଜାଙ୍କଦ୍ୱାରା ଦଣ୍ଡିତ ହେବା ଭୟରେ ତାଙ୍କୁ ନେଇ ତାଙ୍କ ପିତୃ ଗୃହରେ ପହଞ୍ଚାଇ ଦେଲା । ସେ ପିତାଙ୍କ ନିକଟରେ ସମଗ୍ର ବୃତ୍ତାନ୍ତ ନିବେଦନ କଲେ । ପିତା ଜାମାତାଙ୍କ ସମ୍ପର୍କରେ କିଛି ଜାଣିନଥିବା ଯୋଗୁଁ ତାଙ୍କୁ ଖୋଜି ଆଣିବା ଅସମ୍ଭବ ବୋଲି କହନ୍ତେ

ରୂପବତୀ ଜଣାଇଲେ ଯେ ସେ ରାକ୍ଷସ ମୁହଁରୁ ସେହି ବ୍ରାହ୍ମଣ ଯୁବକଙ୍କୁ ପାଟଳିପୁତ୍ରରେ ବାସକରୁଥିବା ବ୍ରାହ୍ମଣ ଦେଶଟଙ୍କ ପୁତ୍ର ବୋଲି ଶୁଣିଛନ୍ତି । ରାକ୍ଷସ ଓ କେସଟଙ୍କ ମଧ୍ୟରେ ଘଟିଥିବା ସମସ୍ତ ଘଟଣା ସେ ପିତାଙ୍କୁ କହି ଶୁଣାଇଲେ ।

ଘଟଣାର ସତ୍ୟାସତ୍ୟ ଜାଣିବାପାଇଁ ପିତା ନଦୀକୂଳକୁ ଯାଇ ଦେଖିଲେ ଯେ ପ୍ରକୃତରେ ରାକ୍ଷସଟି ସେଠାରେ ମରିପଡ଼ିଛି । କେସଟଙ୍କ ପରିଚୟ ସତ୍ୟ ଜାଣି ବ୍ରାହ୍ମଣ ଦମ୍ପତି ବସ୍ତୁତଃ ଆନନ୍ଦିତ ହେଲେ । ସଙ୍ଗେସଙ୍ଗେ ପାଟଳିପୁତ୍ରକୁ ଦୂତ ପଠାଗଲା । କିଛିଦିନ ମଧ୍ୟରେ ଦୂତ ଫେରିଆସି କହିଲା, 'ମୁଁ ପାଟଳିପୁତ୍ର ଯାଇ ବ୍ରାହ୍ମଣ ଶ୍ରେଷ୍ଠ ଦେଶଟଙ୍କୁ ସାକ୍ଷାତ କଲି । ତାଙ୍କ ପୁତ୍ରଙ୍କ ସମ୍ପର୍କରେ ଜିଜ୍ଞାସା କରନ୍ତେ ସେ ଅଶ୍ରୁ ସଜଳ ନୟନରେ କହିଲେ, 'ମୋ ପୁଅ ଆଉ କାହିଁ ? ସେ ତା'ର ମିତ୍ର କନ୍ଦର୍ପ ସହିତ ଏଠାକୁ ଆସିଥିଲା । କିନ୍ତୁ ମୋତେ କିଛି ନକହି ରୂପବତୀର ବିରହ ଦୁଃଖରେ ସେ କେଉଁଆଡ଼େ ଚାଲିଯାଇଛି ।' ତାଙ୍କଠାରୁ ଏହାଶୁଣି ମୁଁ ଫେରିଆସିଛି ।'

ଦୂତର କଥାରେ ରୂପବତୀ ଭାଙ୍ଗିପଡ଼ିଲେ । ସେ ପିତାଙ୍କୁ କହିଲେ, 'ପିତା ! ପତିଙ୍କୁ ଲାଭ କରିବା ମୋ ପକ୍ଷରେ ଆଉ ସମ୍ଭବ ନୁହେଁ । କେତେଦିନ ବା ଆଉ ମୁଁ ଆପଣଙ୍କ ଗୃହରେ ରହିବି । ପତିଙ୍କ ବିଚ୍ଛେଦ ଦୁଃଖ ମୋପାଇଁ ଅସହ୍ୟ ହୋଇଉଠିଲାଣି । ତେଣୁ ମୁଁ ଅଗ୍ନିରେ ପ୍ରବେଶ କରି ଶରୀର ତ୍ୟାଗ କରୁଛି । ହୁଏତ ପରଜନ୍ମରେ ତାଙ୍କୁ ଲାଭ କରିପାରିବି ।' ପିତାମାତା କନ୍ୟାକୁ ବୁଝାଇବାପାଇଁ ବହୁ ଚେଷ୍ଟା କଲେ । କିନ୍ତୁ ରୂପବତୀ ସେମାନଙ୍କ ଅନୁରୋଧ ରକ୍ଷା ନକରି ଆଜି ଚିତାଗ୍ନିରେ ପ୍ରବେଶ କରିବାପାଇଁ ଯାଉଛନ୍ତି । ତାଙ୍କର ଦୁଇଜଣ ସଖୀ ଶୃଙ୍ଗାରବତୀ ଓ ଅନୁରାଗବତୀ ମଧ ସେହି ଚିତାଗ୍ନିରେ ପ୍ରବେଶ କରିବେ ବୋଲି ପ୍ରସ୍ତୁତ ହେଲେଣି । ରୂପବତୀଙ୍କ ବିବାହ ସମୟରେ ସେମାନେ ଯୁବକ କେସଟଙ୍କ ରୂପରେ ଆକୃଷ୍ଟ ହୋଇ ମନେମନେ ତାଙ୍କୁ ପତି ରୂପରେ ବରଣ କରିଥିଲେ । ଏଥିପାଇଁ ଏଠାରେ ଏପରି କୋଳାହଳ ଚାଲିଛି ।'

ନାଗରିକଠାରୁ ଏହାଶୁଣି କନ୍ଦର୍ପ ଦ୍ରୁତପଦକ୍ଷେପରେ ଯାଇ ଚିତାଗ୍ନି ନିକଟରେ ପହଞ୍ଚିଲେ । ସେ ନାଗରିକମାନଙ୍କୁ ଶାନ୍ତ କରି ରୂପବତୀଙ୍କ ସମ୍ମୁଖକୁ ଯିବା ବେଳେ ସେ ଅଗ୍ନିପୂଜା କରୁଥାନ୍ତି । ତାଙ୍କୁ ଦେଖି କନ୍ଦର୍ପ କହିଲେ 'ଆର୍ଯ୍ୟେ ! ଏପରି ଦୁଃସାହସରୁ ନିବୃତ୍ତ ହୁଅ । ତୁମର ପତି କେସଟ ଜୀବିତ ଅଛନ୍ତି । ସେ ମୋର ପରମ ମିତ୍ର । ମୁଁ କନ୍ଦର୍ପ ।' ଏହା ପରେ କନ୍ଦର୍ପ ବୃଦ୍ଧ ବ୍ରାହ୍ମଣର ଛଳନା, ନୌଯାତ୍ରା ଏବଂ ନୌକା ଉପରୁ କେସଟଙ୍କୁ ନଦୀ ଗର୍ଭରେ ନିକ୍ଷେପ ଇତ୍ୟାଦି କଥା କହି ଶୁଣାଇଲେ ।'

କନ୍ଦର୍ପଙ୍କ କଥା ତାଙ୍କ ଅନୁଭୂତି ସହିତ ମିଳିଯାଉଥିବା ଦେଖି ରୂପବତୀ ଆଶ୍ୱସ୍ତା ହେଲେ । ଚିତାଗ୍ନିରେ ପ୍ରବେଶ କରିବାରୁ ନିବୃତ୍ତ ହୋଇ ସେ ଉଭୟ ସଖୀଙ୍କ ସହିତ ପିତୃଗୃହକୁ ଫେରିଆସିଲେ । କନ୍ଦର୍ପ ମଧ୍ୟ କେସଟଙ୍କ ଶ୍ୱଶୁରଙ୍କଠାରୁ ଉପଯୁକ୍ତ ଆଦର ଓ ସମ୍ମାନ ଲାଭକରି ତାଙ୍କ ଗୃହରେ ବାସ କରିବାକୁ ଲାଗିଲେ ।

ଏଣେ କେସଟ ବିଭିନ୍ନ ସ୍ଥାନ ଭ୍ରମଣ କରି ଦୈବକ୍ରମେ କନ୍ଦର୍ପଙ୍କ ନଗର ରତ୍ନପୁରରେ ଆସି ପହଞ୍ଚିଲେ । ସେଠାରେ କନ୍ଦର୍ପଙ୍କ ଉଭୟ ପତ୍ନୀ ରହୁଥାନ୍ତି । ସୁମନା ନିଜ ଗୃହର ଛାତ ଉପରୁ କେସଟଙ୍କୁ ଦେଖି ଚିହ୍ନିପାରିଲେ । ଶାଶୁ ଶ୍ୱଶୁରଙ୍କୁ ଏକଥା ଜଣାଇବାରୁ ସେମାନେ ଆଦରର ସହିତ ତାଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କରିଆଣିଲେ । ସମସ୍ତ ବୃତ୍ତାନ୍ତ ଶୁଣିସାରିବା ପରେ ମିତ୍ରଙ୍କ ପତ୍ନୀମାନେ ନିଜ ଗୃହରେ ସୁରକ୍ଷିତ ଥିବା ଦେଖି କେସଟଙ୍କ ମନରେ ଗଭୀର ଆନନ୍ଦ ଜାତ ହେଲା । ସୁମନା ଅରଣ୍ୟ ମଧ୍ୟରେ ହସ୍ତୀମାନଙ୍କ ଆକ୍ରମଣଠାରୁ ଆରମ୍ଭ କରି ତାଙ୍କର ସମସ୍ତ ଅଭିଜ୍ଞତା କହି ଶୁଣାଇଲେ । କେସଟ ଉପଯୁକ୍ତ ଆତିଥ୍ୟ ଲାଭକରି ମିତ୍ର ଗୃହରେ ବାସ କରୁଥାନ୍ତି ।

କିଛିଦିନ ପରେ କନ୍ଦର୍ପଙ୍କଠାରୁ ବାର୍ତ୍ତା ନେଇ ଜଣେ ପତ୍ରବାହକ ସେଠାରେ ଆସି ପହଞ୍ଚିଲା । ସେ ଜଣାଇଲା ଯେ ତାଙ୍କ ମିତ୍ର କେସଟ ଯେଉଁଠାରେ ରୂପବତୀଙ୍କୁ ବିବାହ କରିଥିଲେ ସେଠାରେ କନ୍ଦର୍ପ ଓ ରୂପବତୀ ବର୍ତ୍ତମାନ ଉପସ୍ଥିତ ଅଛନ୍ତି । ପତ୍ରରେ ମଧ୍ୟ ତାହାହିଁ ଉଲ୍ଲେଖ ଥିଲା । କେସଟ କନ୍ଦର୍ପଙ୍କ ପିତାଙ୍କୁ ନିଜ ବିବାହର ସମସ୍ତ ଘଟଣା ଆମୂଳଚୂଳ ଅବଗତ କରାଇଲେ ।

ପରଦିନ କନ୍ଦର୍ପଙ୍କ ପିତା ଗୃହରେ ପୂଜା ଓ ଉତ୍ସବ ପାଳନ କଲେ । କନ୍ଦର୍ପଙ୍କୁ ଡକାଇ ଆଣିବାପାଇଁ ଦୂତ ପ୍ରେରିତ ହେଲା । କେସଟ ମଧ୍ୟ ପତ୍ନୀଙ୍କ ସାକ୍ଷାତ ପାଇଁ ତା' ସହିତ ପ୍ରସ୍ଥାନ କଲେ । ତୃଷାର୍ତ୍ତା ଚାତକୀ ପରି ରୂପବତୀ ଦୀର୍ଘଦିନରୁ ଅପେକ୍ଷା କରୁଥିବା କେସଟଙ୍କୁ ଦେଖି ଆନନ୍ଦରେ ବିହ୍ୱଳିତା ହୋଇପଡ଼ିଲେ । କନ୍ଦର୍ପଙ୍କ ସହିତ ସାକ୍ଷାତ ହେବାରୁ କେସଟଙ୍କ ଆନନ୍ଦ କହିଲେ ନସରେ । ରୂପବତୀଙ୍କ ଆଗ୍ରହକ୍ରମେ ସେ ତାଙ୍କର ଉଭୟ ସଖୀ ଅନୁରାଗବତୀ ଓ ଶୃଙ୍ଗାରବତୀଙ୍କୁ ମଧ୍ୟ ବିବାହ କଲେ ।

ସେଠାରେ ଅଧିକ ଦିନ ରହିବା ଆଉ ସମ୍ଭବ ନୁହେଁ । କନ୍ଦର୍ପଙ୍କଠାରୁ ବିଦାୟ ନେଇ ତିନିଜଣ ପତ୍ନୀଙ୍କ ସହିତ କେସଟ ନିଜ ରାଜ୍ୟକୁ ଫେରିଲେ । କନ୍ଦର୍ପ ମଧ୍ୟ ଦୂତ ସହିତ ରତ୍ନପୁର ଫେରିଆସି ନିଜର ପ୍ରିୟତମା ପତ୍ନୀ ସୁମନା ଓ ଅନଙ୍ଗବତୀଙ୍କୁ ସାକ୍ଷାତ କଲେ । ବନ୍ଧୁସ୍ୱଜନଙ୍କ ଆନନ୍ଦାତିଶଯ୍ୟ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ । କେସଟ ଓ କନ୍ଦର୍ପ

ରୂପବତୀ ଓ ସୁମନାଙ୍କୁ ପୁନଃପ୍ରାପ୍ତ ହୋଇ ଅଖଣ୍ଡ ଭୋଗ ବିଳାସରେ ଜୀବନଯାପନ କରିବାକୁ ଲାଗିଲେ ।'

ଧୈର୍ଯ୍ୟଶୀଳ ଓ ବିଦ୍ୱାନ୍ ବ୍ୟକ୍ତିମାନେ ବିଧିନିର୍ଦ୍ଦିଷ୍ଟ ଅଗଣିତ ବିଷମ ଦୁଃଖ ସହ୍ୟକରି ଶେଷରେ ନିଜ ନିଜର ପ୍ରଣୟିନୀମାନଙ୍କ ସହିତ ମିଳିତ ହୋଇଥାନ୍ତି । ଏଣୁ, ମିତ୍ର ଧନଦତ୍ତ ! ଶୀଘ୍ର ଉଠ, ଆମେ ଏଠାରୁ ଯାଇ ତୁମ ପତ୍ନୀଙ୍କ ସନ୍ଧାନ କରିବା । କେଉଁଠି ନା କେଉଁଠି କଦାଚିତ୍ ତାଙ୍କ ସହିତ ତୁମର ସାକ୍ଷାତ ହେବ । ଦୈବର ଗତି ବଡ଼ ବିଚିତ୍ର; ତାକୁ ଜାଣିବା ସହଜସାଧ୍ୟ ନୁହେଁ । ଦେଖ, ମୁଁ ମଧ୍ୟ ତ ମୋର ମରିଯାଇଥିବା ପତ୍ନୀକୁ ପୁଣି ଲାଭ କରିପାରିଛି ।'

ମିତ୍ର ଏହିପରି କାହାଣୀଟିଏ କହି ମୋତେ ପ୍ରୋତ୍ସାହନ କଲେ । ଆମେ ସାଙ୍ଗହୋଇ ସେଠାରୁ ବାହାରିଲୁ । ବୁଲି ବୁଲି ଏଠାରେ ଆସି ପହଞ୍ଚିଛୁ । ଏହି ସ୍ଥାନରେ ବନ୍ୟଶୂକର ସହିତ ଏହି ଗଜରାଜଙ୍କ ସହିତ ଆମର ସାକ୍ଷାତ ହେଲା । ଆଶ୍ଚର୍ଯ୍ୟଜନକ ଭାବେ ଗଜରାଜ ଗ୍ରାସ କରିଥିବା ମୋର ପତ୍ନୀକୁ ପୁଣି ତାଙ୍କ ଉଦର ମଧ୍ୟରୁ ବାହାର କଲେ । ସେ ହଠାତ୍ ଏଠାରୁ ଅନ୍ତର୍ହିତ ହୋଇଯିବା ଦେଖି ମୁଁ ତାଙ୍କର ପୁନର୍ଦର୍ଶନ ପାଇଁ ଏଣେତେଣେ ବୁଲୁଥିଲି । ପରମ ସୌଭାଗ୍ୟବଶତଃ ଏବଂ ପୂର୍ବ ପୁଣ୍ୟବଳରୁ ଏଠାରେ ଶ୍ରୀମାନ୍‌ଙ୍କ ଚରଣକମଳ ଦର୍ଶନ କରିବାର ସୌଭାଗ୍ୟ ଲାଭ କରିଛି ।'

ବଣିକ ପୁତ୍ରଠାରୁ ଏହି ବୃତ୍ତାନ୍ତ ଶୁଣି ରାଜା ବିକ୍ରମାଦିତ୍ୟ ସେହି ଆରଣ୍ୟକହସ୍ତୀକୁ ବଧକରି ଯେଉଁ ରମଣୀଙ୍କୁ ପାଇଥିଲେ, ତାଙ୍କୁ ବଣିକପୁତ୍ର ହସ୍ତରେ ସମର୍ପଣ କଲେ । ଅଦ୍ଭୁତ ଭାବରେ ପୁଣି ପରସ୍ପରକୁ ପାଇଥିବା ଯୋଗୁଁ ସେମାନଙ୍କ ଆନନ୍ଦ ଅବର୍ଣ୍ଣନୀୟ । ସେମାନଙ୍କ ମୁଖରେ ସମ୍ରାଟ୍ ବିକ୍ରମାଦିତ୍ୟଙ୍କ ଅଜସ୍ର ପ୍ରଶଂସା ।

## ପଞ୍ଚମ ତରଙ୍ଗ 

ସମ୍ରାଟ୍ ବିକ୍ରମାଦିତ୍ୟ ବଣିକ ପୁତ୍ରର ଆତ୍ମବୃତ୍ତାନ୍ତ ଶୁଣିବା ପରେ ତା' ସହିତ ଆସିଥିବା ମିତ୍ରକୁ ଚାହିଁ ପଚାରିଲେ, 'ଭଦ୍ର ! ତୁମେ ଯାହା କହିଲ ଯେ ମୃତ୍ୟୁବରଣ କରିଥିବା ପତ୍ନୀକୁ ପୁଣି ଲାଭ କଲ, ତାହା କିପରି ସମ୍ଭବ ହେଲା ? ତୁମେ ସେ ସମ୍ପର୍କରେ ଆମ୍ଭମାନଙ୍କୁ ବିସ୍ତାର ପୂର୍ବକ ଶୁଣାଇ ଆମର କୌତୂହଳ ଦମନ କର ।' ରାଜାଙ୍କ ଜିଜ୍ଞାସାକ୍ରମେ ବଣିକପୁତ୍ରର ମିତ୍ର କହିବା ଆରମ୍ଭ କଲା—

## ମୃତାପତ୍ନୀର ଜୀବନ ଲାଭ କଥା

ବ୍ରହ୍ମସ୍ଥଳରେ ରହୁଥିବା ଜଣେ କୁଳୀନ ବ୍ରାହ୍ମଣଙ୍କର ମୁଁ ହେଉଛି ଏକମାତ୍ର ପୁତ୍ର । ମୋର ନାମ ଚନ୍ଦ୍ରସ୍ୱାମୀ । ଗୃହରେ ମୋର ସ୍ତ୍ରୀ ସହିତ ମୁଁ ବାସ କରୁଥିଲି । ସେ ଅତ୍ୟନ୍ତ ରୂପବତୀ । ଏକଦା ପିତାଙ୍କ ଆଦେଶରେ ମୁଁ ଦୂରବର୍ତ୍ତୀ ଏକ ଗାଁକୁ ଯାଇଥାଏ । ଗୃହରେ ମୋର ପତ୍ନୀ ଏକାକିନୀ ଥିବା ବେଳେ ଜଣେ କାପାଳିକ ଭିକ୍ଷାପାଇଁ ଆସି ପହଞ୍ଚିଲା । କାପାଳିକକୁ ଦେଖିବା ମାତ୍ରେ ମୋ ସ୍ତ୍ରୀ ହଠାତ୍ ଦାହଜ୍ୱରରେ ପୀଡ଼ିତ ହୋଇପଡ଼ିଲା । ସନ୍ଧ୍ୟାବେଳକୁ ତା'ର ପ୍ରାଣବାୟୁ ଉଡ଼ିଗଲା । ବନ୍ଧୁବାନ୍ଧବମାନେ ତା'ର ଶବକୁ ନେଇ ଚିତା ଉପରେ ସ୍ଥାପନ କଲେ । ସେମାନେ ସେଥିରେ ଅଗ୍ନି ସଂଯୋଗ କରିବାପାଇଁ ଯାଉଥିବା ବେଳେ ମୁଁ ଆସି ସେଠାରେ ପହଞ୍ଚିଲି । ସ୍ତ୍ରୀର ମୃତ୍ୟୁ ମୋର ଅସହ୍ୟ ମନେହେଲା । ମୁଁ ଶୋକାକୁଳ ହୋଇ ତା' ଚିତା ପ୍ରଦକ୍ଷିଣ କରୁଥାଏ ।

ଏ ସମୟରେ ସେହି କାପାଳିକ ଡମରୁ ବାଦନକରି ହସ୍ତରେ ପରଶୁ ଧାରଣପୂର୍ବକ ସେଠାରେ ଆସି ପହଞ୍ଚିଲା । ସେ ତା'ର ଝୁଲିମୁଣା ମଧ୍ୟରୁ ଟିକିଏ ଭସ୍ମ ବାହାର କରି ଚିତାଗ୍ନି ଉପରେ ପକାଇଦେବାରୁ ଅଗ୍ନି ନିର୍ବାପିତ ହେଲା । ତା' ସହିତ ମୋ ସ୍ତ୍ରୀ ମଧ୍ୟ ଜୀବନଲାଭ କରି ଉଠି ବସିଲା । କାପାଳିକ ସେଠାରୁ ଚାଲିଯିବାପାଇଁ ବାହାରିବାରୁ ମନ୍ତ୍ରପ୍ରଭାବରେ ଆକୃଷ୍ଟ ହୋଇ ମୋ ସ୍ତ୍ରୀ ମଧ୍ୟ ତା'ର ଅନୁସରଣ କରିବାକୁ ଲାଗିଲା ।

ସେମାନେ ଦ୍ରୁତ ଗତିରେ ଚାଲିଥାଆନ୍ତି । ମୁଁ ନିକଟବର୍ତ୍ତୀ ଗୃହରୁ ଧନୁଶର ଆଣି ସେମାନଙ୍କ ଅନୁଧାବନ କଲି ।

କାପାଳିକ ଯାଇ ଗଙ୍ଗା କୂଳରେ ଉପସ୍ଥିତ ହେଲା । ସେଠାରେ ଗୋଟିଏ ସୁଡ଼ଙ୍ଗ ଥାଏ । କାପାଳିକ ପରଶୁଟିକୁ ତଳେ ଥୋଇ ତା' ଭିତରେ ପ୍ରବେଶ କଲା । ସେଠାରେ ପୂର୍ବରୁ ଆନୀତ ଦୁଇଜଣ କନ୍ୟା ରହିଥାନ୍ତି । ସେ ସେମାନଙ୍କୁ ହର୍ଷ ଗଦ୍‌ଗଦ ହୋଇ କହିଲା, 'ଦେଖ, ମୁଁ ପୂର୍ବରୁ ତୁମକୁ ଆଣିଥିଲେ ସୁଦ୍ଧା ସମ୍ଭୋଗ ସୁଖ ଲାଭ କରିନଥିଲି । ଯାହାପାଇଁ ଏହା ସମ୍ଭବ ହୋଇନଥିଲା ସେ ଆଜି ମୋର ହସ୍ତଗତ ହୋଇଛି । ବର୍ତ୍ତମାନ ମୋର ସାଧନା ସିଦ୍ଧ ହେଲା ।' ଏହା କହି ସେ ମୋର ପତ୍ନୀକୁ ସେମାନଙ୍କ ସହିତ ପରିଚିତ କରାଇଲା । ଏହି ସୁଯୋଗରେ ମୁଁ ତା'ର ପରଶୁଟିକୁ ଗଙ୍ଗା ଗର୍ଭରେ ନିକ୍ଷେପ କଲି । ଫଳରେ ତା'ର ସମସ୍ତ ଶକ୍ତି ନଷ୍ଟ ହେଲା । ମୁଁ ତାକୁ ରୁକ୍ଷ ସ୍ୱରରେ କହିଲି, 'ରେ ଦୁଷ୍ଟ ! ତୁ ମୋର ପତ୍ନୀକୁ ଉପଭୋଗ କରିବାପାଇଁ ଚାହୁଁଛୁ । ବର୍ତ୍ତମାନ ତୋର ଆୟୁଷ ଶେଷହେଲା ।' କାପାଳିକ ନିଜ ପରଶୁଟିକୁ ସେଠାରେ ନଦେଖି ଭୟଭୀତ ହୋଇ ପଳାୟନ କରିବା ନିମିତ୍ତ ଚେଷ୍ଟାକଲା । ମୁଁ ବିଷାକ୍ତ ଶର ପ୍ରୟୋଗ କରି ତାକୁ ହତ୍ୟା କଲି । ପବିତ୍ର ଶୈବ ଆଗମକୁ ଏହିପରି ପାପକର୍ମପାଇଁ ପ୍ରୟୋଗ କରି ଦୁଷ୍ଟ କାପାଳିକମାନେ ତା'ର ଦୁର୍ନାମ କରିଥାନ୍ତି । କିନ୍ତୁ ଏହି ପାପାତ୍ମାମାନେ ପରିଶେଷରେ ଏପରି ମୃତ୍ୟୁବରଣ କରିବା ହିଁ ସାର ହୋଇଥାଏ । ମୁଁ ପତ୍ନୀ ଏବଂ ସେହି ଉଭୟ କନ୍ୟାଙ୍କ ସହିତ ସ୍ୱଗୃହକୁ ଫେରିଆସିଲି । ବନ୍ଧୁ ସ୍ୱଜନମାନେ ଆମକୁ ଦେଖି ବିସ୍ମିତ ହେଲେ ।

ମୋର ଜିଜ୍ଞାସା କ୍ରମେ ସେ ଦୁଇଜଣ କନ୍ୟା କହିଲେ ଯେ ସେମାନେ ବାରାଣସୀର କ୍ଷତ୍ରିୟ ଓ ବୈଶ୍ୟ କନ୍ୟା । ପାପିଷ୍ଠ କାପାଳିକ ମନ୍ତ୍ର ପ୍ରଭାବରେ ସେମାନଙ୍କୁ ଅପହରଣ କରିଆଣିଥିଲା । ସେମାନଙ୍କ ସତୀତ୍ୱ ନଷ୍ଟ ହେବା ପୂର୍ବରୁ ମୋଦ୍ୱାରା ରକ୍ଷା ପାଇଯାଇଛନ୍ତି । ମୁଁ ପରଦିନ ସେମାନଙ୍କୁ ଧରି ବାରାଣସୀ ଗଲି । କନ୍ୟା ଦୁଇଜଣକୁ ଦେଖି ସେମାନଙ୍କ ପିତାମାତା ଓ ବନ୍ଧୁସ୍ୱଜନ ଆନନ୍ଦିତ ହେଲେ । ମୁଁ ସେମାନଙ୍କୁ ଉଭୟ କନ୍ୟାଙ୍କ ପବିତ୍ରତା ସମ୍ପର୍କରେ ସୂଚନା ଦେଲି । ସେଠାରୁ ଫେରିଆସିବା ବେଳେ ପତ୍ନୀହରା ଏହି ବଣିକ ପୁତ୍ରଙ୍କ ସହିତ ମୋର ଦେଖାହେଲା । ଆମେ ଦୁହେଁ ସାଙ୍ଗ ହୋଇ ଏଠାରେ ଆସି ପହଞ୍ଚିଛୁ । କାପାଳିକର ସୁଡ଼ଙ୍ଗ ମଧ୍ୟରୁ ମୁଁ କିଛି ଅଙ୍ଗରାଗ ପାଇଥିଲି । ତାକୁ ଶରୀରରେ ଲେପନ କରିବାଦ୍ୱାରା ମୋର ଶରୀର ସୁବାସିତ ହୋଇଉଠିଲା । ପ୍ରତିଦିନ ସ୍ନାନ କରିବା ପରେ ମଧ୍ୟ ଆପଣ ତା'ର ସୁଗନ୍ଧି ମୋ ଶରୀରରୁ ବାରି ପାରୁଥିବେ । ଏହିପରି ମୁଁ ମୃତାପତ୍ନୀକୁ ପୁଣି ଫେରିପାଇଥିଲି ।'

ରାଜା ବିକ୍ରମାଦିତ୍ୟ ତାର ଏହି ଅଦ୍ଭୁତ ଅନୁଭବ ଶୁଣି ସେମାନଙ୍କୁ ବହୁ ଧନରତ୍ନ ସହିତ ବିଦାୟ ନେଲେ । ଏହାପରେ ରାଜା ଗୁଣବତୀ, ଚନ୍ଦ୍ରବତୀ ଓ ମଦନସୁନ୍ଦରୀଙ୍କୁ ସଙ୍ଗରେ ଧରି ସେନାବାହିନୀ ସହିତ ଉଜ୍ଜୟିନୀରେ ଆସି ଉପସ୍ଥିତ ହେଲେ । ଶୁଭ ମୁହୂର୍ତ୍ତରେ ଗୁଣବତୀ ଓ ଚନ୍ଦ୍ରବତୀ ସହିତ ତାଙ୍କର ବିବାହ ସମ୍ପନ୍ନ ହେଲା । ସେ ଆନନ୍ଦରେ ପ୍ରଜାପାଳନ କରିବାକୁ ଲାଗିଲେ ।

ଦିନେ ସେ ଏକାକୀ ପ୍ରାସାଦ ପୃଷ୍ଠରେ ବିଚରଣ କରୁଥିବା ବେଳେ ବିଶ୍ୱକର୍ମା ନିର୍ମିତ ସେହି ଦେବମନ୍ଦିରର ସ୍ତମ୍ଭରେ ଖୋଦିତ ନାରୀ ମୂର୍ତ୍ତି କଥା ତାଙ୍କ ସ୍ମୃତି ପଟରେ ଜାଗ୍ରତ ହେଲା । ସେ ପ୍ରତିହାରକୁ ଡାକି ଆଦେଶ ଦେଲେ ଯେଉଁ କଳିଙ୍ଗ ରାଜକନ୍ୟା କଳିଙ୍ଗସେନାଙ୍କ ପ୍ରତିମୂର୍ତ୍ତି ମୁଁ ମନ୍ଦିର ମଧ୍ୟରେ ଦେଖିଥିଲି ତାଙ୍କୁ ଆଣିବାପାଇଁ ଦୂତପ୍ରେରଣ କରାଯାଉ । ପ୍ରତିହାର ରାଜାଙ୍କ ଆଦେଶରେ ସୁବିଗ୍ରହ ନାମକ ଜଣେ ଦୂତକୁ ସେଠାରେ ଆଣି ଉପସ୍ଥିତ କରାଇଲା । ରାଜା ତାକୁ ଅନୁରୂପ ଆଦେଶ ଶୁଣାଇ ବିଦାୟ ଦେଲେ ।

ଦୂତ ଯାଇ କଳିଙ୍ଗ ରାଜଧାନୀରେ ପହଞ୍ଚିଲା । ଦ୍ୱାରପାଳମାନଙ୍କଦ୍ୱାରା ନିଜ ଆଗମନର ସୂଚନା ଦେଇ ସେ ରାଜା କଳିଙ୍ଗସେନଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ଜଣାଇଲା, 'ରାଜନ୍ ! ସମ୍ରାଟ୍ ବିକ୍ରମାଦିତ୍ୟ ଆପଣଙ୍କୁ ଏହା କହିବାପାଇଁ ମୋତେ ପ୍ରେରଣ କରିଛନ୍ତି । ଆପଣ ଜାଣନ୍ତି, ସଂସାର ମଧ୍ୟରେ ଯାହାସବୁ ସର୍ବୋତ୍ତମ ପଦାର୍ଥ, ତାହା ଆମ ନିକଟରେ ପହଞ୍ଚିଥାଏ । ଆପଣଙ୍କ ଏକ ସର୍ବୋତ୍ତମା କନ୍ୟା ଅଛି । ତାକୁ ମୋ ହସ୍ତରେ ସମର୍ପଣ କରି ଆପଣ ନିଷ୍କଣ୍ଟକ ରାଜ୍ୟ ଭୋଗ କରନ୍ତୁ ।' କଳିଙ୍ଗାଧିପତି ଦୂତର କଥା ଶୁଣି କ୍ରୋଧ ପରବଶ ହୋଇ କହିଉଠିଲେ, 'ଆରେ, ଏ ବିକ୍ରମାଦିତ୍ୟ କିଏ ? ମୋତେ ଆଦେଶ ଦେବାପାଇଁ ସେ କିଏ ? ସେ ପୁଣି ମୋତେ କନ୍ୟା ଯାଚନା କରୁଛି । ବୋଧହୁଏ ଗର୍ବରେ ସେ ଅନ୍ଧ ହୋଇଗଲାଣି । ତା'ର ଗର୍ବକୁ ଖର୍ବ କରିବା ଏକାନ୍ତ ଆବଶ୍ୟକ ।' ଦୂତ ନିଜ ପ୍ରଭୁଙ୍କ ଅବମାନନା ସହ୍ୟ କରିନପାରି କଠୋର ସ୍ୱରରେ କହିଲା, 'ହେ ରାଜନ୍ ! ତୁମ ମୂର୍ଖତାକୁ ଧିକ୍ । ତୁମେ ବୋଧହୁଏ ନିଜକୁ ଏବଂ ନିଜ ଶକ୍ତିକୁ ଆକଳନ କରିପାରୁନାହଁ । ପ୍ରଭୁ ବିକ୍ରମାଦିତ୍ୟଙ୍କ ଭୃତ୍ୟ ହୋଇ ସୁଦ୍ଧା ଏପରି ଦର୍ପ ପ୍ରକାଶ କରିବା ତୁମ ପକ୍ଷରେ କିପରି ସମ୍ଭବ ହେଉଛି । ତୁମେ ତାଙ୍କ ପ୍ରତାପରୂପୀ ଅଗ୍ନିଶିଖାରେ ପତଙ୍ଗ ହେବାକୁ ଚେଷ୍ଟା କର ନାହିଁ ।'

ଦୂତ ଫେରିଆସି ରାଜା ବିକ୍ରମାଦିତ୍ୟଙ୍କୁ କଳିଙ୍ଗସେନଙ୍କ ଆଚରଣ ସମ୍ପର୍କରେ ଜ୍ଞାତ କରାଇଲା । ରାଜା ସେନାବାହିନୀ ସଜ୍ଜିତ କରି ଭୂତକେତୁ ବେତାଳ ସହିତ କଳିଙ୍ଗ ଅଭିମୁଖରେ ଯାତ୍ରା କଲେ ।

ରାଜା କଳିଙ୍ଗ ରାଜଧାନୀ ନିକଟରେ ଯାଇ ଉପନୀତ ହେଲେ । ତାଙ୍କ ସେନାବାହିନୀର କୋଳାହଳ ଦଶଦିଗରେ ପ୍ରତିଧ୍ୱନିତ ହେଲା । ପ୍ରତ୍ୟେକ ଦିଗ ସତେ ଯେପରି କନ୍ୟାଦାନ କରିବାପାଇଁ ରାଜାଙ୍କୁ ଉପଦେଶ ଦେଉଥାନ୍ତି । କଳିଙ୍ଗସେନ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ ।

କଳିଙ୍ଗ ରାଜଙ୍କ ଧୃଷ୍ଟତା ଦେଖି ବିକ୍ରମାଦିତ୍ୟଙ୍କ ମନରେ ଅନ୍ୟ ଭାବନା ଜାଗ୍ରତ ହେଲା । କଳିଙ୍ଗସେନାଙ୍କୁ ଲାଭ ନକଲେ ଶାନ୍ତି ନାହିଁ । ଏ ଦୃଷ୍ଟିରୁ ଶ୍ୱଶୁରଙ୍କ ସହିତ ଯୁଦ୍ଧ କରି ତାଙ୍କୁ ହତ୍ୟା ବା ବନ୍ଦୀ କରିବା ଯଥାର୍ଥ ହେବ ନାହିଁ । ଅନ୍ୟ କିଛି ଉପାୟରେ କାର୍ଯ୍ୟସିଦ୍ଧି କରିବାକୁ ହେବ । ରାଜା ବେତାଳ ସହିତ ଏ ସମ୍ପର୍କରେ ପରାମର୍ଶ କଲେ ।

ଉକ୍ତଦିନ ଗଭୀର ରଜନୀରେ ବେତାଳର ବିଦ୍ୟା ପ୍ରଭାବରୁ ବିକ୍ରମାଦିତ୍ୟ ତା' ସହିତ ଅଦୃଶ୍ୟ ଭାବରେ ଯାଇ କଳିଙ୍ଗରାଜାଙ୍କ ଶୟନ କକ୍ଷରେ ଉପସ୍ଥିତ ହେଲେ । ରାଜା ସେତେବେଳେ ନିଦ୍ରାଭିଭୂତ । ବେତାଳର ଅଟ୍ଟହାସରେ ତାଙ୍କର ନିଦ୍ରାଭଙ୍ଗ ହେଲା । ବେତାଳ କହୁଥାଏ, 'ରାଜା, ବିକ୍ରମାଦିତ୍ୟଙ୍କ ସହିତ ଶତ୍ରୁତା କରି ତମେ ନିଶ୍ଚିନ୍ତରେ ଶୋଇପାରୁଛ ।' କଳିଙ୍ଗସେନ ନିଜ ଶୟନ କକ୍ଷରେ ପ୍ରବେଶ କରିପାରିଥିବା ଭୟାନକ ବେତାଳ ସହିତ ରାଜା ବିକ୍ରମାଦିତ୍ୟଙ୍କୁ ଚିହ୍ନିପାରି ଭୟଭୀତ ହୋଇପଡ଼ିଲେ । ମସ୍ତକ ଅବନତ କରି କହିଲେ, 'ମହାରାଜ୍ ! ମୋତେ କ୍ଷମା କରନ୍ତୁ । ମୁଁ ଆପଣଙ୍କ ଅଧୀନ । ମୋତେ କଣ କରିବାକୁ ହେବ ଆଦେଶ କରନ୍ତୁ ।' ବିକ୍ରମାଦିତ୍ୟ ସ୍ନେହସିକ୍ତ କଣ୍ଠରେ କହିଲେ, 'ଆପଣ ଯଦି ମୋର ଅଧୀନତା ସ୍ୱୀକାର କରିବାପାଇଁ ଚାହାଁନ୍ତି ତେବେ କନ୍ୟା କଳିଙ୍ଗସେନାଙ୍କୁ ମୋ ହସ୍ତରେ ଅର୍ପଣ କରନ୍ତୁ ।'

କଳିଙ୍ଗରାଜ ଏଥିରେ ସମ୍ମତି ପ୍ରଦାନ କଲେ । ନିଜର କାର୍ଯ୍ୟ ସିଦ୍ଧ ହେବା ଦେଖି ବିକ୍ରମାଦିତ୍ୟ ବେତାଳ ସହିତ ଶିବିରକୁ ପ୍ରତ୍ୟାବର୍ତ୍ତନ କଲେ ।

ଦେବି କଳିଙ୍ଗସେନା ! ପରଦିନ ଆପଣଙ୍କ ପିତା କଳିଙ୍ଗସେନ ପ୍ରଚୁର ଯୌତୁକ ସହ ଆପଣଙ୍କୁ ବିକ୍ରମାଦିତ୍ୟଙ୍କ ହସ୍ତରେ ସମର୍ପଣ କଲେ । ଦେବି ! ରାଜା ବିକ୍ରମାଦିତ୍ୟ ଆପଣଙ୍କ ପ୍ରତି ଥିବା ଗଭୀର ଆସକ୍ତିରୁ ନିଜ ଜୀବନକୁ ପଣ କରି ଆପଣଙ୍କୁ ବିବାହ କରିଛନ୍ତି । ତେଣୁ ତାଙ୍କ ପ୍ରତି ଆପଣ ଅନ୍ୟଥାଭାବ ପୋଷଣ କରିବା ଉଚିତ ନୁହେଁ ।'

କାର୍ପଟିକ ଦେବସେନ ମୁଖରୁ ପ୍ରକୃତ ଘଟଣା ଜାଣିବା ପରେ ମୁଁ ରାଜା ବିକ୍ରମାଦିତ୍ୟଙ୍କ ପ୍ରତି ରଖିଥିବା ଅପମାନଜନିତ କ୍ରୋଧ ତ୍ୟାଗ କଲି । ଏହିପରି ରାଜା ସ୍ତମ୍ଭ ଗାତ୍ରରେ ମୋର ପ୍ରତିମା ଦେଖି ମୋତେ ବିବାହ କରିଥିଲେ । ଏବେ ଚିତ୍ରପଟ

ଦେଖି ମଳୟବତୀଙ୍କୁ ବିବାହ କରିଛନ୍ତି । ତେଣୁ, ବିକ୍ରମାଦିତ୍ୟଙ୍କ ପ୍ରଚଣ୍ଡ ଓ ଅଲୌକିକ କାର୍ଯ୍ୟ କଳାପ ଅଚନ୍ତନୀୟ ।

କଳିଙ୍ଗସେନାଙ୍କଠାରୁ ପତିଙ୍କ ପ୍ରଶଂସା ଶୁଣି ସପତ୍ନୀମାନେ ଆହ୍ଲାଦିତ ହେଲେ ।

ସମ୍ରାଟ୍ ବିକ୍ରମାଦିତ୍ୟ ଏହିପରି ପ୍ରିୟତମା ଓ ସ୍ନେହଶୀଳା ରାଣୀମାନଙ୍କ ସହିତ ଆନନ୍ଦରେ ରାଜତ୍ୱ କରୁଥାନ୍ତି ।

## ବିକ୍ରମାଦିତ୍ୟଙ୍କ ଅନୁଚରବତ୍ସଳତା

ଦିନେ ନିଜ ଗୋତ୍ରଜମାନଙ୍କଦ୍ୱାରା ପରିତ୍ୟକ୍ତ ହୋଇ ଦକ୍ଷିଣାପଥରୁ କୃଷ୍ଣଶକ୍ତି ନାମକ ଜଣେ କ୍ଷତ୍ରିୟ କୁମାର ଆସି ରାଜଦ୍ୱାରରେ ଉପସ୍ଥିତ ହେଲେ । ସେ ସିଂହଦ୍ୱାରରେ ରହି ପାଞ୍ଚଶହ ମିତ୍ରଙ୍କ ସହିତ ରାଜା ବିକ୍ରମାଦିତ୍ୟଙ୍କ ସେବକ ହେବାପାଇଁ ଦ୍ୱାରପାଳ ଦ୍ୱାରା ନିଜର ଅଭିଳାଷ ଜଣାଇଲେ । ରାଜା ଏହି ଅଜ୍ଞାତକୁଳଶୀଳ ବ୍ୟକ୍ତିଙ୍କୁ ସେବକ ରୂପେ ନିଯୁକ୍ତ କରିବା ନିମିତ୍ତ ଅସମ୍ମତି ପ୍ରକାଶ କରିବା ସତ୍ତ୍ୱେ ସେ ପ୍ରତିଜ୍ଞା କଲେ ଯେ ବାରବର୍ଷ ପର୍ଯ୍ୟନ୍ତ ସେ ରାଜା ବିକ୍ରମାଦିତ୍ୟଙ୍କ ସେବାକରି ହିଁ ରହିବେ ।

ଏହିପରି ନିଜର ପ୍ରତିଜ୍ଞା ଜଣାଇ କୃଷ୍ଣଶକ୍ତି ରାଜଦ୍ୱାରରେ ରହିଥାନ୍ତି । ଏଗାର ବର୍ଷ ବିତିଗଲା । ଦ୍ୱାଦଶ ବର୍ଷ ସେ ତାଙ୍କ ବିରହକାତରା ପତ୍ନୀଠାରୁ ଗୋଟିଏ ପତ୍ର ପାଇଲେ । ରାତିରେ ଦୀପାଲୋକ ସାହାଯ୍ୟରେ ସେ ପତ୍ରଟି ପାଠ କରୁଥାନ୍ତି । ଏ ସମୟରେ ରାଜା ବିକ୍ରମାଦିତ୍ୟ ଛଦ୍ମବେଶରେ ନଗର ପରିକ୍ରମାପାଇଁ ବାହାରିଥିଲେ । କୃଷ୍ଣଶକ୍ତି ପତ୍ରଟି ପାଠକଲା ବେଳେ ସେ ଅନ୍ତରାଳରେ ରହି ତାହା ଶୁଣୁଥାନ୍ତି । ପତ୍ରଟିରେ ଲେଖାଥିଲା, 'ନାଥ ! ତୁମ ବିରହରେ ମୋ କଠିନ ହୃଦୟରୁ ଉତ୍ତପ୍ତ, ଦୀର୍ଘ ଓ ଘନଘନ ନିଶ୍ୱାସ ବାୟୁ ନିରନ୍ତର ପ୍ରବାହିତ ହେଉଛି, କିନ୍ତୁ ମୋର ପ୍ରାଣ ଯାଉନାହିଁ ।' ସେବକ କୃଷ୍ଣଶକ୍ତି ପତ୍ରଟିକୁ ବାରମ୍ବାର ପାଠ କରୁଥାନ୍ତି । ରାଜା ତାହା ଶୁଣି ସ୍ୱ ପ୍ରାସାଦକୁ ଫେରିଗଲେ ।

କୃଷ୍ଣଶକ୍ତିଙ୍କ ସେବା ଏବଂ ତାଙ୍କ ସ୍ତ୍ରୀର ବିରହାବସ୍ଥା ରାଜାଙ୍କ ମନରେ ଭାବାନ୍ତର ଆଣିଦେଲା । ସେ ମନେମନେ ଚିନ୍ତାକଲେ ଏହି କ୍ଷତ୍ରିୟ ଯୁବକଟି ଏଗାର ବର୍ଷ ଧରି ତାଙ୍କର ସେବାରେ ବହୁ କଷ୍ଟ ସ୍ୱୀକାର କରୁଛି । ଏଥିରେ ନିଶ୍ଚିତ ଭାବେ ତା'ର କିଛି ପ୍ରଚ୍ଛନ୍ନ ଅଭିଳାଷ ଥିବ । ଯଦି ତାହା ପୂର୍ଣ୍ଣ ନହୁଏ ତେବେ ଦ୍ୱାଦଶ ବର୍ଷ ଶେଷରେ ସେ ହୁଏତ ଶରୀର ତ୍ୟାଗ କରିପାରେ । ପତିର ମୃତ୍ୟୁରେ ପତ୍ନୀ ମଧ୍ୟ ପ୍ରାଣ ବିସର୍ଜନ

କରିବା ଅସମ୍ଭବ ନୁହେଁ । ଏଥିରେ ମୁଁ ଅଯଥା ନାରୀହତ୍ୟା ଦୋଷରେ ଦୁଷ୍ଟ ହେବି । ତେଣୁ ଏ ସମ୍ପର୍କରେ ଯଥାଶୀଘ୍ର କିଛି ବ୍ୟବସ୍ଥା କରିବା ଉଚିତ ହେବ । ରାଜା ବିକ୍ରମାଦିତ୍ୟ ନିଶ୍ଚିନ୍ତ ହୋଇପାରିଲେ ନାହିଁ । ସେ ଦାସୀଦ୍ୱାରା ତାଙ୍କୁ ନିଜ ନିକଟକୁ ଡକାଇ ଆଣିଲେ ।

ରାଜାଙ୍କ ଆଦେଶ ଶିରୋଧାର୍ଯ୍ୟ କହି କୃଷ୍ଣଶକ୍ତି ବିନୀତ ଭାବରେ ଆସି ସମ୍ମୁଖରେ ଉପସ୍ଥିତ ହେଲେ । ରାଜା ତାଙ୍କ ହସ୍ତରେ ଏକ ଦାନପତ୍ର ଧରାଇଦେଇ କହିଲେ, 'ଯୁବକ ! ତୁମେ ଓଁକାରପୀଠ ମାର୍ଗରେ ଉତ୍ତରକୁ ଯିବ । ଏହି ଦାନପତ୍ରରେ ମୁଁ ସେହି ଦିଗରେ ଥିବା ଗୋଟିଏ ଗ୍ରାମ ତୁମକୁ ଦାନ କରିଛି । ତାହା ଖଣ୍ଡବଟକ ନାମରେ ପରିଚିତ । ମାର୍ଗରେ ଜିଜ୍ଞାସା କଲେ ତୁମେ ତାହାର ସନ୍ଧାନ ପାଇପାରିବ । ସେହି ଗ୍ରାମ ଭୋଗ କରି ଆନନ୍ଦରେ ଜୀବନଯାପନ କର ।'

ଯୁବକ ନିଜ ଅନୁଚରମାନଙ୍କୁ ଏ ସମ୍ପର୍କରେ ଅବଗତ ନକରାଇ ରାତାରାତି ସେଠାରୁ ଏକାକୀ ପ୍ରସ୍ଥାନ କଲେ । ଭାବୁଥାନ୍ତି ଲଜ୍ଜାଜନକ ଭାବେ ଏପରି ଗୋଟିଏ ମାତ୍ର ଗ୍ରାମଲାଭ କରି ମୁଁ ବା କି ଆନନ୍ଦ ପାଇବି । ତଥାପି ପ୍ରଭୁଙ୍କ ଆଜ୍ଞା ପାଳନୀୟ । ଏହିପରି ଅସନ୍ତୁଷ୍ଟ ଓ ଚିନ୍ତାକୁଳ ମନରେ ସେ ଧୀରପଦକ୍ଷେପରେ ଯାଇ ଓଁକାରପୀଠ ନିକଟସ୍ଥ ଏକ ଅରଣ୍ୟ ମଧ୍ୟରେ ପହଞ୍ଚିଲେ । ସେଠାରେ କିଛି ବାଳିକା ଖେଳୁଥାନ୍ତି । ସେ ଖଣ୍ଡବଟକ ଗ୍ରାମର ଅବସ୍ଥିତି ସମ୍ପର୍କରେ ଜାଣିବାପାଇଁ ଚାହିଁବାରୁ ସେମାନେ ସେମାନଙ୍କ ଅଜ୍ଞତା ପ୍ରକାଶ କରି କହିଲେ, 'ଆମେ ତ ତା' ସମ୍ପର୍କରେ ଜାଣିନାହୁଁ । କିନ୍ତୁ ଏଠାରୁ ଦଶଯୋଜନ ଗଲେ ଆମ ଘର ପଡ଼ିବ । ସେଠାରେ ଯାଇ ପିତାଙ୍କୁ ପଚାରିଲେ ସେ ହୁଏତ ଗ୍ରାମର ସନ୍ଧାନ ଦେଇପାରନ୍ତି ।'

କନ୍ୟାମାନଙ୍କ ନିର୍ଦ୍ଦେଶ ଅନୁଯାୟୀ କୃଷ୍ଣଶକ୍ତି ଏକ ଭୟଙ୍କର ରାକ୍ଷସ ନିକଟରେ ଯାଇ ପହଞ୍ଚିଲେ । ସେ ହିଁ ଥିଲା ଏହି କନ୍ୟାମାନଙ୍କର ପିତା । କ୍ଷତ୍ରିୟ କୁମାର ତାକୁ ଖଣ୍ଡବଟକ ଗ୍ରାମ ସମ୍ପର୍କରେ ପଚାରିବାରୁ ରାକ୍ଷସ ଆଗନ୍ତୁକର ନିର୍ଭୀକତାରେ ପ୍ରସନ୍ନ ହେଲା । କହିଲା 'ସେଠି ତମର କି କାମ ? ସେ ନଗର ତ ବହୁଦିନରୁ ଶୂନ୍ୟ ହୋଇ ପଡ଼ିଛି । ତଥାପି ତମେ ଯଦି ସେଠାକୁ ଯିବାପାଇଁ ଚାହୁଁଥାଅ, ତେବେ ଶୁଣ । ଏଠାରୁ କିଛି ଦୂର ଆଗକୁ ଗଲେ ଗୋଟିଏ ଦୋଛକି ପଡ଼ିବ । ଦକ୍ଷିଣକୁ ଯାଇଥିବା ରାସ୍ତାକୁ ଛାଡ଼ି ବାମ ଦିଗକୁ ଗଲେ ତୁମେ ସୁବିସ୍ତୃତ ପ୍ରାଚୀରଦ୍ୱାରା ପରିବେଷ୍ଟିତ ଖଣ୍ଡବଟକ ନଗରର ମୁଖ୍ୟଦ୍ୱାରରେ ପହଞ୍ଚିଯିବ ।'

ରାକ୍ଷସଦ୍ୱାରା ସୂଚିତ ମାର୍ଗରେ ଯାଇ କୃଷ୍ଣଶକ୍ତି ନଗରଦ୍ୱାରରେ ପହଞ୍ଚିଲେ । ସାହସର ସହିତ ଭିତରେ ପ୍ରବେଶ କରି ସେ ଦେଖିଲେ ଯେ ନଗରଟି ଜନମାନବଶୂନ୍ୟ, ଭୟଙ୍କର କିନ୍ତୁ ଦିବ୍ୟ ଓ ରମଣୀୟ । ସେ ସପ୍ତପ୍ରାକାର ପରିବେଷ୍ଟିତ ରାଜଭବନ ମଧ୍ୟରେ ପ୍ରବେଶ କରି ମଣିମୁକ୍ତା ଖଚିତ ସୋପାନ ଶ୍ରେଣୀରେ ଉପରକୁ ଉଠିଲେ । ସେଠାରେ ଗୋଟିଏ ରତ୍ନାସନ ପଡ଼ିଥାଏ । କୃଷ୍ଣଶକ୍ତି ତା' ଉପରେ ବସିଗଲେ । ତତ୍‌କ୍ଷଣାତ୍ ବେତ୍ରହସ୍ତରେ ସେହି ରାକ୍ଷସର ଆବିର୍ଭାବ ଘଟିଲା । ସେ ରୁକ୍ଷ କଣ୍ଠରେ କହିଲା, 'ରେ ମନୁଷ୍ୟ ! ତୁ ଏହି ରାଜ ସିଂହାସନ ଉପରେ କିପରି ଆରୋହଣ କଲୁ ? ଏହା ତୋର ଉପଯୁକ୍ତ ନୁହେଁ ।' ନିର୍ଭୀକ ଓ ମହାସତ୍ତ୍ୱ କୃଷ୍ଣଶକ୍ତି ଉତ୍ତର ଦେଲେ, 'ଦେଖ, ମୁଁ ଏହି ନଗରର ଅଧିକାରୀ । ସମ୍ରାଟ ବିକ୍ରମାଦିତ୍ୟ ସନନ୍ଦ ସହିତ ମୋତେ ଏହି ନଗର ଦାନ କରିଛନ୍ତି । ତୁମେମାନେ ମୋର ପ୍ରଜା ।' ଏହା କହି ସେ ସନନ୍ଦ ପାଠକଲେ । ରାକ୍ଷସର ଆଚରଣ ହଠାତ୍ ବଦଳିଗଲା । ସେ ଯୁକ୍ତ ହସ୍ତରେ କହିଲା, 'ପ୍ରଭୁ ! ଆଜଠାରୁ ଆପଣ ଏହି ନଗରର ରାଜା । ମୁଁ ଆପଣଙ୍କ ପ୍ରତିହାର । ସମ୍ରାଟ୍ ବିକ୍ରମାଦିତ୍ୟଙ୍କ ଆଦେଶ ଅବଜ୍ଞା କରାଯାଇନପାରେ ।'

ରାକ୍ଷସ ସଙ୍ଗେସଙ୍ଗେ ସମସ୍ତ ରାଜ୍ୟବାସୀ ପ୍ରଜାଙ୍କୁ ଡକାଇ ଆଣିଲା । ସଚିବ ଓ ରାଜ ପରିଚାରକମାନେ ଆସି ପହଞ୍ଚିଗଲେ । ଅଶ୍ୱ, ହସ୍ତୀ, ରଥ ଓ ପାଦାତିକ ଚତୁରଙ୍ଗ ସେନାବାହିନୀରେ ନଗର ପରିପୂର୍ଣ୍ଣ ହୋଇଉଠିଲା । ସମସ୍ତେ ଆସି କୃଷ୍ଣଶକ୍ତିଙ୍କୁ ପ୍ରଣାମ ଜଣାଇବାକୁ ଲାଗିଲେ । ସେ ରାଜୋଚିତ ବିଧିରେ ସ୍ନାନ, ଆହାର ଇତ୍ୟାଦି ଶେଷକରି ସମ୍ରାଟ୍ ବିକ୍ରମାଦିତ୍ୟଙ୍କ ବିଚିତ୍ର ପ୍ରଭାବ ସମ୍ପର୍କରେ ଚିନ୍ତା କରୁଥାନ୍ତି । ଗୋଟିଏ କ୍ଷୁଦ୍ର ଗ୍ରାମ ଦାନ କରିବା କଥା କହି ସେ ମୋତେ ଏପରି ଏକ ବିଶାଳ ରାଜ୍ୟ ପ୍ରଦାନ କରିଛନ୍ତି । ଅଦ୍ଭୁତ ତାଙ୍କର ଉଦାରତା ଏବଂ ଅପୂର୍ବ ତାଙ୍କର ଗାମ୍ଭୀର୍ଯ୍ୟ ।

କୃଷ୍ଣଶକ୍ତି ଆନନ୍ଦରେ ସେହି ଖଣ୍ଡବଟକ ନଗରରେ ଐଶ୍ୱର୍ଯ୍ୟର ସହିତ ବାସ କରୁଥାଆନ୍ତି । ତେଣେ ରାଜା ବିକ୍ରମାଦିତ୍ୟଙ୍କ ଅନୁଚର ବାତ୍ସଲ୍ୟର ପଟାନ୍ତର ନଥାଏ । କିଛିଦିନ ପରେ କାର୍ପଟିକ କୃଷ୍ଣଶକ୍ତି ନିଜର ସେନାବାହିନୀ ସହିତ ଭୂପୃଷ୍ଠକୁ ପ୍ରକମ୍ପନ କରି ରାଜା ବିକ୍ରମାଦିତ୍ୟଙ୍କ ଦର୍ଶନପାଇଁ ଉଜ୍ଜୟିନୀ ନଗରୀରେ ଆସି ଉପସ୍ଥିତ ହେଲେ । ସେ ଚରଣ ପ୍ରାନ୍ତରେ ବିନମ୍ର ପ୍ରଣତି ଜଣାଇବାରୁ ରାଜା ବିକ୍ରମାଦିତ୍ୟ ନିର୍ଦ୍ଦେଶ ଦେଲେ, 'ବର୍ତ୍ତମାନ ଏଠାରୁ ଯାଇ ତୁମ ନିକଟକୁ ପତ୍ର ଲେଖିଥିବା ସେହି ପତିବ୍ରତା ବିରହିଣୀ ଜଣକର ଦୀର୍ଘନିଶ୍ୱାସକୁ ସ୍ୱାଭାବିକ କର ।' ରାଜାଙ୍କ ଏହି ନିର୍ଦ୍ଦେଶ କୃଷ୍ଣଶକ୍ତିଙ୍କୁ ବିସ୍ମିତ

କଲା । ସେ ଅନୁଚରମାନଙ୍କ ସହିତ ନିଜ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ । ତାଙ୍କ ପ୍ରଭାବରେ ଗୋତ୍ରଜମାନେ ପରାଜିତ ହେଲେ; ଦୀର୍ଘଦିନ ଧରି ବିରହତାପରେ ପ୍ରପୀଡ଼ିତା ପତ୍ନୀ ଆଶ୍ୱାସନା ଲାଭ କଲେ । ନିଜର ଅଭିଳାଷଠାରୁ ଅଧିକ ଧନ ସମ୍ପତ୍ତି, ରାଜ୍ୟ ଓ ପଦବୀ ଲାଭ କରି କୃଷ୍ଣଶକ୍ତି ସେଠାରେ ରାଜସୁଖ ଉପଭୋଗ କରିବାକୁ ଲାଗିଲେ ।

ରାଜା ବିକ୍ରମାଦିତ୍ୟ ଏହିପରି ଥିଲେ ଜଣେ ଅଦ୍ଭୁତ ଅନୁଚରବତ୍ସଳ ସମ୍ରାଟ୍ । ଦିନେ ସେ ଉଜ୍ଜୟିନୀରେ ଭ୍ରମଣ କରୁଥିଲାବେଳେ ଜଣେ ବ୍ରାହ୍ମଣଙ୍କୁ ଦେଖିଲେ । ବ୍ରାହ୍ମଣଙ୍କ ରୋମ ଓ କେଶଗୁଡ଼ିକ ଉପରକୁ ଉଠି ରହିଥାଏ । ରାଜା ତାଙ୍କର ଏ ପ୍ରକାର ଆକୃତି ସମ୍ପର୍କରେ ଜିଜ୍ଞାସା କଲେ । ବ୍ରାହ୍ମଣ ନିଜର କାହାଣୀ ଶୁଣାଇ କହିଲେ–

## ବିକ୍ରମାଦିତ୍ୟ ଓ ସନ୍ତ୍ରସ୍ତ ଦେବସ୍ୱାମୀ କଥା

ମହାରାଜ୍ ! ପାଟଳିପୁତ୍ରରେ ଅଗ୍ନିସ୍ୱାମୀ ନାମକ ଜଣେ ପ୍ରସିଦ୍ଧ ଅଗ୍ନିହୋତ୍ରୀ ବ୍ରାହ୍ମଣ ଥିଲେ । ମୁଁ ତାଙ୍କର ପୁତ୍ର ଦେବସ୍ୱାମୀ । ମୁଁ ଆମ ନଗରଠାରୁ ବହୁଦୂରସ୍ଥିତ ଜଣେ ବ୍ରହ୍ମଣ କନ୍ୟାଙ୍କୁ ବିବାହ କରିଥିଲି । ସେ ତଥାପି ଅନୂଢ଼ା ଥିବା ଯୋଗୁଁ ପିତୃଗୃହରେ ରହୁଥିଲେ । କିଛିଦିନ ପରେ ସେ ଯୌବନରେ ପଦାର୍ପଣ କରିବାରୁ ମୁଁ ତାଙ୍କୁ ଆଣିବାପାଇଁ ଶ୍ୱଶୁରାଳୟ ଗଲି । ଶ୍ୱଶୁର ମୋର ସାଦର ଅଭ୍ୟର୍ଥନା କଲେ । ଗୋଟିଏ ଦାସୀ ସହିତ ମୁଁ ଭାର୍ଯ୍ୟାଙ୍କୁ ଧରି ଏକ ଘୋଟକୀ ପୃଷ୍ଠରେ ପ୍ରତ୍ୟାବର୍ତ୍ତନ କରି ଆସୁଥାଏ । ପଥ ମଧ୍ୟରେ ମୋର ସ୍ତ୍ରୀ ଘୋଟକୀ ପୃଷ୍ଠରୁ ଅବତରଣ କରି ଜଳପାନ ଛଳନାରେ ନଦୀତୀରକୁ ଚାଲିଗଲେ । ମୁଁ ଦୀର୍ଘ ସମୟ ତାଙ୍କୁ ସେଠାରେ ଅପେକ୍ଷା କଲି । ସେ ଫେରିଆସିବା ନଦେଖି ମୋ ମନରେ ଆଶଙ୍କା ହେଲା । ତାଙ୍କ ସନ୍ଧାନ ନେବାପାଇଁ ମୁଁ ମୋର ଭୃତ୍ୟକୁ ପଠାଇଲି । ସେ ମଧ୍ୟ ଫେରିଲା ନାହିଁ । ମୁଁ ଘୋଟକୀଟିର ରକ୍ଷା ଦାୟିତ୍ୱ ଦାସୀ ଉପରେ ନ୍ୟସ୍ତ କରି ନିଜେ ନଦୀତୀରକୁ ଗଲି । ସନ୍ତ୍ରସ୍ତ ହୋଇ ଦେଖିଲି ମୋର ସେହି ଭାର୍ଯ୍ୟା ଭୃତ୍ୟଟିକୁ ସମ୍ପୂର୍ଣ୍ଣ ଖାଇଯାଇଥାଏ । ତା'ର ଅସ୍ଥିମାତ୍ର ଅବଶେଷ ଥିଲା । ସ୍ତ୍ରୀର ମୁଖମଣ୍ଡଳ ରକ୍ତଛିଟାରେ ଲାଲ୍ ଦେଖାଯାଉଥିଲା । ଭୟରେ ମୁଁ ଅଶ୍ୱୀ ନିକଟକୁ ଫେରିଆସିଲି । ସେଠାରେ ମଧ୍ୟ ମୋ ପାଇଁ ଆଉ ଏକ ବିସ୍ମୟ ଅପେକ୍ଷା କରିଥାଏ । ଦାସୀଟି ଅଶ୍ୱୀଟିକୁ ଖାଇଯାଇଥାଏ । ଭୟରେ ମୁଁ ସେଠାରୁ ପଳାୟନ କଲି । ଏ ପର୍ଯ୍ୟନ୍ତ ମୋର ସେହି ଭୟ ଦୂର ହୋଇନାହିଁ । ସେଥିପାଇଁ ମୋର ରୋମ ଓ କେଶଗୁଡ଼ିକ ଏହିପରି ଠିଆ ହୋଇ ରହିଛନ୍ତି । ବର୍ତ୍ତମାନ ମୁଁ ଆପଣଙ୍କର ଶରଣାପନ୍ନ ।'

ବ୍ରାହ୍ମଣଠାରୁ ଏହି ଦୁର୍ଦ୍ଦଶା କଥା ଶୁଣି ରାଜା ବିକ୍ରମାଦିତ୍ୟ ନିଜ ମନ୍ତ୍ରଶକ୍ତି ବଳରେ ତା'ର ଭୟ ଦୂରକଲେ । ସେ ସ୍ୱାଭାବିକ ଅବସ୍ଥାକୁ ଫେରିଆସିଲା । ରାଜା ସ୍ତ୍ରୀ ଜାତିର ଏ ପ୍ରକାର ଦୁଃସାହସ ଏବଂ ଅବିଶ୍ୱସ୍ତତାକୁ ଧିକ୍କାର କରିବାକୁ ଲାଗିଲେ ।

ରାଜାଙ୍କ ଉକ୍ତିକୁ ସମର୍ଥନ କରି ଜଣେ ମନ୍ତ୍ରୀ କହିଲେ, 'ମହାରାଜ୍ ! ନାରୀମାନେ ଏହିପରି ହିଁ ଦୁର୍ଜାତା । ଏ ସମ୍ପର୍କରେ ଆପଣ କଣ ସେହି ବ୍ରାହ୍ମଣ ଅଗ୍ନିଶର୍ମାର କଥା ଶୁଣିନାହାଁନ୍ତି ।

## ମୂର୍ଖ ଅଗ୍ନିଶର୍ମା କଥା

ଏହି ନଗରୀରେ ସୋମଶର୍ମାଙ୍କ ପୁତ୍ର ଅଗ୍ନିଶର୍ମା ବାସ କରେ । ସେ ପିତାମାତାଙ୍କ ନୟନ ପିତୁଳି । କିନ୍ତୁ ନିପଟ ମୂର୍ଖ । ସେ ବର୍ଦ୍ଧମାନ୍ ନଗରର ଜଣେ ବ୍ରାହ୍ମଣ କୁମାରୀକୁ ବିବାହ କରିଥିଲା । କନ୍ୟାଟି ବୟଃପ୍ରାପ୍ତ ହୋଇନଥିବାରୁ ଧନିକ ପିତା ତାକୁ ନିଜ ଗୃହରେ ହିଁ ରଖିଥାନ୍ତି । ବୟଃପ୍ରାପ୍ତି ହେବାରୁ ପିତାମାତା ଅଗ୍ନିଶର୍ମାଙ୍କୁ ନିଜ ପତ୍ନୀ କଥା ସ୍ମରଣ କରାଇଦେଲେ । ମୂର୍ଖ ଅଗ୍ନିଶର୍ମା ଏହା ଶୁଣିବା ମାତ୍ରେ ପିତାମାତାଙ୍କ ଅଜ୍ଞାତସାରରେ ଶ୍ୱଶୁରାଳୟ ଯିବାପାଇଁ ବାହାରି ପଡ଼ିଲା । ଗୃହରୁ ନିର୍ଗତ ହେବାମାତ୍ରେ ଦକ୍ଷିଣରେ କପିଞ୍ଜଳ ଦେଖାଗଲା, ଅମଙ୍ଗଳ ସୂଚିତ କରି ଦକ୍ଷିଣରେ ହିଁ ଶୃଗାଳର ଚିତ୍କାର ଶୁଣାଗଲା । ମୂର୍ଖର ଅପଶକୁନ ସମ୍ପର୍କରେ କୌଣସି ଧାରଣା ନଥିବା ଯୋଗୁଁ ସେ ସମସ୍ତଙ୍କୁ ଦୀର୍ଘଜୀବୀ ହୁଅ କହି ଯାତ୍ରା ଆରମ୍ଭ କଲା । ଶକୁନଦେବୀ ତା'ର ଏହି ମୂର୍ଖତା ଦେଖି ହସିବାକୁ ଲାଗିଲେ । ସେ ଶ୍ୱଶୁରାଳୟରେ ପ୍ରବେଶ କରୁଥିବା ବେଳେ ପୁଣି ବାମରେ କପିଞ୍ଜଳ ପଡ଼ିଲା ଏବଂ ଶୃଗାଳମାନେ ବାମଦିଗରେ ଚିତ୍କାର କରିଉଠିଲେ । ମୂର୍ଖ ଅଗ୍ନିଶର୍ମା ପୁଣି ଦୀର୍ଘଜୀବୀ ହୁଅ କହି ଗୃହ ମଧ୍ୟରେ ପ୍ରବେଶ କଲା ।

ଶକୁନଦେବୀଙ୍କୁ ତାର ମୂର୍ଖତା ବିସ୍ମିତ କଲା । ସେ ଚିନ୍ତା କଲେ, 'ଏହି ବ୍ରାହ୍ମଣ ସନ୍ତାନଟି ନିପଟ ମୂର୍ଖଟିଏ । ତା' ନହେଲେ ଅପଶକୁନକୁ ଶୁଭ ଶକୁନ ମନେକରି ଆନନ୍ଦିତ ହୁଅନ୍ତା ନାହିଁ । ତେଣୁ ତାକୁ ତା'ର ବାଞ୍ଛିତ ଫଳ ଲାଭରେ ସାହାଯ୍ୟ କରିବା ଉଚିତ ହେବ । ମୁଁ ତା'ର ପ୍ରାଣରକ୍ଷା କରିବି ।' ସେ ଏପରି ଚିନ୍ତା କରୁଥିବା ବେଳେ ଅଗ୍ନିଶର୍ମା ଗୃହ ମଧ୍ୟରେ ପ୍ରବେଶ କଲେ । ଶାଶୁ ଶ୍ୱଶୁର ପ୍ରଭୃତି ଜାମାତାଙ୍କୁ ଦେଖି ଆନନ୍ଦିତ ହୋଇଉଠିଲେ । ସେ ଏକାକୀ ଆସିଥିବାର କାରଣ ଜିଜ୍ଞାସା କରନ୍ତେ ଅଗ୍ନିଶର୍ମା ପିତାମାତାଙ୍କ ଅଜ୍ଞାତସାରରେ ଚାଲିଆସିଥିବା ବ୍ୟକ୍ତ କଲେ । ତାଙ୍କର ଯଥୋଚିତ ସ୍ନାନଭୋଜନ ଇତ୍ୟାଦିର ବ୍ୟବସ୍ଥା କରାଗଲା । ରାତିରେ ବେଶଭୂଷାରେ ବିଭୂଷିତା ପତ୍ନୀ

ଆସି ତାଙ୍କ ଶୟନ କକ୍ଷରେ ପ୍ରବେଶ କଲା । ପଥକ୍ଲାନ୍ତି ଯୋଗୁଁ ଅଗ୍ନିଶର୍ମା ନିଦ୍ରିତ ହୋଇପଡ଼ିଥାନ୍ତି । ଭାର୍ଯ୍ୟା ତାଙ୍କୁ ଶୋଇଯାଇଥିବା ଦେଖି ବାହାରକୁ ବାହାରି ଆସି ତା'ର ଉପପତି ନିକଟରେ ଯାଇ ପହଞ୍ଚିଲା । ଉପପତି ଜଣକ ଥିଲା ଗୋଟିଏ ଚୋର । ତାକୁ ଶୂଳି ଦିଆଯାଇଥାଏ । ସେ ଶୂଳି ଉପରେ ଝୁଲୁଥାଏ । ତାକୁ ମୃତ ଦେଖି ତା' ମଧ୍ୟରେ ଗୋଟିଏ ପ୍ରେତ ପ୍ରବେଶ କରିଯାଇଥାଏ । ସ୍ତ୍ରୀଟି ଯାଇ ଚୋରର ମୃତପିଣ୍ଡକୁ ଆଲିଙ୍ଗନ କରିବାକୁ ଲାଗିଲା । ସେ ତାର ମୁଖମଣ୍ଡଳକୁ ଚୁମ୍ବନ କରୁଥାଏ । ଏହି ଅବସରରେ ମୃତପିଣ୍ଡ ମଧ୍ୟରେ ଥିବା ପ୍ରେତ ତାର ନାକଟିକୁ କାମୁଡ଼ିଦେଲା । ଏଥିରେ ଭୟଭୀତ ହୋଇ ସେ ସେଠାରୁ ପଳାୟନ କରି ଆସି ନିଜ ଶୟନକକ୍ଷରେ ପ୍ରବେଶ କଲା । ତାର ବିକ୍ଷତ ନାସିକାରୁ ରକ୍ତ ଝରୁଥାଏ ।

ସେହି କୁଳଟା ଛୁରୀକାଟିଏ କୋଷମୁକ୍ତ କରି ନିଦ୍ରିତ ଥିବା ପତିଙ୍କ ହାତରେ ଧରାଇଦେଲା ଏବଂ ଖୁବ୍ ଜୋର୍‌ରେ ଚିତ୍କାର କଲା—'ଓଃ ଓଃ, ମୁଁ ମରିଗଲି ମରିଗଲି । ମୋର ଏହି ଚଣ୍ଡାଳସ୍ୱାମୀ ବିନାକାରଣରେ ମୋର ନାକ କାଟି ପକାଇଛି ।' ତାର ଚିତ୍କାରରେ ପରିବାରର ସମସ୍ତେ ସେଠାକୁ ଦୌଡ଼ି ଆସିଲେ । ତା' ନାକରୁ ରକ୍ତ ଝରୁଥିବା ଦେଖି ଅଗ୍ନିଶର୍ମାଙ୍କୁ ସମସ୍ତେ ମିଶି ପ୍ରହାର କରିବାକୁ ଲାଗିଲେ । ପରଦିନ ସକାଳୁ ରାଜାଙ୍କ ନିକଟରେ ଫେରାଦ କରାଗଲା । ରାଜା ମୃତ୍ୟୁଦଣ୍ଡ ଆଦେଶ ଦେଇ ତାକୁ ଘାତୁକମାନଙ୍କ ହସ୍ତରେ ସମର୍ପଣ କଲେ । ବିନା କାରଣରେ ବିବାହିତା ଭାର୍ଯ୍ୟା ଉପରେ ଅତ୍ୟାଚାରପାଇଁ ଏହାହିଁ ଥିଲା ଏକମାତ୍ର ଦଣ୍ଡ ।

ଅଗ୍ନିଶର୍ମାଙ୍କୁ ଘାତୁକମାନେ ବଧସ୍ଥଳୀକୁ ନେଇଯାଉଥିବା ଦେଖି ରାତ୍ରିର ସମସ୍ତ ଘଟଣା ଲକ୍ଷ୍ୟ କରୁଥିବା ଶକୁନଦେବୀ ମନେମନେ ଭାବିଲେ, 'ବର୍ତ୍ତମାନ ଏହି ନିରୀହ ମୂର୍ଖଟିକୁ ଅପଶକୁନର ଫଳ ମିଳିଯାଇଛି । କିନ୍ତୁ ଅପଶକୁନଗୁଡ଼ିକୁ ସେ ଯାହା ଦୀର୍ଘଜୀବୀ ହୁଅ ବୋଲି କହିଥିଲା, ସେଥିପାଇଁ ଏହାର ପ୍ରାଣରକ୍ଷା କରିବା ଆବଶ୍ୟକ ।' ସେ ଅଲକ୍ଷିତଭାବେ ଆକାଶ ମାର୍ଗରେ ରହି କହିଲେ, 'ରେ ଘାତୁକମାନେ ! ଏହି ବ୍ରାହ୍ମଣ ସନ୍ତାନ ନିର୍ଦ୍ଦୋଷ । ତାହାକୁ ବଧ କରନାହିଁ । ଶୂଳି ଉପରେ ଚଢ଼ାଯାଇଥିବା ଚୋରର ଦାନ୍ତ ଭିତରେ ଏହି ଦୁଷ୍ଟା ସ୍ତ୍ରୀଟିର ନାକ ଲାଗି ରହିଛି । ତୁମେମାନେ ନିଜେ ଯାଇ ଦେଖିଆସ ।' ଦେବୀ ରାତିରେ ଘଟିଥିବା ସମସ୍ତ ଘଟଣା ସେମାନଙ୍କୁ କହି ଶୁଣାଇଲେ ।

ଶୂନ୍ୟବାଣୀରେ ବିଶ୍ୱାସକରି ଘାତୁକମାନେ ନିଜ କର୍ତ୍ତବ୍ୟରୁ ନିବୃତ୍ତ ହେଲେ । ରାଜାଙ୍କୁ ଏ ସମ୍ପର୍କରେ ଅବଗତ କରାଗଲା । ସେ ନିଜେ ଯାଇ ଶୂଳି ଉପରେ ଥିବା ଚୋର

ମୁହଁରେ ପାପିଷ୍ଠା ସ୍ତ୍ରୀର ଛିନ୍ନ ନାସିକାଟି ଦେଖିବାକୁ ପାଇଲେ । ଅଗ୍ନିଶର୍ମା ପ୍ରାଣଦଣ୍ଡରୁ ମୁକ୍ତିଲାଭ କରି ସ୍ୱଗୃହକୁ ଫେରିଗଲା । ରାଜା ସ୍ତ୍ରୀଟିକୁ ବନ୍ଦିଶାଳାରେ ନିକ୍ଷେପ କରି ତା'ର ଗୋତ୍ରଜମାନଙ୍କର ମଧ୍ୟ ଦଣ୍ଡବିଧାନ କଲେ ।

ମହାରାଜ୍ ! ସ୍ତ୍ରୀମାନଙ୍କ ଚରିତ୍ର ସାଧାରଣତଃ ଏହିପରି ହିଁ ହୋଇଥାଏ ।' ରାଜା ବିକ୍ରମାଦିତ୍ୟ ମଧ୍ୟ ସଚିବଙ୍କ କଥାକୁ ସମର୍ଥନ ଜଣାଇଲେ ।

ରାଜାଙ୍କ ନିକଟରେ ଧୂର୍ତ୍ତ ମୂଳଦେବ ବସିଥାନ୍ତି । ସେ ରାଜାଙ୍କ ସହିତ ସମ୍ମତ ହୋଇପାରିଲେ ନାହିଁ । କହିଲେ, 'ମହାରାଜ୍ ! କେତେକ ସ୍ତ୍ରୀ ନିଶ୍ଚିତ ଭାବେ ଏହିପରି ପାପିଷ୍ଠା, କିନ୍ତୁ ତା' ବୋଲି ସଂସାରରେ କଣ ସତୀସାଧ୍ୱୀ ସ୍ତ୍ରୀ ନାହାଁନ୍ତି ? ବିଷାକ୍ତ ଲତା ସହିତ ଆମ୍ବଗଛ ତ ପୁଣି ଅଛି ! ଏ ସମ୍ପର୍କରେ ମୁଁ ନିଜ ଅନୁଭବରୁ ଗୋଟିଏ ଘଟଣା କହୁଛି, ଶୁଣନ୍ତୁ–

## ମୂଳଦେବ ଓ ବ୍ରାହ୍ମଣକୁମାରୀ କଥା

ପାଟଳିପୁତ୍ର ବିଳାସୀ ନାଗରିକମାନଙ୍କପାଇଁ ଏକ ପ୍ରସିଦ୍ଧ ନଗରୀ । ଏହାର ପ୍ରଶଂସା ଶୁଣି ଏଠାରେ ଥିବା ନାଗରିକମାନଙ୍କ ଚତୁରତା ପରୀକ୍ଷା କରିବାପାଇଁ ଏକଦା ମୁଁ ସେ ନଗରୀରେ ଯାଇ ପହଞ୍ଚିଲି । ମୋ ସହିତ ଶଶୀ ମଧ୍ୟ ଥାନ୍ତି । ଆମେ ନଗର ବାହାରେ ଥିବା ଗୋଟିଏ ପୁଷ୍କରିଣୀ କୂଳରେ କେତେଜଣ ମହିଳାଙ୍କୁ ଦେଖିବାକୁ ପାଇଲୁ । ସେମାନେ ପୁଷ୍କରିଣୀରେ ବସ୍ତ୍ରସବୁ ଧୋଉଥାନ୍ତି । ମୁଁ ସେମାନଙ୍କ ମଧ୍ୟରୁ ଜଣକୁ ପଚାରିଲି, 'ସାଧ୍ୱି ! ଏଠାରେ ଯାତ୍ରୀମାନେ କେଉଁଠି ରହନ୍ତି ?' ସେ ଉତ୍ତର ଦେଲା 'ଏଠାରେ ପୁଷ୍କରିଣୀ ତଟରେ ଚକ୍ରବାକମାନେ ରହନ୍ତି, ଜଳରେ ମାଛସବୁ ରହନ୍ତି, ପଦ୍ମଫୁଲ ଭିତରେ ଭ୍ରମର ସବୁ ରହନ୍ତି । ଯାତ୍ରୀମାନେ ରହୁଥିବା ସ୍ଥାନ ମୁଁ ଜାଣେନାହିଁ ।' ଏହି ବୟସ୍କା ସ୍ତ୍ରୀଠାରୁ ଏପରି ବକ୍ରୋକ୍ତିପୂର୍ଣ୍ଣ ଉତ୍ତର ଶୁଣି ମୁଁ ଶଶୀ ସହିତ ନଗର ମଧ୍ୟରେ ପ୍ରବେଶ କଲି । ରଜକିନୀର ଚାତୁର୍ଯ୍ୟରେ ଆମେ ମୁଗ୍ଧ ହେଲୁ ।

ନଗର ମଧ୍ୟରେ ବୁଲୁଥିବା ବେଳେ ଦେଖିଲୁ ଗୋଟିଏ ଘରର ଦ୍ୱାର ନିକଟରେ ପିଲାଟିଏ ବସି କାନ୍ଦୁଛି । ତା' ଆଗରେ ଗୋଟିଏ ଥାଳିରେ ଗରମ ଗରମ କ୍ଷିରି ବଢ଼ାହୋଇଥାଏ । ତାକୁ ଦେଖି ଶଶୀ ମୋତେ କହିଲେ, 'ଦେଖ, ପିଲାଟି କେଡ଼େ ମୂର୍ଖ । ଆଗରେ ବଢ଼ା ହୋଇଥିବା ଖିରି ନଖାଇ ଅଯଥା କାନ୍ଦିକାନ୍ଦି ନିଜକୁ କଷ୍ଟ ଦେଉଛି ।' ତାଙ୍କ କଥା ଶୁଣି ପିଲାଟି ଆଖି ମଳିମଳି କହିଲା, 'ମୁଁ କାହିଁକି ମୂର୍ଖ ହେବି ? ତମେ ଏକା ମୂର୍ଖ । ମୁଁ କାନ୍ଦିବାରେ କେତେ ଲାଭ ତମେ କୁଆଡୁ ବୁଝିବ ? ଖିରି ଧୀରେ ଧୀରେ ଥଣ୍ଡା

ହେଲେ ଅଧିକ ମିଠା ଲାଗେ; ତାର ପରିମାଣ ବି ଅଧିକ ହୋଇଯାଏ । ଦ୍ୱିତୀୟ କଥା ହେଲା କାନ୍ଦିଲେ କଫସବୁ ବାହାରିପଡ଼େ । ମୋର କାନ୍ଦିବାରେ ଏତେ ଲାଭ । ମୁଁ ମୂର୍ଖଙ୍କ ଭଳି କାନ୍ଦୁନାହିଁ । ତମେ ସବୁ ମୂର୍ଖ ଥିବାରୁ ମୋର ଅଭିପ୍ରାୟ ବୁଝିପାରିଲ ନାହିଁ ।' ପିଲାଟିର କଥା ଶୁଣି ଆମେ ନିଜର ମୂର୍ଖତାପାଇଁ ଲଜ୍ଜିତ ହେଲୁ ।

ପାଟଳିପୁତ୍ରରେ ଜନ୍ମ ନେଇଥିବା ଶିଶୁର ବୁଦ୍ଧିମତ୍ତାରେ ବିସ୍ମିତ ହୋଇ ଆମେ ସେଠାରୁ ଦୂରେଇଗଲୁ । ଆଉ କିଛିଦୂର ଯିବା ପରେ ଆମ୍ବଗଛରେ ଚଢ଼ି ଆମ୍ବ ତୋଳୁଥିବା ଗୋଟିଏ ସୁନ୍ଦରୀ ବାଳିକା ଆମର ଦୃଷ୍ଟି ଆକର୍ଷଣ କଲା । ତା' ପରିବାରର ଅନ୍ୟମାନେ ଚାକରବାକରଙ୍କ ସହିତ ତଳେ ଠିଆ ହୋଇଥାନ୍ତି । ଆମେ ନିକଟକୁ ଯାଇ ତାକୁ କିଛି ଆମ୍ବ ମାଗିଲୁ । ସେ ଆମ ଆଡ଼କୁ ଚାହିଁ କହିଲା, 'ଗରମ ଆମ୍ବ ଖାଇବ ନା ଥଣ୍ଡା ଆମ୍ବ ଖାଇବ ।' ତା' କଥାରେ ଆମେ ଆଶ୍ଚର୍ଯ୍ୟ ହୋଇ ଦ୍ୱନ୍ଦ୍ୱରେ ପଡ଼ିଗଲୁ । ମୁଁ କହିଲି, 'ସୁନ୍ଦରି ! ଆମେ ପ୍ରଥମେ ଗରମ ଆମ୍ବ ଖାଇବୁ, ପରେ ଥଣ୍ଡା ।' ମୋ କଥା ଶୁଣି ସେ କେତୋଟି ଆମ୍ବ ତଳେ ପକାଇଦେଲା । ଆମେ ଦୁହେଁ ପାଟିରେ ଫୁଙ୍କି ଫୁଙ୍କି ତା' ଦେହରୁ ଧୂଳି ଝାଡ଼ି ଆମ୍ବଗୁଡ଼ିକ ଖାଇଲୁ । ବାଳିକାଟି ହସିହସି କହିଲା, 'ଦେଖିଲ, ମୁଁ ତୁମକୁ କେମିତି ଗରମ ଆମ୍ବ ଦେଲି ।' ଆମେ କିଛି ବୁଝିନପାରି ତାକୁ ଚାହିଁ ରହିବାରୁ ସେ ପୁଣି ଆମକୁ ଉପହାସ କଲାପରି କହିଲା, 'ଗରମ ନଥିଲେ ତମେ ତାକୁ ଫୁଙ୍କି ଫୁଙ୍କି କାହିଁକି ଖାଇଥାନ୍ତ । ଏବେ ଥଣ୍ଡା ଆମ୍ବ ଉତ୍ତରୀୟ ପ୍ରସାରି ଧର ।' ଏହା କହି ସେ ଆଉ କିଛି ଆମ୍ବ ଆମ ଗାମୁଛାରେ ପକାଇଦେଲା । ଏଥିରେ ତା'ର ଚାକରବାକର ଓ ଭାଇବନ୍ଧୁ ହସି ଉଠିବାରୁ ଆମେ ଲଜ୍ଜିତ ହୋଇ ସେଠାରୁ ପଳାୟନ କଲୁ ।

କିଛି ଦୂର ଗଲାପରେ ମୁଁ ଶଶୀ ସହିତ ଅନ୍ୟ ମିତ୍ରମାନଙ୍କୁ କହିଲି, 'ବାଳିକାଟି ନିଜ ଚାତୁର୍ଯ୍ୟ ବଳରେ ଆମକୁ ଲଜ୍ଜିତ କରିଛି । ମୁଁ ତା'ର ପ୍ରତିଶୋଧ ନେବାକୁ ଚାହେଁ । ଯଦି ମୁଁ ନିଜ ବୁଦ୍ଧି ବଳରେ ତାକୁ ବିବାହ ନକରେ ତେବେ ମୋର ଧୂର୍ତ୍ତପଣର ସାର୍ଥକତା କେଉଁଠି ?'

ପରଦିନ ଆମେ କନ୍ୟାଟିର ଘର ଖୋଜି ବାହାରକଲୁ । ନିଜକୁ କୁଳୀନ ବ୍ରାହ୍ମଣ ବେଶରେ ସଜ୍ଜିତ କରି ତା' ଗୃହ ଦ୍ୱାରରେ ଯାଇ ପହଞ୍ଚିଲୁ । ଛଦ୍ମବେଶରେ ଥିବାରୁ ଆମକୁ ଚିହ୍ନିବା ସେମାନଙ୍କ ପକ୍ଷରେ ସମ୍ଭବ ନଥିଲା । ଆମେ ସେଠାରେ ଉଚ୍ଚସ୍ୱରରେ ବେଦପାଠ ଆରମ୍ଭ କଲୁ । କନ୍ୟାପିତା ଦେବସ୍ୱାମୀ ନିକଟକୁ ଆସି ଆମର ପରିଚୟ ଓ ଆସିବାର କାରଣ ଜିଜ୍ଞାସା କଲେ । ମୁଁ କହିଲି, 'ଆମେ ମାୟାପୁରୀରୁ ଆସିଛୁ । ଏଠାରେ କୌଣସି ବିଶିଷ୍ଟ ବିଦ୍ୱାନ୍‌ଙ୍କ ନିକଟରୁ ବିଦ୍ୟା ଶିକ୍ଷା କରିବା ଆମର ଲକ୍ଷ୍ୟ ।' ଯଜ୍ଞସ୍ୱାମୀ ଜଣେ

ବିଦ୍ୱାନ୍ ଓ ଗୁଣଗ୍ରାହୀ ବ୍ରାହ୍ମଣ । ତାଙ୍କଠାରେ ଧନର ଅଭାବ ନଥିଲା । ସେ ଆମ ପରି ବ୍ରାହ୍ମଣମାନଙ୍କୁ ଅତିଥି ରୂପେ ପାଇ କହିଲେ, 'ଆପଣମାନେ ଦୂରଦେଶରୁ ଆସିଛନ୍ତି । ବର୍ତ୍ତମାନ ଚତୁର୍ମାସ୍ୟା ଆଗତ । ଦୟାପୂର୍ବକ ମୋ ଗୃହରେ ଏହି ଚାରିମାସ ଅବସ୍ଥାନ କଲେ ମୁଁ ଧନ୍ୟ ହେବି ।' ମୁଁ ତାଙ୍କୁ ଜଣାଇଲି, 'ବ୍ରାହ୍ମଣ ଦେବ ! ଆମେ ଆପଣଙ୍କ ଅନୁରୋଧ ରକ୍ଷା କରିବୁ । କିନ୍ତୁ ଆପଣ ଚତୁର୍ମାସ୍ୟା ଶେଷରେ ମୁଁ ଯାହା ମାଗିବି ତାହା ଦେବାକୁ ପଡ଼ିବ ।' ବିନୀତ ଭାବରେ ଯଜ୍ଞସ୍ୱାମୀ କହିଲେ 'ଯଦି ଆପଣ ମାଗିବା ବସ୍ତୁ ଅପୂର୍ବ ନ ହୋଇଥାଏ ତା'ହେଲେ ମୁଁ ନିଶ୍ଚୟ ପ୍ରଦାନ କରିବି ।'

ଆମେ ବ୍ରାହ୍ମଣଙ୍କ ପ୍ରତିଜ୍ଞାରେ କାର୍ଯ୍ୟସିଦ୍ଧି ହେଲା ବୋଲି ମନେ କରି ସେଠାରେ ଅବସ୍ଥାନ କଲୁ । ଚତୁର୍ମାସ୍ୟା ଶେଷ ହେଲା । ମୁଁ ବ୍ରାହ୍ମଣ ଯଜ୍ଞସ୍ୱାମୀଙ୍କୁ କହିଲି, 'ଆମେ ବର୍ତ୍ତମାନ ଯାଉଛୁ । ପୂର୍ବ ପ୍ରତିଜ୍ଞାନୁଯାୟୀ ଆପଣ ଆମର ଅଭିଳାଷ ପୂରଣ କରନ୍ତୁ ।' ବ୍ରାହ୍ମଣ ଆମ ଅଭିଳାଷ ଜାଣିବାପାଇଁ ଚାହିଁଲେ । ଶଶୀ ମୋତେ ଲକ୍ଷ୍ୟକରି ତାଙ୍କୁ କହିଲେ, 'ଏ ମହାଶୟ ହେଉଛନ୍ତି ଆମମାନଙ୍କ ମୁଖ୍ୟ । ଆପଣ ତାଙ୍କ ହସ୍ତରେ ନିଜ କନ୍ୟାକୁ ସମର୍ପଣ କରନ୍ତୁ ।'

ବ୍ରାହ୍ମଣ ତ ବଚନବଦ୍ଧ ଥିଲେ । ଶଶୀ କଥାଶୁଣି ସେ ଭାବିଲେ, 'ଏମାନେ ମୋତେ ଠକି ଦେଇଛନ୍ତି । ଅବଶ୍ୟ ଏଥିରେ ଅସୁବିଧା କଣ ? ଯୁବକଟି ରୂପବାନ୍ ଓ ଗୁଣବାନ୍ ମଧ ।' ଏହିପରି ଚିନ୍ତା କରି ସେ ତାଙ୍କ କନ୍ୟାକୁ ଯଥାବିଧି ମୋ ସହିତ ବିବାହ ଦେଲେ ।

ରାତିରେ ଆମେ ଶୟନ କକ୍ଷରେ ପ୍ରବେଶ କଲୁ । ମୁଁ କନ୍ୟାଟିକୁ ହସିହସି କହିଲି 'ପ୍ରିୟେ ! ତୁମର ସେହି ଗରମ ଓ ଥଣ୍ଡା ଆମ୍ବ କଥା ମନେଅଛି ?' ମୋ କଥା ଶୁଣିବା ମାତ୍ରେ ସେ ମୋତେ ଚିହ୍ନିପାରିଲା । ସ୍ମିତହାସ୍ୟ ପ୍ରକାଶ କରି କହିଲା, 'ନଗରବାସୀମାନେ ଗ୍ରାମ୍ୟ ମୂର୍ଖମାନଙ୍କୁ ଏହିପରି ହିଁ ବିଡ଼ମ୍ବିତ କରିଥାନ୍ତି ।' ତା କଥା ଶୁଣି ମୋ ମନରେ କ୍ରୋଧ ହେଲା । ମୁଁ ଟିକିଏ ରୁକ୍ଷ ହୋଇ କହିଲି, 'ହେ ନଗରବାସିନି ! ମୋ ପରି ମୂର୍ଖଠାରେ ତୁମର ଆବଶ୍ୟକତା କଣ ? ତୁମେ ଏଠାରେ ସୁଖରେ ରହ । ମୁଁ ଏଠାରୁ ଚାଲିଯାଉଛି । ତୁମ ସହିତ ଆଉ ସାକ୍ଷାତ ହେବନାହିଁ ।' ମୋ ପ୍ରତିଜ୍ଞା ଶୁଣି ସେ କହିଲା, 'ତା'ହେଲେ ତୁମେ ମଧ ମୋର ପ୍ରତିଜ୍ଞା ଶୁଣ । ମୁଁ ତୁମ ଔରସ ଜାତ ପୁତ୍ରଦ୍ୱାରା ନିଶ୍ଚୟ ତୁମକୁ ଧରି ଆଣିବି ।' ଉଭୟେ ଏହିପରି ଅନ୍ୟୋନ୍ୟରେ ପ୍ରତିଜ୍ଞା କରି ପରସ୍ପର ବିପରୀତ ମୁଖରେ ଶୟନ କଲୁ । ସେ ନିଦ୍ରା ଯାଇଥିବା ବେଳେ ମୁଁ ମୋର ନାମାଙ୍କିତ ମୁଦ୍ରିକାଟି ତା' ଆଙ୍ଗୁଠିରେ ପିନ୍ଧାଇ ଦେଲି ଏବଂ ମଧ୍ୟରାତ୍ରିରେ ଶୟନ କକ୍ଷରୁ ବାହାରି ମିତ୍ର ଓ ପରିଜନମାନଙ୍କ ସହିତ ଉଜ୍ଜୟିନୀ ଫେରିଗଲି । କନ୍ୟାଟିର ଚତୁରତା ଦେଖିବାପାଇଁ ମୁଁ ଉତ୍କଣ୍ଠିତ ଥାଏ ।

ପ୍ରଭାତରୁ ଉଠି ସେହି ବ୍ରାହ୍ମଣ କନ୍ୟା ଦେଖିଲା ଯେ ସ୍ୱାମୀ ତାକୁ ପରିତ୍ୟାଗ କରି ଚାଲିଯାଇଛନ୍ତି । ସେ ମୋତେ ନଦେଖି ମୋର ପ୍ରତିଜ୍ଞା କଥା ସ୍ମରଣ କଲା । ତା' ଅଙ୍ଗୁଳିରେ ମୋର ନାମାଙ୍କିତ ମୁଦ୍ରିକା ଦେଖି ଭାବିଲା, 'ସେ ତ ମୋତେ ନିଜ ପ୍ରତିଜ୍ଞା ରକ୍ଷା କରିବାପାଇଁ ଛାଡ଼ି ଚାଲିଯାଇଛନ୍ତି । ତେଣୁ ମୁଁ ତାଙ୍କପାଇଁ ଆଉ ଦୁଃଖ ନକରି ମୋର ପ୍ରତିଜ୍ଞା ରକ୍ଷା କରିବା ନିମିତ୍ତ ଉଦ୍ୟମ କରିବି । ମୁଦ୍ରିକାଟିରେ ମୂଳଦେବଙ୍କ ନାମ ଲେଖାଅଛି । ତେଣୁ ଏ ନିଶ୍ଚିତଭାବେ ସେହି ପୃଥିବୀ ପ୍ରସିଦ୍ଧ ଧୂର୍ତ୍ତ ଶିରୋମଣି ମୂଳଦେବ ହେବେ । ଉଜ୍ଜୟିନୀ ତାଙ୍କ ବାସସ୍ଥାନ ବୋଲି ଶୁଣିଛି । ତେଣୁ କୌଶଳକ୍ରମେ ସେଠାକୁ ଯାଇ ମୋର କାର୍ଯ୍ୟ ସିଦ୍ଧ କରିବାକୁ ହେବ ।'

ମନେ ମନେ ଏପରି ସ୍ଥିର କରି ସେ ଛଳନାପୂର୍ବକ ପିତାଙ୍କୁ ଯାଇ ଜଣାଇଲା ଯେ ସ୍ୱାମୀ ତାକୁ ପରିତ୍ୟାଗ କରି ଚାଲିଯାଇଥିବା ଯୋଗୁଁ ପିତୃଗୃହରେ ସୁଖଭୋଗ କରି ରହିବା ତା' ପକ୍ଷରେ ଅସମୀଚୀନ । ତେଣୁ ବିଭିନ୍ନ ତୀର୍ଥକ୍ଷେତ୍ର ଭ୍ରମଣ କରି ସେ ପୂର୍ବଜନ୍ମାର୍ଜିତ ପାପରାଶି କ୍ଷାଳନ କରିବାପାଇଁ ଚାହେଁ । ପିତା ଏଥିରେ ସମ୍ମତ ହେଲେନାହିଁ । କିନ୍ତୁ କନ୍ୟା ତାଙ୍କୁ ବାରମ୍ବାର ଅନୁରୋଧ ଜଣାଇ ଶେଷରେ ତାଙ୍କ ଅନୁମତି ପ୍ରାପ୍ତ ହେଲା । ସେ ବହୁ ଧନରାଶି, ବହୁମୂଲ୍ୟ ଅଳଙ୍କାର ଏବଂ କିଛି ବିଶ୍ୱସ୍ତ ଭୃତ୍ୟ ଓ ପରିଚାରିକାଙ୍କୁ ସଙ୍ଗରେ ଧରି ଉଜ୍ଜୟିନୀରେ ପହଞ୍ଚିଲା ।

କନ୍ୟାଟିର ରୂପଲାବଣ୍ୟ ତ ଅଲୌକିକ ଥିଲା । ସେ ନିଜକୁ ଗୋଟିଏ ବେଶ୍ୟାର ବେଶଭୂଷାରେ ଭୂଷିତ କରି ଆବଶ୍ୟକୀୟ ଉପକରଣ ସବୁ ସଂଗ୍ରହ କଲା । ଭୃତ୍ୟ ଓ ପରିଚାରିକାମାନେ ମଧ୍ୟ ଅନୁରୂପ ଭାବେ ସଜ୍ଜିତ ହେଲେ । ସେ ନିଜକୁ ସୁମଙ୍ଗଳା ନାମରେ ପରିଚିତ କରାଇଲା । ଭୃତ୍ୟମାନେ ପ୍ରଚାର କଲେ ଯେ କାମରୂପରୁ ଜଣେ ରୂପବତୀ ଗଣିକା ଆସି ଉଜ୍ଜୟିନୀରେ ଅବସ୍ଥାନ କରୁଛନ୍ତି । ଉତ୍ତମ ତ୍ୟାଗଶୀଳ ପୁରୁଷ ନହେଲେ କେହି ତାଙ୍କ ସହିତ ସାକ୍ଷାତ କରିପାରିବେ ନାହିଁ । ଏହା ଶୁଣି ଉଜ୍ଜୟିନୀର ସର୍ବଶ୍ରେଷ୍ଠ ଗଣିକା ଦେବଦତ୍ତା ଆସି ତା' ସହିତ ମିତ୍ରତା ସ୍ଥାପନ କଲା । ବ୍ରାହ୍ମଣ କନ୍ୟା ନିଜ ବାସଗୃହ ପରିବର୍ତ୍ତେ ଏକ ବହୁମୂଲ୍ୟ ଭବନରେ ଯାଇ ରହିବାକୁ ଲାଗିଲା ।

ପ୍ରଥମେ ମୋର ମିତ୍ର ଶଶୀ ତା'ର ସୁଖ୍ୟାତିରେ ଆକୃଷ୍ଟ ହୋଇ ଭୃତ୍ୟମାନଙ୍କଦ୍ୱାରା ତାଙ୍କର ପରିଚୟ ଓ ବହୁମୂଲ୍ୟ ଉପହାର ନିବେଦନ କଲେ । ସେ ସେହି ଭୃତ୍ୟମାନଙ୍କୁ ଫେରାଇଦେଇ କହିଲା ଯେ ଉପହାରରେ ତା'ର କୌଣସି ଆଗ୍ରହ ନାହିଁ କି ପଶୁତୁଲ୍ୟ କୌଣସି ପୁରୁଷ ସହିତ କାମକ୍ରୀଡ଼ା କରିବାର ଲାଳସା ମଧ୍ୟ ନାହିଁ । ଯେଉଁ ବ୍ୟକ୍ତି ତା'ର ନିର୍ଦ୍ଦେଶ ଅନୁଯାୟୀ ତା' ନିକଟରେ ଉପସ୍ଥିତ ହେବ, ସେ ତାକୁ ଗ୍ରହଣ କରିବ । ଶଶୀ

ତାର ସର୍ତ୍ତ ସ୍ୱୀକାର କରି ସନ୍ଧ୍ୟାବେଳେ ସୁମଙ୍ଗଳାର ବାସଭବନରେ ଯାଇ ଉପସ୍ଥିତ ହେଲେ ।

ପ୍ରଥମ ଦ୍ୱାରରେ ଦ୍ୱାରପାଳକୁ ନିଜର ପରିଚୟ ଦେବାରୁ ସେ କହିଲା, 'ସ୍ୱାମିନୀ ଯାହା କହିଛନ୍ତି ତୁମକୁ ସେପରି କରିବାକୁ ହେବ । ତୁମେ ବୋଧହୁଏ ସ୍ନାନ ଶେଷ କରିଛ । କିନ୍ତୁ ଏଠାରେ ତୁମକୁ ପୁଣି ସ୍ନାନ କରିବାକୁ ପଡ଼ିବ । ତା'ନହେଲେ ମୁଁ ତୁମକୁ ଭିତରେ ପ୍ରବେଶ କରିବାପାଇଁ ଅନୁମତି ଦେଇପାରିବି ନାହିଁ ।' ଶଶୀ ସେଥିରେ ସମ୍ମତ ହେଲେ । ଦାସୀମାନେ ତାଙ୍କ ଶରୀରରେ ତୈଳ ମର୍ଦ୍ଦନ କରି, ସୁଗନ୍ଧିତ ହଳଦୀ ଲଗାଇ ଉତ୍ତମ ଭାବେ ସ୍ନାନ କରାଇଲେ । ସେତେବେଳକୁ ରାତ୍ରିର ପ୍ରଥମ ପ୍ରହର ଶେଷ ହୋଇଯାଇଥାଏ । ଶଶୀ ଯାଇ ଦ୍ୱିତୀୟ ଦ୍ୱାରରେ ପହଞ୍ଚିଲେ । ଦ୍ୱାରପାଳ କହିଲା 'ସ୍ନାନ ତ ଶେଷହେଲା । ବର୍ତ୍ତମାନ୍ ବେଶଭୂଷାରେ ଭୂଷିତ ହୁଅ ।' ଦାସୀମାନେ ତାଙ୍କୁ ଧରି ପ୍ରସାଧନକକ୍ଷକୁ ନେଇଗଲେ । ବସ୍ତ୍ର, ଆଭୂଷଣ, ଅନୁଲେପନ ଇତ୍ୟାଦିରେ ସଜ୍ଜିତ ହେଲାବେଳକୁ ରାତ୍ରିର ଦ୍ୱିତୀୟ ପ୍ରହର ଶେଷ ହେଲା ।

ଶଶୀ ତୃତୀୟ ଦ୍ୱାରରେ ଯାଇ ଉପସ୍ଥିତ ହେଲେ । ଦ୍ୱାରପାଳ କହିଲା, 'ଏଠାରେ ପ୍ରଥମେ ପାନ ଓ ଭୋଜନ ଶେଷକର । ତା'ପରେ ସ୍ୱାମିନୀଙ୍କ ସହିତ ସାକ୍ଷାତ ହେବ ।' ଶଶୀ ଭୋଜନ କକ୍ଷରେ ପ୍ରବେଶ କଲେ । ଦାସୀମାନେ ବିଭିନ୍ନ ପାନୀୟ ଓ ସୁମିଷ୍ଟ ଭୋଜନସାମଗ୍ରୀ ପରିବେଷଣ କରିଚାଲିଥାନ୍ତି । ଆହାର ପର୍ବଶେଷ ହେଲାବେଳକୁ ରାତ୍ରିର ତୃତୀୟ ପ୍ରହର ଶେଷ ହେଲା ।

ଏହାପରେ ଶଶୀ ଉଦ୍‌ବିଗ୍ନ ଚିତ୍ତରେ ଚତୁର୍ଥ ଦ୍ୱାରରେ ଯାଇ ପହଞ୍ଚିଲେ । ସେଠାରେ ଦ୍ୱାରପାଳ ତାଙ୍କୁ ଭର୍ତ୍ସନା କରିବା ପରି କହିଲା, 'ତୁମେ ତ ଜଣେ ମୂର୍ଖ ଓ ଗ୍ରାମ୍ୟ ପ୍ରେମିକ ପରି ମନେହେଉଛ । ଏଠାରୁ ଶୀଘ୍ର ଚାଲିଯାଅ । କାହିଁ ସୁମଙ୍ଗଳାଙ୍କ ପରି ପ୍ରଖ୍ୟାତଯଶା ଗଣିକା ଏବଂ କାହିଁ ତୁମପରି ଗ୍ରାମ୍ୟ ପ୍ରେମିକ । ରାତ୍ରିର ଶେଷ ପ୍ରହରରେ କିଏ କଣ ଗଣିକା ସହିତ ନବସଙ୍ଗମପାଇଁ ଆସିଥାଏ ? ଇଏ କଣ ସମ୍ଭୋଗର ସମୟ ? ଶୀଘ୍ର ଏଠାରୁ ବିଦାୟ ନିଅ । ନୋଚେତ୍ ତୁମର ଅମଙ୍ଗଳ ହୋଇପାରେ ।'

ଦ୍ୱାରପାଳଟିର ଆକୃତି ଅତ୍ୟନ୍ତ ଭୟଙ୍କର ଥିଲା । ଶଶୀ ତା'ର ରୁକ୍ଷ ଓ କଠୋର କଥାରେ ଭୟଭୀତ ହୋଇ ଉଦାସଚିତ୍ତରେ ସେଠାରୁ ଫେରିଆସିଲେ ।

ସୁମଙ୍ଗଳାର ଛଦ୍ମରୂପରେ ରହିଥିବା ସେହି ବୁଦ୍ଧିମତୀ ବ୍ରାହ୍ମଣ କନ୍ୟା ଉଜ୍ଜୟିନୀର ବହୁ ଧନଶାଳୀ କାମୁକଙ୍କୁ ଏହିପରି ପ୍ରବଞ୍ଚିତ କରୁଥାଏ ।

ତା'ର ସୁଖ୍ୟାତି ସହିତ ଏ ପ୍ରକାର ଆଚରଣର ବିବରଣୀ ଶୁଣି ମୋ ମନରେ ମଧ୍ୟ କୌତୂହଳ ଜାଗ୍ରତ ହେଲା । ଦୂତଦ୍ୱାରା ନିଜର ପରିଚୟ ଜଣାଇ ମୁଁ ସୁମଙ୍ଗଳାର ଅନୁମତି ପ୍ରାର୍ଥନା କଲି । ସେ ଆଗ୍ରହର ସହିତ ଦୂତଦ୍ୱାରା ତା'ର ସମ୍ମତି ଜଣାଇଲା । ମୁଁ ରାତ୍ରିର ପ୍ରଥମ ପ୍ରହରରେ ବେଶଭୂଷାରେ ଭୂଷିତ ହୋଇ ତା'ର ବାସଭବନରେ ଯାଇ ପହଞ୍ଚିଲି । ପ୍ରଥମ ତିନୋଟି ଦ୍ୱାରର ଦ୍ୱାରପାଳଙ୍କୁ ଯଥେଷ୍ଟ ଅର୍ଥଦାନ କରି ମୁଁ ଯଥାଶୀଘ୍ର ଶୟନକକ୍ଷର ଚତୁର୍ଥ ଦ୍ୱାର ନିକଟରେ ଯାଇ ଉପସ୍ଥିତ ହେଲି । ବୋଧହୁଏ ଦ୍ୱାରପାଳମାନେ ମୋର ଆଗମନ କଥା ପୂର୍ବରୁ ଜାଣିଥିଲେ । ମୁଁ ଉଚିତ ସମୟରେ ପହଞ୍ଚିଥିବାରୁ ଚତୁର୍ଥ ଦ୍ୱାରର ଦ୍ୱାରପାଳ ଅବଜ୍ଞା କରିପାରିଲା ନାହିଁ । ମୁଁ କକ୍ଷ ମଧ୍ୟରେ ପ୍ରବେଶ କରି ସୁମଙ୍ଗଳାକୁ ସାକ୍ଷାତ କଲି । ଛଦ୍ମବେଶରେ ଥିବା ଯୋଗୁଁ ତା'କୁ ଚିହ୍ନିବା ମୋ ପକ୍ଷରେ ସମ୍ଭବ ହେଲାନାହିଁ । ମୋତେ ଦେଖିବାମାତ୍ରେ ସେ ନିପୁଣା ଗଣିକାତୁଲ୍ୟ ମୋତେ ସ୍ୱାଗତ କରିନେଲା । ଶଯ୍ୟା ଉପରେ ବସାଇ ଅନୁରାଗ ପୂର୍ବକ ମୋ ସହିତ ବିଭିନ୍ନ କୌତୁକରେ ନିମଜ୍ଜିତ ହେଲା । ମୁଁ ସେହି ଅପୂର୍ବ ସୁନ୍ଦରୀ ଛଦ୍ମବେଶିନୀ ବ୍ରାହ୍ମଣ କନ୍ୟା ସହିତ ରାତ୍ରି ଯାପନ କଲି ।

ଗୋଟିଏ ରାତ୍ର ମଧ୍ୟରେ ସେ ମୋତେ ସମ୍ପୂର୍ଣ୍ଣ ବଶୀଭୂତ କରିନେଲା । ମୁଁ ବହୁଦିନ ପର୍ଯ୍ୟନ୍ତ ତା' ସହିତ ରହିଗଲି । ସେ ମଧ୍ୟ ମୁହୂର୍ତ୍ତକପାଇଁ ମୋ ପାଖରୁ ଦୂରେଇଯାଏ ନାହିଁ । କିଛିଦିନ ମଧ୍ୟରେ ସେ ଗର୍ଭବତୀ ହେଲା; ସ୍ତନର ଅଗ୍ରଭାଗ କୃଷ୍ଣବର୍ଣ୍ଣ ଦେଖାଗଲା ।

ଦିନେ ସେହି ଚାତୁର୍ଯ୍ୟମୟୀ ଗୋଟିଏ ଜାଲ୍‌ପତ୍ର ଆଣି ମୋତେ ଦେଖାଇଲା । ତାହା କାମରୂପସ୍ଥିତ ତା'ର କୌଣସି ଗଣିକାଧ୍ୟକ୍ଷା ଠାରୁ ଆସିଥାଏ । ମୁଁ ତାକୁ ପତ୍ରପାଠ କରିବାପାଇଁ କହିଲି । ସେଥିରେ ଲେଖାଥାଏ, 'ଶ୍ରୀକାମରୂପରୁ ଶ୍ରୀମାନ୍ ରାଜା ମାନସିଂହ ସୁମଙ୍ଗଳାଙ୍କୁ ଯଥାଶୀଘ୍ର ଫେରିଯିବାପାଇଁ ଆଦେଶ ଦେଉଅଛନ୍ତି । ନିଜ ଦେଶଛାଡ଼ି ଅନ୍ୟାନ୍ୟ ଦେଶରେ ଏତେଦିନ ଭ୍ରମଣ କରିବା ଉଚିତ ହେଉନାହିଁ । ଯଥାଶୀଘ୍ର ଏଠାକୁ ଫେରିଆସ ।' ପତ୍ରପାଠ ଶେଷକରି ସେ ଦୀର୍ଘନିଶ୍ୱାସ ତ୍ୟାଗକଲା । ତା'ର ଛଦ୍ମଦୁଃଖ ମୋତେ ମଧ୍ୟ ବ୍ୟଥିତ କରିପକାଇଲା । ସେ ମୋର ପାଦତଳେ ବସି କହିଲା, 'ମୁଁ ଆପଣଙ୍କୁ ଛାଡ଼ି ଯିବାପାଇଁ ବାଧ୍ୟ ହେଉଛି । ମୋ ଉପରେ କ୍ରୋଧ କରିବେ ନାହିଁ । ମୁଁ ଅନ୍ୟର ଅଧୀନା ।' ଏହିପରି ଛଳନା କରି ସେ ପାଟଳିପୁତ୍ର ଫେରିଗଲା । ମୁଁ ତା' ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲେ ସୁଦ୍ଧା ତା'ର ଅନୁଗମନ କରିପାରିଲି ନାହିଁ । ସେ ଅନ୍ୟର ଅଧୀନରେ ଥିବା ଜଣାଇଥିଲା ।

ପାଟଳିପୁତ୍ରରେ ସମୟକ୍ରମେ ସେ ଏକ ପୁତ୍ରକୁ ଜନ୍ମଦେଲା । ଉତ୍ତମରୂପେ ଲାଳନପାଳନ କରି ସେ ତାକୁ ବିଭିନ୍ନ ବିଦ୍ୟାରେ ପାରଙ୍ଗମ କରାଇବାପାଇଁ ଚେଷ୍ଟା କରୁଥାଏ । ପୁତ୍ରଟି ଦ୍ୱାଦଶ ବର୍ଷରେ ପଦାର୍ପଣ କଲା । ସେତେବେଳକୁ ସେ ସମସ୍ତ କଳା ଆହରଣ କରିସାରିଥାଏ । ଦିନେ ଅନ୍ୟ ବାଳକମାନଙ୍କ ସହିତ ଖେଳୁଥିବା ସମୟରେ ସେ ଜଣେ ଦାସୀର ପୁତ୍ରକୁ ଖୁବ୍ ଜୋର୍‌ରେ ଆଘାତ କଲା । ଏଥିରେ ରାଗିଯାଇ ଦାସୀ ପୁତ୍ର ଆକ୍ଷେପ କରି କହିଲା, 'ତୋର ବାପର ତ ଠିକଣା ନାହିଁ, ମୋତେ ଦାସୀପୁତ୍ର କହି ତୁ କଣ ପିଟୁଛୁ । ତୋ ମା ବିଦେଶରେ ବୁଲୁଥିବା ବେଳେ କେଉଁ ଅଜ୍ଞାତ ପୁରୁଷଠାରୁ ତୋତେ ଜନ୍ମଦେଇଛି । ମୁଁ ଦାସୀପୁତ୍ର ହେଲେ ତୁ ଗଣିକା ପୁତ୍ର ।' ଏଥିରେ ବାଳକଟି ଲଜ୍ଜାରେ ସେଠାରୁ ଚାଲିଆସିଲା । କାନ୍ଦି କାନ୍ଦି ମା'ଙ୍କ ନିକଟରୁ ପିତାଙ୍କ ପରିଚୟ ଜାଣିବାପାଇଁ ଚାହିଁବାରୁ ସେ କିଛି ସମୟ ଚିନ୍ତାକରି କହିଲେ ତୋ ପିତାଙ୍କ ନାମ ମୂଳଦେବ । ସେ ଆମକୁ ଛାଡ଼ି ଉଜ୍ଜୟିନୀ ଚାଲିଯାଇଛନ୍ତି ।' ଏହା କହି ସେ ସମସ୍ତ ବୃତ୍ତାନ୍ତ ତାକୁ ଜଣାଇଲା ।

ମା'ଙ୍କ କଥାରେ ବାଳକଟିର କୌତୂହଳ ବଢ଼ିଗଲା । ସେ ମା'ଙ୍କୁ କହିଲା, 'ମା' ତମେ ଚିନ୍ତା କର ନାହିଁ । ମୁଁ ପିତାଙ୍କୁ ଧରିଆଣି ତୁମର ପ୍ରତିଜ୍ଞା ପୂରଣ କରିବି ।' ମାତା ମୂଳଦେବଙ୍କର ସମ୍ପୂର୍ଣ୍ଣ ପରିଚୟ ଦେଇ ପୁତ୍ରକୁ ବିଦାୟ ଦେଲା ।

ବାଳକଟି ଉଜ୍ଜୟିନୀରେ ପହଞ୍ଚି ମୋର ସନ୍ଧାନ ନେଲା । ମୁଁ ଗୋଟିଏ ଜୁଆ ଆଡ୍ଡାରେ ବସି ଖେଳୁଥାଏ । ସେ ସେଠାରେ ଆସି ପହଞ୍ଚିଲା । କିଛି ସମୟ ଅପେକ୍ଷା କରିବା ପରେ ଅନ୍ୟ ଖେଳାଳି ଓ ଦର୍ଶକମାନଙ୍କଠାରୁ ମୋର ପରିଚୟ ପାଇ ମୁଁ ତା'ର ପିତା ବୋଲି ନିଶ୍ଚିତ ହେଲା । ସେ ଆମ ସହିତ ଖେଳିବାପାଇଁ ଚାହିଁବାରୁ ଆମେ କୌତୁକ ଦେଖିବା ନିମନ୍ତେ ତା'କୁ ବସାଇଲୁ । କିନ୍ତୁ ଚାହୁଁଚାହୁଁ ସେ ଆମ ସମସ୍ତଙ୍କୁ ଦ୍ୟୂତରେ ହରାଇଦେଲା । ବାରବର୍ଷ ବାଳକର ଧୂର୍ତ୍ତତା ଦେଖି ଆମେ ସବୁ ବିସ୍ମିତ ହେଲୁ । ଆମ ବିସ୍ମୟକୁ ଅଧିକ ବଢ଼ାଇଦେଇ ସେ ଜିଣିଥିବା ସମସ୍ତ ଧନରାଶି ଆମ୍ଭମାନଙ୍କ ମଧ୍ୟରେ ବିତରଣ କରିଦେଲା ।

ରାତିରେ ସେ କୌଶଳରେ ମୋର ଶୟନକକ୍ଷରେ ପ୍ରବେଶ କରି ମୋତେ ଖଟଉପରୁ ଉଠାଇ ତଳେ ପଡ଼ିଥିବା ତୁଳାଶେଯ ଉପରେ ଶୁଆଇଦେଲା । ସକାଳୁ ଉଠି ଦେଖିଲି ମୁଁ ଶୋଇଥିବା ଖଟଟି ସେଠାରୁ ଉଭେଇ ଯାଇଛି, ମୁଁ ଆସି ତଳେ ଶେଯ ଉପରେ ଶୋଇଛି । ଏଥିରେ ମୋତେ ହସ ମାଡ଼ିଲା । ମୁଁ ଲଜ୍ଜିତ ଓ ବିସ୍ମିତ ମଧ୍ୟ ହେଲି । ନିତ୍ୟକର୍ମ ଶେଷ କରି ମୁଁ ଯେତେବେଳେ ବଜାରକୁ ଗଲି ଦେଖିଲି ସେହି ବାଳକଟି ମୋର

ଖଟଟିକୁ ଧରି ବିକ୍ରି କରିବାପାଇଁ ବୁଲୁଛି । ମୁଁ କୌତୂହଳବଶତଃ ତା' ନିକଟକୁ ଯାଇ ପଚାରିଲି, 'କେତେଟଙ୍କା ଦେଲେ ଖଟଟି ବିକ୍ରି କରିବ ?' ଉତ୍ତରରେ ବାଳକଟି କହିଲା, 'ହେ ଧୂର୍ତ୍ତଶିରୋମଣି ! ଟଙ୍କା ଦେଇ ତୁମେ ଏହି ଖଟଟି କିଣିପାରିବ ନାହିଁ । ତୁମେ ଯଦି ଗୋଟିଏ ଅପୂର୍ବ ଓ ଅଦ୍ଭୁତ କଥା ଶୁଣାଇବ ତେବେ ମୁଁ ତୁମକୁ ଖଟଟି ଦେବି ।'

ମୁଁ ତା'ଠାରୁ ଏ ପ୍ରକାର ସର୍ତ୍ତ ଶୁଣି ଆହୁରି କୌତୂହଳୀ ହୋଇଉଠିଲି । ତାକୁ କହିଲି, 'ତା'ହେଲେ ମୁଁ ତୁମକୁ ଏପରି ଏକ କାହାଣୀ ଶୁଣାଉଛି । ତୁମେ ଏହା ସତ୍ୟ ବୋଲି ସମର୍ଥନ କରିବ । କିନ୍ତୁ ଯଦି ମୋ ପ୍ରତି ଅବିଶ୍ୱାସ କରି ଏହାକୁ ମିଥ୍ୟା ବୋଲି ପ୍ରମାଣ କରିବ ତେବେ ତୁମେ ତୁମ ପିତାଙ୍କ ସନ୍ତାନ ନୁହଁ, ଜାର ଜାତକ । ଏବଂ ମୁଁ ଖଟଟି ପାଇବି ।

ପ୍ରାଚୀନ କାଳରେ କୌଣସି ରାଜାଙ୍କ ରାଜ୍ୟରେ ଅନାବୃଷ୍ଟି ଦେଖାଦେଲା । ସେ ନାଗବାହନମାନଙ୍କ ଫୁତ୍କାରରେ ଜଳସିଞ୍ଚନ କରି ଶୂନ୍ୟର ପତ୍ନୀ ପିଠିରେ ଶସ୍ୟ ଜାତ କଲେ । ସେଥିରୁ ଏତେ ଶସ୍ୟ ଉତ୍ପାଦିତ ହେଲା ଯେ ରାଜା ଅବିଳମ୍ବେ ରାଜ୍ୟରୁ ଦୁର୍ଭିକ୍ଷ ଦୂର କଲେ । ରାଜାଙ୍କ ଏ ଅଦ୍ଭୁତ କୌଶଳ ଦେଖି ପ୍ରଜାମାନେ ତାଙ୍କୁ ପୂଜା କରିବାକୁ ଲାଗିଲେ ।'

ମୋ କାହାଣୀ ଶୁଣି ବାଳକଟି ଧୀରେଧୀରେ ହସିବାକୁ ଲାଗିଲା । 'ତୁମେ ଯାହା କହିଲ ସେଥିରେ ଆଶ୍ଚର୍ଯ୍ୟ କଣ ଅଛି । ଏ ତ ଏକ ସାଧାରଣ କଥା । ନାଗ ଅର୍ଥ ହସ୍ତୀ, ହସ୍ତୀମାନଙ୍କ ପୃଷ୍ଠରେ ଆରୋହଣ କରି ମେଘ ସମୂହ ବୃଷ୍ଟି କରିଥାନ୍ତି । ସେହିପରି ଭଗବାନ୍ ଯେତେବେଳେ ବରାହ ଅବତାର ଧାରଣ କରିଥିଲେ ସେତେବେଳେ ସେ ପୃଥିବୀଙ୍କୁ ବିବାହ କରିଥିଲେ । ତେଣୁ ମେଘମାନେ ବୃଷ୍ଟି କରିବାରୁ ଧରଣୀ ଶସ୍ୟଶ୍ୟାମଳା ହେଲା ଏବଂ ରାଜ୍ୟରୁ ଦୁର୍ଭିକ୍ଷ ଦୂର ହେଲା । ଏହାକୁ ତୁମେ ଅଦ୍ଭୁତ ଓ ଅପୂର୍ବ କଥା ବୋଲି କହୁଛ !

ଶୁଣ, ମୁଁ ତୁମକୁ ଏକ ଅଦ୍ଭୁତ କାହାଣୀ ଶୁଣାଉଛି । ଯଦି ଏହାକୁ ଏକ ବାସ୍ତବ ସତ୍ୟ ଘଟଣା ବୋଲି ବିଶ୍ୱାସ କରିଯିବ ତେବେ ମୁଁ ଏହି ଖଟଟି ତୁମକୁ ଦେଇଦେବି । ଅନ୍ୟଥା ତୁମେ ମୋର ଦାସ ହୋଇ ରହିବ ।' ମୁଁ ସେହି ଧୂର୍ତ୍ତ ବାଳକର ଚାତୁର୍ଯ୍ୟରେ ବିସ୍ମିତ ହୋଇପଡ଼ିଥାଏ; ତାର ସର୍ତ୍ତ ଗ୍ରହଣ କରିନେଲି । ସେ କହିଲା–

'ହେ ଧୂର୍ତ୍ତପତି ! ପ୍ରାଚୀନ କାଳରେ ପୃଥିବୀ ପୃଷ୍ଠରେ ଗୋଟିଏ ଅଦ୍ଭୁତ ବାଳକ ଜନ୍ମ ହୋଇଥିଲା । ସେ ଜନ୍ମ ହେବାମାତ୍ରେ ସମଗ୍ର ପୃଥିବୀ ତା'ର ପଦପାତରେ ପ୍ରକମ୍ପିତ ହୋଇଉଠିଥିଲା । ସେ ସେହି ସମୟରେ ହିଁ ବୃଦ୍ଧ ହୋଇ ପରଲୋକରେ ପାଦ ରଖିଲା ।'

ମୁଁ ତା'ଠାରୁ କଥାଟି ଶୁଣି କହିଲି 'ଏହା ଯେପରି କପୋଳକଳ୍ପିତ ସେହିପରି ମିଥ୍ୟା, ଏଥିରେ କୌଣସି ସତ୍ୟତା ନାହିଁ ।' ସେ ଉପସ୍ଥିତ ଜନତାଙ୍କୁ ସାକ୍ଷୀ ରଖି କହିଲା, 'ତାହାହେଲେ ତୁମେ ଆଜିଠାରୁ ମୋର ଦାସ ହେଲ । ମୁଁ ଯୁଆଡ଼େ ଯିବି ତୁମେ ମୋ ସହିତ ଯିବ । ଦେଖ, ପ୍ରାଚୀନ କାଳରେ ଭଗବାନ୍ ରାକ୍ଷସରାଜ ବଳିଙ୍କ ଗର୍ବ ଖର୍ବ କରିବାପାଇଁ ବାମନ ଅବତାର ଧାରଣ କରିଥିଲେ । ସେ ଜନ୍ମହେବା ମାତ୍ରେ ଗୋଟିଏ ପାଦରେ ସମଗ୍ର ପୃଥିବୀକୁ ଆକ୍ରାନ୍ତ କରିଥିଲେ । ତତ୍‌କ୍ଷଣାତ୍ ତାଙ୍କର ବୃଦ୍ଧି ହୋଇଥିଲା । ଅର୍ଥାତ୍ ସେ ବୃଦ୍ଧତ୍ୱ ପ୍ରାପ୍ତ ହୋଇଥିଲେ । ତାଙ୍କର ଅନ୍ୟପାଦ ପରଲୋକ ଅର୍ଥାତ୍ ଆକାଶ ଲୋକକୁ ସ୍ପର୍ଶ କରିଥିଲା । ଏତିକି କଣ ତମେ ଜାଣିପାରିଲ ନାହିଁ ।' ଏହା କହି ବାଳକଟି ମୋର ହାତଧରି ସେଠାରୁ ମୋତେ ନେଇ ଚାଲିଲା । ବଜାରସ୍ଥିତ ଲୋକମାନେ ତାକୁ ସମର୍ଥନ ଜଣାଇଲେ । ମୁଁ ବାଧ ହୋଇ ତା' ସହିତ ଚାଲିବାକୁ ଲାଗିଲି ।

ବାଳକ ମୋତେ ଧରି ପାଟଳିପୁତ୍ର ନଗରରେ ଆସି ପହଞ୍ଚିଲା । ମୋ ସହିତ ନିଜର ମାତାଙ୍କ ନିକଟରେ ଉପସ୍ଥିତ ହେବାରୁ ସେ କହିଲା 'ଆର୍ଯ୍ୟପୁତ୍ର ! ଆଜି ମୁଁ ମଧ୍ୟ ମୋର ପ୍ରତିଜ୍ଞା ପୂରଣ କରିଛି । ତୁମ ଔରସରୁ ଜାତ ମୋର ପୁତ୍ର ହିଁ ତୁମକୁ ଧରି ମୋ ନିକଟକୁ ନେଇଆସିଛି ।' ଏହା କହି ସେ ନିଜର ସମଗ୍ର ବୃତ୍ତାନ୍ତ ମୋ ନିକଟରେ ବ୍ୟକ୍ତ କଲା । ସମସ୍ତେ ତା'ର ବୁଦ୍ଧିମତ୍ତାକୁ ଧନ୍ୟଧନ୍ୟ କଲେ । ପରିବାରରେ ଉତ୍ସବ ପାଳିତ ହେଲା । ପୁତ୍ରର ଚାତୁର୍ଯ୍ୟ ଓ ବୁଦ୍ଧିଦ୍ୱାରା ବଂଶର ମର୍ଯ୍ୟାଦା ମଧ୍ୟ ସୁରକ୍ଷିତ ହେଲା ।'

ମହାରାଜ୍ ! ପୃଥିବୀରେ ଏହିପରି ମଧ୍ୟ ବହୁ ପତିଭକ୍ତା କୁଳୀନା ରମଣୀ ଅଛନ୍ତି । ସବୁ ସ୍ତ୍ରୀ ଯେ କୁଳଟା ଓ ଦୁଶ୍ଚରିତ୍ରା ଏପରି ନୁହେଁ ।'

ମୂଳଦେବଙ୍କଠାରୁ ଏହିପରି ବିନୋଦାତ୍ମକ କାହାଣୀ ଶୁଣି ସଚିବମାନଙ୍କ ସହିତ ବିକ୍ରମାଦିତ୍ୟ ପ୍ରସନ୍ନ ହେଲେ ।

ଏହିପରି ବିସ୍ମୟକର କାହାଣୀ ଶୁଣି, ଅଦ୍ଭୁତ ଘଟଣାସବୁ ଦେଖି ଏବଂ ନିଜେ ଏପରି ବିସ୍ମୟକର କାର୍ଯ୍ୟସବୁ ସମ୍ପାଦନ କରି ସମ୍ରାଟ୍ ବିକ୍ରମାଦିତ୍ୟ ସପ୍ତଦ୍ୱୀପା ଧରଣୀକୁ ପାଳନ କରିବାକୁ ଲାଗିଲେ ।

ରାଜା ବିକ୍ରମାଦିତ୍ୟଙ୍କ ବିଚିତ୍ର କଥା ଶୁଣାଇ ମହର୍ଷି କଣ୍ୱ ମଦନମଞ୍ଚୁକାଙ୍କ ବିରହରେ ସନ୍ତପ୍ତ ହେଉଥିବା ବେଳେ ମୋତେ କହିଲେ, 'ପୃଥିବୀରେ ଏହିପରି ଅଦ୍ଭୁତ ମିଳନ ଓ ବିଚ୍ଛେଦ ଲାଗି ରହିଛି । ଲୋକମାନେ ବଡ଼ ବିଚିତ୍ର ଭାବରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇପଡ଼ନ୍ତି, ପୁଣି ଆକସ୍ମିକ ଭାବେ ସେମାନଙ୍କର ମିଳନ ଘଟିଥାଏ । ତେଣୁ

ବତ୍ସ ନରବାହନଦତ୍ତ ! ମଦନମଞ୍ଜୁକାଙ୍କ ସହିତ ତୁମର ମଧ୍ୟ ଅତିଶୀଘ୍ର ମିଳନ ଘଟିବ । ଏଥିପାଇଁ ଅଧୀର ହୁଅ ନାହିଁ । ସ୍ତ୍ରୀ ଓ ମନ୍ତ୍ରୀମାନଙ୍କ ସହିତ ତୁମେ ଚିରକାଳ ପର୍ଯ୍ୟନ୍ତ ବିଦ୍ୟାଧର ଚକ୍ରବର୍ତ୍ତୀ ପଦ ଭୋଗ କରିବ ।'

ମହର୍ଷି କଣ୍ୱଙ୍କ ଆଶ୍ୱାସନା ବାଣୀ ମୋ ମନରେ ବିଶ୍ୱାସ ସଞ୍ଚାର କଲା । ମୋର ବିରହ ଦିବସଗୁଡ଼ିକ କଟିଗଲା । କ୍ରମଶଃ ପତ୍ନୀ, ବିଦ୍ୟା ଓ ବିଦ୍ୟାଧର ଚକ୍ରବର୍ତ୍ତୀ ପଦଲାଭ କରି ମୁଁ ଆଜି ଅପୂର୍ବ ସାଫଲ୍ୟ ଅର୍ଜନ କରିଛି ।

ହେ ମହର୍ଷି ବୃନ୍ଦ ! ଏ ସମସ୍ତ ଭଗବାନ୍ ଗୌରୀପତିଙ୍କର ହିଁ ଅନୁଗ୍ରହ । ଏ ସମ୍ପର୍କରେ ଆପଣମାନେ ସମସ୍ତ ବୃତ୍ତାନ୍ତ ଅବଗତ ଅଛନ୍ତି ।'

ଚକ୍ରବର୍ତ୍ତୀ ସମ୍ରାଟ ନରବାହନଦତ୍ତ ମହର୍ଷି କଶ୍ୟପଙ୍କ ଆଶ୍ରମରେ ନିଜର ବିଚିତ୍ର ଅନୁଭୂତି ଶୁଣାଇ ମୁନି, ମୁନିପତ୍ନୀ ଓ ମାମୁ ଗୋପାଳଙ୍କୁ ଆନନ୍ଦିତ କଲେ । ଚତୁର୍ମାସ୍ୟା ଶେଷ ହେଲା । ସେ ତପୋବନରୁ ବିଦାୟ ଗ୍ରହଣ କରି ସ୍ୱୀୟ ପରିବାର, ପରିଜନ, ସଚିବ, ହିତମିତ୍ର ରାଜନ୍ୟବୃନ୍ଦ ଏବଂ ସେନାବାହିନୀ ସହିତ ବିମାନ ଆରୋହଣ କରି ମୁହୂର୍ତ୍ତକ ମଧ୍ୟରେ ନିଜର ନିବାସ ଭୂମି ଋଷଭକ ପର୍ବତ ଉପରେ ଆସି ପହଞ୍ଚିଲେ । ସେଠାରେ ବିଦ୍ୟାଧର ସାମ୍ରାଜ୍ୟର ଚକ୍ରବର୍ତ୍ତୀ ରୂପେ ସମ୍ରାଟ୍ ନରବାହନଦତ୍ତଙ୍କ ଗୋଟିଏ କଳ୍ପ ବିତିଗଲା ।

ଏହି ବୃହତ୍ କଥା ହିମାଚଳ କନ୍ୟା ପାର୍ବତୀଙ୍କ ସାଗ୍ରହ ଅନୁରୋଧରେ ଦେବଦେବ ମହାଦେବ କୈଳାସ ଶିଖରୀରେ ତାଙ୍କୁ ଶୁଣାଇଥିଲେ । ପୁଷ୍ପଦନ୍ତ ଆଦି ଶିବଗଣ ଅଭିଶପ୍ତ ହୋଇ କାତ୍ୟାୟନ ପ୍ରଭୃତି ରୂପରେ ପୃଥିବୀ ପୃଷ୍ଠରେ ଅବତରଣ କରି ଏହାକୁ ମର୍ତ୍ତ୍ୟଲୋକରେ ପରିପ୍ରଚାର କରିଛନ୍ତି ।

ଏହି ବିଚିତ୍ର କଥା ଶୁଣାଇବା ବେଳେ ଭଗବାନ୍ ଭବାନୀପତି ଏହି କଥାକୁ ବର ପ୍ରଦାନ କରିଥିଲେ ଯେ ତାଙ୍କ ମୁଖରୁ ନିଃସୃତ ହୋଇଥିବା ଏହି ସୁନ୍ଦର କଥା ଯେଉଁମାନେ ପଢ଼ିବେ କିମ୍ବା ଯେଉଁମାନେ ଆଦରର ସହିତ ଶୁଣିବେ କିମ୍ବା ଯେଉଁମାନେ ଏହାକୁ ସ୍ମରଣ ମଧ୍ୟ କରିବେ ସେହି ବିଦ୍ୱାନ୍ ବ୍ୟକ୍ତିମାନେ ସମସ୍ତ ପାପରୁ ମୁକ୍ତ ହୋଇ ବିଦ୍ୟାଧର ପଦପ୍ରାପ୍ତି ପୂର୍ବକ ଶିବଲୋକ ପ୍ରାପ୍ତ ହେବେ ।





**ଡଃ. ସୁଦର୍ଶନ ଆଚାର୍ଯ୍ୟ**

ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଜଗଡ଼ା ସୁବର୍ଣ୍ଣପୁରର ପ୍ରସିଦ୍ଧ ପଣ୍ଡିତ ରାୟ ବଂଶର ଉତ୍ତର ଦାୟାଦ ।

ପ୍ରଖ୍ୟାତଯଶା ସମାଲୋଚକ ତଥା ଗବେଷକ ନଟବର ସାମନ୍ତରାୟ, ଅଧ୍ୟାପକ ଚିନ୍ତାମଣି ବେହେରା, ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କଠାରୁ ସାହିତ୍ୟ ବିଦ୍ୟା ଆହରଣ ।

ଶ୍ରୀକାକୁଲମ୍ କଳା ମହାବିଦ୍ୟାଳୟ, ବ୍ରହ୍ମପୁର ଖଲ୍ଲିକୋଟ ମହାବିଦ୍ୟାଳୟ ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରି ଅବସର ଗ୍ରହଣ ।

ସାହିତ୍ୟ ଓ ସାହିତ୍ୟିକ, ସ୍ରଷ୍ଟା ଓ ସୃଷ୍ଟି, ଓଡ଼ିଆ କାବ୍ୟ କୌଶଳ ପରି ମୌଳିକ ସମାଲୋଚନା ଗ୍ରନ୍ଥ ସହିତ ବିଶାଳ କଥାଗ୍ରନ୍ଥ 'କଥା ସରିତ ସାଗର'ର ଓଡ଼ିଆ ଅନୁବାଦ ଏବଂ ରାମଚନ୍ଦ୍ର ଗ୍ରନ୍ଥାବଳୀ (ଚାରିଖଣ୍ଡ), ଜଗନ୍ନାଥ ନାରାୟଣ ଦେବ ଗ୍ରନ୍ଥାବଳୀ, ଊନବିଂଶ ଶତାବ୍ଦୀର ବିସ୍ମୃତ ପତ୍ରିକା 'ଇନ୍ଦ୍ରଧନୁ', ଉପେନ୍ଦ୍ର ଭଞ୍ଜଙ୍କ ପ୍ରଥମ କାବ୍ୟକୃତି 'ଚିତ୍ରଲେଖା' ପରି ଦୁଷ୍ପ୍ରାପ୍ୟ ଓ ଦୁର୍ଲ୍ଲଭ ଗ୍ରନ୍ଥଗୁଡିକ ସମ୍ପାଦିତ ହୋଇ ପ୍ରକାଶିତ ।

